**Bewailing**, *n.* ଶୋକ, ବିଳାପ ।
**Beware**, *v.* ସାବଧାନ ରହିବା ।
**Bewilder**, *v.* ହତବୁଦ୍ଧି କରିବା ।
**Bewilderment**, *n.* ବିହ୍ୱଳତା, ଗୋଳମାଳ । [ ଭୁଲାଇବା ।
**Bewitch**, *v.* ମୋହିତ କରିବା,
**Bewitching**, *a.* ମୋହଜନକ, ବଶକାରୀ । [ ଅପର ପାର୍ଶ୍ୱରେ ।
**Beyond**, *pre.* & *ad.* ଦୂରରେ,
**Bias**, *n.* ପକ୍ଷପାତ, ରୁଚି; *v.* ପକ୍ଷପାତୀ ହେବା ।
**Biased**, *a.* ପକ୍ଷପାତୀ । [ ବାଇବେଲ୍ ।
**Bible**, *n.* ଧର୍ମଗ୍ରନ୍ଥ, ଖ୍ରୀଷ୍ଟିଆନ ଧର୍ମଗ୍ରନ୍ଥ
**Bibliography**, *n.* ଗ୍ରନ୍ଥ-ଇତିହାସ ।
**Biceps**, *n.* ବାହୁର ସମ୍ମୁଖଭାଗରେ ଥିବା ମାଂସପେଶୀ ।
**Bicker**, *v.* ବୃଥା କଳହ କରିବା ।
**Bickering**, *n.* କଳହ, ଝଗଡ଼ା ।
**Bicycle**, *n.* ଦୁଇଚକ୍ରବିଶିଷ୍ଟ ସାଇକେଲ
**Bid**, *v.* ଆଦେଶ ଦେବା, ନିଲାମ ଡାକିବା
**Bidding**, *n.* ଆଦେଶ, ନିମନ୍ତ୍ରଣ ।
**Biennial**, *a.* ଦ୍ୱିବାର୍ଷିକ ।
**Bier**, *n.* ଶବ ନେବାପାଇଁ ଖଟ,କୋକେଇ
**Bifurcate**, *a.* ଦୁଇଶାଖାବିଶିଷ୍ଟ; *v.* ଦୁଇ ଶାଖାରେ ବିଭକ୍ତ କରିବା ।
**Bifurcated**, *a.* ଦୁଇ ଶାଖାରେ ବିଭକ୍ତ
**Big**, *a.* ବୃହତ୍, ବଡ଼ ।
**Bigamy**, *n.* ଏକ ପୁରୁଷର ଦୁଇ ପତ୍ନୀ ଗ୍ରହଣ ବା ଏକ ସ୍ତ୍ରୀର ଦୁଇ ପତି ଗ୍ରହଣ ।
**Bigot**, *n.* ଧର୍ମାନ୍ଧ, ପରଧର୍ମବିଦ୍ୱେଷୀ ।
**Bigotry**, *n.* ଧର୍ମାନ୍ଧତା, ପରଧର୍ମ ପ୍ରତି ବିଦ୍ୱେଷ ।
**Bike**, *n.* ଦ୍ୱିଚକ୍ରବିଶିଷ୍ଟ ସାଇକେଲ୍ ।
**Bile**, *n.* ପିତ୍ତରସ ।
**Bilingual**, *a.* ଦ୍ୱିଭାଷାବିଶିଷ୍ଟ ।
**Bilious**, *a.* ପିତ୍ତସମ୍ବନ୍ଧୀୟ ।
**Bill**, *n.* ପକ୍ଷୀର ଥଣ୍ଟ, ପ୍ରସ୍ତାବିତ ଆଇନ, କ୍ରୀତ ବସ୍ତୁର ମୂଲ୍ୟସୂଚକ ଦେୟ ପତ୍ର ।
**Billet**, *n.* କ୍ଷୁଦ୍ର ପତ୍ରିକା ।
**Billiards**, *n.* କ୍ରୀଡ଼ାବିଶେଷ ।
**Bill of exchange**, *n.* ହୁଣ୍ଡି ।
**Billion**, *n.* ଏକଶତ କୋଟି ।
**Billow**, *n.* ତରଙ୍ଗ, ଉଚ୍ଚ ଲହରୀ ।
**Bimonthly**, *a.* ଦ୍ୱୈମାସିକ; *n.* ଦ୍ୱୈମାସିକ ପତ୍ରିକା ।
**Bind**, *v.* ବନ୍ଧନ କରିବା । [ ଲୋକ ।
**Binder**, *n.* ଦପ୍ତରି, ବହି ବାନ୍ଧିବା
**Binding**, *a.* ଅବଶ୍ୟ କର୍ତ୍ତବ୍ୟ, ବାଧ୍ୟତାମୂଳକ; *n.* ବହି ବନ୍ଧେଇ ।
**Binocular**, *a.* ଦୁଇ ଚକ୍ଷୁବିଶିଷ୍ଟ; *n.* ଦୁଇ ଆଖିରେ ଦେଖିବାର ଦୂରଦର୍ଶକ ଯନ୍ତ୍ର
**Biographer**, *n.* ଜୀବନୀଲେଖକ ।
**Biographical**, *a.* ଜୀବନଚରିତ-ସମ୍ବନ୍ଧୀୟ ।

Biography, *n.* ଜୀବନଚରିତ, ଜୀବନୀ
Biological, *a.* ପ୍ରାଣୀବିଜ୍ଞାନବିଷୟକ ।
Biologist, *n.* ପ୍ରାଣୀବିଜ୍ଞାନବେତ୍ତା ।
Biology, *n.* ପ୍ରାଣୀବିଜ୍ଞାନ ।
Bioscope, *n.* ଚଳଚ୍ଚିତ୍ର ।
Biped, *n.* ଦ୍ୱିପଦ ପ୍ରାଣୀ; *a.* ଦ୍ୱିପଦ ।
Bipedal, *a.* ଦ୍ୱିପଦବିଶିଷ୍ଟ ।
Biplane, *n.* ଦୁଇ ପକ୍ଷଯୁକ୍ତ ଉଡ଼ାଜାହାଜ
Birch, *n.* ବୃକ୍ଷବିଶେଷ ।
Bird, *n.* ପକ୍ଷୀ, ଚଢ଼େଇ ।
Bird's eye, *a.* ପକ୍ଷୀବତ୍ ପରିଦୃଷ୍ଟ ।
Birth, *n.* ଜନ୍ମ, ଉତ୍ପତ୍ତି ।
Birth-control, *n.* ଜନ୍ମନିୟନ୍ତ୍ରଣ ।
Birthday, *n.* ଜନ୍ମଦିବସ, ଜନ୍ମତିଥି ।
Birth-place, *n.* ଜନ୍ମସ୍ଥାନ ।
Birth right, *n.* ଜନ୍ମଗତ ଅଧିକାର ।
Biscuit, *n.* ବିସ୍କୁଟ ।
Bisect, *v.* ସମଦ୍ୱିଖଣ୍ଡ କରିବା ।
Bisection, *n.* ସମଦ୍ୱିଖଣ୍ଡୀକରଣ ।
Bisector, *n.* ସମଦ୍ୱିଖଣ୍ଡକାରକ ରେଖା
Bishop, *n.* ଖ୍ରୀଷ୍ଟିଆନମଣ୍ଡଳୀର ଧର୍ମାଧ୍ୟକ୍ଷ
Bison, *n.* ବନ୍ୟ ମହିଷ, ଗବୟ ।
Bit, *n.* କ୍ଷୁଦ୍ର ଖଣ୍ଡ, ଘୋଡ଼ାର ଲଗାମ ।
Bitch, *n.* କୁକ୍କୁରୀ, କୁତ୍ତୀ ।
Bite, *v.* କାମୁଡ଼ିବା; *n.* ଦଂଶନ ।
Biter, *n.* ଦଂଶନକାରୀ, ପ୍ରବଞ୍ଚକ ।
Biting, *a.* ତୀବ୍ର, ଉଗ୍ର, କଟୁ; *n.* ଦଂଶନ
Bitter, *a.* ତିକ୍ତ, କଟୁ, ଶୋକଜନକ ।
Bitterness, *n.* ତିକ୍ତତା, ମନୋବ୍ୟଥା
Bitumen, *n.* ଦାହ୍ୟ ତୈଳଜାତୀୟ ପଦାର୍ଥ ।
Bivouac, *n.* ସେନାସନ୍ନିବେଶ ।
Biweekly, *a.* ସପ୍ତାହରେ ଦୁଇଥର ବା ଦୁଇ ସପ୍ତାହରେ ଥରେ ପ୍ରକାଶିତ; *n.* ଦ୍ୱିସାପ୍ତାହିକ ପତ୍ରିକା ।
Black, *n.* କୃଷ୍ଣବର୍ଣ୍ଣ; *a.* କୃଷ୍ଣ, କଳା ।
Black art, *n.* ଯାଦୁ ବା ଇନ୍ଦ୍ରଜାଲ ବିଦ୍ୟା ।
Blackberry, *n.* ଜାମୁକୋଳି ।
Blackbird, *n.* କୋଇଲି ।
Blackboard, *n.* କଳାପଟା ।
Blacken, *v.* କଳା କରିବା, କଳଙ୍କ ଲଗାଇବା ।
Blackguard, *n.* ଦୁର୍ବୃତ୍ତ ବା ଦୁଷ୍ଟ [ ଲୋକ ।
Blackish, *a.* ଈଷତ୍ କୃଷ୍ଣ, କୃଷ୍ଣାଭ ।
Blackmail, *v.* ଭୟପ୍ରଦର୍ଶନଦ୍ୱାରା ଧନ ଅପହରଣ କରିବା; *n.* ଭୟ ଦେଖାଇ ଧନାପହରଣ ।
Black market, *n.* କଳାବଜାର ।
Black marketer, *n.* କଳା-ବଜାରୀ ।
Black-out, *n.* ନିରାପତ୍ତାନିମିତ୍ତ ଆଲୋକନିର୍ବାପନ ।
Black-sheep, *n.* ଅସତ୍ ଲୋକ ।

Blacksmith, *n.* କମାର, ଲୌହ-କାରଗର । [ ପାଇଁ ଥଳୀ ।

Bladder, *n.* ମୂତାଶୟ, ବାୟୁ ପୂରଇବା

Blade, *n.* ଧାର ଥିବା ଧାତୁର ପତ, ଅସ୍ତ୍ରର ଧାର; (ଘାସର) ପତ୍ର ।

Blamable, *a.* ନିନ୍ଦନୀୟ ।

Blame, *n.* ଦୋଷ, ନିନ୍ଦା, କଳଙ୍କ; *v.* ଦୋଷ ଦେବା, ନିନ୍ଦା କରିବା ।

Blameless, *a.* ନିର୍ଦ୍ଦୋଷ, ନିଷ୍କଳଙ୍କ ।

Blameworthy, *a.* ନିନ୍ଦାର୍ହ, ନିନ୍ଦନୀୟ ।

Bland, *a.* ନମ୍ର, ଧୀର ।

Blandness, *n.* ନମ୍ରତା, ଧୀରତା ।

Blank, *a.* ସାଦା, ଶୂନ୍ୟ, ଅଲେଖା ।

Blanket, *n.* କମ୍ବଳ । [ ଆବାଜ ।

Blank shot, *n.* ବନ୍ଧୁକର ଫାଙ୍କା

Blank verse, *n.* ଅମିତ୍ରାକ୍ଷର ଛନ୍ଦ ।

Blare, *v.* ଗର୍ଜନ କରିବା; *n.* ଗର୍ଜନ ।

Blaspheme, *v.* ଈଶ୍ୱରଙ୍କ ନିନ୍ଦା କରିବା । [ ମୂଳକ ।

Blasphemous, *a.* ଈଶ୍ୱରନିନ୍ଦା-

Blasphemy, *n.* ଈଶ୍ୱରନିନ୍ଦା ।

Blast, *n.* ବାରୁଦ ଆଦିର ବିସ୍ଫୋରଣ, ଦମ୍କା ପବନ; *v.* ନିପାତ କରିବା, ବିସ୍ଫୋରଣ କରିବା ।

Blatant, *a.* ଗୋଳମାଳପୂର୍ଣ୍ଣ ।

Blaze, *n.* ଅଗ୍ନିଶିଖା, ଦୀପ୍ତି; *v.* ପ୍ରଜ୍ୱଳିତ ହେବା ।

Blazon, *v.* ପ୍ରକାଶ କରିବା, ପ୍ରଦର୍ଶନ କରିବା । [ କରିବା ।

Bleach, *v.* ସଫା କରିବା, ଧଳା

Bleak, *a.* ହିମାଚ୍ଛନ୍ନ, ଶୀତଳ, ଅନାବୃତ

Bleat, *v.* (ମେଣ୍ଢା) ବୋବେଇବା ।

Bleed, *v.* ରକ୍ତ ବୋହିବା, ରକ୍ତ-ମୋକ୍ଷଣ କରିବା ।

Bleeding, *n.* ରକ୍ତସ୍ରାବ, ରକ୍ତମୋକ୍ଷଣ ।

Blemish, *n.* କଳଙ୍କ, ଦୋଷ, ନିନ୍ଦା ।

Blench, *v.* ସଙ୍କୁଚିତ ହେବା, ପଶ୍ଚାତ୍-ପଦ ହେବା ।

Blend, *v.* ମିଶ୍ରିତ କରିବା; *n.* ମିଶ୍ରଣ ।

Bless, *v.* ଆଶୀର୍ବାଦ କରିବା । [ପ୍ରାପ୍ତ ।

Blessed, *a.* ଧନ୍ୟ, ସୁଖୀ, ଆଶୀର୍ବାଦ-

Blessing, *n.* ଆଶୀର୍ବାଦ ।

Blight, *n.* ବୃକ୍ଷାଦି ନଷ୍ଟ କରିବା ରୋଗ, ମ୍ଳାନତା; *v.* ନିଷ୍ଫଳ କରିବା ।

Blind, *a.* ଅନ୍ଧ, ବିଚାରହୀନ; *n.* ପରଦା; *v.* ଅନ୍ଧ କରିବା ।

Blindfold, *v.* ଚକ୍ଷୁବନ୍ଧନ କରିବା; *a.* ଚକ୍ଷୁବନ୍ଧ ଥିବା । [ ଶୂନ୍ୟଭାବରେ ।

Blindly, *ad.* ଅନ୍ଧଭାବରେ, ବିଚାର-

Blindness, *n.* ଅନ୍ଧତା, ବିଚାରହୀନତା ।

Blink, *v.* ଆଖି ମିଟିମିଟି କରିବା, ଆଖିରେ ଠାରିବା ।

Blinker, *n.* ଅଶ୍ୱର ଚକ୍ଷୁର ଆବରଣ ।

Bliss, *n.* ସ୍ୱର୍ଗୀୟ ସୁଖ, ପରମାନନ୍ଦ ।

Blissful, *a.* ଆନନ୍ଦମୟ ।
Blister, *n.* ଫୋଟକା ।
Blistery, *a.* ଫୋଟକାରେ ପୂର୍ଣ୍ଣ, ସ୍ଫୋଟକମୟ ।
Blithe, Blithesome, *a.* ହୃଷ୍ଟ, [ ଆନନ୍ଦିତ, ପ୍ରଫୁଲ୍ଲ ।
Blizzard, *n.* ବରଫଝଡ଼, ତୁଷାର-ବାତ୍ୟା ।
Bloat, *v.* ଫୁଲିବା, ସ୍ଫୀତ ହେବା ।
Bloated, *a.* ସ୍ଫୀତ, ଫୁଲିଥିବା ।
Block, *n.* ଗଛର ଥୁଣ୍ଟା, ବଡ଼ କାଠ ବା ପଥରଖଣ୍ଡ; *v.* ବାଧା ଦେବା, ପଥ-ରୋଧ କରିବା । [ *n.* ଅବରୋଧ ।
Blockade, *v.* ଅବରୋଧ କରିବା;
Blockhead, *n.* ମୂର୍ଖ ବା ନିର୍ବୋଧ ବ୍ୟକ୍ତି ।
Blond, Blonde, *a.* ଈଷତ୍ ସ୍ୱର୍ଣ୍ଣାଭ; *n.* ଈଷତ୍ ସ୍ୱର୍ଣ୍ଣାଭବର୍ଣ୍ଣବିଶିଷ୍ଟ ବ୍ୟକ୍ତି ।
Blood, *n.* ରକ୍ତ, ବଂଶ, ଆତ୍ମୀୟ ।
Blood-bank, *n.* ରକ୍ତଭଣ୍ଡାର ।
Bloodhound, *n.* ଏକଜାତୀୟ ଶିକାରି କୁକ୍କୁର । [ ଶୂନ୍ୟ ।
Bloodless, *a.* ରକ୍ତହୀନ, ରକ୍ତପାତ-
Blood-pressure, *n.* ରକ୍ତଚାପ ।
Bloodshed, *n.* ରକ୍ତପାତ, ହତ୍ୟା ।
Bloodstained, *a.* ରକ୍ତରଞ୍ଜିତ, ରକ୍ତାକ୍ତ ।
Bloodthirsty, *a.* ରକ୍ତଲୋଲୁପ ।
Blood-vessel, *n.* ଧମନୀ ବା ଶିରା ।
Bloody, *a.* ରକ୍ତାକ୍ତ, ନିଦାରୁଣ ।
Bloom, *n.* ମୁକୁଳ, ଫୁଲ, ନବଯୌବନ; *v.* ମୁକୁଳିତ ହେବା, ଫୁଲ ଧରିବା ।
Blooming, *a.* ଯୌବନଶ୍ରୀମଣ୍ଡିତ ।
Blossom, *n.* ମୁକୁଳ, ଫୁଲ, ବଉଳ; *v.* ଫୁଟିବା, ବଉଳିବା ।
Blot, *n.* କାଳିଦାଗ, କଳଙ୍କ, ଦୁର୍ନାମ; *v.* କଳଙ୍କ ବା ଦାଗ ଉଠାଇ ଦେବା, କାଳି ଶୁଷିବା ।
Blotting paper, *n.* ଛପାକାଗଜ ।
Blouse, *n.* ନାରୀମାନଙ୍କ କାଞ୍ଚୁଲି ।
Blow, *n.* ଆଘାତ, ପ୍ରହାର; *v.* ବହିବା, ବାଦ୍ୟରେ ଉଡ଼ାଇ ଦେବା, ଫୁଙ୍କିବା ।
Blow-pipe, *n.* ନିଆଁ ଫୁଙ୍କିବା ନଳ ।
Blubber, *n.* ତିମି ମାଛର ଚର୍ବି ।
Blue, *n.* ନୀଳ ରଙ୍ଗ, ଆକାଶ; *a.* ନୀଳ ।
Blue-jacket, *n.* ନୌବାହିନୀର କର୍ମଚାରୀ । [ *v.* ଫାଙ୍କିଦେବା ।
Bluff, *a.* ଦାମ୍ଭିକ; *n.* ଦାମ୍ଭିକତା;
Bluish, *a.* ଈଷତ୍ ନୀଳ ।
Blunder, *n.* ଭ୍ରମ, ପ୍ରମାଦ; *v.* ଭୁଲ କରିବା । [ ମନୀଷ ।
Blunderer, *n.* ଭ୍ରମକାରୀ, ବୋକା
Blunt, *a.* କର୍କଶ, ରୁକ୍ଷ, ଧାର ନ ଥିବା ।
Bluntly, *ad.* ରୁକ୍ଷଭାବରେ ।
Bluntness, *n.* ଧାରର ଅଭାବ ।
Blur, *n.* ଦାଗ, କଳଙ୍କ; *v.* କଳଙ୍କ ଲଗାଇବା ।

**Blurt**, *v.* ହଠାତ୍ କହିବା ।

**Blush**, *v.* ଲଜ୍ଜାରେ ମୁଖ ରକ୍ତିମ ହେବା; *n.* ଲଜ୍ଜା ହେତୁ ମୁଖର ରକ୍ତିମା ।

**Boa**, *n.* ଅଜଗର ଜାତୀୟ ସର୍ପ ।

**Boar**, *n.* ବରାହ, ବନ୍ୟ ଶୂକର ।

**Board**, *n.* ତକ୍ତା, ପଟା, ଖାଦ୍ୟ, ସଭ, ଜାହାଜର ଉପର ମହଲ; *v.* ମୂଲ୍ୟ ଦେଇ ଖାଇବା, ଜାହାଜ ଆଦିରେ ଚଢ଼ିବା ।

**Boarder**, *n.* ମୂଲ୍ୟ ଦେଇ ଖାଇବା ବ୍ୟକ୍ତି । [ ଭୋଜନାଳୟ ।

**Boarding house**, *n.* ଛାତ୍ରାବାସ,

**Boarding school**, *n.* ଆବାସିକ ବିଦ୍ୟାଳୟ । [ କରିବା ।

**Boast**, *n.* ଗର୍ବ, ବଡ଼ିମା; *v.* ଗର୍ବ

**Boastful**, *a.* ଗର୍ବିତ, ଅଭିମାନୀ ।

**Boat**, *n.* ଡଙ୍ଗା, ନୌକା, ପୋତ ।

**Boatman**, *n.* ନାବିକ, ନାଉରୀ ।

**Boatswain**, *n.* ନୌକର୍ମଚାରୀ, ନାବିକ । [ *n.* ବାବୁରି ବାଳ ।

**Bob**, *v.* ବେକ ପାଖରୁ ବାଳକୁ କାଟିବା;

**Bobbed hair**, *n.* ବାବୁରି ବାଳ ।

**Bobbin**, *n.* ତନ୍ତରେ ବ୍ୟବହୃତ କଣ୍ଡାର ଖୋଳ ।

**Bobtail**, *n.* କର୍ତ୍ତିତ ଲାଙ୍ଗୁଳ ।

**Bode**, *v.* ଶୁଭାଶୁଭ ସୂଚନା କରିବା ।

**Bodice**, *n.* କାଞ୍ଚୁଲି ।

**Bodiless**, *a.* ଅଶରୀରୀ ।

**Bodily**, *a.* ଦୈହିକ, ଶାରୀରିକ; *ad.* ସଶରୀରରେ ।

**Boding**, *n.* ଲକ୍ଷଣ, ସୂଚନା ।

**Body**, *n.* ଶରୀର, ଅଙ୍ଗ, ସମାଜ, ଗୋଷ୍ଠୀ

**Bodyguard**, *n.* ଶରୀରରକ୍ଷକ ପ୍ରହରୀ

**Bog**, *n.* ଜଳା ଭୂମି ।

**Boggy**, *a.* ଜଳାମୟ, ସନ୍ତସନ୍ତିଆ ।

**Bogie**, *n.* ଭୂତ, ହୁରୁଡ଼ା, ରେଳ ଗାଡ଼ିର ଡବା ।

**Bogus**, *a.* ମିଥ୍ୟା, ଅପ୍ରକୃତ ।

**Boil**, *n.* ବଥ, ଫୋଟକା, ବ୍ରଣ; *v.* ସିଝ କରିବା । [ ଉତ୍ତାପକ ଯନ୍ତ୍ର ।

**Boiler**, *n.* ଗରମ କରିବା ପାତ୍ର, ବାଷ୍ପ

**Boiling point**, *n.* (ଜଳର) ଫୁଟନାଙ୍କ

**Boisterous**, *a.* ପ୍ରଚଣ୍ଡ, ସରବ, କୋଳାହଳପୂର୍ଣ୍ଣ, ଝଟିକାପୂର୍ଣ୍ଣ ।

**Bold**, *a.* ନିର୍ଭୀକ, ଦୁଃସାହସୀ ।

**Boldly**, *ad.* ନିର୍ଭୀକଭାବରେ ।

**Boldness**, *n.* ଦୁଃସାହସ, ନିର୍ଭୀକତା ।

**Bolster**, *n.* ତକିଆ; *v.* ସମର୍ଥନ କରିବା । [ କରିବା, ପଳାଇଯିବା ।

**Bolt**, *n.* ବଜ୍ର, ହୁଡ଼ୁକା, କିଳଣୀ; *v.* ବନ୍ଦ

**Bomb**, *n.* ଗୋଳା, ତୋପ, ବୋମା; *v.* ବୋମା ପକାଇବା ।

**Bombard**, *v.* ତୋପ ବା ବୋମାଦ୍ୱାରା ଆକ୍ରମଣ କରିବା, ତୋପ ମାରିବା ।

**Bombardment**, *n.* ବୋମାବର୍ଷଣ, ତୋପଦ୍ୱାରା ଆକ୍ରମଣ ।

Bombast, *n*. ସାରଶୂନ୍ୟ ସାଡ଼ମ୍ବର କଥା
Bombastic, *a*. ଶବ୍ଦାଡ଼ମ୍ବରପୂର୍ଣ୍ଣ ।
Bomber, *n*. ବୋମାବର୍ଷୀ ଉଡ଼ାଜାହାଜ
Bonafide, *a*. ପ୍ରକୃତ, ସତ୍ୟ ।
Bonafides, *n*. ସାଧୁ ଉଦ୍ଦେଶ୍ୟ, ପ୍ରକୃତ ପରିଚୟ ।
Bond, *n*. ଚୁକ୍ତିପତ୍ର, ତମସୁକ, ବନ୍ଧନ ।
Bondage, *n*. ଦାସତ୍ୱ, ବନ୍ଧନ ।
Bondman, *n*. କ୍ରୀତଦାସ ।
Bondsman, *n*. ଜାମିନଦାର ।
Bone, *n*. ଅସ୍ଥି, ହାଡ଼ ।
Bonfire, *n*. ଧୂନି, ଅଗ୍ନ୍ୟୁତ୍ସବ, ଆତସବାଜି
Bonnet, *n*. ନାରୀମାନଙ୍କଦ୍ୱାରା ବ୍ୟବହୃତ ଏକପ୍ରକାର ଟୋପି, ମୋଟରଗାଡ଼ିର ଯନ୍ତ୍ରର ଢାଙ୍କୁଣୀ ।
Bonny, *a*. ସୁନ୍ଦର, ସ୍ୱାସ୍ଥ୍ୟବନ୍ତ । [ଦାନ ।
Bonus, *n*. ପୁରସ୍କାର, ବେତନରୁ ଅଧିକ
Bony, *a*. ଅସ୍ଥିସାର, ହାଡ଼ୁଆ ।
Boo, *int*. ଘୃଣାସୂଚକ ଧ୍ୱନି ।
Book, *n*. ପୁସ୍ତକ, ବହି, ଗ୍ରନ୍ଥ; *v*. ଆଗରୁ କୌଣସି ବିଷୟ ଠିକ୍ କରି ରଖିବା, ଟିକଟ କାଟିବା । [ରଖିବା ଥାକ ।
Bookcase, *n*. ଆଲମାରି, ବହି
Booking, *n*. ଟିକଟ କରିବା ।
Bookish, *a*. ଅଧ୍ୟୟନପ୍ରିୟ, ପୁସ୍ତକଗତ
Book-keeping, *n*. ହିସାବପତ୍ରରକ୍ଷଣ
Booklet, *n*. ପୁସ୍ତିକା, କ୍ଷୁଦ୍ର ପୁସ୍ତକ ।
Book-seller, *n*. ପୁସ୍ତକବିକ୍ରେତା ।
Book-worm, *n*. ଗ୍ରନ୍ଥକୀଟ, ଯେଉଁ ଲୋକ ସର୍ବଦା ଗ୍ରନ୍ଥପାଠରେ ନିମଗ୍ନ ।
Boom, *n*. ବ୍ୟବସାୟରେ ଦ୍ରବ୍ୟର ଆଶାତୀତ ବୃଦ୍ଧି ।
Boon, *n*. ବର, ଅନୁଗ୍ରହ, ପ୍ରସାଦ ।
Boor, *n*. ଅସଭ୍ୟ, ବର୍ବର ବ୍ୟକ୍ତି ।
Boorish, *a*. ଗାଉଁଲି, ଇତର, ଅସଭ୍ୟ
Boost, *v*. ଉଠାଇବା, ବଢ଼ାଇବା ।
Boot, *n*. ଜୋତା, ଲାଭ; *v*. ଲାଭ ହେବା ବା କରିବା । [ତମ୍ବୁ ।
Booth, *n*. ଅସ୍ଥାୟୀ କୁଡ଼ିଆ ଘର ବା
Bootless, *a*. ବୃଥା, ନିଷ୍ଫଳ ।
Booty, *n*. ଲୁଣ୍ଠିତ ଦ୍ରବ୍ୟ, ଚୋରିମାଲ ।
Borax, *n*. ସୋହାଗା ।
Border, *n*. ସୀମାନ୍ତ, ଧାର, ଲୁଗାର ଧଡ଼ି; *v*. ସୀମାରେ ରହିବା ।
Bore, *n*. ଛିଦ୍ର, ରନ୍ଧ୍ର, ନଦୀରେ ଜୁଆର; *v*. ଛିଦ୍ର କରିବା, ଫୋଡ଼ିବା, ବିରକ୍ତ ଲାଗିବା
Boreal, *a*. ଉତ୍ତରଦିଗସମ୍ବନ୍ଧୀୟ ।
Boredom, *n*. ବିରକ୍ତି, କ୍ଳାନ୍ତି ।
Boring, *a*. ବିରକ୍ତିକର, କ୍ଳାନ୍ତିଜନକ; *n*. ବେଧନ, ଭେଦକରଣ ।
Born, *a*. ଜାତ, ଉତ୍ପନ୍ନ ।
Borne, *a*. ବାହିତ, ପ୍ରସୂତ । [କରିବା ।
Borrow, *v*. ଉଧାର ଆଣିବା, କରଜ
Borrower, *n*. ଋଣକର୍ତ୍ତା, ଅଧମର୍ଣ୍ଣ ।

**Bosom**, *n.* ବକ୍ଷସ୍ଥଳ, କୋଡ଼ ।
**Bosom friend**, *n.* ବିଶ୍ୱସ୍ତ ବନ୍ଧୁ ।
**Boss**, *n.* ହାକିମ, ଊର୍ଦ୍ଧ୍ୱତନ କର୍ମଚାରୀ; *v.* ହାକିମି କରିବା ।
**Botanic, Botanical**, *a.* ଉଦ୍ଭିଦ୍‌ବିଦ୍ୟାସମ୍ବନ୍ଧୀୟ ।
**Botanist**, *n.* ଉଦ୍ଭିଦ୍‌ବିଜ୍ଞାନବେତ୍ତା ।
**Botany**, *n.* ଉଦ୍ଭିଦ୍‌ବିଜ୍ଞାନ ।
**Both**, *a.* & *pr.* ଉଭୟ, ଦ୍ୱୟ, ଦୁହେଁ
**Bother**, *v.* ବିରକ୍ତ କରିବା ।
**Botheration**, *n.* ବିରକ୍ତି, ହକ୍‌ଦାର
**Bottle**, *n.* ବୋତଲ, ଶିଶି ।
**Bottom**, *n.* ତଳ, ନିମ୍ନଦେଶ ।
**Bottomless**, *a.* ଅତଳସ୍ପର୍ଶ, ଅଗାଧ ।
**Bough**, *n.* ଶାଖା, ଗଛର ଡାଳ ।
**Bought**, *a.* କ୍ରୀତ । [ ଡେଇଁବା ।
**Bounce**, *n.* ଲମ୍ଫ; *v.* ଲମ୍ଫ ଦେବା,
**Bound**, *a.* ଯିବାକୁ ପ୍ରସ୍ତୁତ, ବନ୍ଧା; *v.* ଡେଇଁ ପଡ଼ିବା, ଆବଦ୍ଧ କରିବା ।
**Boundary**, *n.* ସୀମା, ସରହଦ ।
**Bounden**, *a.* ଅବଶ୍ୟକର୍ତ୍ତବ୍ୟ, ବାଧ୍ୟତାମୂଳକ । [ ଅଶେଷ ।
**Boundless**, *a.* ଅସୀମ, ଅନନ୍ତ,
**Bounds**, *n.* ସୀମା, ପରିସୀମା, ସରହଦ
**Bounteous**, *a.* ବଦାନ୍ୟ, ଦୟାଳୁ ।
**Bountiful**, *a.* ବଦାନ୍ୟ, ଦାନଶୀଳ, ପ୍ରଚୁର ।
**Bounty**, *n.* ଉଦାରତା, ଦାନଶୀଳତା, ପ୍ରଚୁରତା ।
**Bouquet**, *n.* ପୁଷ୍ପଗୁଚ୍ଛ, ଫୁଲତୋଡ଼ା ।
**Bourn**, *n.* ସୀମା, କ୍ଷୁଦ୍ର ନଦୀ ।
**Bout**, *n.* କଳହ, ଉଦ୍ୟମ, ପରୀକ୍ଷା ।
**Bovine**, *a.* ଗୋଜାତୀୟ ।
**Bow**, *n.* ଧନୁ, ପୋତର ଅଗ୍ରଭାଗ ନମସ୍କାର; *v.* ନମସ୍କାର କରିବା ।
**Bowels**, *n.* ଅନ୍ତ୍ର, ଅନ୍ତର୍ଦ୍ଦେଶ ।
**Bower**, *n.* ନିକୁଞ୍ଜ, ଲତାଗୃହ ।
**Bowl**, *n.* ପାତ୍ର, ଗିନା ।
**Bowman**, *n.* ତୀରନ୍ଦାଜ, ଧନୁର୍ଦ୍ଧର ।
**Bowstring**, *n.* ଧନୁର ଗୁଣ, ଜ୍ୟା ।
**Box**, *n.* ବାକ୍‌ସ, ପେଡ଼ି, ମୁଥ; *v.* ମୁ[illegible] ମାରିବା ।
**Boxer**, *n.* ମୁଷ୍ଟିଯୋଦ୍ଧା ।
**Boxing**, *n.* ମୁଷ୍ଟିଯୁଦ୍ଧ ।
**Boy**, *n.* ବାଳକ, ଟୋକା ।
**Boycott**, *n.* ବର୍ଜନ, ତ୍ୟାଗ; *v.* ତ୍ୟା[illegible] କରିବା, ଏକଘରିଆ କରିବା ।
**Boyhood**, *n.* ବାଲ୍ୟାବସ୍ଥା, ପିଲାଦିନ
**Boyish**, *a.* ବାଳକସୁଲଭ, ପିଲାଳିଆ
**Boy-scout**, *n.* ବାଳଚର ।
**Brace**, *n.* ଯୋଡ଼ି, ଯୁଗ୍ମ; *v.* ଆବ[illegible] କରିବା । [ ଖଡ଼ୁ
**Bracelet**, *n.* ହସ୍ତର ବଳୟ, କଙ୍କଣ
**Bracing**, *a.* ବଳକାରକ ।

**Bracket**, *n.* ପୋଷାକ ରଖିବା ପାଇଁ କାନ୍ଥାଧାର, ବନ୍ଧନୀ ଚିହ୍ନ, ଯଥା— ( ), { }, [ ]।

**Brackish**, *a.* ଖାରଆ, ଲୁଣିଆ।

**Brag**, *v.* ଅହଙ୍କାର କରିବା।

**Braggart**, *n.* ଅହଙ୍କାରୀ ବ୍ୟକ୍ତି।

**Braid**, *n.* କେଶର ବେଣୀ; *v.* ବେଣୀ ବାନ୍ଧିବା।

**Braille**, *n.* ଅନ୍ଧମାନଙ୍କ ପଢ଼ିବା ନିମନ୍ତେ ଉଦ୍ଭାବିତ ଉଚ୍ଚନୀଚ ବିନ୍ଦୁବିଶିଷ୍ଟ ଅକ୍ଷର।

**Brain**, *n.* ମସ୍ତିଷ୍କ, ମଗଜ, ବୁଦ୍ଧିଶକ୍ତି।

**Brainy**, *a.* ଅତି ବୁଦ୍ଧିମାନ୍।

**Brake**, *n.* କଣ୍ଟାବଣ, ଗାଡ଼ିକୁ ଅଟକାଇବା ଯନ୍ତ୍ର।

**Bran**, *n.* ଭୁଷି, ତୁଷ।

**Branch**, *n.* ଶାଖା; *v.* ଶାଖାରେ ବିଭକ୍ତ ହେବା।

**Brand**, *n.* ମଶାଲ, ଦାଗ, ଚିହ୍ନ; *v.* ତପ୍ତ ଲୁହାରେ ଦାଗ ଦେବା, ଚିହ୍ନିତ କରିବା। [ଅପ୍ରତିଷ୍ଠା କରିବା।

**Brandish**, *v.* ହତିଆର ବୁଲାଇବା,

**Brandy**, *n.* ମଦ, ସୁରାପ।

**Brangle**, *n.* ବିବାଦ, କଳହ।

**Brass**, *n.* ପିତ୍ତଳ।

**Brat**, *n.* ଅର୍ଭକ, ଶିଶୁ।

**Bravado**, *n.* ଦାମ୍ଭିକ, ଗର୍ବିତ ବ୍ୟକ୍ତି।

**Brave**, *a.* ସାହସୀ, ବୀରତ୍ୱପୂର୍ଣ୍ଣ; *v.* ସାହସ ସହକାରେ ସମ୍ମୁଖୀନ ହେବା।

**Bravely**, *ad.* ସାହସପୂର୍ବକ।

**Bravery**, *n.* ସାହସ, ବୀରତ୍ୱ।

**Bravo**, *int.* ସାବାସ୍! ବାଃ ବାଃ!

**Brawl**, *n.* କଳହ, ଦ୍ୱନ୍ଦ୍ୱ; *v.* କଳହ କରିବା। [ ବିରହ।

**Brawn**, *n.* ବାହୁ ବା ପେଣ୍ଡାର ପେଶୀ,

**Brawny**, *a.* ବଳିଷ୍ଠ, ମାଂସଳ।

**Bray**, *n.* ଗଧର ରାବ; *v.* (ଗଧ)ରାବିବା।

**Braze**, *v.* ପିତ୍ତଳରେ ଝାଳିବା।

**Brazen**, *a.* ପିତ୍ତଳନିର୍ମିତ, ନିର୍ଲଜ୍ଜ।

**Brazier**, *n.* ଅଙ୍ଗାର, ପିତ୍ତଳ କାରିଗର।

**Breach**, *n.* ଭଙ୍ଗ, ବିଚ୍ଛେଦ, ଲଙ୍ଘନ; *v.* ଭାଙ୍ଗିବା, ଲଙ୍ଘନ କରିବା।

**Bread**, *n.* ରୁଟି, ଜୀବିକା।

**Breadth**, *n.* ପ୍ରସ୍ଥ, ଓସାର, ବିସ୍ତୃତି।

**Break**, *n.* ଭଙ୍ଗ, ବିରତି; *v.* ଭାଙ୍ଗିବା, ଭଗ୍ନ ହେବା।

**Breakage**, *n.* ଭଙ୍ଗକରଣ।

**Breaker**, *n.* ପାହାଡ଼ରେ ବା କୂଳରେ ପିଟି ହେଉଥିବା ତରଙ୍ଗ।

**Breakfast**, *n.* ପ୍ରାତଃକାଳୀନ ଆହାର; *v.* ପ୍ରାତଃଭୋଜନ କରିବା।

**Break-neck**, *a.* ବିପଜ୍ଜନକ।

**Break-water**, *n.* ତରଙ୍ଗକୁ ପ୍ରତିରୋଧ କରିବା ପାଇଁ ପଥର ବନ୍ଧ।

**Breast**, *n.* ବକ୍ଷସ୍ଥଳ, ସ୍ତନ; *v.* ସମ୍ମୁଖୀନ ହେବା।

Breath, *n.* ଶ୍ୱାସପ୍ରଶ୍ୱାସ, ଜୀବନ ।
Breathe, *v.* ଶ୍ୱାସପ୍ରଶ୍ୱାସ ଗ୍ରହଣ କରିବା । [ ବେଦମ୍ ।
Breathless, *a.* ଅଶନଶ୍ୱାସୀ,
Breech, *n.* ନିତମ୍ବ, ପିଛ ।
Breeches, *n.* ଏକପ୍ରକାର ପାଇଜାମା ।
Breed, *v.* ସନ୍ତାନ ଜନ୍ମାଇବା, ପାଳନ କରିବା; *n.* କୁଳ, ଜାତ, ସନ୍ତାନ ।
Breeze, *n.* ଧୀର ପବନ, ମନ୍ଦ ବାୟୁ ।
Breezy, *a.* ମନ୍ଦପବନଯୁକ୍ତ ।
Brethren (*pl.*) *n.* ଭ୍ରାତୃଗଣ, ଏକ ଗୋଷ୍ଠୀର ସଭ୍ୟବର୍ଗ ।
Brevity, *n.* ସଂକ୍ଷିପ୍ତତା, ଅଳ୍ପତ୍ୱ ।
Brew, *v.* ଯବରୁ ମଦ୍ୟ ପ୍ରସ୍ତୁତ କରିବା ।
Brewery, *n.* ମଦଭାଟି ।
Bribe, *n.* ଲାଞ୍ଚ, ଉତ୍କୋଚ; *v.* ଲାଞ୍ଚ ଦେବା । [ ଗ୍ରହଣ ।
Bribery, *n.* ଉତ୍କୋଚ ଦାନ ବା
Brick, *n.* ଇଷ୍ଟକ, ଇଟା ।
Brickbat, *n.* ଭଙ୍ଗା ଇଟାଖଣ୍ଡ ।
Brick-dust, *n.* ଇଟାଗୁଣ୍ଡ ।
Brick-kiln, ଇଟାଭାଟି ।
Brick-layer, *n.* ରାଜମିସ୍ତ୍ରୀ ।
Brickle, *a.* ଭଙ୍ଗପ୍ରବଣ, ଦୁର୍ବଳ ।
Brickmaker, *n.* ଇଟାପକାଳି ।
Bridal, *a.* ବିବାହସମ୍ବନ୍ଧୀୟ ।
Bride, *n.* ନବବଧୂ, ନବବିବାହିତା ସ୍ତ୍ରୀ ।
Bride-chamber, *n.* ବାସରଗୃହ ।
Bridegroom, *n.* ବର, ନବବିବାହିତ ପୁରୁଷ ।
Bridewell, *n.* ଜେଲଖାନା ।
Bridge, *n.* ସେତୁ, ପୋଲ; *v.* ପୋଲ-ଦ୍ୱାରା ସଂଯୁକ୍ତ କରିବା । [ କରିବା ।
Bridle, *n.* ଘୋଡ଼ାର ଲଗାମ; *v.* ଆୟତ୍ତ
Brief, *a.* ସଂକ୍ଷିପ୍ତ; *n.* ସାରସଂଗ୍ରହ, ଓକିଲଙ୍କ ଉଦ୍ଦେଶ୍ୟରେ ମକ୍ଦମାର ପ୍ରବନ୍ଧ ବିବରଣ ।
Briefless, *a.* ମକଦ୍ଦମାଶୂନ୍ୟ ।
Briefly, *ad.* ସଂକ୍ଷେପରେ ।
Briefness, *n.* ସଂକ୍ଷିପ୍ତତା ।
Brig, *n.* ଦୁଇ ମାସ୍ତୁଲବିଶିଷ୍ଟ ଜାହାଜ ।
Brigade, *n.* ସୈନ୍ୟଦଳବିଶେଷ ।
Brigadier, *n.* ସୈନିକ ବିଭାଗର କର୍ମଚାରୀବିଶେଷ ।
Brigand, *n.* ଦସ୍ୟୁ, ଡକାୟତ ।
Brigandage, *n.* ଦସ୍ୟୁବୃତ୍ତି, ଡକାୟତି
Bright, *a.* ଉଜ୍ଜ୍ୱଳ, ଦୀପ୍ତିମନ୍ତ, ପ୍ରଖର ।
Brighten, *v.* ଦୀପ୍ତ କରିବା, ଉଜ୍ଜ୍ୱଳ କରିବା, ଉଜ୍ଜ୍ୱଳ ହେବା ।
Brightly, *ad.* ଉଜ୍ଜ୍ୱଳଭାବରେ ।
Brightness, *n.* ଦୀପ୍ତି, ତେଜ, ଉଜ୍ଜ୍ୱଳତା, ପ୍ରଖରତା ।
Brilliance, Brilliancy, *n.* କାନ୍ତି, ତେଜ, ଦୀପ୍ତି, ଉଜ୍ଜ୍ୱଳତା, ଚାକଚକ୍ୟ

**Brilliant**, *a.* ଉଜ୍ଜ୍ୱଳ, ଦୀପ୍ତିମନ୍ତ, ତେଜସ୍ୱାନ୍; *n.* ଏକପ୍ରକାର ଉତ୍କୃଷ୍ଟ ହୀରକ

**Brilliantly**, *ad.* ଅତି ଉଜ୍ଜ୍ୱଳ-ଭାବରେ । [ ତୀର ।

**Brim**, *n.* ପାତ୍ରର ଧାର ବା ଫନ୍ଦ,

**Brimful**, *a.* ଫନ୍ଦ ପର୍ଯ୍ୟନ୍ତ ପୂର୍ଣ୍ଣ ।

**Brimless**, *a.* ଫନ୍ଦ ନଥିବା ।

**Brimstone**, *n.* ଗନ୍ଧକ ।

**Brine**, *n.* ଖାରଆ ବା ଲୁଣା ପାଣି, ସମୁଦ୍ର ।

**Bring**, *v.* ଆଣିବା, ଘେନି ଆସିବା ।

**Bring about**, *v.* ଘଟାଇବା ।

**Bring forth**, *v.* ଜନ୍ମ କରିବା ।

**Bring home**, *v.* ପ୍ରତିପାଦନ କରିବା

**Bring out**, *v.* ପ୍ରକାଶ କରିବା ।

**Bring round**, *v.* ଆରୋଗ୍ୟ କରିବା

**Bring up**, *v.* ଲାଳନପାଳନ କରିବା ।

**Brinish**, *a.* ଲୁଣିଆ, ଖାରପାଣିସଦୃଶ ।

**Brinjal**, *n.* ବାଇଗଣ ।

**Brink**, *n.* ଧାର, ତୀର, କୂଳ ।

**Briny**, *a.* ଲୁଣୀଜଳସମ୍ବନ୍ଧୀୟ, ସମୁଦ୍ର-ବିଷୟକ । [ ପ୍ରଖର ।

**Brisk**, *a.* ସତେଜ, ସତର୍କ, ଚଞ୍ଚଳ,

**Briskly**, *ad.* ସ୍ଫୂର୍ତ୍ତିରେ, ପ୍ରଖରଭାବରେ

**Bristle**, *n.* କର୍କଶ ଲୋମ; *v.* ବାଳକୁ ଠିଆ କରିବା ।

**Brittle**, *a.* ଭଙ୍ଗୁର, ଭଙ୍ଗପ୍ରବଣ, ମସ୍‌କା

**Brittleness**, *n.* ଭଙ୍ଗପ୍ରବଣତା ।

**Broach**, *n.* ସୂକ୍ଷ୍ମାଗ୍ର ଶଳାକା; *v.* ଉଚ୍ଚାରଣ କରିବା ।

**Broad**, *a.* ପ୍ରଶସ୍ତ, ଉଦାର, ଚଉଡ଼ା ।

**Broadcast**, *v.* ବେତାର ଯନ୍ତ୍ରଦ୍ୱାରା ପ୍ରଚାର କରିବା, ବୀଜନିକ୍ଷେପ କରିବା; *a.* ବହୁଶଃ ପ୍ରଚାରିତ ।

**Broaden**, *v.* ପ୍ରଶସ୍ତ କରିବା ।

**Broad-gauge**, *n.* ଯହିଁରେ ରେଲ-ପଥର ଦୁଇ ଧାରଣା ମଧ୍ୟରେ ଦୂରତା 56½ ଇଞ୍ଚରୁ ଅଧିକ ।

**Broadness**, *n.* ଔଦାର, ପ୍ରଶସ୍ତତ ।

**Broadsword**, *n.* ଓସାରିଆ ତରବାରି

**Brocade**, *n.* ପାଟଲୁଗା, ଏକପ୍ରକାର ସୂକ୍ଷ୍ମବସ୍ତ୍ର । [ କାରୁକାର୍ଯ୍ୟଖଚିତ ।

**Brocaded**, *a.* ଛିଟଲୁଗାପରି ଖଚିତ,

**Brochure**, *n.* କ୍ଷୁଦ୍ର ପୁସ୍ତକ ।

**Broil**, *n.* କଳହ, ବିବାଦ, ଗୋଳମାଳ ।

**Broken**, *a.* ଭଗ୍ନ, ଭାଙ୍ଗିଯାଇଥିବା ।

**Broken-hearted**, *a.* ଭଗ୍ନୋତ୍ସାହ

**Broker**, *n.* ଦଲାଲ, ଘଟକ, ମଧ୍ୟସ୍ଥ ।

**Brokerage**, *n.* ଦଲାଲି, ଦଲାଲର ପ୍ରାପ୍ୟ ।

**Bronchial**, *a.* କଣ୍ଠନାଳୀସମ୍ବନ୍ଧୀୟ ।

**Bronchitis**, *n.* ଶ୍ଳୈଷ୍ମିକ ଝିଲ୍ଲୀ ପ୍ରଦାହ । [ ଧାତୁ ।

**Bronze**, *n.* ରଙ୍ଗ ଓ ତାମ୍ର ମିଶ୍ରିତ

Brooch, *n.* ପରିଧେୟ ବସ୍ତ୍ରକୁ ସଜ୍ଜିତ ରଖିବା ପାଇଁ ବ୍ୟବହୃତ ଅଳଙ୍କାରବିଶେଷ ।
Brood, *n.* ଶାବକ ଦଳ; *v.* ଡିମ୍ବ ଉଷୁମାଇବା, ଚିନ୍ତିତ ହେବା ।
Brook, *n.* କ୍ଷୁଦ୍ର ନଦୀ, ଜଳସ୍ରୋତ; *v.* ସହ୍ୟ କରିବା ।
Brooklet, *n* ଅତି କ୍ଷୁଦ୍ର ଜଳସ୍ରୋତ ।
Broom, *n.* ଝାଡ଼ୁ, ପହିଁରା, ଓଳିଅଣି ।
Broth, *n.* ମାଂସର ସୁରୁଆ ।
Brothel, *n.* ବେଶ୍ୟାଳୟ ।
Brother, *n.* ଭାଇ, ସହୋଦର, ଏକ ସମାଜଭୁକ୍ତ ବ୍ୟକ୍ତି । [ ବର୍ଗ, ସମାଜ ।
Brotherhood, *n.* ଭ୍ରାତୃତ୍ୱ, ଭ୍ରାତୃ-
Brother-in-law, *n.* ଶଳା, ଭିଣୋଇ, ଦିଅର, ସଢ଼ୁ ।
Brotherliness, *n.* ଭ୍ରାତୃଭାବ ।
Brotherly, *a.* ଭ୍ରାତୃବତ୍, ଭାଇପରି ।
Brow, *n.* ପର୍ବତଶିଖର, କପାଳ, ଲଲାଟ
Browbeat, *v.* ଭ୍ରୂକୁଟି କରିବା, ଭୟ ଦେଖାଇବା । [ ବର୍ଣ୍ଣ ।
Brown, *a.* ପିଙ୍ଗଳ, କହରା; *n.* ପିଙ୍ଗଳ
Brownish, *a.* ଈଷତ୍ ପିଙ୍ଗଳ ।
Browse, *v.* ଡାଳପତ୍ର ଖାଇବା ।
Bruin, *n.* ଭଲ୍ଲୁକ । [ କରିବା ।
Bruise, *n.* ଘାଆ, କ୍ଷତ, ଦାଗ; *v.* କ୍ଷତ
Bruit, *n.* ଜନରବ; *v.* ଜନରବ ସୃଷ୍ଟି କରିବା ।

Brunette, *n.* ଘନ କୃଷ୍ଣକେଶବିଶିଷ୍ଟ ରମଣୀ ।
Brunt, *n.* ଧକ୍କା, ଆଘାତ ।
Brush, *n.* ତୁଳୀ, ବୁଦାଜଙ୍ଗଲ; *v.* ଝାଡ଼ି ସଫା କରିବା, ବେଗରେ ଖସିଯିବା ।
Brush-wood, *n.* କ୍ଷୁଦ୍ର ଜଙ୍ଗଲ ।
Brusque, *a.* ଅଶିଷ୍ଟ, ଅଭଦ୍ର ।
Brusquely, *ad.* ଅଶିଷ୍ଟଭାବରେ ।
Brutal, *a.* ପାଶବିକ, ନିଷ୍ଠୁର ।
Brutalise, *v.* ନିଷ୍ଠୁର ବ୍ୟବହାର କରିବା । [ ଆଚରଣ ।
Brutality, *n.* ନିଷ୍ଠୁରତା, ପଶୁବତ୍
Brutally, *ad.* ପଶୁପରି, ନିର୍ଦ୍ଦୟ-ଭାବରେ ।
Brute, *n.* ପଶୁଜନ୍ତୁ, ପଶୁତୁଲ୍ୟ ମୂର୍ଖ ।
Brutish, *a.* ପାଶବିକ, ପଶୁତୁଲ୍ୟ, ଅସଭ୍ୟ ।
Bubble, *n.* ବୁଦ୍‌ବୁଦ, ପାଣିଫୋଟକା; *v.* ବୁଦ୍‌ବୁଦ ପରି ଉଠିବା ।
Bubo, *n.* ଗ୍ରନ୍ଥିର ପ୍ରଦାହ, ବାଗୀ ।
Buck, *n.* ଅଣ୍ଡିରା ମୃଗ, ଶଶକ ଆଦି ।
Bucket, *n.* ଜଳପାତ୍ର, ବାଲ୍‌ଟି ।
Buckle, *n.* ଜୋତା ଆଦି ବାନ୍ଧିବାର କଡ଼ା, ବକ୍‌ଲସ; *v.* ବକ୍‌ଲସଦ୍ୱାରା ବାନ୍ଧିବା
Buck-skin, *n.* ମୃଗଚର୍ମ ।
Bud, *n.* କଳିକା, କଢ଼; *v.* ମୁକୁଳିତ ହେବା, ଫୁଟିବା ।

Budget, *n.* ଆୟବ୍ୟୟର ଆନୁମାନିକ ହିସାବ; *v.* ଆୟବ୍ୟୟର ହିସାବ ପ୍ରସ୍ତୁତ କରିବା ।
Buffalo, *n.* ମହିଷ, ମଇଁଷି ।
Buffet, *v.* ମୁଥ ମାରିବା; *n.* ମୁଥ, ଗୁଥଡ଼ା ।
Buffoon, *n.* ବିଦୂଷକ, ଭଣ୍ଡ ।
Buffoonery, *n.* ଭଣ୍ଡାମି, ବିଦୂଷକତା
Bug, *n.* ଓଡ଼ଶ, ଗୁରପୋକ ।
Bugbear, *n.* ଭୟପ୍ରଦ ବସ୍ତୁ ।
Bugle, *n.* ମୁଖବାଦ୍ୟବିଶେଷ, ଶିଙ୍ଗା ।
Build, *v.* ନିର୍ମାଣ କରିବା, ଗଢ଼ିବା; *n.* ଗଠନ । [ ରାଜମିସ୍ତ୍ରୀ ।
Builder, *n.* ଗୃହନିର୍ମାଣକାରୀ, ନିର୍ମାତା,
Building, *n.* ଅଟ୍ଟାଳିକା, କୋଠା, ନିର୍ମାଣ । [ ମୂଳ ।
Bulb, *n.* ପିଣ୍ଡାକାର ବସ୍ତୁ, ଗୋଲାକାର
Bulbous, *a.* ଗୋଲାକାର ମୂଳବିଶିଷ୍ଟ, ପିଣ୍ଡାକାର ।
Bulge, *v.* ଫୁଲି ଉଠିବା, ସ୍ଫୀତ ହେବା ।
Bulk, *n.* ସ୍ଥୂଳତ୍ୱ, ଅଧିକାଂଶ, ଆୟତନ ।
Bulky, *a.* ବୃହଦାକାର, ସ୍ଥୂଳ, ଭାରି ।
Bull, *n.* ଷଣ୍ଢ, ବୃଷ ।
Bull-calf, *n.* ଅଣ୍ଡିରା ବାଛୁରୀ ।
Bullet, *n.* ଗୁଳି, ଗୋଳା, ବାଟୁଳି ।
Bulletin, *n.* ସମାଚାର ପତ୍ରିକା, ସରକାରୀ ସମ୍ବାଦପତ୍ର ।
Bullion, *n.* ସୁନା ବା ରୂପାର ଇଟା ।
Bullock, *n.* ବଳଦ, ଦାମୁଡ଼ି ।
Bully, *n.* ଦାମ୍ଭିକ ଲୋକ, କଳହପ୍ରିୟ ବ୍ୟକ୍ତି; *v.* ଅତ୍ୟାଚାର କରିବା ।
Bulwark, *n.* ଗଡ଼ପ୍ରାଚୀର ।
Bump, *n.* ଫୁଲା, ସ୍ଫୀତ ।
Bumper, *n.* ମଦ୍ୟପାତ୍ର; *a.* ପ୍ରଚୁର, ଯଥେଷ୍ଟ । [ ଇତର ଜନ ।
Bumpkin, *n.* ମଫସଲି ଲୋକ,
Bunch, *n.* ଗୁଚ୍ଛ, ପେନ୍ଥା, କାନ୍ଧି ।
Bundle, *n.* ବିଡ଼ା, ପୁଟୁଳି; *v.* ପୁଟୁଳି ବାନ୍ଧିବା । [ ବଙ୍ଗଳାଘର ।
Bungalow, *n.* ସରକାରୀ କୋଠି,
Bungle, *v.* ଯଥାତଥା କାର୍ଯ୍ୟ କରିବା; *n.* ଗୁରୁତର ଭ୍ରମ ।
Bunkum, *n.* ବାଜେ ବକ୍ତୃତା ।
Buoy, *n.* ବୟା, ଲଙ୍ଗର ଉପରେ ବନ୍ଧା ଯାଉଥିବା ପିପା; *v.* ଭାସିବା, ଭସାଇ ରଖିବା ।
Buoyancy, *n.* ପ୍ରଫୁଲ୍ଲତା, ସ୍ଫୂର୍ତ୍ତି ।
Buoyant, *a.* ଭାସୁଥିବା, ଲଘୁ, ହାଲୁକା, ପ୍ରଫୁଲ୍ଲ ।
Burden, *n.* ବୋଝ, ଭାର, ଦାୟିତ୍ୱ, ଗୀତର ଘୋଷା; *v.* ଭାର ଲଦିବା ।
Burdensome, *a.* ଦୁର୍ବହ, କଷ୍ଟକର, କଠିନ । [ ଡେସ୍କ, କାର୍ଯ୍ୟାଳୟ ।
Bureau, *n.* ଦରାଜଯୁକ୍ତ ଟେବୁଲ ବା

**Bureaucracy,** *n.* ଅମଲାତନ୍ତ୍ର ଶାସନ, ଶାସନର ପରିଚାଳକ ଅମଲାବର୍ଗ ।
**Bureaucrat,** *n.* ଅମଲାତନ୍ତ୍ରର ସମର୍ଥକ ।
**Bureaucratic, Bureaucratical,** *a.* ଅମଲାତାନ୍ତ୍ରିକ ।
**Burglar,** *n.* ସିନ୍ଧଆଳ, ଚୋର ।
**Burglary,** *n.* ସିନ୍ଧ, ଚୋରି ।
**Burgle,** *v.* ସିନ୍ଧ କରିବା । [ କାର୍ଯ୍ୟ ।
**Burial,** *n.* ସମାଧି, କବର ଦେବା
**Burial ground,** *n.* ଶ୍ମଶାନ, କବରଖାନା । [ ରଚନା, ପ୍ରହସନ ।
**Burlesque,** *n.* ହାସ୍ୟୋଦ୍ଦୀପକ
**Burly,** *a.* ସ୍ଥୂଳକାୟ ।
**Burn,** *v.* ଦଗ୍ଧ କରିବା, ପୋଡ଼ିବା; *n.* ପୋଡ଼ା ଘାଆ, ଦାହ ।
**Burned, Burnt,** *a.* ଦଗ୍ଧୀଭୂତ, ଦାହଜନିତ, ପୋଡ଼ା ।
**Burner,** *n.* ଦାହକାରୀ ବସ୍ତୁ ବା ଯନ୍ତ୍ର ।
**Burnish,** *v.* ପରିଷ୍କାର କରିବା, ଚକ୍ ଚକ୍ କରିବା, ପାଲିସ୍ କରିବା ।
**Burrow,** *n.* ଠେକୁଆ, ବିଲୁଆ ପ୍ରଭୃତିଙ୍କ ଗାତ; *v.* ଗାତ ଖୋଳିବା ।
**Bursar,** *n.* ଶିକ୍ଷାନୁଷ୍ଠାନର ହିସାବରକ୍ଷକ, ଦାରିଦ୍ର୍ୟ ହେତୁ ବୃତ୍ତିପ୍ରାପ୍ତ ଛାତ୍ର ।
**Bursary,** *n.* ଦରିଦ୍ରଛାତ୍ରବୃତ୍ତି ।
**Burst,** *v.* ଫାଟିବା, ଭାଙ୍ଗିଯିବା, ଫୁଟିବା ।
**Bury,** *v.* ପୋତିବା, କବର ଦେବା ।
**Bus,** *n.* ଯାତ୍ରୀବାହୀ ମୋଟରଗାଡ଼ି ।
**Bush,** *n.* ବୁଦା, ଜଙ୍ଗଲ, ଗହଳ ଗଛ ।
**Bushy,** *a.* ବୁଦାପୂର୍ଣ୍ଣ, ଜଙ୍ଗଲିଆ ।
**Busily,** *ad.* କାର୍ଯ୍ୟବ୍ୟସ୍ତ ଭାବରେ ।
**Business,** *n.* କାର୍ଯ୍ୟ, ବ୍ୟବସାୟ, ବିଷୟ, ବ୍ୟାପାର । [ ବେପାରୀ ।
**Businessman,** *n.* ବ୍ୟବସାୟୀ,
**Bust,** *n.* ଆବକ୍ଷ ପାଷାଣମୂର୍ତ୍ତି ।
**Bustle,** *n.* ଗୋଲମାଲ, ଧୂମ୍‌ଧାମ୍ ।
**Busy,** *a.* କାର୍ଯ୍ୟବ୍ୟସ୍ତ, ଜଞ୍ଜାଳମୟ ।
**But,** *con.* କିନ୍ତୁ, ମାତ୍ର, ତଥାପି ।
**Butcher,** *n.* କଂସେଇ, ମାଂସବିକ୍ରେତା; *v.* ହତ୍ୟା କରିବା ।
**Butchery,** *n.* କଂସେଇର କାର୍ଯ୍ୟ, ଜୀବହତ୍ୟା, କଂସେଇଖାନା ।
**Butler,** *n.* ଖାନସମା, ଘରଯତିଆ ।
**Butt,** *n.* ବନ୍ଧୁକର ସ୍ଥୂଳ ପ୍ରାନ୍ତ; *v.* ମୁଣ୍ଡିଆ ମାରିବା, ମୁଣ୍ଡରେ ଭୂଷିବା ।
**Butter,** *n.* ଲହୁଣୀ, ମାଖନ; *v.* ଲହୁଣୀ ବୋଳିବା ।
**Butterfly,** *n.* ପ୍ରଜାପତି ।
**Buttermilk,** *n.* ଘୋଳଦହି, ତକ୍ର ।
**Buttock,** *n.* ପିଚ୍ଛ, ନିତମ୍ବ ।
**Button,** *n.* ବୋତାମ; *v.* ବୋତାମଦ୍ୱାରା ବନ୍ଦ କରିବା ।
**Button-hole,** *n.* ବୋତାମଘର ।

**Buttress**, *n.* ଠେସ, ଭିତ୍ତି ।
**Buxom**, *a.* ପ୍ରଫୁଲ୍ଲ, ହାସ୍ୟମୟ ।
**Buy**, *v.* କ୍ରୟ କରିବା, କିଣିବା ।
**Buyer**, *n.* କ୍ରେତା, ଖରିଦଦାର ।
**Buzz**, *v.* ଗୁଣ୍‌ଗୁଣ୍ ଶବ୍ଦ କରିବା; *n.* ଗୁଣ୍‌ଗୁଣ୍ ଶବ୍ଦ, ଫୁସ୍‌ଫୁସ୍ କଥା ।
**By**, *pre.* ଦ୍ୱାରା, କର୍ତ୍ତୃକ, ନିକଟରେ ।
**By and by**, *ad.* କିଛିକାଳ ପରେ ।
**By degrees**, *ad.* କ୍ରମଶଃ ।
**By-election, Bye-election**, *n.* ଉପନିର୍ବାଚନ ।
**Bygone**, *a.* ଅତୀତ, ଗତ; *n.* ଅତୀତ ଘଟଣା ।
**Bylane**, *n.* କ୍ଷୁଦ୍ର ଗଳି, ରୁଦ୍ଧ ଗଳି ।
**Bylaw, Bye-law**, *n.* ଉପବିଧି ।
**Byproduct**, *n.* ପ୍ରଧାନ ଶିଳ୍ପରୁ ଗୌଣଭାବରେ ଉତ୍ପାଦିତ ଦ୍ରବ୍ୟ ।
**Bystander**, *n.* ଦର୍ଶକ ।
**By the by**, *ad.* ପ୍ରସଙ୍ଗକ୍ରମେ ।
**Byway**, *n.* ଗୁପ୍ତ ପଥ, ଗଳି ବାଟ ।
**Byword**, *n.* ପ୍ରବଚନ, ପ୍ରବାଦ ।

# C

**Cab**, *n.* ଘୋଡ଼ାଗାଡ଼ି ।
**Cabaret**, *n.* ଶୁଣ୍ଡିଶାଳ, ଶୌଣ୍ଡିକାଳୟ
**Cabbage**, *n.* ବନ୍ଧାକୋବି ।
**Cabin**, *n.* କ୍ଷୁଦ୍ର କାଷ୍ଠଗୃହ, ଜାହାଜର କୋଠରି, କୁଡ଼ିଆ । [ସିନ୍ଦୁକ, ହାତବାକ୍ସ ।
**Cabinet**, *n.* ମନ୍ତ୍ରୀପରିଷଦ, ଦରାଜଯୁକ୍ତ
**Cable**, *n.* ଜାହାଜ ଲଙ୍ଗରର ଜଞ୍ଜିର, ସମୁଦ୍ରଗର୍ଭରେ ସ୍ଥାପିତ ସମ୍ବାଦବାହୀ ବୈଦ୍ୟୁତିକ ତାର, ସାମୁଦ୍ରିକ ତାରବାର୍ତ୍ତା; *v.* ସାମୁଦ୍ରିକ ତାରବାର୍ତ୍ତା ପଠାଇବା ।
**Cablegram**, *n.* ସାମୁଦ୍ରିକ ତାର-ଯୋଗେ ପ୍ରେରିତ ବାର୍ତ୍ତା ।
**Caboose**, *n.* ଜାହାଜର ରନ୍ଧନଶାଳା ।
**Cackle**, *v.* କୁକ୍‌କୁଟ ବା ହଂସପରି ରାବିବା; *n.* ହଂସର ରାବ ।
**Cactus**, *n.* ନାଗଫେଣୀଜାତୀୟ ବୃକ୍ଷ ।
**Cad**, *n.* ନୀଚ ଅଭଦ୍ର ଲୋକ ।
**Caddish**, *a.* ଅଶିଷ୍ଟ, ଅଭଦ୍ର ।
**Cadaverous**, *a.* ଶବସଦୃଶ ବିବର୍ଣ୍ଣ ।
**Cadence**, *n.* ଧ୍ୱନି ବା ସ୍ୱରର ଉତ୍ଥାନପତନ ।
**Cadet**, *n.* ଯୁଦ୍ଧବିଦ୍ୟାଶିକ୍ଷାର୍ଥୀ ।
**Cafe**, *n.* କଫିଦୋକାନ, ହୋଟେଲ୍ ।

**Cafeteria**, *n.* ଯେଉଁ ଭୋଜନାଳୟରେ ନିଜେ ନିଜକୁ ପରିବେଷଣ କରନ୍ତି ।
**Cage**, *n.* ଜୀବଜନ୍ତୁ ବା ପକ୍ଷୀ ରଖିବାର ପିଞ୍ଜରା; *v.* ପିଞ୍ଜରାବଦ୍ଧ କରିବା ।
**Caitiff**, *n.* ଭୟାଳୁ ଲୋକ, କାପୁରୁଷ ।
**Cajole**, *v.* ଫୁସଲାଇବା, ତୋଷାମଦ କରିବା, ମିଷ୍ଟବାକ୍ୟ କହିବା ।
**Cajoler**, *n.* ତୋଷାମଦକାରୀ ।
**Cajolery**, *n.* ତୋଷାମଦ ।
**Cake**, *n.* ପିଠା, ପିଷ୍ଟକ; *v.* ପିଠାପରି ପିଣ୍ଡୁଳା କରିବା । [ ପୂର୍ଣ୍ଣ ।
**Calamitous**, *a.* ବିପତ୍ତିଜନକ, ଆପଦ-
**Calamity**, *n.* ଆପଦ, ଦୁର୍ଘଟଣା ।
**Calcium**, *n.* ଚୂନର ମୂଳ ପଦାର୍ଥ, ଧାତୁବିଶେଷ । [ ନିରୂପଣୀୟ ।
**Calculable**, *a.* ଗଣନାଦ୍ୱାରା
**Calculate**, *v.* ଗଣନା କରିବା, ହିସାବ କରିବା । [ ହିସାବ, ପ୍ରମାଣ ।
**Calculation**, *n.* ଗଣନା, ସଂଖ୍ୟା,
**Calculator**, *n.* ଗଣନାକାରୀ ।
**Calculous**, *a.* କଙ୍କରମୟ ।
**Calculus**, *n.* ଗଣିତର ଶାଖାବିଶେଷ, ଅଶ୍ମରୀ ବା ପଥୁରୀରୋଗ ।
**Caldron, Cauldron**, *n.* ବଡ଼ ହାଣ୍ଡି, ହଣ୍ଡା, ବଡ଼ କଡ଼େଇ ।
**Calendar**, *n.* ପଞ୍ଜିକା, ବର୍ଷଗଣନା ପଦ୍ଧତି, ତାଲିକା ।
**Calender**, *n.* ଇସ୍ତ୍ରି ଯନ୍ତ୍ର; *v.* ଇସ୍ତ୍ରି କରିବା ।
**Calf**, *n.* ବାଛୁରୀ, ଗୋଡ଼ର ପେଣ୍ଡା ।
**Caliber, Calibre**, *n.* ବନ୍ଧୁକ-ନଳୀର ଭିତର ବ୍ୟାସ, ନୈତିକ ପ୍ରଭାବ, ବୁଦ୍ଧିଶକ୍ତି ।
**Calico**, *n.* ଛିଟ ଲୁଗା, ଚିହ୍ନିତ କପଡ଼ା ।
**Call**, *v.* ଡାକିବା, ସମ୍ବୋଧନ କରିବା; *n.* ଡକରା, ଆହ୍ୱାନ ।
**Caller**, *n.* ଆଗନ୍ତୁକ ବ୍ୟକ୍ତି ।
**Calligraphy, Caligraphy**, *n.* ସୁନ୍ଦର ହସ୍ତଲିପି, ହାତ ଲେଖା ।
**Calling**, *n.* ବ୍ୟବସାୟ, କାର୍ଯ୍ୟ ।
**Callous**, *a.* ଉଦାସୀନ, କଠୋର, ନିର୍ଦ୍ଦୟ, ନିର୍ମମ ।
**Callously**, *ad.* ଉଦାସୀନଭାବରେ ।
**Callousness**, *n.* ନିଷ୍ଠୁରତା, ଉଦାସୀନତା, କଠୋରତା ।
**Calm**, *a.* ଶାନ୍ତ, ଧୀର, ସ୍ଥିର; *n.* ସ୍ଥିରତା
**Calmly**, *ad.* ଶାନ୍ତଭାବରେ, ଧୀରସ୍ଥିର ଭାବରେ । [ ସ୍ଥିରତା ।
**Calmness**, *n.* ଧୀରତା, ଶାନ୍ତି,
**Calorie**, *n.* ଉତ୍ତାପ ମାପର ଏକକ ।
**Calumniate**, *v.* ଅପବାଦ ଦେବା ।
**Calumniation**, *n.* ନିନ୍ଦାବାଦ, ଅପବାଦ । [ ଅପବାଦ ।
**Calumny**, *n.* ନିନ୍ଦା, ଦୁର୍ନାମ,

**Calve**, *v.* ବାଛୁରୀ ପ୍ରସବ କରିବା ।
**Camel**, *n.* ଉଷ୍ଟ୍ର, ଓଟ ।
**Camelopard**, *n.* ଜିରାଫ ।
**Camera**, *n.* ଛାୟାଚିତ୍ର ବା ଫଟୋ ଉଠାଇବା ଯନ୍ତ୍ର ।
**Camouflage**, *n.* ଶତ୍ରୁକୁ ଭୁଲାଇବାର କୌଶଳ; *v.* ଛଦ୍ମରୂପଦ୍ୱାରା ଶତ୍ରୁକୁ ଠକିବା
**Camp**, *n.* ଛାଉଣି, ଶିବିର, ସେନା-ନିବାସ, ଅସ୍ଥାୟୀ ବାସସ୍ଥାନ; *v.* ଶିବିର ସ୍ଥାପନ କରିବା ।
**Campaign**, *n.* ସୈନ୍ୟମାନଙ୍କର ଯୁଦ୍ଧଭୂମିରେ ଅବସ୍ଥାନ କାଳ, କର୍ମଯୋଜନା
**Camphor**, *n.* କର୍ପୂର ।
**Campus**, *n.* ସାମରିକ ଶିକ୍ଷାପାଇଁ ପଡ଼ିଆ, ସ୍କୁଲ, କଲେଜ ବା ବିଶ୍ୱବିଦ୍ୟାଳୟ ହତା ।
**Can**, *n.* ଧାତୁପାତ୍ର; *v.* ଧାତୁପାତ୍ରରେ ଖାଦ୍ୟଦ୍ରବ୍ୟ ବନ୍ଦ କରି ରଖିବା, ପାରିବା, ସମର୍ଥ ହେବା, ପାରଗ ହେବା ।
**Canal**, *n.* କୃତ୍ରିମ ଜଳପଥ, କେନାଲ ।
**Canalise**, *v.* କେନାଲକୁ ଛାଡ଼ିଦେବା ।
**Canard**, *n.* ମିଥ୍ୟା ଜନରବ ।
**Cancel**, *v.* ରଦ୍ଦ କରିବା, ଲୋପ କରିବା, ଉଠାଇଦେବା ।
**Cancellation**, *n.* ଲୋପକରଣ, ରଦ୍ଦକରଣ । [ ରୋଗ ।
**Cancer**, *n.* କର୍କଟ ରାଶି, କର୍କଟ
**Candescence**, *n.* ଶୁଭ୍ର ଆଲୋକ ।
**Candescent**, *a.* ଶୁଭ୍ରାଲୋକବିଶିଷ୍ଟ ।
**Candid**, *a.* ସରଳ, ସ୍ପଷ୍ଟବାଦୀ, ନିଷ୍କପଟ
**Candidate**, *n.* ପ୍ରାର୍ଥୀ, ପଦାଭିଳାଷୀ ବ୍ୟକ୍ତି, ପରୀକ୍ଷାର୍ଥୀ ।
**Candidature**, *n.* ପ୍ରାର୍ଥିତ୍ୱ ।
**Candidly**, *ad.* ସରଳଭାବରେ, ନିଷ୍କପଟଭାବରେ ।
**Candle**, *n.* ମହମବତୀ, ବଳିତା ।
**Candle-light**, *n.* ବତୀଆଲୁଅ ।
**Candour**, *n.* ସ୍ପଷ୍ଟବାଦିତା, ସରଳତା, ନିଷ୍କପଟତା ।
**Candy**, *n.* ମିଶ୍ରି, ମୋରବ୍ବା ।
**Cane**, *n.* ବେତ, ବାଡ଼ି, ଆଖୁ; *v.* ବେତରେ ପ୍ରହାର କରିବା ।
**Canine**, *a.* କୁକ୍କୁର ସମ୍ବନ୍ଧୀୟ ।
**Canine teeth**, *n.* ଶ୍ୱାନଦନ୍ତ, ଛୁଆଦାନ୍ତ । [ ଟିଣ ବାକ୍ସ ।
**Canister**, *n.* ଚାହା ଆଦି ରଖିବାର
**Canker**, *n.* ପ୍ରାଣୀ ଓ ଉଦ୍ଭିଦର ରୋଗ-ବିଶେଷ, କୁପ୍ରଭାବ; *v.* କଳୁଷିତ କରିବା ।
**Cankerous**, *a.* କ୍ଷୟକାରୀ ।
**Cannibal**, *a.* ନରମାଂସଭୋଜୀ; *n.* ନରମାଂସଖାଦକ ଜାତି । [ ପ୍ରକୃତି ।
**Cannibalism**, *n.* ନରମାଂସଭକ୍ଷଣ
**Cannon**, *n.* ତୋପ, କମାଣ ।
**Cannonade**, *n.* କମାଣଦ୍ୱାରା ଆକ୍ରମଣ
**Canny**, *a.* ଚତୁର, ସତର୍କ ।

Canoe, *n.* କ୍ଷୁଦ୍ର ନୌକା, ଡଙ୍ଗା ।
Canon, *n.* ଶାସ୍ତ୍ରୀୟ ବିଧି, ନିୟମ, ସ୍ୱରେବୃତ୍ତବିଶେଷ ।
Canopy, *n.* ଚନ୍ଦ୍ରାତପ, ଚାନ୍ଦୁଆ ।
Cant, *n.* ଅପଭ୍ରଷା; *v.* ଅପଭ୍ରଷା ବ୍ୟବହାର କରିବା ।
Canteen, *n.* ଭୋଜନାଳୟ, ପାନାଳୟ
Canter, *n.* ଅଶ୍ୱର ଦ୍ରୁତ ଗତି; *v.* (ଅଶ୍ୱ) ବେଗରେ ଦୌଡ଼ିବା ।
Canto, *n.* ସର୍ଗ, ଅଧ୍ୟାୟ ।
Cantonment, *n.* ସେନାନିବାସ ।
Canvas, *n.* ଅଖା, ଖୋଳଚଢ଼ିଆରେ ମୋଟ କନା, କାନ୍‌ଭସ୍ । [ଆଲୋଚନା କରିବା ।
Canvass, *v.* ଭୋଟ ପ୍ରାର୍ଥନା କରିବା,
Canyon, *n.* ସାଧାରଣ ନିୟମ, ଶାସ୍ତ୍ରବିଧି । [ଆବରଣ କରିବା ।
Cap, *n.* ଟୋପି, ଶିଖର; *v.* ମସ୍ତକ
Capability, *n.* ସାମର୍ଥ୍ୟ, କ୍ଷମତା ।
Capable, *a.* ସମର୍ଥ, ପାରଗ ।
Capably, *ad.* ସମର୍ଥରୂପେ ।
Capacious, *a.* ପ୍ରଶସ୍ତ, ବିସ୍ତୀର୍ଣ୍ଣ ।
Capacitate, *v.* ପାରଗ କରିବା ।
Capacity, *n.* ସାମର୍ଥ୍ୟ, ପାରଗତା, ଧାରଣକ୍ଷମତା, ଦକ୍ଷତା ।
Cap-a-pie, *ad.* ଆପାଦମସ୍ତକ ।
Caparison, *n.* ଘୋଡ଼ାର ସାଜ; *v.* ଘୋଡ଼ାକୁ ସଜ୍ଜିତ କରିବା ।
Cape, *n.* ଅନ୍ତରୀପ । [କରିବା ।
Caper, *v.* ଆନନ୍ଦରେ ଡେଇଁବା, ସ୍ଫୁର୍ତ୍ତି
Capillament, *n.* ପୁଷ୍ପର କେଶର ।
Capillary, *a.* କୈଶିକ, କେଶସଦୃଶ ସୂକ୍ଷ୍ମ; *n.* ସୂକ୍ଷ୍ମ ନଳ ।
Capital, *n.* ରାଜଧାନୀ, ମୂଳଧନ; *a.* ଉତ୍କୃଷ୍ଟ, ପ୍ରଧାନ, ମୃତ୍ୟୁଦଣ୍ଡରେ ଦଣ୍ଡନୀୟ
Capitalism, *n.* ପୁଞ୍ଜିବାଦ ।
Capitalist, *n.* ପୁଞ୍ଜିପତି, ମହାଜନ ।
Capitalistic, *a.* ପୁଞ୍ଜିବାଦୀ ।
Capitation, *n.* ମୁଣ୍ଡଗଣତି, ଲୋକସଂଖ୍ୟା ଅନୁସାରେ କର ।
Capitulate, *v.* ସନ୍ଧିସର୍ତ୍ତରେ ଆତ୍ମସମର୍ପଣ କରିବା । [ଆତ୍ମସମର୍ପଣ ।
Capitulation, *n.* ସନ୍ଧିପୂର୍ବକ
Caprice, *n.* ଖିଆଲ, ପରିବର୍ତ୍ତନଶୀଳ ମତ । [ଅବ୍ୟବସ୍ଥିତଚିତ୍ତ ।
Capricious, *a.* ଖିଆଲି, ମନମୁଖୀ,
Capricorn, *n.* ମକର ରାଶି ।
Capsicum, *n.* ଲଙ୍କାମରିଚ ।
Capsize, *v.* (ନୌକାଦି) ଲେଉଟି ପଡ଼ିବା, ଓଲଟାଇଦେବା ।
Capsule, *n.* ବୀଜକୋଷ, ବୋତଲ ମୁହଁରେ ଥିବା ଧାତୁର ଆବରଣ, କ୍ଷୁଦ୍ର ଆଧାର ।
Captain, *n.* ସରଦାର, ନେତା, ଜାହାଜର ଅଧ୍ୟକ୍ଷ, ଦଳର ଚାଳକ, ସାମରିକ ପଦବିଶେଷ, କପ୍ତାନ ।

Captaincy, *n.* ଦଳର ନେତୃତ୍ୱ ।
Captainship, *n.* ନେତୃତ୍ୱ, କପ୍ତାନର ପଦ ବା କର୍ମ । [.ନାମ ।
Caption, *n.* ଶିରୋନାମା, ଶିରସ୍ଥର
Captious, *a.* ଖିଟ୍‌ଖିଟିଆ ।
Captivate, *v.* ସୌନ୍ଦର୍ଯ୍ୟାଦିଦ୍ୱାରା ମୁଗ୍ଧ କରିବା, ବନ୍ଦୀ କରିବା ।
Captivating, *a.* ମନୋମୁଗ୍ଧକର ।
Captive, *n.* ବନ୍ଦୀ ବ୍ୟକ୍ତି ବା ଜୀବ, କଏଦୀ; *a.* ବନ୍ଦୀକୃତ ।
Captivity, *n.* ବନ୍ଧନ, କଏଦ ।
Captor, *n.* ବନ୍ଦୀକର୍ତ୍ତା ।
Captress, *n.* ବନ୍ଦୀକାରିଣୀ ।
Capture, *v.* ବନ୍ଦୀ କରିବା, ଦୁର୍ଗାଦି ଅଧିକାର କରିବା; *n.* ବନ୍ଦୀକରଣ, ଲୁଣ୍ଠିତ ଦ୍ରବ୍ୟ । [ ଆଦି ।
Car, *n.* ଗାଡ଼ି, ଯାନ, ମୋଟର ଟ୍ରାମ
Carat, Carrat, *n.* ସ୍ୱର୍ଣ୍ଣ ପରିମାଣର ଏକକ (ପ୍ରାୟ ୪ ରତି) ।
Caravan, *n.* ଏକତ୍ର ପଥଗୃହୀ ଦଳ ।
Caravan serai, *n.* ପଥଗୃହୀ ଦଳର ଆଶ୍ରୟଗୃହ, ପାନ୍ଥନିବାସ ।
Carbine, *n.* ଏକପ୍ରକାର ଛୋଟ ବନ୍ଧୁକ
Carbon, *n.* ବିଶୁଦ୍ଧ ଅଙ୍ଗାର ।
Carbondioxide, *n.* ଅଙ୍ଗାରକାମ୍ଳ ବାଷ୍ପ ।
Carbonic acid, *n.* ଅଙ୍ଗାରାମ୍ଳ ।
Carbuncle, *n.* ପୃଷ୍ଠବ୍ରଣ, ପଠାରୋଗ
Carcase, Carcass, *n.* ଶବ, ମୃତ ଦେହ, ମୂର୍ଦ୍ଦାର ।
Card, *n.* ମୋଟ କାଗଜଖଣ୍ଡ, ତାସ ।
Cardamom, *n.* ଅଳେଇଚ ।
Cardboard, *n.* ମୋଟ କାଗଜ ପଟା ।
Cardiac, *a.* ହୃତ୍‌ପିଣ୍ଡସମ୍ବନ୍ଧୀୟ, ବଳକାରକ । [ ଉପାଧିବିଶେଷ ।
Cardinal, *a.* ପ୍ରଧାନ; *n.* ଧର୍ମଗୁରୁଙ୍କ
Cardinal points, *n.* ପୂର୍ବ, ପଶ୍ଚିମ, ଉତ୍ତର ଓ ଦକ୍ଷିଣ—ଏହି ଚାରି ପ୍ରଧାନ ଦିଗ ।
Cardiograph, *n.* ହୃତ୍‌ପିଣ୍ଡର ସ୍ପନ୍ଦନଜ୍ଞାପକ ଛବି ନେବାର ଯନ୍ତ୍ର ।
Cardiogram, *n.* ହୃତ୍‌ସ୍ପନ୍ଦନଜ୍ଞାପକ ଚିତ୍ର ।
Cardiology, *n.* ହୃତ୍‌ପିଣ୍ଡ ବିଜ୍ଞାନ ।
Care, *n.* ଯତ୍ନ, ସାବଧାନତା, ଚିନ୍ତା; *v.* ଯତ୍ନ ନେବା, ଚିନ୍ତା କରିବା ।
Career, *n.* କର୍ମପନ୍ଥା, କର୍ମକାଳ, ଜୀବିକା; *v.* ଦୌଡ଼ିବା ।
Careful, *a.* ସାବଧାନ, ସତର୍କ ।
Carefully, *ad.* ସାବଧାନଭାବରେ ।
Carefulness, *n.* ସାବଧାନତା, ସତର୍କତା, ଯତ୍ନଶୀଳତା ।
Careless, *a.* ଅସାବଧାନ, ଅସତର୍କ ।
Carelessly, *ad.* ଅସାବଧାନଭାବରେ
Carelessness, *n.* ଅସାବଧାନତା ।

**Caress**, *v*. ସ୍ନେହ ବା ଆଦର ପ୍ରଦର୍ଶନ କରିବା । [ ରକ୍ଷକ ।
**Caretaker**, *n*. ଘର ଓ ଉପକରଣର
**Cargo**, *n*. ଜାହାଜର ବୋଝେଇ ମାଲ ।
**Caricature**, *n*. ବିଦ୍ରୂପ, ହାସ୍ୟଜନକ ଅଙ୍ଗବିକାର; *v*. ବିଦ୍ରୂପ କରିବା ।
**Caries**, *n*. ଅସ୍ଥିକ୍ଷୟ ରୋଗ ।
**Carious**, *a*. ଅସ୍ଥିକ୍ଷୟରୋଗଗ୍ରସ୍ତ ।
**Carminative**, *a*. ବିରେଚକ ।
**Carnage**, *n*. ରକ୍ତପାତ, ହତ୍ୟାକାଣ୍ଡ ।
**Carnal**, *a*. ଦୈହିକ, କାମଜ, ପାଶବିକ
**Carnalist**, *n*. ଇନ୍ଦ୍ରିୟପରତନ୍ତ୍ର ବ୍ୟକ୍ତି
**Carnality**, *n*. ଇନ୍ଦ୍ରିୟପରାୟଣତା ।
**Carnival**, *n*. ଖ୍ରୀଷ୍ଟିଆନ ପର୍ବବିଶେଷ, ଆମୋଦପ୍ରମୋଦପୂର୍ଣ୍ଣ ଉତ୍ସବ ।
**Carnivora**, *n*. (*pl.*) ମାଂସାଶୀ ପ୍ରାଣୀ ଜାତି । [ ଖାଦକ ।
**Carnivorous**, *a*. ମାଂସାଶୀ, ମାଂସ-
**Carol**, *n*. ସ୍ତୁତିଗାନ, ସଙ୍କୀର୍ତ୍ତନ ।
**Carouse**, *v*. ମଦ୍ୟପାନସହ ଆମୋଦ କରିବା । [ ଖୋଜିବା ।
**Carp**, *n*. କ୍ଷୁଦ୍ର ମତ୍ସ୍ୟବିଶେଷ; *v*. ଦୋଷ
**Carpenter**, *n*. ବଢ଼େଇ, କାଠ କାରିଗର, ସୂତ୍ରଧର ।
**Carpentry**, *n*. ବଢ଼େଇ କାମ ।
**Carpet**, *n*. ଗାଲିଚା, ସତରଞ୍ଜି, *v*. ଗାଲିଚାଦ୍ୱାରା ଆବୃତ କରିବା ।
**Carping**, *a*. ଦୋଷଦର୍ଶୀ, ନିନ୍ଦୁକ ।
**Carriage**, *n*. ଗାଡ଼ି, ବହନବ୍ୟୟ ।
**Carrier**, *n*. ବୋହିଆ, ବହନକାରୀ ।
**Carrion**, *n*. ପଚା ମାଂସ ।
**Carrot**, *n*. ଗାଜର ।
**Carry**, *v*. ନେବା, ବୋହିବା ।
**Carry on**, *v*. ଚଳେଇବା, ଉନ୍ନତ କରିବା । [ କାର୍ଯ୍ୟକାରୀ କରିବା ।
**Carry out**, *v*. ପାଳନ କରିବା,
**Carry through**, *v*. ସାଧନ କରିବା । [ ନେବା ।
**Cart**, *n*. ଗାଡ଼ି, ଶଗଡ଼; *v*. ଶଗଡ଼ରେ
**Cartage**, *n*. ଗାଡ଼ିଭଡ଼ା ।
**Carter**, *n*. ଗାଡ଼ିବାଲା, ଶକଟଚାଳକ ।
**Cartilage**, *n*. ଉପାସ୍ଥି, କୋମଳ ହାଡ଼
**Cartography**, *n*. ମାନଚିତ୍ର ବିଦ୍ୟା
**Cartoon**, *n*. ବ୍ୟଙ୍ଗ ଚିତ୍ର ।
**Cartridge**, *n*. କାର୍ତ୍ତୁଜ, ବନ୍ଧୁକର ଟୋଟା ।
**Carve**, *v*. ଖୋଦେଇ ଚିତ୍ର କରିବା, କାଠ ବା ମାଂସ କାଟି ଖଣ୍ଡ ଖଣ୍ଡ କରିବା ।
**Carver**, *n*. ଖୋଦନକାରୀ, ଛୁରିର ।
**Carving**, *n*. ଖୋଦନ କର୍ମ ।
**Cascade**, *n*. କ୍ଷୁଦ୍ର ଜଳପ୍ରପାତ, ଝରଣା ।
**Case**, *n*. ମୋକଦ୍ଦମା, ଖୋପ, ପେଡ଼ି ।
**Cash**, *n*. ନଗଦ ଧନ, ଅର୍ଥ ।

**Cash-book**, *n.* ରୋକଡ଼ ବହି ।
**Cashew**, *n.* ବାଦାମ ଗଛ ଓ ତାର ଫଳ । [ ରକ୍ଷକ ।
**Cashier**, *n.* କୋଷାଧ୍ୟକ୍ଷ, ତହବିଲ-
**Casino**, *n.* ସାଧାରଣ ନୃତ୍ୟଶାଳା ।
**Cask**, *n.* ଗ୍ରେଟ ପିପା ।
**Casket**, *n.* ଗ୍ରେଟ ପିପା, ଗହଣା ବାକ୍ସ
**Casque, Cask**, *n.* ମସ୍ତକାବରଣ, ଶିରସ୍ତ୍ରାଣ ।
**Cast**, *v.* ଫିଙ୍ଗିଦେବା, ଛାଞ୍ଚରେ ଢାଳିବା; *n.* ଛାଞ୍ଚ; *a.* ଛାଞ୍ଚରେ ଢଳା ।
**Castaway**, *n.* ସମାଜଚ୍ୟୁତ ବ୍ୟକ୍ତି, ପରିତ୍ୟକ୍ତ ଲୋକ ।
**Caste**, *n.* ଜାତି, ବର୍ଣ୍ଣ । [ କରିବା ।
**Castigate**, *v.* ଦଣ୍ଡ ଦେବା, ଶାସନ
**Castigation**, *n.* ଶାସ୍ତି, ପ୍ରହାର ।
**Castigatory**, *a.* ସଂଶୋଧନମୂଳକ ।
**Casting-net**, *n.* କ୍ଷେପା ଜାଲ ।
**Casting-vote**, *n.* ଦୁଇପକ୍ଷର ଭୋଟ ସମାନ ହେଲେ ସଭାପତି ଯେଉଁ ଭୋଟ ଦିଅନ୍ତି ।
**Castle**, *n.* ଦୁର୍ଗ, ଗଡ଼ ।
**Castor**, *n.* ଗବ, ଜଡ଼ା ।
**Castor-oil**, *n.* ଜଡ଼ା ତେଲ ।
**Castral**, *a.* ଶିବିରସମ୍ବନ୍ଧୀୟ ।
**Castrate**, *v.* ଖାସି କରିବା, ମୁଷ୍କ ଛେଦନ କରିବା ।
**Castration**, *n.* ମୁଷ୍କ ଛେଦନ ।
**Casual**, *a.* ସାମୟିକ, ଅନପେକ୍ଷିତ, ଅନିର୍ଦ୍ଦିଷ୍ଟ । [ ଅନପେକ୍ଷିତଭାବରେ ।
**Casually**, *ad.* ଦୈବାତ୍, ହଠାତ୍,
**Casualty**, *n.* ଆକସ୍ମିକ ବିପଦ, ଦୈବୀ ଘଟନା, ଅକାଳ ମୃତ୍ୟୁ ।
**Casuarina**, *n.* ଝାଉଁ ଗଛ ।
**Casuist**, *n.* ଧର୍ମବୁଦ୍ଧି ବିଷୟକ ପଣ୍ଡିତ ।
**Casuastic**, *a.* ଧର୍ମବୁଦ୍ଧି ବା ପାପ-ପୁଣ୍ୟବିଷୟକ । [ ବିଜ୍ଞାନ ।
**Casuistry**, *n.* କର୍ତ୍ତବ୍ୟବିରୋଧର
**Cat**, *n.* ବିରାଡ଼ି, ମାର୍ଜାର ।
**Cataclysm**, *n.* ପ୍ରଳୟ, ଆକସ୍ମିକ ଆପଦ । [ ମନ୍ଦିର ।
**Catacomb**, *n.* ଭୂଗର୍ଭସ୍ଥ ସମାଧି
**Catalogue**, *n.* ତାଲିକା; *v.* ତାଲିକା କରିବା । [ ପରଳ ରୋଗ ।
**Cataract**, *n.* ଜଳପ୍ରପାତ, ଆଖିର
**Catarrh**, *n.* ସର୍ଦ୍ଦିରୋଗ, ଶ୍ଳେଷ୍ମା ।
**Catarrhal**, *a.* ଶ୍ଳେଷ୍ମାସମ୍ବନ୍ଧୀୟ ।
**Catastrophe**, *n.* ବିପର୍ଯ୍ୟାତ, ଦୁର୍ଗତି, ଦୁର୍ଘଟନା, ଘୋର ବିପତ୍ତି ।
**Catch**, *v.* ଧରିବା, ଆବଦ୍ଧ କରିବା ।
**Catching**, *a.* ସଂକ୍ରାମକ ।
**Catchpenny**, *n.* ନିଃସାରପୁସ୍ତକ ।
**Catchword**, *n.* ପୃଷ୍ଠାର ଶେଷ ପଦ
**Catchy**, *a.* ଚମତ୍କାର, ସୁଦୃଶ୍ୟ ।

**Catechism,** *n.* ପ୍ରଶ୍ନୋତ୍ତର ଆକାରରେ ଲିଖିତ ପୁସ୍ତିକା ।
**Catechu,** *n.* ଖଦିର, ଖଇର ।
**Categorical,** *a.* ସୁନିଶ୍ଚିତ, ସ୍ପଷ୍ଟ ।
**Categorically,** *ad.* ସ୍ପଷ୍ଟରୂପେ, ନିଶ୍ଚିତଭାବରେ, ନିର୍ଦ୍ଦିଷ୍ଟରୂପେ ।
**Category,** *n.* ଶ୍ରେଣୀ, ବର୍ଗ ।
**Cater,** *v.* ଖାଦ୍ୟଦ୍ରବ୍ୟ ସରବରାହ କରିବା, ଯୋଗାଇବା ।
**Caterer,** *n.* ଭକ୍ଷ୍ୟଦ୍ରବ୍ୟ ସରବରାହକାରୀ
**Caterpillar,** *n.* ଶୋଷିପୋକ ।
**Catgut,** *n.* ତନ୍ତୁ, ବାଦ୍ୟଯନ୍ତ୍ରର ତାର ।
**Cathedral,** *n.* ପ୍ରଧାନ ଗୀର୍ଜା ଘର ।
**Catheter,** *n.* ମୂତ୍ରରେଚକ ଯନ୍ତ୍ର ।
**Catholic,** *a.* ସର୍ବଜନଗ୍ରାହ୍ୟ, ଉଦାର; *n.* ଖ୍ରୀଷ୍ଟିଆନ ସମ୍ପ୍ରଦାୟବିଶେଷ ।
**Cattle,** *n.* ଗୋମେଷାଦି ପଶୁ ।
**Cattleman,** *n.* ଗୋପାଳ, ଗଉଡ଼ ।
**Cattle-show,** *n.* ଗୋପ୍ରଦର୍ଶନୀ ।
**Cauliflower,** *n.* ଫୁଲକୋବି ।
**Causal,** *a.* କାରଣସମ୍ବନ୍ଧୀୟ, ନୈମିତ୍ତିକ । [ ନୈମିତ୍ତିକତା ।
**Causality,** *n.* ହେତୁବାଦ,
**Causation,** *n.* କାର୍ଯ୍ୟକାରଣ ସମ୍ପର୍କ ।
**Cause,** *n.* କାରଣ, ମୋକଦ୍ଦମା; *v.* ଘଟାଇବା । [ କାରଣଶୂନ୍ୟ ।
**Causeless,** *a.* ଅହେତୁକ, ଅକାରଣ,
**Causeway, Causey,** *n.* ଜାଙ୍ଗଲବନ୍ଧ, ବନ୍ଧରାସ୍ତା ।
**Caustic,** *a.* କଟୁ, ଜ୍ୱାଳାଦାୟକ ।
**Causticity,** *n.* କଟୁତା, ଦହନଶକ୍ତି ।
**Cauteris(z)e,** *v.* ଦଗ୍ଧ କରିବା, ଚଡ଼ୁ ଦେବା । [ *v.* ସାବଧାନ କରିବା ।
**Caution,** *n.* ସାବଧାନତା, ସତର୍କତା;
**Cautious,** *a.* ସାବଧାନ, ସତର୍କ ।
**Cautiously,** *ad.* ସାବଧାନଭାବରେ
**Cautiousness,** *n.* ସାବଧାନତା, ସତର୍କତା ।
**Cavalcade,** *n.* ଅଶ୍ୱାରୋହୀଦଳ ।
**Cavalier,** *n.* ଅଶ୍ୱାରୋହୀ ଯୋଦ୍ଧା ।
**Cavalry,** *n.* ଅଶ୍ୱାରୋହୀ ସୈନ୍ୟଦଳ ।
**Cave,** *n.* ଗୁହା, ଗହ୍ୱର ।
**Cavern,** *n.* ଗଭୀର ଗର୍ତ୍ତ, ପର୍ବତଗହ୍ୱର
**Cavil,** *v.* ବୃଥାଯୁକ୍ତି କରିବା ।
**Cavity,** *n.* ଗର୍ତ୍ତ, କୋଟର ।
**Caw,** *n.* କାକର ରବ; *v.* କାଆକାଆ କରିବା । [ ହେବା ।
**Cease,** *v.* ବିରତ ହେବା, କ୍ଷାନ୍ତ
**Ceaseless,** *a.* ଅବିଶ୍ରାନ୍ତ, ଅବିରତ ।
**Cedar,** *n.* ଦେବଦାରୁଜାତୀୟ ବୃକ୍ଷବିଶେଷ । [ କରିବା ।
**Cede,** *v.* ସମର୍ପଣ କରିବା, ସ୍ୱତ୍ୱତ୍ୟାଗ
**Ceil,** *v.* ଆଚ୍ଛାଦନ କରିବା, ଛାତ ପକାଇବା
**Ceiling,** *n.* ଛାତର ନିମ୍ନଦେଶ ।

**Celebrate**, *v.* ଉତ୍ସବ କରିବା, ସ୍ମରଣୀୟ କରିବା, ପାଳନ କରିବା ।
**Celebrated**, *a.* ବିଖ୍ୟାତ, ପ୍ରସିଦ୍ଧ ।
**Celebration**, *n.* ଉତ୍ସବସହ ପାଳନ, ସମାରୋହ । [ ବ୍ୟକ୍ତି ।
**Celebrity**, *n.* ଖ୍ୟାତି, ଯଶ, ବିଖ୍ୟାତ
**Celerity**, *n.* କ୍ଷିପ୍ରତା, ବେଗର ଚଞ୍ଚଳତା, କୌଶଳ ।
**Celestial**, *a.* ସ୍ୱର୍ଗୀୟ, ଦିବ୍ୟ ।
**Celibacy**, *n.* ବ୍ରହ୍ମଚର୍ଯ୍ୟ, କୌମାର୍ଯ୍ୟ, ଅବିବାହିତ ଅବସ୍ଥା ।
**Celibate**, *a.* ବ୍ରହ୍ମଚାରୀ; *n.* କୁମାର, ଅବିବାହିତ ବ୍ୟକ୍ତି ।
**Cell**, *n.* ଜୀବକୋଷ, କ୍ଷୁଦ୍ର ପ୍ରକୋଷ୍ଠ ।
**Cellar**, *n.* ଭୂଗର୍ଭସ୍ଥ କ୍ଷୁଦ୍ର ଗୃହ, ସୁରାଳୟ ।
**Cement**, *n.* ସିମେଣ୍ଟ, ଇଷ୍ଟକାଦି ଯୋଡ଼ିବାର ଏକପ୍ରକାର ମସଲା; *v.* ଦୃଢ଼-ରୂପେ ସଂଯୁକ୍ତ କରିବା । [ କବରଖାନା ।
**Cemetery**, *n.* ସମାଧିକ୍ଷେତ୍ର, ଶ୍ମଶାନ,
**Cenotaph**, *n.* ଦେଶାନ୍ତରରେ ମୃତ ବ୍ୟକ୍ତିର ଉଦ୍ଦେଶ୍ୟରେ ନିର୍ମିତ ସମାଧି ମନ୍ଦିର ।
**Censer**, *n.* ଧୂପଦାନୀ ।
**Censor**, *n.* ସମ୍ବାଦପତ୍ରାଦିର ସମୀକ୍ଷକ କର୍ମଚାରୀ; *v.* ସମ୍ବାଦପତ୍ରାଦିର ସମୀକ୍ଷା କରିବା । [ ଦୋଷଦର୍ଶୀ ।
**Censorious**, *a.* ଅପବାଦକାରୀ,
**Censorship**, *n.* ମୁଦ୍ରଣନିୟନ୍ତ୍ରଣ-କାରୀଙ୍କ କର୍ମପଦ୍ଧତି ବା ତାଙ୍କ ପଦ ବା କର୍ମ ।
**Censure**, *v.* ଦୋଷ ଦର୍ଶାଇବା, ନିନ୍ଦା କରିବା; *n.* ଦୋଷପ୍ରଦର୍ଶନ, ନିନ୍ଦା ।
**Census**, *n.* ଜନଗଣନା, ଜନସୁମାରି ।
**Cent**, *n.* ଏକ ଶତ, ଡଲାର ମୁଦ୍ରାର ଏକଶତାଂଶ ।
**Centaur**, *n.* ଅର୍ଦ୍ଧମନୁଷ୍ୟ ଓ ଅର୍ଦ୍ଧ-ଅଶ୍ୱ କାଳ୍ପନିକ ଜନ୍ତୁବିଶେଷ ।
**Centenarian**, *n.* ଶତବର୍ଷବୟସ୍କ ବୃଦ୍ଧ; *a.* ଶତବର୍ଷବୟସ୍କ ।
**Centenary**, *n.* ଶତବାର୍ଷିକ ଉତ୍ସବ, ଶତକ । [ ଶତତମ ବାର୍ଷିକ ଉତ୍ସବ ।
**Centennial**, *a.* ଶତବାର୍ଷିକ; *n.*
**Centesimal**, *a.* ଶତାଂଶର ଏକ ଅଂଶ । [ ତାପମାନ ପଦ୍ଧତି ।
**Centigrade**, *n.* ଶତଡ଼ିଗ୍ରିଚିହ୍ନିତ
**Centimetre**, *n.* ଏକ ମିଟରର ଶତାଂଶ । [ ଶତପଦୀ ପ୍ରାଣୀ, ବିଛା ।
**Centiped**, **Centipede**, *n.*
**Central**, *a.* କେନ୍ଦ୍ରିକ, କେନ୍ଦ୍ରରେ ଅବସ୍ଥିତ ।
**Centralisation**, *n.* କେନ୍ଦ୍ରୀକରଣ ।
**Centralise**, *v.* କେନ୍ଦ୍ରୀଭୂତ କରିବା ।
**Centre**, *n.* କେନ୍ଦ୍ର, ମଧ୍ୟବିନ୍ଦୁ, ପେଣ୍ଠ ଜାଗା; *v.* ମଧ୍ୟରେ ଅବସ୍ଥିତ ହେବା ।
**Centrifugal**, *a.* କେନ୍ଦ୍ରାପସାରୀ ।

**Centripetal**, *a.* କେନ୍ଦ୍ରାଭିମୁଖୀ, କେନ୍ଦ୍ରାଭିସାରୀ ।
**Centurial**, *a.* ଶତାବ୍ଦୀସମ୍ବନ୍ଧୀୟ ।
**Century**, *n.* ଶତାବ୍ଦୀ, ଏକଶତ ବର୍ଷ ।
**Ceramic**, *a.* ମୃତ୍ତଶିଳ୍ପସମ୍ବନ୍ଧୀୟ ।
**Ceramics**, *n.* ମୃତ୍ତିକା ଶିଳ୍ପ ।
**Cereal**, *n.* ଶସ୍ୟର ଦାନା ।
**Cerebellum**, *n.* ମସ୍ତିଷ୍କର ପଶ୍ଚାଦ୍‌ଭାଗ
**Cerebral**, *a.* ମସ୍ତିଷ୍କସମ୍ବନ୍ଧୀୟ ।
**Cerebrum**, *n.* ମସ୍ତିଷ୍କର ସମ୍ମୁଖ ଭାଗ
**Ceremonial**, *a.* ବ୍ୟବହାରିକ, ଆନୁଷ୍ଠାନିକ । [ ଭାବରେ, ଯଥାବିଧି ।
**Ceremonially**, *ad.* ଆନୁଷ୍ଠାନିକ
**Ceremonious**, *a.* ବ୍ୟବହାରକୁଶଳ, ସଭ୍ୟ, ଭଦ୍ର । [ ଭାବରେ ।
**Ceremoniously**, *ad.* ଭଦ୍ର-
**Ceremony**, *n.* ଉତ୍ସବ, ପାରମ୍ପରିକ ଅନୁଷ୍ଠାନ, ସମାରୋହ । [ କୌଣସି ।
**Certain**, *a.* ନିଶ୍ଚିତ, ନିଃସନ୍ଦେହ,
**Certainly**, *ad.* ନିଶ୍ଚିତଭାବରେ ।
**Certainty**, *n.* ନିଶ୍ଚିତତା, ସ୍ଥିରତା ।
**Certificate**, *n.* ଯୋଗ୍ୟତାର ପ୍ରମାଣ-ପତ୍ର, ପ୍ରଶଂସାପତ୍ର, ନିଦର୍ଶନପତ୍ର ।
**Certify**, *v.* ପ୍ରମାଣ ଦେବା, ଦୃଢ଼-ଭାବରେ ଜ୍ଞାପନ କରିବା ।
**Certitude**, *n.* ନିଃସନ୍ଦିଗ୍ଧତା ।
**Cervical**, *a.* ଗ୍ରୀବାସମ୍ବନ୍ଧୀୟ ।
**Cess**, *n.* କର, ଶୁଳ୍କ, ଟିକସ ।
**Cessation**, *n.* ବିରତି, ନିବୃତ୍ତି ।
**Cession**, *n.* ସ୍ୱତ୍ୱତ୍ୟାଗ, ସମର୍ପଣ ।
**Cesspool**, *n.* ମଇଳା ପାଣିଖାତ, ଚୌବାଚ୍ଚା ।
**Chafe**, *v.* ଘଷି ଉତ୍ତପ୍ତ କରିବା, ଉତ୍ତେଜିତ ହେବା ବା କରିବା ।
**Chaff**, *n.* ଭୁଷି, ତୁଷ, ଚପ୍ ।
**Chaffer**, *v.* ଦର କଷାକଷି କରିବା ।
**Chagrin**, *n.* ଅସନ୍ତୋଷ, ବିରକ୍ତି ।
**Chain**, *n.* ଶିକୁଳି, ଜଞ୍ଜିର; *v.* ଶିକୁଳିରେ ବାନ୍ଧିବା, ବନ୍ଦୀ କରିବା ।
**Chair**, *n.* ଚୌକି, ଆସନ ।
**Chairman**, *n.* ସଭାପତି ।
**Chaise**, *n.* ଘୋଡ଼ାଗାଡ଼ି ।
**Chalice**, *n.* ଧାତୁନିର୍ମିତ ପାନପାତ୍ର ।
**Chalk**, *n.* ଖଡ଼ି, ଫୁଲଖଡ଼ି ।
**Challenge**, *n.* ଯୁଦ୍ଧାର୍ଥ ଆହ୍ୱାନ; *v.* ଯୁଦ୍ଧାର୍ଥ ଆହ୍ୱାନ କରିବା ।
**Chamber**, *n.* କୋଠରି, କକ୍ଷ ।
**Chamberlain**, *n.* ଭଣ୍ଡାରଘରର ରକ୍ଷକ, ରାଜପ୍ରାସାଦର ଅଧ୍ୟକ୍ଷ, କଞ୍ଚୁକୀ ।
**Chamber-maid**, *n.* ଶୟନଗୃହର ପରିଚାରିକା ।
**Chameleon**, *n.* ବହୁରୂପୀ, ଏଣ୍ଡୁଅ ।
**Chamois**, *n.* ପାର୍ବତ୍ୟ ମୃଗବିଶେଷ, ଉକ୍ତ ମୃଗର ଚର୍ମ ।

**Champ,** *v.* କାମୁଡ଼ିବା, ଚର୍ବଣ କରିବା ।
**Champagne,** *n.* ଏକଜାତୀୟ ମଦ୍ୟ
**Champion,** *n.* ବୀର, ଯୋଦ୍ଧା, ମଲ୍ଲ ।
**Chance,** *n.* ଦୈବୀ ଘଟନା, ଭାଗ୍ୟ; *v.* ହଠାତ୍ ଘଟିବା ।
**Chancellor,** *n.* ପ୍ରଧାନ ବିଚାରକର୍ତ୍ତା, ବିଶ୍ୱବିଦ୍ୟାଳୟର ସର୍ବୋଚ୍ଚ କର୍ତ୍ତା ।
**Chandelier,** *n.* ବତୀର ଝାଡ଼ ।
**Chandler,** *n.* ବତୀ ବ୍ୟବସାୟୀ, ଦୋକାନଦାର ।
**Change,** *n.* ପରିବର୍ତ୍ତନ, ବଦଳ; *v.* ପରିବର୍ତ୍ତନ କରିବା, ବଦଳାଇବା ।
**Changeable,** *a.* ପରିବର୍ତ୍ତନଶୀଳ, ଅସ୍ଥିର ।
**Changeful,** *a.* ଅସ୍ଥିର ।
**Changeless,** *a.* ସ୍ଥିର, ଅପରିବର୍ତ୍ତିତ
**Changer,** *n.* ପରିବର୍ତ୍ତନକାରୀ ।
**Channel,** *n.* ଜଳସ୍ରୋତର ପଥ, ନଳା, ପ୍ରଣାଳୀ । [ ଗାଇବା ।
**Chant,** *v.* ଧର୍ମସଙ୍ଗୀତ, ମନ୍ତ୍ର ପ୍ରଭୃତି
**Chanticleer,** *n.* କୁକ୍କୁଡ଼ା ।
**Chaos,** *n.* ଅସ୍ଥିରାବସ୍ଥା, ଅବ୍ୟବସ୍ଥିତତା, ବିଶୃଙ୍ଖଳା । [ ଗୋଲମାଲିଆ ।
**Chaotic,** *a.* ଅବ୍ୟବସ୍ଥିତ, ବିଶୃଙ୍ଖଳ,
**Chap,** *n.* ଫାଙ୍କ ବା ଫାଟ, ବ୍ୟକ୍ତି ବା ବାଳକ; *v.* ଫଟାଇବା ।
**Chapel,** *n.* ଭଜନାଳୟ, ଗୀର୍ଜାଘର ।
**Chaperon,** *n.* ଶିରସ୍ତ୍ରାଣ ବା ଟୋପି, ସମ୍ଭ୍ରାନ୍ତ ମହିଳାଙ୍କ ସହଚରୀ ।
**Chaplain,** *n.* ଧର୍ମୋପଦେଶକ, ସୈନ୍ୟ ବା ନୌବିଭାଗର ପୁରୋହିତ ।
**Chaplet,** *n.* ଫୁଲମାଳ, ଶିରୋଭୂଷା ।
**Chapter,** *n.* ଅଧ୍ୟାୟ, ପର୍ବ, ପରିଚ୍ଛେଦ
**Char,** *v.* ପୋଡ଼ି ଅଙ୍ଗାର କରିବା; *n.* ଏକପ୍ରକାର ମାଛ ।
**Character,** *n.* ଚରିତ୍ର, ସ୍ୱଭାବ, ନାଟକାଦିର ପାତ୍ରପାତ୍ରୀ, ଅକ୍ଷର ।
**Characteristic,** *a.* ସ୍ୱାଭାବିକ ଗୁଣସୂଚକ । [ ଲକ୍ଷଣ, ସ୍ୱାଭାବିକ ଗୁଣ ।
**Characteristics,** *n.* ବିଶେଷ
**Characterise,** *v.* ବିଶେଷ ଗୁଣଦ୍ୱାରା ବର୍ଣ୍ଣନା କରିବା । [ ପ୍ରଶ୍ନ ।
**Charade,** *n.* ପ୍ରହେଳିକା, କୌତୁକ
**Charcoal,** *n.* କାଠକୋଇଲା, ଅଙ୍ଗାର
**Charge,** *n.* ଭାର, ମୂଲ୍ୟ; *v.* ଆଦେଶ ଦେବା, ମୂଲ୍ୟ ଦାବିକରିବା, ଆକ୍ରମଣ କରିବା, ବୋଝାଇ କରିବା ।
**Charger,** *n.* ଯୁଦ୍ଧଅଶ୍ୱ, ପାତ୍ର ।
**Charily,** *ad.* ସାବଧାନଭାବରେ ।
**Chariot,** *n.* ରଥ, ଗାଡ଼ି ।
**Charioteer,** *n.* ରଥଚାଳକ, ସାରଥି ।
**Charitable,** *a.* ଦୟାଳୁ, ବଦାନ୍ୟ, ଦାତବ୍ୟ । [ ଭିକ୍ଷା ।
**Charity,** *n.* ଦାନ, ବଦାନ୍ୟତା,

**Charm**, *n.* ମନ୍ତ୍ର, ଗୁଣି, ଯାଦୁବିଦ୍ୟା, କବଚ; *v.* ମୋହିତ କରିବା, ଯାଦୁ କରିବା, ଭୁଲାଇ ବଶ କରିବା ।

**Charmer**, *n.* ଯାଦୁକର, କୁହୁକୀ ।

**Charming**, *a.* ମନୋହର, ସୁନ୍ଦର, ରମଣୀୟ । [ କରିବା ।

**Chart**, *n.* ନକ୍ସା; *v.* ନକ୍ସା ପ୍ରସ୍ତୁତ

**Charter**, *n.* ସନନ୍ଦ, ରାଜକୀୟ ଘୋଷଣାପତ୍ର; *v.* ଭଡ଼ା ନେବା ।

**Chartography**, *n.* ମାନଚିତ୍ର-ଅଙ୍କନ ବିଦ୍ୟା (Cartography ଦେଖ) । [ ମୂଲିଆଣୀ ।

**Charwoman**, *n.* ଘରକାମ ପାଇଁ

**Chary**, *a.* ସାବଧାନ, ସତର୍କ ।

**Chase**, *v.* ଶିକାର କରିବା, ପଛରେ ଗୋଡ଼ାଇବା; *n.* ଶିକାର, ପଶ୍ଚାଦ୍ଧାବନ ।

**Chasm**, *n.* ଛିଦ୍ର, ଫାଟ, ଫାଙ୍କ ।

**Chaste**, *a.* ସତୀ, ପତିବ୍ରତା, ସାଧ୍ୱୀ, ପବିତ୍ର । [ ଦେବା, ଶାସନ କରିବା ।

**Chasten, Chastise**, *v.* ଶାସ୍ତି

**Chasteness**, *n.* ବିଶୁଦ୍ଧତା ।

**Chastisement**, *n.* ଦଣ୍ଡ, ଶାସ୍ତି ।

**Chastity**, *n.* ସତୀତ୍ୱ, ପାତିବ୍ରତ୍ୟ ।

**Chat**, *n.* କଥାବାର୍ତ୍ତା, ଗପ; *v.* ଗପ କରିବା, ଆଳାପ କରିବା ।

**Chateau**, *n.* ଦୁର୍ଗ, ଅଟ୍ଟାଳିକା ।

**Chattel**, *n.* ଅସ୍ଥାବର ସମ୍ପତ୍ତି ।

**Chatter**, *v.* ଦାନ୍ତ ଠକ୍ ଠକ୍ କରିବା, ବକ୍ ବକ୍ ହେବା । [ ବାଚାଳ ।

**Chatter-box**, *n.* ଗପୁଡ଼ି, ବାବଦୂକ,

**Chauffeur**, *n.* ମୋଟରଚାଳକ ।

**Cheap**, *a.* ଶସ୍ତା, ସ୍ୱଳ୍ପମୂଲ୍ୟ, ସୁଲଭ ।

**Cheapen**, *v.* ଶସ୍ତା କରିବା, ମୂଲ୍ୟ କମାଇବା ।

**Cheaply**, *ad.* ସ୍ୱଳ୍ପମୂଲ୍ୟରେ, ଶସ୍ତାରେ

**Cheapness**, *n.* ମୂଲ୍ୟର ସ୍ୱଳ୍ପତା, ସୁଲଭତା । [ ପ୍ରତାରଣା କରିବା ।

**Cheat**, *n.* ଠକ, ପ୍ରବଞ୍ଚକ; *v.* ଠକିବା,

**Check**, *v.* ଦମନ କରିବା, ଅଟକାଇବା, ହିସାବ ମିଳାଇବା; *n.* ଦମନ, ନିରୋଧ, ନିବାରଣ, ଅଟକ ।

**Checker**, *v.* ଚିତ୍ରବିଚିତ୍ର କରିବା ।

**Cheek**, *n.* ଗାଲ, ଗଣ୍ଡଦେଶ, କପୋଳ

**Cheer**, *n.* ଆମୋଦ, ହର୍ଷଧ୍ୱନି; *v.* ଉତ୍ସାହ ଦେବା, ହର୍ଷଧ୍ୱନି କରିବା ।

**Cheerful**, *a.* ହୃଷ୍ଟ, ଆନନ୍ଦିତ ।

**Cheerfully**, *a.* ଆନନ୍ଦରେ, ପ୍ରଫୁଲ୍ଲ-ଚିତ୍ତରେ । [ ନିରାନନ୍ଦ ।

**Cheerless**, *a.* ବିଷଣ୍ଣ, ଶୋକାକୁଳ,

**Cheese**, *n.* ଛେନା ।

**Chemical**, *a.* ରାସାୟନିକ, ରସାୟନ-ବିଦ୍ୟାସମ୍ବନ୍ଧୀୟ । [ ସମୂହ ।

**Chemicals**, *n.* ରାସାୟନିକ ଦ୍ରବ୍ୟ-

**Chemise**, *n.* ସେମିଜ, ନାରୀମାନଙ୍କ ବ୍ୟବହାର୍ଯ୍ୟ କମିଜ ।

**Chemist**, *n.* ରସାୟନବିତ୍, ଔଷଧ-ବିକ୍ରେତା ।
**Chemistry**, *n.* ରସାୟନ ବିଦ୍ୟା ।
**Cheque**, *n.* ହୁଣ୍ଡି, ଟଙ୍କା ଦେବା ପାଇଁ ବିଗ୍ୱଦ ପତ୍ର, ଚେକ୍ ।
**Cherish**, *v.* ପୋଷଣ କରିବା, ପାଳିବା ।
**Cherry**, *n.* ଖାଦ୍ୟଫଳବିଶେଷ ।
**Cherub**, *n.* ଦେବଶିଶୁ, ସ୍ୱର୍ଗୀୟ ଦୂତ-ବିଶେଷ ( *pl.* Cherubim) ।
**Chess**, *n.* ସତରଞ୍ଜ ଖେଳ, ଚେସ୍ ଖେଳ । [ ଖେଳର ଚିହ୍ନିତ ପଟା ।
**Chessboard**, *n.* ସତରଞ୍ଜ ବା ଚେସ୍
**Chest**, *n.* ସିନ୍ଦୁକ, ବକ୍ଷ, ଛାତି ।
**Chestnut**, *n.* ଏକଜାତୀୟ ବାଦାମ ।
**Chevalier**, *n.* ଅଶ୍ୱାରୂଢ଼ ସୈନ୍ୟ ବା ବୀରପୁରୁଷ ।
**Chew**, *v.* ଚୋବାଇବା ।
**Chicanery**, *n.* ଛଳ, ଘୁରୁଷ, ପ୍ରବଞ୍ଚନା । [ ଛୁଆ, ପକ୍ଷିଶାବକ ।
**Chick, Chicken**, *n.* କୁକ୍କୁଡ଼ା-
**Chicken-hearted**, *a.* ଭୀରୁ, ଭୟାଳୁ । [ ହାଡ଼ଫୁଟି ।
**Chicken-pox**, *n.* ପାଣିବସନ୍ତ,
**Chide**, *v.* ଭର୍ତ୍ସନା କରିବା, ଗାଳି ଦେବା
**Chief**, *a.* ପ୍ରଧାନ, ଶ୍ରେଷ୍ଠ; *n.* ମୁଖ୍ୟ ବ୍ୟକ୍ତି, ନେତା, ଅଧ୍ୟକ୍ଷ, ସର୍ଦ୍ଦାର ।
**Chiefly**, *ad.* ପ୍ରଧାନତଃ, ମୁଖ୍ୟଭାବରେ

**Chieftain**, *n.* ନେତା, ସର୍ଦ୍ଦାର, ଦଳପତି । [ ନେତୃତ୍ୱ ।
**Chieftainship**, *n.* ସର୍ଦ୍ଦାରୀ,
**Chignon**, *n.* ଜୁଡ଼ା, ଖୋସା ।
**Chilblain**, *n.* ହିମଜନିତ କ୍ଷତ ।
**Child**, *n.* ଶିଶୁ, ପିଲା, ସନ୍ତାନ ( *pl.* Children ) ।
**Child-bearing**, *n.* ଗର୍ଭଧାରଣ, ସନ୍ତାନୋତ୍ପାଦନ, ପ୍ରସବ ।
**Childbirth**, *n.* ପ୍ରସବ, ସନ୍ତାନଜନ୍ମ ।
**Childhood**, *n.* ଶୈଶବ, ବାଲ୍ୟାବସ୍ଥା ।
**Childish**, *a.* ଶିଶୁବତ୍, ପିଲାଳିଆ ।
**Childless**, *a.* ନିଃସନ୍ତାନ ।
**Childlike**, *a.* ଶିଶୁତୁଲ୍ୟ, ଶିଶୁସୁଲଭ ।
**Chill**, *n.* ଶୀତ, ଜାଡ଼, ଶୀତଜନିତ କମ୍ପ
**Chilli**, *n.* ଲଙ୍କାମରିଚ ।
**Chilliness**, *n.* ଶୈତ୍ୟ, ଶୀତଳତା ।
**Chilly**, *a.* ଶୀତଳ, ଥଣ୍ଡା, ଶୀତାର୍ତ୍ତ ।
**Chime**, *n.* ଘଣ୍ଟିଶ୍ରେଣୀର ବାଦ୍ୟ; *v.* ଏକସ୍ୱରରେ ବାଜିବା ।
**Chimera**, *n.* ଅସଙ୍ଗତ କଳ୍ପନା, ଆକାଶକୁସୁମ । [ କଳ୍ପିତ ।
**Chimerical**, *a.* ଅବାସ୍ତବ, କପୋଳ-
**Chimney**, *n.* ଧୂଆଁ ବାହାରିବା ନଳ ।
**Chimpanzee**, *n.* ସିମ୍ପାଞ୍ଜି, ଏକ-ଜାତୀୟ ବନମନୁଷ୍ୟ ।
**Chin**, *n.* ଚିବୁକ ।

**Chink**, *n.* ଛିଦ୍ର, ଫାଙ୍କ, ଫାଟ ।
**Chinky**, *a.* ବହୁ ଛିଦ୍ରବିଶିଷ୍ଟ ।
**Chip**, *n.* କ୍ଷୁଦ୍ର ଖଣ୍ଡ; *v.* କାଟି ଖଣ୍ଡ ଖଣ୍ଡ କରିବା । [ ହସ୍ତରେଖା ବିଦ୍ୟା ।
**Chirography**, *n.* ସାମୁଦ୍ରିକ,
**Chirp**, *v.* ଚିଁ ଚିଁ ଶବ୍ଦ କରିବା, ପକ୍ଷୀ ପରି ରବିବା ।
**Chirping**, *n.* ପକ୍ଷୀର ରବ, କାକଳି ।
**Chisel**, *n.* ବଟାଳି, ନିହଣ ।
**Chit**, *n.* ଚିଠି, ଟିପ୍ପଣୀ ।
**Chit-chat**, *n.* ଗପସପ, କଥାବାର୍ତ୍ତା ।
**Chivalrous**, *a.* ବୀରୋଚିତ, ସାହସିକ
**Chivalry**, *n.* ପୌରୁଷ, ଯୁଦ୍ଧ-ନୈପୁଣ୍ୟ, ସାହସିକତା ।
**Chlorine**, *n.* ଏକପ୍ରକାର ହରିତ ଗ୍ୟାସ ।
**Chloroform**, *n.* ଚୈତନ୍ୟହାରକ ଔଷଧବିଶେଷ ।
**Chocolate**, *n.* କୋକୋଆ ଫଳରୁ ନିର୍ମିତ ମିଠେଇ; *a.* ଘନବାଦାମୀରଙ୍ଗ-ବିଶିଷ୍ଟ । [ ଉତ୍କୃଷ୍ଟ, ନିର୍ବାଚିତ ।
**Choice**, *n.* ପସନ୍ଦ, ନିର୍ବାଚନ; *a.*
**Choir**, *n.* ଗୀର୍ଜାର ଅଂଶବିଶେଷ, ଗାୟକଦଳ । [ ଚିପିବା ।
**Choke**, *v.* ଶ୍ୱାସରୁଦ୍ଧ ହେବା, ଗଳା
**Choler**, *n.* କ୍ରୋଧ, ରାଗ ।
**Cholera**, *n.* ହଇଜା, ଓଲଉଠା, ଝାଡ଼ାବାନ୍ତି ।
**Choleric**, *a* ରାଗୀ, କୋପନ ।
**Choose**, *v.* ବାଛିବା, ପସନ୍ଦ କରିବା, ନିର୍ବାଚନ କରିବା । [ *n.* କ୍ଷୁଦ୍ର ମାଂସଖଣ୍ଡ ।
**Chop**, *v.* କାଟି ଖଣ୍ଡଖଣ୍ଡ କରିବା;
**Choral**, *a.* ଗାୟକଦଳସମ୍ବନ୍ଧୀୟ ।
**Chord**, *n.* ତାର, ଗୁଣ, ତନ୍ତ୍ରୀ, ଜ୍ୟା ।
**Chore**, *n.* ପାଇଟି, ସାମାନ୍ୟ କାର୍ଯ୍ୟ ।
**Chorist**, *n.* ଗାୟକ ।
**Chorus**, *n.* ଗୀତର ଘୋଷା ବା ଧ୍ରୁବ ପଦ, ଗାୟକଦଳ, ସମବେତ ଗାନ ।
**Christen**, *v.* ଖ୍ରୀଷ୍ଟାନ କରି ନାମ ଦେବା
**Christian**, *n.* ଖ୍ରୀଷ୍ଟଧର୍ମାବଲମ୍ବୀ ବ୍ୟକ୍ତି; *a.* ଯୀଶୁ ଖ୍ରୀଷ୍ଟଙ୍କଦ୍ୱାରା ପ୍ରବର୍ତ୍ତିତ ।
**Christianise**, *v.* ଖ୍ରୀଷ୍ଟିଆନଧର୍ମରେ ଦୀକ୍ଷିତ କରିବା । [ ପ୍ରବର୍ତ୍ତିତ ଧର୍ମ ।
**Christianity**, *n.* ଯୀଶୁ ଖ୍ରୀଷ୍ଟଙ୍କଦ୍ୱାରା
**Christmas**, *n.* ଯୀଶୁ ଖ୍ରୀଷ୍ଟଙ୍କ ଜନ୍ମ-ଦିନ । [ ବିଷୟକ ।
**Chromatic**, *a.* ବର୍ଣ୍ଣ ବା ରଙ୍ଗ-
**Chromatics**, *n.* ବର୍ଣ୍ଣବିଦ୍ୟା ।
**Chronic, Chronical**, *a.* ବହୁକାଳସ୍ଥାୟୀ, ପୁରାତନ, ଦୀର୍ଘକାଳୀନ ।
**Chronicle**, *n.* ଇତିହାସ, କ୍ରମିକ ବିବରଣ; *v.* ଘଟନା ଲିପିବଦ୍ଧ କରିବା ।
**Chronicler**, *n.* ଇତିହାସଲେଖକ ।
**Chronology**, *n.* କାଳନିରୂପଣ ବିଦ୍ୟା ।

**Chronometer**, *n.* ସମୟନିର୍ଦ୍ଦେଶକ ଯନ୍ତ୍ରବିଶେଷ ।
**Chrysalis**, *n.* ଗୋଟିପୋକ ।
**Chrysolite**, *n.* ପୀତ ବା ସବୁଜ-ବର୍ଣ୍ଣର ମଣିବିଶେଷ ।
**Chubby**, *a.* ଗୋଲଗାଲ, ସ୍ଥୂଳ ।
**Chuckle**, *v.* ମୁହଁ ଚପି ହସିବା, କୁକ୍‌କୁଟୀ ପରି ଶବ୍ଦ କରିବା, ଆଦର କରିବା ।
**Chum**, *n.* ସଙ୍ଗୀ, ଅନ୍ତରଙ୍ଗ ବନ୍ଧୁ ।
**Church**, *n.* ଭଜନାଳୟ, ଗୀର୍ଜା, ଖ୍ରୀଷ୍ଟିଆନ ସମ୍ପ୍ରଦାୟ । [ କବରଖାନା ।
**Churchyard**, *n.* ଗୀର୍ଜାସଂଲଗ୍ନ
**Churl**, *n.* ଗାଉଁଲି ଲୋକ, ଅଶିଷ୍ଟ ଲୋକ
**Churlish**, *a.* ଅଭଦ୍ର, ଅଶିଷ୍ଟ, ଗାଉଁଲି
**Churn**, *v.* ଦହି ମୋହିବା, ମନ୍ଥନ ବା ଆଲୋଡ଼ନ କରିବା ।
**Cigar**, *n.* ବଡ଼ ପିକା ।
**Cigarette**, *n.* କାଗଜର ଆବରଣ-ଯୁକ୍ତ ସିଗ୍ରେଟ ପିକା । [ ତାର ଛେଲି ।
**Cinchona**, *n.* ସିଙ୍କୋନା ଗଛ ଓ
**Cinder**, *n.* ପୋଡ଼ା କୋଇଲା ।
**Cinema**, *a.* ସବାକ୍ ଚଳଚ୍ଚିତ୍ର ।
**Cinnabar**, *n.* ସିନ୍ଦୂର ।
**Cinnamon**, *n.* ଡାଳଚିନି ।
**Cipher, Cypher**, *n.* ଶୂନ୍ୟ, ନଗଣ୍ୟ ବ୍ୟକ୍ତି ବା ବସ୍ତୁ, ସାଙ୍କେତିକ ଲେଖା; *v.* ହିସାବ କରିବା, ସାଙ୍କେତିକ ଲେଖାର ଅର୍ଥ ବାହାର କରିବା ।
**Circle**, *n.* ବୃତ୍ତ, ମଣ୍ଡଳ; *v.* ବେଷ୍ଟନ କରିବା, ଚତୁର୍ଦ୍ଦିଗରେ ଭ୍ରମଣ କରିବା ।
**Circuit**, *n.* ପ୍ରଦକ୍ଷିଣ, ବେଷ୍ଟିତ ସ୍ଥାନ ।
**Circuitous**, *a.* କୁଟିଳ, ବକ୍ରାକାର ।
**Circular**, *a.* ବୃତ୍ତାକାର, ଗୋଲାକାର; *n.* ପ୍ରଚାରପତ୍ର, ବିଜ୍ଞାପନ ।
**Circulate**, *v.* ବ୍ୟାପିବା, ପ୍ରଚାର କରିବା, ବିଜ୍ଞାପିତ କରିବା ।
**Circulation**, *n.* ପ୍ରସାର, ବ୍ୟାପ୍ତି, ପ୍ରଚାର । [ କରିବା ।
**Circumambulate**, *v.* ପ୍ରଦକ୍ଷିଣ
**Circumcise**, *v.* ଲିଙ୍ଗାଗ୍ରର ତ୍ୱକ୍ ଛେଦନ କରିବା । [ ଚତୁଃସୀମା ।
**Circumference**, *n.* ପରିଧି, ଘେର,
**Circumlocution**, *n.* ବାଗ୍‌ବାହୁଲ୍ୟ, ଘୁରୁଷିପୂର୍ଣ୍ଣ ଭାଷଣ, ଦ୍ୱ୍ୟର୍ଥବୋଧକ ବାକ୍ୟ ।
**Circumnavigate**, *v.* ପୃଥିବୀର ଚାରିପାଖେ ଜାହାଜରେ ଭ୍ରମଣ କରିବା ।
**Circumnavigation**, *n.* ଜାହାଜରେ ପୃଥିବୀପ୍ରଦକ୍ଷିଣ ।
**Circumscribe**, *v.* ବେଷ୍ଟନ କରିବା
**Circumspect**, *a.* ମନୋଯୋଗୀ, ସତର୍କ । [ ସାବଧାନତା ।
**Circumspection**, *n.* ସତର୍କତା,
**Circumstance**, *n.* ବିଷୟ, ଅବସ୍ଥା, ଘଟଣା । [ ଆନୁଷଙ୍ଗିକ ।
**Circumstantial**, *a.* ଆକସ୍ମିକ,

**Circumstantially**, *a.* ବିସ୍ତାରିତ ଭାବରେ,
ଅବସ୍ଥାନୁସାରେ । [ ଭୁଲାଇବା ।
**Circumvent**, *v.* ପ୍ରତାରଣା କରିବା,
**Circumvention**, *n.* ପ୍ରତାରଣା,
ବଞ୍ଚନା । [ ମାନଙ୍କର କ୍ରୀଡ଼ାପ୍ରଦର୍ଶନୀ ।
**Circus**, *n.* ସର୍କସ୍, ନର ଓ ପଶୁ-
**Cistern**, *n.* ଜଳକୁଣ୍ଡ, ଚୌବାଚ୍ଚା ।
**Citadel**, *n.* ନଗରସ୍ଥ ଦୁର୍ଗ ।
**Citation**, *n.* ଉଲ୍ଲେଖ, ଉଦ୍ଧୃତ, ବିବୃତ ।
**Cite**, *v.* ଉଲ୍ଲେଖ କରିବା, ଉଦ୍ଧାର
କରିବା, ପ୍ରମାଣରୂପେ ଉପସ୍ଥାପିତ କରିବା ।
**Citizen**, *n.* ନାଗରିକ, ସହର ବା
ନଗରବାସୀ । [ ନାଗରିକତା ।
**Citizenship**, *n.* ନାଗରିକ ଅଧିକାର,
**Citron**, *n.* କମଳାଲେମ୍ବୁ ।
**City**, *n.* ନଗର, ସହର, ରାଜଧାନୀ ।
**Civic**, *a.* ପୌର, ନାଗରିକ ।
**Civics**, *n.* ପୌରନୀତି, ପୌରବିଜ୍ଞାନ,
ନାଗରିକବିଜ୍ଞାନ । [ ଭଦ୍ର ।
**Civil**, *a.* ବେସାମରିକ, ଦେବାନୀ, ଶିଷ୍ଟ,
**Civilian**, *n.* ଦେବାନୀ ଆଇନଜ୍ଞ,
ବେସାମରିକ ବ୍ୟକ୍ତି ।
**Civilisation**, **Civilization**,
*n.* ସଭ୍ୟତା, ସଭ୍ୟ ଅବସ୍ଥା ।
**Civilise**, **Civilize**, *v.* ସଭ୍ୟ
କରିବା, ଶିକ୍ଷିତ କରିବା ।
**Civilised**, **Civilized**, *a.* ସଭ୍ୟ,
ଶିଷ୍ଟ, ଭଦ୍ର, ମାର୍ଜିତ ।

**Civility**, *n.* ଶିଷ୍ଟତା, ଭଦ୍ରତା, ଶିଷ୍ଟାଚାର
**Clack**, *v.* କର୍କଶ ଶବ୍ଦ କରିବା ।
**Clad**, *a.* ପରିହିତ, ବସ୍ତ୍ରାଚ୍ଛାଦିତ ।
**Claim**, *n.* ଦାବି, ଅଧିକାର; *v.* ଦାବି
କରିବା । [ ଯୋଗ୍ୟ ।
**Claimable**, *a.* ପ୍ରାପ୍ୟ, ଦାବି କରିବାର
**Claimant**, *n.* ଦାବିଦାର, ମୁଦେଇ ।
**Clam**, *v.* ଅଠା ଲଗାଇବା । [ କରିବା ।
**Clamber**, *v.* କଷ୍ଟରେ ଆରୋହଣ
**Clammy**, *a.* ଅଠାଳିଆ ।
**Clamorous**, *a.* କୋଳାହଳପୂର୍ଣ୍ଣ ।
**Clamour**, *n.* କୋଳାହଳ, ଗୋଳ-
ମାଳ; *v.* ଗୋଳମାଳ କରିବା ।
**Clan**, *n.* ବଂଶ, ଗୋଷ୍ଠୀ, ଜାତି, ଗୋତ୍ର ।
**Clandestine**, *a.* ଗୁପ୍ତ, ଅପ୍ରକାଶ୍ୟ ।
**Clandestinely**, *ad.* ଗୁପ୍ତଭାବରେ
**Clang**, *n.* ଝଣ୍ ଝଣ୍ ଶବ୍ଦ ।
**Clap**, *v.* କରତାଳି ଦେବା; *n.* କରତାଳି
**Clarification**, *n.* ସ୍ପଷ୍ଟୀକରଣ ।
**Clarify**, *v.* ସ୍ପଷ୍ଟ କରି ବୁଝାଇବା,
ପରିଷ୍କାର କରିବା ।
**Clarion**, *n.* ତୂରୀ, ଶିଙ୍ଗା ।
**Clarionet**, *n.* ବଂଶୀବିଶେଷ ।
**Clash**, *n.* ସଂଘର୍ଷ; *v.* ବିରୋଧ କରିବା ।
**Clasp**, *n.* ବନ୍ଧନ, ଆଲିଙ୍ଗନ; *v.* ଆବଦ୍ଧ
କରିବା, ଆଲିଙ୍ଗନ କରିବା ।
**Class**, *n.* ଶ୍ରେଣୀ, ବର୍ଗ, ବିଭାଗ ।

Classic, Classical, *a.* ପାଣ୍ଡିତ୍ୟ-ପୂର୍ଣ୍ଣ ଉଚ୍ଚକୋଟୀର ଗ୍ରନ୍ଥସମ୍ବନ୍ଧୀୟ ।
Classics, *n.* ଉଚ୍ଚକୋଟୀର ଗ୍ରନ୍ଥ ।
Classification, *n.* ଶ୍ରେଣୀବିଭାଗ ।
Classify, *v.* ଶ୍ରେଣୀବିଭାଗ କରିବା ।
Clatter, *v.* ଠକ୍ ଠକ୍ ଶବ୍ଦ କରିବା; *n.* ଠକ୍‌ଠକ୍ ଶବ୍ଦ ।
Clause, *n.* ଦଫା, ପ୍ରସଙ୍ଗ, ଖଣ୍ଡବାକ୍ୟ ।
Clavicle, *n.* ଗ୍ରୀବାସ୍ଥି ।
Claw, *n.* ପଶୁପକ୍ଷୀଙ୍କର ନଖ; *v.* ନଖରେ ଧରିବା ।
Clay, *n.* କର୍ଦ୍ଦମ, କାଦୁଅ, ପଙ୍କ, ମାଟି ।
Clayey, *a.* କର୍ଦ୍ଦମମୟ ।
Clean, *a.* ପରିଷ୍କୃତ, ନିର୍ମଳ, ସଫା ।
Cleanliness, *n.* ପରିଷ୍କାର, ଶୁଦ୍ଧତା, ପରିଚ୍ଛନ୍ନତା । [ ପରିଷ୍କାରପ୍ରିୟ ଜାଗ୍ରତ ।
Cleanly, *ad.* ପରିଷ୍କୃତଭାବରେ; *a.*
Cleanness, *n.* ପରିଷ୍କୃତ, ଶୁଚିତା ।
Cleanse, *v.* ପରିଷ୍କାର ବା ସଫା କରିବା
Clear, *a.* ନିର୍ମଳ, ସଫା, ସ୍ପଷ୍ଟ, ଶୁଦ୍ଧ, ଉଜ୍ଜ୍ୱଳ; *v.* ନିର୍ମଳ କରିବା ବା ହେବା ।
Clearance, *n.* ବାଧା ଦୂରୀକରଣ ।
Clearly, *ad.* ନିର୍ମଳଭାବରେ, ସ୍ପଷ୍ଟ-ରୂପେ । [ ନିର୍ମଳତା ।
Clearness, *n.* ସ୍ପଷ୍ଟତା, ଶୁଦ୍ଧତା,
Cleave, *v.* ଫଟାଇବା, ଚିରିବା ।
Cleft, *a.* ଫଟା, ଚିରା ।

Clemency, *n.* ଦୟା, କୃପା, କରୁଣା ।
Clement, *a.* ଦୟାଳୁ, ସଦୟ, କୃପାଳୁ, ଦୟାବାନ୍, ଧୀର ।
Clergy, *n.* ଧର୍ମୋପଦେଶକବର୍ଗ ।
Clergyman, *n.* ଧର୍ମୋପଦେଷ୍ଟା, ପାଦ୍ରୀ ।
Cleric, Clerical, *a.* ଧର୍ମୋପ-ଦେଷ୍ଟାସମ୍ବନ୍ଧୀୟ, କିରାନିସମ୍ବନ୍ଧୀୟ ।
Clerk, *n.* ଧର୍ମମଣ୍ଡଳୀର ପରିଚାଳକ, କିରାନି, କାର୍ଯ୍ୟାଳୟର ସହକାରୀ ।
Clerkship, *n.* କିରାନିଗିରି ।
Clever, *a.* ଚତୁର, ଚାଲାଖ, ନିପୁଣ ।
Clew, *n.* ସୂତାଗୁଳି । [ କର୍କଶ ଶବ୍ଦ ।
Click, *v.* କର୍କଶ ଶବ୍ଦ କରିବା; *n.*
Client, *n.* ଓକିଲମୁକ୍ତାରଙ୍କ ମହକିଲ, ଖରିଦଦାର, ଗ୍ରାହକ ।
Clientele, *n.* ମହକିଲସମୂହ, ନେତାଗଣ, ଗ୍ରାହକବର୍ଗ ।
Cliff, *n.* ପାହାଡ଼, ପର୍ବତଶୃଙ୍ଗ ।
Cliffy, *a.* ଶିଖରବିଶିଷ୍ଟ ।
Climate, *n.* ଜଳବାୟୁ ।
Climatic, Climatical, *a.* ଜଳବାୟୁସମ୍ବନ୍ଧୀୟ । [ ଅଭ୍ୟସ୍ତ କରିବା ।
Climatise, *v.* ନୂତନ ଜଳବାୟୁରେ
Climatology, *n.* ଜଳବାୟୁବିଜ୍ଞାନ ।
Climax, *n.* ଆରୋହଣପଦ୍ଧତି, ଶୀର୍ଷ, ପରିଣତି ।

**Climb**, *v.* ଆରୋହଣ କରିବା, ଉଠିବା ।
**Climber**, *n.* ଆରୋହଣକାରୀ ।
**Clime**, *n.* ଦେଶ, ଅଞ୍ଚଳ ।
**Cling**, *v.* ଲାଗି ରହିବା, ଧରି ରହିବା, ଝୁଲି ରହିବା ।
**Clinic, Clinique**, *n.* ରୋଗୀର ଶଯ୍ୟା ନିକଟରେ ଶିକ୍ଷାଦାନ ପଦ୍ଧତି ।
**Clinical**, *a.* ଶଯ୍ୟାଗତ ରୋଗୀର ନିକଟବର୍ତ୍ତୀ । [ ଝଣଝଣ ଶବ୍ଦ ।
**Clink**, *v.* ଝଣଝଣ ଶବ୍ଦ କରିବା; *n.*
**Clip**, *v.* କଇଁଚିରେ କାଟିବା, ଅଗ କାଟିବା, କାଟି ଛୋଟ କରିବା; *n.* ଚପି ଧରିବାର ଉପକରଣ ।
**Clipper**, *n.* କର୍ତ୍ତନକାରୀ, ଦ୍ରୁତଗାମୀ ଜାହାଜବିଶେଷ ।
**Clique**, *n.* ଷଡ଼ଯନ୍ତ୍ର, ଏକମତବାଦୀ ସ୍ୱତନ୍ତ୍ର ଦଳ, କୁଟମିତ । [ କୁଟମିତଙ୍କ ।
**Cliquey, Cliquy**, *a.* କୁଚକ୍ରୀ,
**Cloak**, *n.* ହୁଗୁଲା ଅଙ୍ଗରଖା, ଛଳନା, ବାହାନା; *v.* ଘୋଡ଼ାଇବା । [ ଯନ୍ତ୍ର ।
**Clock**, *n.* ବଡ଼ ଘଣ୍ଟା, ସମୟନିର୍ଦ୍ଦେଶକ
**Clockwise**, *ad.* ଘଣ୍ଟାର କଣ୍ଟା ଯେଉଁ ଦିଗରେ ଗତି କରେ ଅର୍ଥାତ୍ ଡାହାଣରୁ ବାମକୁ (*opp.* **Anti-clockwise**)
**Clod**, *n.* ଢେଲା, ଢେଲ, ମାଟିପିଣ୍ଡୁଳା ।
**Clog**, *n.* ବ୍ୟାଘାତ, ବାଧା; *v.* ଗତିରୋଧ କରିବା ।

**Cloggy**, *a.* ବ୍ୟାଘାତକାରୀ, ଗାଢ଼ ।
**Cloister**, *n.* ମଠ, ଧର୍ମଶାଳା ।
**Close**, *n.* ସମାପ୍ତି, ଶେଷ, ବିରତି; *v.* ଶେଷ କରିବା, ବନ୍ଦ କରିବା; *a.* ଗୁପ୍ତ, ନିକଟ; *ad.* ନିବିଡ଼ଭାବରେ ।
**Closely**, *ad.* ଦୃଢ଼ଭାବରେ, ମନୋଯୋଗସହ ।
**Closeness**, *n.* ନୈକଟ୍ୟ, ଘନତା ।
**Closet**, *n.* ସାନ କୋଠରି, ଗୁପ୍ତ ଗୃହ ।
**Closing**, *n.* ଶେଷ, ସମାପ୍ତି ।
**Closure**, *n.* ବନ୍ଦ, ବେଷ୍ଟନ, ସମାପ୍ତି, ବିରତି । [ ଜମାଟ ବାନ୍ଧିବା ।
**Clot**, *n.* ଜମାଟ ବାନ୍ଧିଥିବା ରକ୍ତ; *v.*
**Cloth**, *n.* ବସ୍ତ୍ର, ଲୁଗା, କନା ।
**Clothe**, *v.* ଲୁଗା ପିନ୍ଧିବା, ବସ୍ତ୍ରଦ୍ୱାରା ଆବୃତ କରିବା ।
**Clothes**, *n.* ପରିଚ୍ଛଦ, ପୋଷାକ ।
**Clothier**, *n.* ପୋଷାକନିର୍ମାତା ବା ପୋଷାକବିକ୍ରେତା ।
**Clothing**, *n.* ପରିଚ୍ଛଦ, ପୋଷାକ ।
**Clotted-hair**, *n.* ଜଟା ।
**Cloud**, *n.* ମେଘ, ଅନ୍ଧକାର; *v.* ମେଘାଚ୍ଛନ୍ନ କରିବା ।
**Cloudiness**, *n.* ମେଘାଚ୍ଛନ୍ନତା ।
**Cloudless**, *a.* ମେଘଶୂନ୍ୟ ।
**Cloudy**, *a.* ମେଘାଚ୍ଛନ୍ନ, ମେଦୁଆ, ଅନ୍ଧାରୁଆ ।

**Clough**, *n.* ପାହାଡ଼ର ଫାଟ ।
**Clove**, *n.* ଲବଙ୍ଗ ।
**Cloven**, *a.* ଦ୍ୱିଧାବିଭକ୍ତ, ଫଟା, ଚିରା ।
**Cloven-footed**, *a.* ଦ୍ୱିଧାବିଭକ୍ତ ଖୁରବିଶିଷ୍ଟ । [ ଲୋକ ।
**Clown**, *n.* ବିଦୂଷକ, ଭଣ୍ଡ, ଅଶିକ୍ଷିତ
**Clownish**, *a.* ଅସଭ୍ୟ, ଅଭଦ୍ର ।
**Club**, *n.* ଗଦା, ସମାଜ, ସଭା; *v.* ଗଦାରେ ପ୍ରହାର କରିବା ।
**Clue**, *n.* ସନ୍ଧାନ, ଗୁପ୍ତ ତଥ୍ୟ ।
**Clump**, *n.* କାଠମୁଣ୍ଡା, ବୁଦାଜଙ୍ଗଲ ।
**Clumsily**, *ad.* କୁତ୍ସିତଭାବରେ ।
**Clumsy**, *a.* ମୂଢ଼, ଅନାଡ଼ି, କୁତ୍ସିତ ।
**Cluster**, *n.* ଗୁଚ୍ଛ, ପେନ୍ଥା, କାନ୍ଧି; *v.* ଗୁଚ୍ଛ କରିବା । [ ଭାବରେ ଧରିବା ।
**Clutch**, *n.* ହାତମୁଠା; *v.* ଦୃଢ଼-
**Coach**, *n.* ଘୋଡ଼ାଚକିଆ ଗାଡ଼ି; *v.* ପରୀକ୍ଷାଭାବରେ ପଢ଼ାଇବା ।
**Coachman**, *n.* ଗାଡ଼ିଚାଳକ, କଚୁଆନ, ଗାଡ଼ିବାଲା । [ ପ୍ରୟୋଗ ।
**Coaction**, *n.* ଜବରଦସ୍ତି, ବଳ-
**Coadjutor**, *n.* ସହକାରୀ, ସହଯୋଗୀ, ଅଂଶୀଦାର । [ ଗାଢ଼ ହେବା ।
**Coagulate**, *v.* ଜମାଟ ବାନ୍ଧିବା,
**Coal**, *n.* ପଥରକୋଇଲା ।
**Coalesce**, *v.* ସଂଲଗ୍ନ ହେବା, ମିଶିଯିବା
**Coalition**, *n.* ସମ୍ମିଳନ, ସଂଯୋଗ ।
**Coal-mine**, *n.* କୋଇଲାଖଣି ।
**Coal-tar**, *n.* ଆଲକାତରା ।
**Coarse**, *a.* ମୋଟା, ଅଭଦ୍ର, ଅଶିଷ୍ଟ, ଅମାର୍ଜିତ ।
**Coast**, *n.* ସମୁଦ୍ରତଟ, ଉପକୂଳ; *v.* ସମୁଦ୍ର ଉପକୂଳରେ ଜାହାଜ ଚଳାଇବା ।
**Coastal**, *a.* ସମୁଦ୍ରତଟସ୍ଥିତ, ଉପକୂଳବର୍ତ୍ତୀ ।
**Coat**, *n.* କୁର୍ତ୍ତା, ଅଙ୍ଗରଖା, ପଶୁଚର୍ମ, ରଙ୍ଗର ପୋଛ; *v.* ଲିପିବା, ପୋଛ ରଙ୍ଗ ଦେବା । [ କୋଟକନା ।
**Coating**, *n.* ଆଚ୍ଛାଦନ, ବୋଳ,
**Coax**, *v.* ଭୁଲେଇବା, ଫୁସଲାଇବା ।
**Coaxer**, *n.* ପ୍ରତାରଣାକାରୀ ।
**Cob**, *n.* ବୁଢ଼ିଆଣୀ ।
**Cobalt**, *n.* ଧାତୁବିଶେଷ ।
**Cobble**, *v.* ଜୋତା ପ୍ରଭୃତି ମରାମତି କରିବା । [ ମୋଟା ।
**Cobbler**, *n.* ଜୋତାମରାମତକାରୀ,
**Cobra**, *n.* ଗୋଖର ସାପ ।
**Cobweb**, *n.* ବୁଢ଼ିଆଣୀ ବା ମାକଡ଼ସା ଜାଲ । [ ଦ୍ରବ୍ୟବିଶେଷ ।
**Cocaine**, *n.* କୋକେନ୍, ମାଦକ-
**Cock**, *n.* କୁକ୍କୁଡ଼ା, ପୁରୁଷପକ୍ଷୀ ।
**Cockerel**, *n.* କୁକ୍କୁଡ଼ା ଛୁଆ ।
**Coffin**, *n.* ଶବାଧାର, କୋକେଇ ।
**Cog**, *n.* ଚକର ଦାନ୍ତ ।

Cogency, *n.* ସାମର୍ଥ୍ୟ; ଗୁରୁତ୍ୱ ।
Cogent, *a.* ଦୃଢ଼, ଅଟଳ, ବିଶ୍ୱାସଜନକ
Cogitable, *a.* ବିବେଚନୀୟ ।
Cogitate, *v.* ବିବେଚନା କରିବା, ଚିନ୍ତା କରିବା । [ ବିବେଚନା ।
Cogitation, *n.* ଗମ୍ଭୀର ଚିନ୍ତା,
Cogitative, *a.* ଚିନ୍ତାଶୀଳ ।
Cognate, *a.* ସହଜାତ, ସଗୋତ୍ର, ସ୍ୱଜାତୀୟ ।
Cognition, *n.* ବୋଧଶକ୍ତି, ଅନୁଭୂତି ।
Cognisable, Cognizable, *a.* ବୋଧଗମ୍ୟ, ଜ୍ଞେୟ, ବିଚାରଯୋଗ୍ୟ ।
Cognisance, Cognizance, *n.* ବିଚାରାର୍ଥ ଗ୍ରହଣ, ପରିଚୟ ।
Cognisant, Cognizant, *a.* ପରିଚିତ, ଜ୍ଞାତ, ବିଚାରାର୍ଥ ଗୃହୀତ ।
Cohabit, *v.* ସହବାସ କରିବା ।
Cohabitation, *n.* ସହବାସ, ମୈଥୁନକ୍ରିୟା, ରମଣ ।
Coheir, *n.* ସହଉତ୍ତରାଧିକାରୀ ।
Coherence, Coherency, *n.* ସଙ୍ଗତି, ସମ୍ମିଳନ, ସମ୍ପର୍କ ।
Coherent, *a.* ସଲଗ୍ନ, ସୁସମ୍ବଦ୍ଧ, ସଙ୍ଗତ, ସମ୍ବନ୍ଧାନ୍ୱିତ ।
Cohesion, *n.* ସଂଯୋଗାବସ୍ଥା, ସଂଯୋଗ । [ ସଂଯୋଗଶୀଳ ।
Cohesive, *a.* ସଂଯୋଗକାରୀ,
Cohesiveness, *n.* ସଂଯୋଗଶୀଳତା
Cohort, *n.* ସୈନ୍ୟସମୂହ ।
Coiffure, *n.* ଓଢ଼ଣୀ, ମସ୍ତକର ଆବରଣ
Cockpit, *n.* ଜାହାଜ ବା ଉଡ଼ାଜାହାଜରେ ନିର୍ଦ୍ଦିଷ୍ଟ ସ୍ଥାନ ।
Cockatoo, *n.* କାକତୁଆ ପକ୍ଷୀ ।
Cockroach, *n.* ଅସରପା ।
Cockscomb, *n.* କୁକ୍କୁଡ଼ାର ଚୂଳ ।
Cocksure, *a.* ଦୃଢ଼ନିଶ୍ଚିତ ।
Cockney, *n.* ମାଇଚିଆ, ସ୍ତ୍ରୈଣ ବ୍ୟକ୍ତି
Cocoa, *n.* କୋକୋ ବୀଜର ଚୂର୍ଣ୍ଣ, ଏଥିରେ ପ୍ରସ୍ତୁତ ପାନୀୟ ।
Cocoanut, Coconut, *n.* ନଡ଼ିଆ ଗଛ, ନଡ଼ିଆ ଫଳ ।
Cocoon, *n.* ଗୋଟିପୋକର ଖୋସା ।
Cod, *n.* ବୀଜକୋଷ, ଶୁଙ୍ଗା, ଖୋଳ, ସାମୁଦ୍ରିକ ମତ୍ସ୍ୟବିଶେଷ ।
Code, *n.* ନିୟମ, ବିଧି, ସଂହିତା, ବ୍ୟବସ୍ଥା, ଆଇନ, ସାଙ୍କେତିକ ଭାଷା ବା ଲେଖା ।
Codification, *n.* ବିଧିବଦ୍ଧକରଣ, ବ୍ୟବସ୍ଥାପ୍ରଣୟନ । [ ପ୍ରଣୟନ କରିବା ।
Codify, *n.* ନିୟମବଦ୍ଧ କରିବା, ଆଇନ
Coeducation, *n.* ସହଶିକ୍ଷା, ବାଳକବାଳିକାଙ୍କର ଏକତ୍ର ଶିକ୍ଷା ।
Coequal, *a.* ପରସ୍ପର ସମାନ ।
Coequality, *n.* ପରସ୍ପର ସାମ୍ୟ ।
Coerce, *v.* ଦମନ କରିବା, ବାଧ୍ୟ କରିବା

**Coercion,** *n.* ଦମନ, ଶାସନ, ବଳପ୍ରୟୋଗ, ଜବରଦସ୍ତି ।
**Coercive,** *a.* ଦମନମୂଳକ ।
**Co-exist,** *v.* ଏକ କାଳରେ ଅବସ୍ଥାନ କରିବା ।
**Co-existence,** *n.* ସହାବସ୍ଥାନ, [ ଏକକାଳୀନ ଅବସ୍ଥିତ ।
**Co-existent,** *a.* ସମକାଳରେ ଅବସ୍ଥିତ ।
**Coffee,** *n.* କଫି, ପାନୀୟ ଦ୍ରବ୍ୟ- [ ବିଶେଷ ।
**Coffee-house,** *n.* କଫି ଖାଇବାର ଆଡ୍ଡା ବା ହୋଟେଲ ।
**Coffer,** *n.* ସିନ୍ଦୁକ, ଧନଭଣ୍ଡାର ।
**Coil,** *n.* କୁଣ୍ଡଳୀ, ଗୋଲାକାର ପଦାର୍ଥ; *v.* କୁଣ୍ଡଳୀ ପରି କରିବା ।
**Coin,** *n.* ମୁଦ୍ରା, ଟଙ୍କା ପଇସା ପ୍ରଭୃତି; *v.* ମୁଦ୍ରା ପ୍ରସ୍ତୁତ କରିବା ।
**Coinage,** *n.* ମୁଦ୍ରାନିର୍ମାଣ, ମୁଦ୍ରା-ନିମନ୍ତେ ପଦ୍ଧତି ।
**Coincide,** *v.* ଏକତ୍ର ଘଟିବା, ସର୍ବତୋ- [ ଭାବେ ମିଳିଯିବା ।
**Coincidence,** *n.* ସଂଯୋଗ, ମେଳ, ମତୈକ୍ୟ, ସଂଘଟନ ।
**Coincident,** *a.* ସର୍ବତୋଭାବେ ମିଳିତ, ଏକକାଳରେ ସଂଘଟିତ ।
**Coiner,** *n.* ମୁଦ୍ରାନିର୍ମାଣକାରୀ ।
**Coir,** *n.* ନଡ଼ିଆକତା ।
**Coition,** *n.* ମୈଥୁନ, ସହବାସ, ଯୌନମିଳନ ।
**Coke,** *n.* ଦରପୋଡ଼ା କୋଇଲା ।
**Colander,** *n.* ଛାଲୁଣି, ଛାଣିବାର ପାତ୍ର
**Colation,** *n.* ଛାଣିବା କାର୍ଯ୍ୟ ।
**Cold,** *n.* ଶୈତ୍ୟ, ଶ୍ଲେଷ୍ମା, ସର୍ଦ୍ଦି; *a.* ଶୀତଳ, ଉଦାସୀନ, ସ୍ନେହଶୂନ୍ୟ ।
**Coldish,** *a.* କିଞ୍ଚିତ୍ ଶୀତଳ ।
**Coldly,** *ad.* ଉଦାସୀନଭାବରେ, ଅନାଦର ସହକାରେ ।
**Coldness,** *n.* ଶୀତଳତା, ଆଦରର [ ଅଭାବ ।
**Colic,** *n.* ଉଦର ଶୂଳ, ପେଟମରା ରୋଗ
**Collaborate,** *v.* ଏକତ୍ର ମିଳି କାର୍ଯ୍ୟ କରିବା, ସହଯୋଗ କରିବା ।
**Collaboration,** *n.* ସହଯୋଗିତା, ଏକତ୍ର ମିଶି କାର୍ଯ୍ୟକରଣ ।
**Collaborator,** *n.* ସହଯୋଗୀ, [ ସହକର୍ମୀ ।
**Collapse,** *v.* ସନ୍ନିପାତ ଧରିବା, ଭାଙ୍ଗି ପଡ଼ିବା; *n.* ଭୂମିରେ ପତନ, ଧ୍ୱଂସ ।
**Collapsible,** *a.* ସଙ୍କୋଚନଶୀଳ ।
**Collar,** *n.* ଗଳାବନ୍ଧ; *v.* ଗଳାବନ୍ଧ-ଦ୍ୱାରା ଧରିବା ।
**Collar-bone,** *n.* ଗଳାର ଅସ୍ଥି ।
**Collate,** *v.* ସଂଗ୍ରହ କରିବା, ମିଳେଇବା
**Collateral,** *a.* ଆନୁଷଙ୍ଗିକ, ପାର୍ଶ୍ୱଗତ
**Collation,** *n.* ଯାଞ୍ଚ, ପ୍ରଦାନ ।
**Collator,** *n.* ସଙ୍କଳନକାରୀ ।
**Colleague,** *n.* ସହକର୍ମୀ, ସଙ୍ଗୀ, ସହଯୋଗୀ ।

Collect, *v.* ସଂଗ୍ରହ କରିବା, ଆଦାୟ କରିବା, ଏକତ୍ର କରିବା ।
Collected, *a.* ସଂଗୃହୀତ ।
Collection, *n.* ସଂଗ୍ରହ, ଆଦାୟ, ସଞ୍ଚୟ, ସଙ୍କଳନ, ଏକତ୍ରୀକରଣ ।
Collective, *a.* ସମ୍ମିଳିତ, ଏକତ୍ରୀକୃତ, ସଂଗୃହୀତ, ରାଶୀକୃତ ।
Collectively, *ad.* ସମୂହଭାବରେ, ଏକତ୍ର ମିଳି । [ ଶାସନାଧିପତି ।
Collector, *n.* ସଂଗ୍ରାହକ, କଲ୍ଟର
Collectorate, *n.* କଲ୍ଟର ଶାସନାଧିପଙ୍କ କାର୍ଯ୍ୟାଳୟ ।
College, *n.* କଲେଜ, ମହାବିଦ୍ୟାଳୟ ।
Collegian, *n.* ମହାବିଦ୍ୟାଳୟର ଛାତ୍ର ।
Collegiate, *a.* କଲେଜସମ୍ବନ୍ଧୀୟ ।
Collide, *v.* ପରସ୍ପର ଆଘାତ କରିବା ।
Collier, *n.* ପଥରକୋଇଲି ଖୋଳିବା ଲୋକ; କୋଇଲବାହୀ ଜାହାଜ ।
Colliery, *n.* ପଥରକୋଇଲି ଖଣି ।
Colligate, *v.* ଏକତ୍ର ବନ୍ଧନ କରିବା ।
Collinear, *a.* ଏକ ସରଳରେଖାରେ ଅବସ୍ଥିତ । [ଆଘାତ ବା ସଂଘର୍ଷ, ବିରୋଧ ।
Collision, *n.* ଦୁଇ ବସ୍ତୁର ପରସ୍ପର
Colloquial, *a.* କଥୋପକଥନ ସମ୍ବନ୍ଧୀୟ, କଥାବାର୍ତ୍ତାରେ ପ୍ରଚଳିତ ।
Colloquialism, *n.* ଲେଖାରେ କଥିତ ଇତର ଭାଷାର ପ୍ରୟୋଗ ।
Collusion, *n.* କୁମନ୍ତ୍ରଣା, କୁପରାମର୍ଶ ।
Collusive, *a.* ପ୍ରତାରକ, କୁମନ୍ତ୍ରଣାକାରୀ । [ ଆଖିରେ ଲଗାଇବା କଳା ।
Collyrium, *n.* କଜ୍ଜଳ, ଅଞ୍ଜନ,
Colon, *n.* ବାକ୍ୟଚ୍ଛେଦସୂଚକ ଚିହ୍ନ ( : )
Colonel, *n.* ସେନାପତି, ସେନାବିଭାଗର ପଦବୀବିଶେଷ, କର୍ଣ୍ଣେଲ ।
Colonial, *a.* ଔପନିବେଶିକ, ବିଦେଶରେ ବସତିସ୍ଥାପନବିଷୟକ ।
Colonisation, Colonization, *n.* ଉପନିବେଶ ସ୍ଥାପନ ।
Colonise, Colonize, *v.* ଉପନିବେଶ ସ୍ଥାପନ କରିବା, ଅନ୍ୟ ଦେଶରେ ବସବାସ କରି ରହିବା ।
Colonist, *n.* ଉପନିବେଶର ଅଧିବାସୀ ।
Colonnade, *n.* ଶ୍ରେଣୀବଦ୍ଧ ସ୍ତମ୍ଭ ।
Colony, *n.* ଉପନିବେଶ, ବିଦେଶରେ ସ୍ଥାୟୀ ବସବାସ ।
Colossal, *a.* ବିରାଟକାୟ, ପ୍ରକାଣ୍ଡ ।
Colosseum, *n.* ପ୍ରଦର୍ଶନୀମନ୍ଦିର ବୃହତ୍ ଅଟ୍ଟାଳିକା ବା କ୍ରୀଡ଼ାମଞ୍ଚ ।
Colour, *n.* ବର୍ଣ୍ଣ, ରଙ୍ଗ; *v.* ରଙ୍ଗ ଦେବା, ରଙ୍ଗରେ ଚିତ୍ର କରିବା ।
Colourless, *a.* ବର୍ଣ୍ଣହୀନ ।
Colours, *n.* ପତାକା, ଧ୍ୱଜା, ବାନା ।
Colt, *n.* ଘୋଡ଼ାଛୁଆ । [ ସ୍ତମ୍ଭ ।
Column, *n.* ଶ୍ରେଣୀ, ଧାଡ଼ି, ପତ୍ରିକାର

**Columnist,** *n.* ପତ୍ରିକା ସ୍ତମ୍ଭର ଲେଖକ ।
[ ଆବେଶ ।
**Coma,** *n.* ଅଚୈତନ୍ୟ ଅବସ୍ଥା, ନିଦ୍ରାର
**Comatose,** *a.* ନିଦ୍ରାଳୁ, ଅଚେତନ ।
**Comb,** *n.* ପାନିଆ, ଚରୁଣି, କୁକ୍କୁଡ଼ାର ଚୂଳ; *v.* ପାନିଆରେ କୁଣ୍ଡାଇବା । [ କରିବା ।
**Combat,** *n.* ଲଢ଼େଇ, ଯୁଦ୍ଧ; *v.* ଯୁଦ୍ଧ
**Combatant,** *n.* ଯୋଦ୍ଧା, ବୀର ।
**Combination,** *n.* ମିଳନ, ସଂଯୋଗ, ମିଶ୍ରଣ, ଏକତ୍ରୀକରଣ ।
**Combine,** *v.* ମିଶାଇବା, ସଂଯୋଗ କରିବା, ଏକତ୍ର କରିବା । [ ଦାହ୍ୟ ।
**Combustible,** *a.* ଦହନଶୀଳ,
**Combustion,** *n.* ଅଗ୍ନିଦାହ, ଜ୍ୱଳନକ୍ରିୟା, ଦାହ୍ୟଗୁଣ । [ ଘଟିବା ।
**Come,** *v.* ଆସିବା, ଆଗମନ କରିବା,
**Comedian,** *n.* ମିଳନାନ୍ତକ ନାଟକ ବା ପ୍ରହସନର ଅଭିନେତା ବା ଲେଖକ ।
**Comedy,** *n.* ମିଳନାନ୍ତକ ନାଟକ, ପ୍ରହସନ ବା ହାସ୍ୟରସପୂର୍ଣ୍ଣ ପୁସ୍ତକ ।
**Comeliness,** *n.* ସୌନ୍ଦର୍ଯ୍ୟ, କାନ୍ତି, ଶୋଭା । [ ସୁଦର୍ଶ୍ୟ ।
**Comely,** *a.* ସୁନ୍ଦର, ମନୋହର,
**Comet,** *n.* ଲାଞ୍ଜାତାରା, ଧୂମକେତୁ ।
**Comfort,** *n.* ସାନ୍ତ୍ୱନା, ଆଶ୍ୱାସନା, ପ୍ରବୋଧ, ଆରାମ; *v.* ସାନ୍ତ୍ୱନା ଦେବା, ପ୍ରବୋଧ ଦେବା ।

**Comfortable,** *a.* ଆରାମଦାୟକ, ସାନ୍ତ୍ୱନାପ୍ରଦ । [ ସ୍ୱଚ୍ଛନ୍ଦରେ ।
**Comfortably,** *ad.* ଆରାମରେ,
**Comforter,** *n.* ଆଶ୍ୱାସଦାତା, ଗ୍ରୀବା ଆବରଣାର୍ଥ ପଶମ୍ ବସ୍ତ୍ରଖଣ୍ଡ । [ ପୂର୍ଣ୍ଣ ।
**Comic,** *a.* ହାସ୍ୟୋଦ୍ଦୀପକ, କୌତୁକ-
**Comical,** *a.* ହାସ୍ୟଜନକ ।
**Coming,** *a.* ଆସନ୍ତା, ଆଗାମୀ; *n.* ଆଗମନ ।
**Comity,** *n.* ଶିଷ୍ଟାଚାର, ଭଦ୍ରତା ।
**Comma,** *n.* ପ୍ରଥମଚ୍ଛେଦ ( , ) ।
**Command,** *n.* ଆଦେଶ, ହୁକୁମ; *v.* ଆଦେଶ ଦେବା । [ ଅଧିପତି, ଦୁର୍ଗପତି ।
**Commandant,** *n.* ସୈନ୍ୟଦଳର
**Commander,** *n.* ସୈନ୍ୟାଧ୍ୟକ୍ଷ, ପ୍ରଧାନ କର୍ମଚାରୀ, ଆଦେଶଦାତା ।
**Commander-in-chief,** *n.* ପ୍ରଧାନ ସେନାପତି । [ ଆଜ୍ଞା ।
**Commandment,** *n.* ଧର୍ମାନୁଶାସନ,
**Commemorable,** *a.* ସ୍ମରଣୀୟ, ସ୍ମରଣାର୍ଥ ପାଳନୀୟ । [ କରିବା ।
**Commemorate,** *v.* ସ୍ମୃତିରକ୍ଷା
**Commemoration,** *n.* ସ୍ମୃତିରକ୍ଷା, ସ୍ମରଣାର୍ଥ ଉତ୍ସବ ଅନୁଷ୍ଠାନ ।
**Commemorative,** *a.* ସ୍ମାରକ, ସ୍ମରଣାର୍ଥ ଅନୁଷ୍ଠିତ । [ ଉଦ୍ୟମ କରିବା ।
**Commence,** *v.* ଆରମ୍ଭ କରିବା,

Commencement, *n.* ଆରମ୍ଭ, ଉଦ୍ୟମ, ଆଦ । [ ଭାର ଅର୍ପଣ କରିବା ।
Commend, *v.* ପ୍ରଶଂସା କରିବା,
Commendable, *a.* ପ୍ରଶଂସନୀୟ, ପ୍ରଶଂସାର୍ହ, ପ୍ରଶଂସ୍ୟ ।
Commendation, *n.* ଗୁଣକୀର୍ତ୍ତନ, ପ୍ରଶଂସାବାଦ, ସୁଖ୍ୟାତପ୍ରକାଶ ।
Commendatory, *a.* ପ୍ରଶଂସାସୂଚକ
Commensurable, *a.* ଅନୁରୂପ ।
Commensurate, *a.* ସମପରିମିତ, ତୁଲ୍ୟ, ସମାନୁପାତକ ।
Comment, *n.* ଟୀକା, ଟିପ୍ପଣୀ, ଆଲୋଚନା; *v.* ଟୀକା ଲେଖିବା, ବ୍ୟାଖ୍ୟା କରିବା । [ ଭାଷ୍ୟ, ଆଲୋଚନା ।
Commentary, *n.* ଟୀକା, ବ୍ୟାଖ୍ୟା,
Commentator, *n.* ଟୀକାକାର, ଭାଷ୍ୟକାର । [ କାରବାର ।
Commerce, *n.* ବାଣିଜ୍ୟ, ବେପାର,
Commercial, *a.* ବାଣିଜ୍ୟବିଷୟକ ।
Commercially, *ad.* ବାଣିଜ୍ୟକ ଦୃଷ୍ଟିରେ । [ ମିଶ୍ରଣ କରିବା ।
Commingle, *v.* ଏକତ୍ର କରିବା,
Commiserate, *v.* ଦୟା କରିବା, କୃପା ପ୍ରଦର୍ଶନ କରିବା ।
Commiseration, *n.* ଦୟା ପ୍ରଦର୍ଶନ
Commisariat, *n.* ସୈନ୍ୟଦଳପାଇଁ ରସଦଯୋଗାଣ, ଉକ୍ତ କାର୍ଯ୍ୟରେ ନିଯୁକ୍ତ କର୍ମଚାରୀଗଣ ।
Commissary, *n.* ସୈନ୍ୟଦଳର ଖାଦ୍ୟ ଯୋଗାଇଦେବା ଲୋକ ।
Commission, *n.* ଦସ୍ତୁରି, ବଟା, ରେସମ, କାର୍ଯ୍ୟସାଧନ, କର୍ମରେ ନିଯୁକ୍ତିପତ୍ର; *v.* କ୍ଷମତା ପ୍ରଦାନ କରିବା, କର୍ମରେ ନିଯୁକ୍ତ କରିବା ।
Commissioner, *n.* ଉଚ୍ଚ ରାଜ-କର୍ମଚାରୀବିଶେଷ, କ୍ଷମତାପ୍ରାପ୍ତ ବ୍ୟକ୍ତି ।
Commit, *v.* ସମର୍ପଣ କରିବା, ଭାର ଦେବା, ସାଧନ କରିବା ।
Commitment, *n.* କାରାବରୋଧ, ସ୍ୱୀକୃତ, ଅଙ୍ଗୀକୃତ ଭାର ବା ଦାୟିତ୍ୱ ।
Committee, *n.* ସମିତି, ସଭା, କମିଟି
Commode, *n.* ମଳମୂତ୍ରତ୍ୟାଗ ପାଇଁ ପାତ୍ର ।
Commodious, *a.* ପ୍ରଶସ୍ତ, ଉପଯୁକ୍ତ
Commodity, *n.* ପଣ୍ୟଦ୍ରବ୍ୟ, ବାଣିଜ୍ୟଦ୍ରବ୍ୟ । [ ଅଧ୍ୟକ୍ଷ ।
Commodore, *n.* ନୌବାହିନୀର
Common, *a.* ସର୍ବସାଧାରଣ, ପ୍ରଚଳିତ, ଇତର; *n.* ପଡ଼ିଆଭୂମି, ପଡ଼ିଆ ।
Commonalty, *n.* ଜନସାଧାରଣ ।
Commoner, *n.* ସାଧାରଣ ଲୋକ
Commonly, *ad.* ସାଧାରଣତଃ, ସଚରାଚର । [ ସୁପ୍ରଚଳିତ ।
Commonplace, *a.* ଅତି ସାଧାରଣ,
Commonsense, *n.* ସାଧାରଣ ବୁଦ୍ଧି, ବ୍ୟାବହାରିକ ଜ୍ଞାନ ।

**Commonwealth**, *n*. ସମ୍ମିଳିତ ରାଜ୍ୟଗୋଷ୍ଠୀ । [ ଗଣ୍ଡଗୋଳ ।
**Commotion**, *n*. ବିଶୃଙ୍ଖଳା, ଆନ୍ଦୋଳନ,
**Communal**, *a*. ସାମ୍ପ୍ରଦାୟିକ ।
**Communalism**, *n*. ସାମ୍ପ୍ରଦାୟିକତା
**Commune**, *v*. କଥାବାର୍ତ୍ତା କରିବା ।
**Communicable**, *a*. ଜ୍ଞାପନୀୟ ।
**Communicate**, *v*. ଭାବ ବିନିମୟ କରିବା, ସମ୍ବାଦ ଦେବା, ଜଣାଇବା ।
**Communication**, *n*. ବାର୍ତ୍ତାଳାପ, ଗମନାଗମନ ପଥ, ସମ୍ବାଦ ବିନିମୟ, ସଂଯୋଗ ସ୍ଥାପନ ।
**Communion**, *n*. ପରସ୍ପର ସମ୍ଭାଷଣ, ସଂଯୋଗ, ଯୀଶୁ ଖ୍ରୀଷ୍ଟଙ୍କର ଶେଷ ରାତ୍ରି-ଭୋଜନ । [ ଇସ୍ତାହାର ।
**Communique**, *n*. ସରକାରୀ ବିଜ୍ଞପ୍ତି,
**Communism**, *n*. ସାମ୍ୟବାଦ ।
**Communist**, *n*. ସାମ୍ୟବାଦୀ ।
**Community**, *n*. ସମ୍ପ୍ରଦାୟ, ଗୋଷ୍ଠୀ । [ ବିନିମୟ ।
**Commutation**, *n*. ପରିବର୍ତ୍ତନ,
**Commute**, *v*. ପରିବର୍ତ୍ତନ କରିବା, ବଦଳାଇବା ।
**Compact**, *a*. ସଂକ୍ଷିପ୍ତ, ଦୃଢ଼, ନିବିଡ଼ ।
**Compactness**, *n*. ଦୃଢ଼ତା, ନିବିଡ଼ତା । [ ମିତ୍ର ।
**Companion**, *n*. ସହଚର, ସଙ୍ଗୀ,
**Companionable, Companiable**, *a*. ସଖ୍ୟୋପଯୋଗୀ, ମନୋମତ ।
**Companionship**, *n*. ସଖ୍ୟ, ବନ୍ଧୁତା । [ ବାଣିଜ୍ୟସଂଘ ।
**Company**, *n*. ସଙ୍ଗ, ଦଳ, ସମ୍ପ୍ରଦାୟ,
**Comparable**, *a*. ତୁଳନୀୟ ।
**Comparably**, *a*. ତୁଳନୀୟଭାବରେ ।
**Comparative**, *a*. ତୁଳନାତ୍ମକ, ଆପେକ୍ଷିକ ।
**Comparatively**, *ad*. ତୁଳନାତ୍ମକଭାବରେ, ଅପେକ୍ଷାକୃତ । [ ଦେବା ।
**Compare**, *v*. ତୁଳନା କରିବା, ଉପମା
**Comparison**, *n*. ତୁଳନା, ସାଦୃଶ୍ୟ ।
**Compartment**, *n*. ପୃଥକ୍ ଅଂଶ, ବଖରା, ଭାଗ, ରେଳଗାଡ଼ିର ଡବା ।
**Compartmental**, *a*. ଆଂଶିକ ।
**Compass**, *n*. ଦିଙ୍ନିର୍ଣ୍ଣାୟକ ଯନ୍ତ୍ର, ପରିସର; *v*. ବେଷ୍ଟନ କରିବା ।
**Compasses**, *n*. (*pl*.) ବୃତ୍ତ ଅଙ୍କନ କରିବାର ଯନ୍ତ୍ର । [ କରୁଣା ।
**Compassion**, *n*. ଦୟା, ଅନୁକମ୍ପା,
**Compassionable**, *a*. ଅନୁକମ୍ପନୀୟ
**Compassionate**, *a*. ଦୟାଳୁ, ପରଦୁଃଖକାତର । [ ଦୟାଳୁତା ।
**Compassionateness**, *n*.
**Compatibility**, *n*. ସଙ୍ଗତି, ଯୋଗ୍ୟତା ।

Compatible, *a.* ଉପଯୁକ୍ତ, ସଙ୍ଗତ, ଯୋଗ୍ୟ ।

Compatriot, *n.* ସ୍ୱଦେଶୀୟ ବ୍ୟକ୍ତି ।

Compeer, *n.* ସଙ୍ଗୀ, ସମାନଧର୍ମୀ ବ୍ୟକ୍ତି । [ କରିବା ।

Compel, *v.* ବାଧ୍ୟ କରିବା, ବଳାତ୍କାର

Compendium, *n.* ସାରସଂଗ୍ରହ, ସଂକ୍ଷିପ୍ତସାର ।

Compendious, *a.* ସଂକ୍ଷିପ୍ତ ।

Compensate, *v.* କ୍ଷତିପୂରଣ ଦେବା, ପରିଶୋଧ କରିବା । [ ପରିଶୋଧ ।

Compensation, *n.* କ୍ଷତିପୂରଣ,

Compensative, Compensatory, *a.* କ୍ଷତିପୂରଣମୂଳକ ।

Compete, *v.* ପ୍ରତିଯୋଗିତା କରିବା ।

Competence, Competency, *n.* ପ୍ରାଚୁର୍ଯ୍ୟ, ଯୋଗ୍ୟତା, ପାରଗତା, କ୍ଷମତା, ଜୀବନୋପାୟ । [ ପାରଗ ।

Competent, *a.* ଯୋଗ୍ୟ, ସମର୍ଥ,

Competition, *n.* ପ୍ରତିଯୋଗିତା ।

Competitive, *a.* ପ୍ରତିଯୋଗିତା-ମୂଳକ । [ ପ୍ରତିପକ୍ଷ ।

Competitor, *n.* ପ୍ରତିଯୋଗୀ,

Compilation, *n.* ସଂଗ୍ରହ, ସଙ୍କଳନ, ସଙ୍କଳିତ ଗ୍ରନ୍ଥ । [ କରିବା ।

Compile, *v.* ସଂଗ୍ରହ କରିବା, ସଙ୍କଳନ

Compiler, *n.* ସଂଗ୍ରାହକ, ସଙ୍କଳୟିତା

Complacence, Complacency, *n.* ଆତ୍ମସନ୍ତୋଷ, ଆତ୍ମତୃପ୍ତି ।

Complacent, *a.* ସନ୍ତୁଷ୍ଟ, ତୃପ୍ତ, ପ୍ରସନ୍ନ । [ ସହକାରେ ।

Complacently, *ad.* ସନ୍ତୋଷ

Complain, *v.* ଅଭିଯୋଗ ଆଣିବା, ଆପତ୍ତି କରିବା । [ ବାଦୀ ।

Complainant, *n.* ଅଭିଯୋଗକାରୀ,

Complaint, *n.* ଅଭିଯୋଗ, ଆପତ୍ତି, ନିବେଦନ । [ ଭଦ୍ରତା, ଶିଷ୍ଟାଚାର ।

Complaisance, *n.* ସୁଶୀଳତା,

Complaisant, *a.* ସୁଶୀଳ, ଶିଷ୍ଟ, ଭଦ୍ର । [ ଭାବରେ, ନମ୍ରତାସହକାରେ ।

Complaisantly, *ad.* ଶିଷ୍ଟ-

Complement, *n.* ପୂରଣକାରୀ ଅଂଶ, ଅନୁପୂରକ ଅଂଶ, ସମ୍ପୂର୍ଣ୍ଣତା ।

Complementary, *a.* ଅନୁପୂରକ ।

Complete, *v.* ସମ୍ପୂର୍ଣ୍ଣ କରିବା, ସମାପ୍ତ କରିବା; *a.* ସମ୍ପୂର୍ଣ୍ଣ, ସମାପ୍ତ, ସମଗ୍ର ।

Completely, *ad.* ସମ୍ପୂର୍ଣ୍ଣରୂପେ ।

Completion, *n.* ସମାପ୍ତି, ପୂର୍ଣ୍ଣତା ।

Complex, *a.* ସଙ୍କର, ମିଶ୍ର, ଜଟିଳ; *n.* ମାନସିକ ଅସ୍ୱାଭାବିକତା ।

Complexion, *n.* ଦେହର ବର୍ଣ୍ଣ, ଚେହେରା ।

Complexity, *n.* ଜଟିଳତା ।

**Compliance**, *n.* ସ୍ୱୀକୃତ, ଅଙ୍ଗୀକାର, ପଣପାଳନ । [ ଶିଷ୍ଟ ।
**Compliant**, *a.* ଆଜ୍ଞାକାରୀ, ବଶୀଭୂତ,
**Complicacy**, *n.* ଗୋଳମାଳିଆ ଅବସ୍ଥା, ଜଟିଳତା ।
**Complicate**, *v.* ଜଡ଼ିତ କରିବା, ଗୋଳମାଳିଆ କରିବା; *a.* ଜଟିଳ ।
**Complicated**, *a.* ଗୋଳମାଳିଆ, ଜଟିଳ, ମିଶ୍ରିତ । [ ଜଟିଳତା ।
**Complication**, *n.* ଗୋଳମାଳ,
**Complicity**, *n.* କୁକର୍ମରେ ସହାୟତା
**Compliment**, *n.* ପ୍ରଶଂସା, ସମ୍ମାନ, ସମାଦର; *v.* ଅଭିନନ୍ଦନ କରିବା ।
**Complimentary**, *a.* ସମାଦର-ପୂର୍ଣ୍ଣ, ସମ୍ମାନସୂଚକ । [ ସ୍ୱୀକୃତ ହେବା ।
**Comply**, *v.* ଅଙ୍ଗୀକାର କରିବା,
**Component**, *a.* ମିଶ୍ରଦ୍ରବ୍ୟର ବିଭିନ୍ନ ଅଂଶ ସମ୍ବନ୍ଧୀୟ; *n.* ମିଶ୍ରଦ୍ରବ୍ୟର ବିଭିନ୍ନ ଉପାଦାନ ।
**Compose**, *v.* ରଚନା କରିବା, ସ୍ଥିର ବୋଧ କରିବା, ଶାନ୍ତ ପାଇବା, ମୁଦ୍ରଣ ପାଇଁ ଅକ୍ଷର ଖଞ୍ଜିବା ।
**Composed**, *a.* ସ୍ଥିର, ଶାନ୍ତ ।
**Composedly**, *ad.* ସ୍ଥିରଭାବରେ ।
**Composer**, *n.* ରଚୟିତା, ଲେଖକ ।
**Composite**, *a.* ମିଶ୍ରିତ, ଜଟିଳ ।
**Composition**, *n.* ମିଶ୍ରଣ, ମିଳନ, ରଚନା ।
**Compositor**, *n.* ଛାପାଖାନାରେ ଅକ୍ଷରଯୋଜନାକାରୀ ବ୍ୟକ୍ତି । [ ସାର ।
**Compost**, *n.* ଖତ, ଏକଜାତୀୟ
**Composure**, *n.* ସ୍ଥୈର୍ଯ୍ୟ, ଶାନ୍ତି, ଧୈର୍ଯ୍ୟ
**Compound**, *n.* ମିଳନ, ମିଶ୍ରବସ୍ତୁ, ହତା; *v.* ମିଶ୍ରଣ କରିବା, ମିଳାଇବା ।
**Compounder**, *n.* ମିଶ୍ରଣ ପ୍ରକ୍ରିୟାରେ ଔଷଧପ୍ରସ୍ତୁତକାରୀ । [ କରିବା ।
**Comprehend**, *v.* ବୁଝିବା, ଧାରଣ
**Comprehensible**, *a.* ବୋଧଗମ୍ୟ ।
**Comprehension**, *n.* ଅବବୋଧ, ଜ୍ଞାନ, ଅବଧାରଣ । [ ପ୍ରଶସ୍ତ, ବ୍ୟାପକ ।
**Comprehensive**, *a.* ବିସ୍ତୃତ,
**Comprehensiveness**, *n.* ବ୍ୟାପକତ୍ୱ ।
**Compress**, *n.* କ୍ଷତ ବାନ୍ଧିବା ପାଇଁ କନାପୁଡ଼ା; *v.* ସଙ୍କୋଚନ କରିବା, ଚିପିବା, ମର୍ଦ୍ଦନ କରିବା ।
**Compressible**, *a.* ସଙ୍କୋଚନୀୟ ।
**Compression**, *n.* ଚାପପ୍ରଦାନ, ମର୍ଦ୍ଦନ । [ କାରକ ।
**Compressive**, *a.* ସଙ୍କୋଚନ-
**Comprise**, *v.* ଧାରଣ କରିବା, ଅନ୍ତର୍ଗତ କରିବା ।
**Compromise**, *v.* ସାଲିସ କରିବା, ରଫା କରିବା; *n.* ରଫା, ନିଷ୍ପତ୍ତି ।
**Compt**, *v.* count (ଦେଖ) ।

Comptrol, Comptroll, *v.* control (ଦେଖ) । [ (ଦେଖ) ।
Comptroller, *n.* controller
Compulsion, *n.* ବାଧ୍ୟତା, ବଳାତ୍କାର, ଜବରଦସ୍ତି । [ ମୂଳକଭାବରେ ।
Compulsorily, *ad.* ବାଧ୍ୟତା-
Compulsory, *a.* ବାଧ୍ୟତାମୂଳକ, ଅନିବାର୍ଯ୍ୟ । [ ପଶ୍ଚାତ୍ତାପ ।
Compunction, *n.* ଅନୁଶୋଚନା,
Computable, *a.* ଗଣନୀୟ ।
Computation, *n.* ଗଣନା, ସଂଖ୍ୟା, ହିସାବ । [ କରିବା ।
Compute, *v.* ଗଣନା କରିବା, ହିସାବ
Computer, *n.* ଗଣନାକାରୀ ।
Comrade, *n.* ସାଥୀ, ସଙ୍ଗୀ, ମିତ୍ର ।
Concave, *v.* ମଧ୍ୟନିମ୍ନ (*opp.* Convex) ।
Concavity, *n.* ମଧ୍ୟନିମ୍ନତା ।
Conceal, *v.* ଗୋପନ ରଖିବା, ଲୁଚାଇବା । [ ଲୁଚାଇବା କର୍ମ ।
Concealment, *n.* ଗୋପନ,
Concede, *v.* ମାନିନେବା, ସ୍ୱୀକୃତ ହେବା, ସମର୍ପଣ କରିବା ।
Conceit, *n.* ଦମ୍ଭ, ଆତ୍ମଶ୍ଳାଘା, ବଡ଼ିମା ।
Conceited, *a.* ଆତ୍ମାଭିମାନୀ, ଦାମ୍ଭିକ, ଗର୍ବୀ । [ ଗର୍ବସହକାରେ ।
Conceitedly, *ad.* ଅଭିମାନପୂର୍ବକ,

Conceivable, *a.* ଚିନ୍ତନୀୟ, ଅନୁମେୟ
Conceive, *v.* ଗର୍ଭଧାରଣ କରିବା, ଭାବିବା, ଅନୁଭବ କରିବା ।
Concentrate, *v.* କେନ୍ଦ୍ରୀଭୂତ କରିବା, ଗଭୀର ମନୋଯୋଗ ଦେବା ।
Concentration, *n.* ଏକାଗ୍ରତା, ପ୍ରଗାଢ଼ ମନୋଯୋଗ । [ ଐକକେନ୍ଦ୍ରିକ ।
Concentric, *a.* ଏକକେନ୍ଦ୍ରବିଶିଷ୍ଟ,
Concept, *n.* ଭାବନା, ଚିନ୍ତା, ଧାରଣା ।
Conception, *n.* ଚିନ୍ତା, ଧାରଣା, ଗର୍ଭଧାରଣ ।
Conceptive, *a.* ବୋଧକ୍ଷମ ।
Concern, *n.* ଭାବନା, ବ୍ୟାପାର, ସମ୍ପର୍କ, ବ୍ୟବସାୟ; *v.* ଚିନ୍ତିତ ହେବା, ସମ୍ବନ୍ଧାନ୍ୱିତ ହେବା । [ ସମ୍ପର୍କୀୟ ।
Concerned, *a.* ଚିନ୍ତିତ, ସଂଯୁକ୍ତ,
Concerning, *pre.* ସମ୍ବନ୍ଧରେ, ବିଷୟରେ । [ କାରବାର ।
Concernment, *n.* ବ୍ୟବସାୟ,
Concert, *n.* ସମ୍ମିଳିତ ଗୀତବାଦ୍ୟ; *v.* ଏକତ୍ର ମିଳି କାର୍ଯ୍ୟ କରିବା ।
Concession, *n.* ସ୍ୱୀକାର, ଛାଡ଼, ଅତିରିକ୍ତ ସୁବିଧା ।
Concessive, *a.* ସମ୍ମତିସୂଚକ ।
Conch, *n.* ଶଙ୍ଖ ।
Conciliate, *v.* ପୁନର୍ମିଳିତ କରିବା ।
Conciliation, *n.* ପୁନର୍ମିଳନ ।

**Conciliatory**, *a.* ମିଳନସୂଚକ ।
**Concise**, *a.* ସଂକ୍ଷିପ୍ତ, ଲଘୁ, ଅଳ୍ପ ।
**Conclave**, *n.* ନିଭୃତ ମିଳନ ସ୍ଥାନ, ଗୁପ୍ତ ସମିତ । [ କରିବା ।
**Conclude**, *v.* ସମାପ୍ତ ହେବା, ସିଦ୍ଧାନ୍ତ
**Conclusion**, *n.* ଉପସଂହାର, ସମାପ୍ତି, ସିଦ୍ଧାନ୍ତ । [ ପ୍ରମାଣିତ ।
**Conclusive**, *a.* ଚୂଡ଼ାନ୍ତ, ସିଦ୍ଧାନ୍ତ,
**Conclusively**, *ad.* ସିଦ୍ଧାନ୍ତରୂପେ ।
**Concoct**, *v.* ମିଶ୍ରଣ କରିବା, ମନରୁ ଗଢ଼ିବା, ପରିପକ୍ୱ କରିବା ।
**Concoction**, *n.* ମିଥ୍ୟାସୃଷ୍ଟି,କପୋଳ-କଳ୍ପନା, ପରିପାକ ।
**Concomitance**, *n.* ସଂଯୋଗ ।
**Concomitant**, *a.* ସଂଯୁକ୍ତ, ସହଗାମୀ, ଆନୁଷଙ୍ଗିକ ।
**Concord**, *n.* ସୌହାର୍ଦ୍ଦ, ଐକ୍ୟ, ମିଳନ
**Concordance**, *n.* ଐକ୍ୟ, ମିଳନ ।
**Concordant**, *a.* ଉପଯୁକ୍ତ, ଐକ୍ୟ-ବିଶିଷ୍ଟ । [ ଗହଳି ।
**Concourse**, *n.* ଜନତା, ଲୋକ-
**Concrete**, *a.* ବାସ୍ତବ, ନିର୍ଦ୍ଦିଷ୍ଟ; *n.* ଚୂନ ବାଲି ଗୋଡ଼ି ପ୍ରଭୃତିର ସମାହାର ।
**Concubine**, *n.* ରକ୍ଷିତା ସ୍ତ୍ରୀ, ଉପପତ୍ନୀ
**Concur**, *v.* ଏକମତ ହେବା, ସ୍ୱୀକୃତ ହେବା । [ ସଂଯୋଗ, ଏକତ୍ର ଅବସ୍ଥାନ ।
**Concurrence**, *n.* ମତୈକ୍ୟ,ସ୍ୱୀକୃତି,
**Concurrent**, *a.* ଏକତ୍ର ଅବସ୍ଥିତ, ଏକ ବିନ୍ଦୁରେ ମିଳିତ ।
**Concurrently**, *ad.* ମିଳିତ-ଭାବରେ, ଯୁଗପତ୍ । [ ସଂଘର୍ଷ କରିବା ।
**Concuss**, *n.* ଗୋଳମାଳ କରିବା,
**Concussion**, *n.* ଦୁଇ ବସ୍ତୁର ପରସ୍ପର ଆଘାତ, ସଂଘର୍ଷ । [ ଅବସ୍ଥିତ ।
**Concyclic**, *a.* ଏକ ବୃତ୍ତର ପରିଧିରେ
**Condemn**, *n.* ଦଣ୍ଡାଦେଶ ଦେବା, ଦୋଷୀ କରିବା । [ ଘୋର ନିନ୍ଦାବାଦ ।
**Condemnation**, *n.* ଦଣ୍ଡାଦେଶ,
**Condemned**, *a.* ଦଣ୍ଡିତ, ନିନ୍ଦିତ ।
**Condensation**, *n.* ଘନୀକରଣ, ସଙ୍କୋଚନ । [ ସଂକ୍ଷିପ୍ତ କରିବା ।
**Condense**, *v.* ଘନୀଭୂତ କରିବା,
**Condescend**, *v.* ବିନୀତ ହେବା, ଶିଷ୍ଟତା ପ୍ରଦର୍ଶନ କରିବା । [ ଶିଷ୍ଟତା ।
**Condescension**, *n.* ବିନୟ,ନମ୍ରତା,
**Condign**, *a.* ସମୁଚିତ, ଉପଯୁକ୍ତ ।
**Condiment**, *n.* ଆଚାର, ଚଟଣି, ତରକାରୀ ପ୍ରଭୃତି ।
**Condition**, *n.* ଅବସ୍ଥା, ଦଶା, ସର୍ତ୍ତ; *v.* ସୀମିତ କରିବା, ସ୍ଥିର କରିବା ।
**Conditional**, *a.* ନିୟମାବଦ୍ଧ, ସର୍ତ୍ତସାପେକ୍ଷ, ଅବସ୍ଥାନୁବର୍ତ୍ତୀ ।
**Condole**, *v.* ଶୋକ କରିବା, ସମ-ବେଦନା ପ୍ରକାଶ କରିବା ।

**Condolence**, *n.* ଶୋକ ବା ସମବେଦନା ପ୍ରକାଶ ।

**Condolent**, *a.* ସମବେଦନାଶୀଳ ।

**Condonation**, *n.* କ୍ଷମା, ଦୋଷ ମାର୍ଜନା । [ ମାର୍ଜନା କରିବା ।

**Condone**, *v.* କ୍ଷମା ଦେବା, ଦୋଷ

**Conduce**, *v.* ସାହାଯ୍ୟ କରିବା, ଅନୁକୂଳ ହେବା ।

**Conducive**, *a.* ସହାୟକ, ଅନୁକୂଳ ।

**Conduct**, *n.* ଆଚରଣ, ବ୍ୟବହାର, ସ୍ୱଭାବ, ପଥପ୍ରଦର୍ଶନ; *v.* ପଥ ଦେଖାଇବା, ପ୍ରେରଣ କରିବା । [ ପଥପ୍ରଦର୍ଶକ ।

**Conductor**, *n.* ନିର୍ବାହକ, ବାହକ,

**Cone**, *n.* ବୃତ୍ତାକାର ତଳବିଶିଷ୍ଟ ସୂଚ୍ୟଗ୍ର ଘନ ପଦାର୍ଥ । [ କରିବା ।

**Confabulate**, *v.* ଏକତ୍ର ଗଳ୍ପ

**Confabulation**, *n.* ଗପସପ ।

**Confect**, *v.* ମିଠେଇ, ମୋରବ୍ବା ପ୍ରଭୃତି ପ୍ରସ୍ତୁତ କରିବା । [ ପ୍ରସ୍ତୁତ ।

**Confection**, *n.* ମିଠେଇ ପ୍ରଭୃତିର

**Confectioner**, *n.* ମିଷ୍ଟାନ୍ନ ପ୍ରସ୍ତୁତ-କାରୀ, ଗୁଡ଼ିଆ, ମିଷ୍ଟାନ୍ନବିକ୍ରେତା ।

**Confederacy**, *n.* ସନ୍ଧି, ଏକ ମତରେ ଆବଦ୍ଧ ରାଜ୍ୟ ବା ଜାତିସମୂହ ।

**Confederate**, *a.* ଏକତାବଦ୍ଧ ।

**Confederation**, *n.* ନିର୍ଦ୍ଦିଷ୍ଟ ମତରେ ଆବଦ୍ଧ ରାଜ୍ୟ ବା ଜାତି ।

**Confer**, *v.* ଦାନ କରିବା, ପରାମର୍ଶ କରିବା । [ ପରାମର୍ଶ, ସମ୍ମେଳନ ।

**Conference**, *n.* ଆଲୋଚନା ସଭା,

**Confess**, *v.* ମାନିନେବା, ସ୍ୱୀକାର କରିବା । [ ସ୍ୱୀକାର, ଅଙ୍ଗୀକାର ।

**Confession**, *n.* ସ୍ୱୀକାରୋକ୍ତି, ଦୋଷ-

**Confessional**, *a.* ଅଙ୍ଗୀକାରସୂଚକ

**Confidant**, *n.* ବିଶ୍ୱାସର ପାତ୍ର, ବିଶ୍ୱାସୀ ଲୋକ । [ କରିବା ।

**Confide**, *v.* ବିଶ୍ୱାସ ରଖିବା, ଭରସା

**Confidence**, *n.* ବିଶ୍ୱାସ, ଆସ୍ଥା, ପ୍ରତ୍ୟୟ, ଭରସା ।

**Confident**, *a.* ନିଶ୍ଚିତ, ନିଃସନ୍ଦେହ ।

**Confidently**, *ad.* ନିଃସନ୍ଦେହରେ ।

**Confidential**, *a.* ଗୋପନୀୟ, ବିଶ୍ୱସ୍ତ

**Confidentially**, *ad.* ଗୋପନୀୟ ଭାବରେ । [ ଗଠନ ।

**Configuration**, *n.* ରୂପ, ଆକାର,

**Confine**, *v.* ଆବଦ୍ଧ କରିବା, ବନ୍ଦୀ କରିବା, ସୀମାବଦ୍ଧ କରିବା ।

**Confinement**, *n.* ଅଟକ, କଏଦ, ଅବରୋଧ, ସନ୍ତାନପ୍ରସବ ।

**Confirm**, *v.* ଦୃଢ଼ୀଭୂତ କରିବା, ବାହାଲ କରିବା, ସ୍ଥିର କରିବା ।

**Confirmation**, *n.* ଦୃଢ଼ୀକରଣ, ନିଶ୍ଚୟକରଣ, ସମର୍ଥନ । [ ଯୋଗ୍ୟ ।

**Confiscable**, *a.* ବାଜ୍ୟାପ୍ତ କରିବାର

**Confiscate**, *v.* ବାଜ୍ୟାପ୍ତ କରିବା, ବୃତ୍ତି ଉଚ୍ଛେଦ କରିବା ।
**Confiscation**, *n.* ବାଜ୍ୟାପ୍ତକରଣ, ବୃତ୍ତିର ଉଚ୍ଛେଦ ।
**Conflagration**, *n.* ଅଗ୍ନିକାଣ୍ଡ ।
**Conflict**, *n.* ସଂଘର୍ଷ, ଯୁଦ୍ଧ, କଳହ; *v.* ବିବାଦ କରିବା ।
**Conflicting**, *a.* ବିବଦମାନ, ବିରୋଧୀ
**Confluence**, *n.* ନଦନଦୀର ସଙ୍ଗମ-ସ୍ଥଳ, ପ୍ରବାହ, ଜନସମାଗମ ।
**Confluent**, *a.* ଏକତ୍ର ପ୍ରବାହିତ ।
**Conflux**, *n.* ସ୍ରୋତମାନଙ୍କର ସଂଯୋଗ
**Conform**, *v.* ଅନୁସାରୀ ହେବା, ନିୟମାନୁସରଣ କରିବା ।
**Conformable**, *a.* ଉପଯୁକ୍ତ ।
**Conformation**, *n.* ଆକୃତି, ଗଠନ
**Conformity**, *n.* ସାଦୃଶ୍ୟ, ସଙ୍ଗତି ।
**Confound**, *v.* ବ୍ୟତିବ୍ୟସ୍ତ କରିବା, ହତବୁଦ୍ଧି କରିବା ।
**Confounded**, *a.* ହତବୁଦ୍ଧି, ଚକିତ ।
**Confront**, *v.* ସମ୍ମୁଖବର୍ତ୍ତୀ କରିବା, ମୁହାଁମୁହିଁ ହେବା, ମୁକାବିଲା କରିବା ।
**Confuse**, *v.* ଅପ୍ରସ୍ତୁତ କରିବା, ଅସ୍ଥିର କରିବା । [ ଗୋଳମାଳ ।
**Confusion**, *n.* ଅସ୍ଥିରତା, ବୁଦ୍ଧିଭ୍ରମ,
**Confutation**, *n.* ଅପ୍ରମାଣକରଣ, ଖଣ୍ଡନ ।
**Confute**, *v.* ଖଣ୍ଡନ କରିବା, ଅପ୍ରମାଣ କରିବା । [ ବାନ୍ଧିବା ।
**Congeal**, *v.* ଘନ ହେବା, ଜମାଟ
**Congenial**, *a.* ସ୍ୱାଭାବିକ, ସଜାତୀୟ ।
**Congeniality**, *n.* ସଜାତୀୟତା, ସ୍ୱାଭାବିକତା । [ ବଂଶାନୁଗତ ।
**Congenital**, *a.* ଜନ୍ମଗତ, ଆଜନ୍ମ,
**Congest**, *v.* ଗଦାଳ କରିବା, ରକ୍ତ ଜମିବା । [ ରକ୍ତସଞ୍ଚୟ ।
**Congestion**, *n.* ଗଦାଳ, ଅତିରକ୍ତ
**Conglomerate**, *v.* ରାଶୀକୃତ କରିବା, ଜମେଇବା ।
**Conglomeration**, *n.* ନାନା ଦ୍ରବ୍ୟର ମିଶ୍ରଣ, ସ୍ତୂପୀକରଣ ।
**Congratulate**, *v.* ଶୁଭେଚ୍ଛା ଜଣାଇବା, ଅଭିନନ୍ଦନ କରିବା ।
**Congratulation**, *n.* ଶୁଭେଚ୍ଛା-ଜ୍ଞାପନ, ଅଭିନନ୍ଦନ । [ ଦାତା ।
**Congratulator**, *n.* ଅଭିନନ୍ଦନ-
**Congratulatory**, *a.* ଅଭିନନ୍ଦନ-ସୂଚକ । [ ଏକତ୍ର ମିଳିବା ।
**Congregate**, *v.* ସମବେତ ହେବା,
**Congregation**, *n.* ଜନସମାବେଶ, ସମାଜ, ଧର୍ମସଭା । [ ସମ୍ବନ୍ଧୀୟ ।
**Congregational**, *a.* ଧର୍ମସଭା-
**Congress**, *n.* ମହାସଭା, ମହାସମ୍ମେଳନ
**Congruence**, *n.* ଐକ୍ୟ, ସଙ୍ଗତି ।

**Congruent,** *a.* ଐକ୍ୟବିଶିଷ୍ଟ ।
**Congruity,** *n.* ଉପଯୁକ୍ତତା, ସାମ୍ୟ, ସଙ୍ଗତ, ଅନୁରୂପତା ।
**Congruous,** *a.* ଉପଯୁକ୍ତ, ସଙ୍ଗତ ।
**Congruously,** *ad.* ସଙ୍ଗତଭାବରେ
**Coniform,** *a.* ସୂଚୀକ୍ଷେତ୍ରାକାର ।
**Conjectural,** *a.* ଅନ୍ଦାଜ, ଅନୁମାନମୂଳକ । [ ଅନ୍ଦାଜ କରିବା; *n.* ଅନୁମାନ ।
**Conjecture,** *v.* ଅନୁମାନ କରିବା,
**Conjoin,** *v.* ସଂଯୁକ୍ତ କରିବା, ସଂଲଗ୍ନ କରିବା । [ ସଂଲଗ୍ନ, ସଂଯୁକ୍ତ ।
**Conjoined, Conjoint,** *a.*
**Conjointly,** *ad.* ସଂଯୁକ୍ତଭାବରେ ।
**Conjugal,** *a.* ଦାମ୍ପତ୍ୟ, ବୈବାହିକ ।
**Conjunction,** *n.* ସନ୍ଧି, ମିଳନ, ସଂଯୋଗ, ସଙ୍ଗମ, ଅବ୍ୟୟ ପଦ ।
**Conjunctive,** *a.* ସମ୍ମିଳିତ, ସଂଯୁକ୍ତ ।
**Conjuncture,** *n.* ଘଟଣାସନ୍ଧି, ଠିକ୍ ସମୟ, ସଙ୍କଟ, ସଂଯୋଗ, ସନ୍ଧି ।
**Conjuration,** *n.* କୁହୁକ, ଗୁଣିବିଦ୍ୟା
**Conjure,** *v.* ଶପଥପୂର୍ବକ ଆଦେଶ ଦେବା, ପ୍ରେତାତ୍ମାକୁ ଡାକିବା, କୁହୁକ ଦେଖାଇବା, ଅଭିଗ୍ରହ କରିବା ।
**Conjurer,** *n.* ଇନ୍ଦ୍ରଜାଲିକ, ଜାଦୁକର ।
**Connect,** *v.* ମିଳାଇବା, ସଂଯୁକ୍ତ କରିବା । [ ସମ୍ବନ୍ଧ, ସଂଯୋଗ, ସମ୍ପର୍କ ।
**Connection, Connexion,** *n.*
**Connective,** *a.* ସଂଯୋଗକାରୀ, ମିଳନକାରୀ, ସମ୍ବନ୍ଧଶୀଳ ।
**Connector,** *n.* ସଂଯୋଜକ ।
**Connivance,** *n.* ଜାଣି ନ ଜାଣିବାର ଛଳନା, ଦୋଷର ଉପେକ୍ଷା ।
**Connive,** *v.* ଦେଖି ନ ଦେଖିବା, ପରୋକ୍ଷରେ ଦୋଷର ପ୍ରଶ୍ରୟ ଦେବା ।
**Connoisseur,** *n.* ବିଚାରକ, ବିଜ୍ଞ ବ୍ୟକ୍ତି, ଗୁଣଗ୍ରାହୀ ଲୋକ ।
**Connotation,** *n.* ବିଶେଷ ଅର୍ଥ ।
**Connote,** *v.* ବିଶେଷ ଅର୍ଥ ପ୍ରକାଶ କରିବା, ଭାବ ବ୍ୟକ୍ତକରିବା ।
**Connubial,** *a.* ବୈବାହିକ, ଦାମ୍ପତ୍ୟ ।
**Conquer,** *v.* ଜୟ କରିବା, ଜିଣିବା ।
**Conquerable,** *a.* ଜୟଯୋଗ୍ୟ ।
**Conqueror,** *n.* ବିଜେତା, ବିଜୟୀ ବ୍ୟକ୍ତି । [ ରାଜ୍ୟାଦି ।
**Conquest,** *n.* ବିଜୟ, ବିଜୟଲବ୍ଧ
**Conscience,** *n.* ବିବେକ, ଧର୍ମବୁଦ୍ଧି, ସଦସଦ୍-ବିବେଚନା ଶକ୍ତି ।
**Conscientious,** *a.* ବିବେକୀ, ଧର୍ମଭୀରୁ, ବିଚାରବନ୍ତ, ପୁଣ୍ୟାତ୍ମା, ଧର୍ମପରାୟଣ । [ ସଦ୍ଭାବରେ ।
**Conscientiously,** *ad.* ବିବେକ
**Conscious,** *a.* ସଚେତନ, ଜାଗ୍ରତ ।
**Consciously,** *ad.* ଜ୍ଞାନପୂର୍ବକ, ଜ୍ଞାତସାରରେ ।

**Consciousness,** *n.* ଚୈତନ୍ୟ,ସଜ୍ଞା

**Conscript,** *a.* ବାଧ୍ୟବରେ ସୈନ୍ୟ-ଦଳଭୁକ୍ତ; *n.* ବାଧ୍ୟ ହୋଇ ସୈନ୍ୟଦଳରେ ନାମ ଲେଖାଇଥିବା ଲୋକ ।

**Conscription,** *n.* ଯୁଦ୍ଧବ୍ୟାପାରେ ବାଧ୍ୟତାମୂଳକ ଯୋଗଦାନ ।

**Consecrate,** *v.* ପବିତ୍ର କରିବା, ଉତ୍ସର୍ଗ କରିବା, ପ୍ରତିଷ୍ଠା କରିବା ।

**Consecration,** *n.* ଉତ୍ସର୍ଗ, ପ୍ରତିଷ୍ଠା, ଅଭିଷେକ, ପବିତ୍ରୀକରଣ ।

**Consecutive,** *a.* ପରସ୍ପର ସନ୍ନିହିତ, କ୍ରମାଗତ, ଅବିରତ, ନିରନ୍ତର ।

**Consecutively,** *ad.* କ୍ରମାନୁସାରେ

**Consensus,** *n.* ବହୁଜନସମ୍ମତି ।

**Consent,** *v.* ସ୍ୱୀକାର କରିବା, ରାଜି ହେବା; *n.* ସମ୍ମତି, ସ୍ୱୀକୃତି ।

**Consequence,** *n.* ପରିଣାମ, ଫଳ ।

**Consequent,** *a.* ପରିଣାମଗତ, ଅନୁସାରୀ । [ ପରିଣାମଜନିତ ।

**Consequential,** *a.* ଆନୁଷଙ୍ଗିକ,

**Consequently,** *ad.* ଫଳତଃ, ପରିଣାମରେ, ସୁତରାଂ ।

**Conservancy,** *n.* ରକ୍ଷଣାବେକ୍ଷଣ ।

**Conservation,** *n.* ରକ୍ଷଣ, ସଞ୍ଚୟ ।

**Conservatism,** *n.* ରକ୍ଷଣଶୀଳତା

**Conservative,** *a.* ରକ୍ଷଣଶୀଳ; *n.* ରକ୍ଷଣଶୀଳ ବ୍ୟକ୍ତି ।

**Conservator,** *n.* ରକ୍ଷକ, ରକ୍ଷାକର୍ତ୍ତା

**Conservatory,** *n.* ରକ୍ଷାସ୍ଥାନ, ଆଧାର, ରକ୍ଷଣଶାଳା ।

**Conserve,** *n.* ମିଷ୍ଟାନ୍ନ, ମୋରବ୍ବା; *v.* ସୁରକ୍ଷିତ କରିବା, ମୋରବ୍ବା ପ୍ରସ୍ତୁତ କରିବା । [ ବିଚାର କରିବା ।

**Consider,** *v.* ବିବେଚନା କରିବା,

**Considerable,** *a.* ବିବେଚ୍ୟ, ପ୍ରଚୁର, ଅଧିକ, ମାନନୀୟ ।

**Considerably,** *ad.* ପ୍ରଚୁର ପରିମାଣରେ । [ ବିବେକୀ, ବୁଦ୍ଧିମନ୍ତ ।

**Considerate,** *a.* ବିଚାରଶୀଳ,

**Considerately,** *ad.* ଗମ୍ଭୀର ଚିନ୍ତାସହକାରେ । [ ବିଚାର, ମୂଲ୍ୟ ।

**Consideration,** *n.* ବିବେଚନା,

**Consign,** *v.* ନିକ୍ଷେପ କରିବା, ଧ୍ୱଂସ କରିବା, ଜିମ୍ମା ଦେବା, ଭାର ଅର୍ପଣ କରିବା, ନ୍ୟସ୍ତ କରିବା ।

**Consignee,** *n.* ଜିମ୍ମାଦାର, ଯାହା ପାଖକୁ ଜିନିଷ ପଠାଯାଇଥାଏ ।

**Consignment,** *n.* ସମର୍ପଣ, ନ୍ୟାସ, ଅର୍ପିତ ବା ପ୍ରେରିତ ବସ୍ତୁ ।

**Consigner, Consignor,** *n.* ନ୍ୟାସକାରୀ ବ୍ୟକ୍ତି, ଯେ ଜିନିଷ ପଠାଇଥାଏ ।

**Consist,** *v.* ଗଠିତ ହେବା, ଅନ୍ତର୍ଗତ କରିବା । [ ଅବିରୋଧ ।

**Consistency,** *n.* ଘନତା, ସଙ୍ଗତି,

**Consistent**, *a.* ସଙ୍ଗତ, ଉପଯୁକ୍ତ, ଅବିରୁଦ୍ଧ, ଅନୁରୂପ ।

**Consistently**, *ad.* ଉପଯୁକ୍ତଭାବରେ, କ୍ରମାଗତ, ଯଥାଯଥଭାବରେ ।

**'Consolable**, *a.* ପ୍ରବୋଧନୀୟ, ଆଶ୍ୱାସନାର ଯୋଗ୍ୟ । [ ଆଶ୍ୱାସନା ।

**Consolation**, *n.* ପ୍ରବୋଧ, ସାନ୍ତ୍ୱନା,

**Consolatory**, *a.* ସାନ୍ତ୍ୱନାଦାୟକ, ଶୋକାପହାରୀ । [ ଆଶ୍ୱାସନା ଦେବା ।

**Console**, *v.* ସାନ୍ତ୍ୱନା ଦେବା,

**Consolidate**, *v.* ଦୃଢ଼ କରିବା, ସ୍ଥିର କରିବା । [ ଘନୀକରଣ ।

**Consolidation**, *n.* ଦୃଢ଼ୀକରଣ,

**Consonance**, *n.* ସ୍ୱରର ମେଳ, ଉପଯୁକ୍ତତା । [ *n.* ବ୍ୟଞ୍ଜନ ବର୍ଣ୍ଣ ।

**Consonant**, *a.* ଉପଯୁକ୍ତ, ଅବିରୁଦ୍ଧ;

**Consonous**, *a.* ଏକ ତାଳ, ଏକ ସ୍ୱର ।

**Consort**, *n.* ପତି ବା ପତ୍ନୀ, ସଙ୍ଗୀ ବା ସଙ୍ଗିନୀ; *v.* ସହବାସୀ ହେବା ।

**'Conspicuous**, *a.* ବିଖ୍ୟାତ, ସୁସ୍ପଷ୍ଟ, ବିଶିଷ୍ଟ, ପ୍ରକାଶିତ । [ ପ୍ରକାଶ୍ୟଭାବରେ ।

**Conspicuously**, *ad.* ସ୍ପଷ୍ଟଭାବରେ,

**Conspiracy**, *n.* ଚକ୍ରାନ୍ତ, ଷଡ଼୍‌ଯନ୍ତ୍ର, କୁମନ୍ତ୍ରଣା, କୁପରାମର୍ଶ ।

**Conspirant, Conspirator**, *n.* ଚକ୍ରାନ୍ତକାରୀ, କୁମନ୍ତ୍ରଣାକାରୀ ।

**Conspire**, *v.* ଷଡ଼୍‌ଯନ୍ତ୍ର କରିବା ।

**Conspirer**, *n.* କୁମନ୍ତ୍ରଣାଦାତା, ଷଡ଼୍‌ଯନ୍ତ୍ରକାରୀ, ଚକ୍ରାନ୍ତକାରୀ ।

**Constable**, *n.* ଶାନ୍ତିରକ୍ଷକ କର୍ମଚାରୀ-ବିଶେଷ, କନେଷ୍ଟବଲ ।

**Constabulary**, *a.* କନେଷ୍ଟବଲ-ସମ୍ବନ୍ଧୀୟ; *n.* କନେଷ୍ଟବଲ ଦଳ ।

**Constancy**, *n.* ସ୍ଥୈର୍ଯ୍ୟ, ଦୃଢ଼ତା ।

**Constant**, *a.* ଧ୍ରୁବ, ଅଚଞ୍ଚଳ, ଅପରିବର୍ତ୍ତନୀୟ, ଦୃଢ଼, ଅଟଳ ।

**Constantly**, *ad.* ସର୍ବଦା, ସତତ, ଅନବରତ, ଅଜସ୍ର । [ ରାଶି-ନକ୍ଷତ୍ର ।

**Constellation**, *n.* ତାରାପୁଞ୍ଜ,

**Consternation**, *n.* ଉଦ୍‌ବେଗ, ଶଙ୍କା, ଭୟ, ସନ୍ତ୍ରାସ ।

**Constipate**, *v.* କୋଷ୍ଠବଦ୍ଧ କରିବା ।

**Constipation**, *n.* କୋଷ୍ଠବଦ୍ଧତା, ମଳାବରୋଧ ।

**Constituency**, *n.* ନିର୍ବାଚନମଣ୍ଡଳୀ

**Constituent**, *a.* ବିଧାୟକ, ରଚକ, ଉପାଦାନଭୂତ; *n.* ଉପାଦାନ ।

**Constitute**, *v.* ଗଠନ କରିବା, ରଚନା କରିବା, ନିର୍ମାଣ କରିବା ।

**Constitution**, *n.* ପ୍ରକୃତି, ସ୍ୱଭାବ, ସମ୍ବିଧାନ, ମୂଳ ବ୍ୟବସ୍ଥା ।

**Constitutional**, *a.* ବୈଧାନିକ, ଆଇନସମ୍ମତ, ସ୍ୱାଭାବିକ । [ ଭକ୍ତ ।

**Constitutionalist**, *n.* ସମ୍ବିଧାନ-

**Constitutionally,** *ad.* ବୈଧାନିକଭାବରେ, ସମ୍ବିଧାନ ଅନୁସାରେ ।
**Constrain,** *v.* ଜବରଦସ୍ତି କରିବା, ବଳାତ୍କାର କରିବା ।
**Constraint,** *n.* ଜବରଦସ୍ତି, ବଳାତ୍କାର
**Constrict,** *v.* ସଙ୍କୁଚିତ କରିବା ।
**Constriction,** *n.* ସଙ୍କୋଚନ, ହ୍ରାସପ୍ରାପ୍ତି । [ କରିବା ।
**Construct,** *v.* ନିର୍ମାଣ କରିବା, ଗଠନ
**Construction,** *n.* ନିର୍ମାଣ, ଗଠନ, ବିନ୍ୟାସ, ରଚନା । [ ରଚନାତ୍ମକ ।
**Constructive,** *a.* ଗଠନମୂଳକ,
**Construe,** *v.* ଅର୍ଥ ବାହାର କରିବା ।
**Consul,** *n.* କୌଣସି ଦେଶର ଅନ୍ୟ ଦେଶରେ ଥିବା ବାଣିଜ୍ୟିକ ପ୍ରତିନିଧି ।
**Consular,** *a.* ବିଦେଶସ୍ଥ ବାଣିଜ୍ୟ-ପ୍ରତିନିଧି ସମ୍ବନ୍ଧୀୟ ।
**Consulship,** *n.* ବିଦେଶସ୍ଥ ବାଣିଜ୍ୟ ପ୍ରତିନିଧି ପଦ ବା କର୍ମ ।
**Consult,** *v.* ମନ୍ତ୍ରଣା କରିବା, ପରାମର୍ଶ କରିବା । [ ବିଚାର ।
**Consultation,** *n.* ପରାମର୍ଶ, ମନ୍ତ୍ରଣା,
**Consumable,** *a.* ଦାହ୍ୟ, ବିନାଶ୍ୟ ।
**Consume,** *v.* କ୍ଷୟ କରିବା, ନାଶ କରିବା, ଧ୍ୱଂସ କରିବା । [ ଖାଇଦିଅ ।
**Consumer,** *n.* କ୍ଷୟକର୍ତ୍ତା, ଧ୍ୱଂସକର୍ତ୍ତା,
**Consummate,** *v.* ସମାପନ କରିବା; *a.* ସମ୍ପୂର୍ଣ୍ଣ, ଉତ୍କୃଷ୍ଟ ।
**Consummation,** *n.* ସମାପ୍ତି, ପରିଣତି, ସିଦ୍ଧି, ଉତ୍କର୍ଷ ।
**Consumption,** *n.* କ୍ଷୟ, ଧ୍ୱଂସ, ନାଶ, ଉପଯୋଗ, କ୍ଷୟରୋଗ ।
**Comsumptive,** *a.* କ୍ଷୟକାସ ।
**Contact,** *v.* ସଂଯୋଗ ସ୍ଥାପନ କରିବା; *n.* ସଂଯୋଗ, ସଂସ୍ପର୍ଶ, ସମ୍ପର୍କ । [ ସଂସ୍ପର୍ଶ
**Contagion,** *n.* ସ୍ପର୍ଶାଜନକ ରୋଗ,
**Contagious,** *a.* ସ୍ପର୍ଶାଜନକ, ବ୍ୟାପକ
**Contain,** *v.* ଧାରଣ କରିବା, ଭିତରେ ରଖିବା, ଧୈର୍ଯ୍ୟ ଧରିବା ।
**Container,** *n.* ଆଧାର, ପାତ୍ର ।
**Contaminate,** *v.* ଦୂଷିତ କରିବା, ଅପବିତ୍ର କରିବା, କଳଙ୍କିତ କରିବା ।
**Contamination,** *n.* ଦୂଷଣ, କଳଙ୍କ, ଅଶୌଚ, ଭ୍ରଷ୍ଟତା । [ କାରକ
**Contaminative,** *a.* ଅପବିତ୍ର-
**Contemn,** *v.* ଅବଜ୍ଞା କରିବା, ଘୃଣା କରିବା, ଉପେକ୍ଷା କରିବା ।
**Contemplate,** *v.* ଧ୍ୟାନ କରିବା, ଗମ୍ଭୀର ଚିନ୍ତା କରିବା ।
**Contemplation,** *n.* ଧ୍ୟାନ, ଭାବନା, ମନନ, ଗମ୍ଭୀର ଚିନ୍ତା । [ ଧ୍ୟାନପରାୟଣ ।
**Contemplative,** *a.* ଚିନ୍ତାଶୀଳ,
**Contemplator,** *n.* ଭାବୁକ, ଧ୍ୟାନୀ
**Contemporaneous,** *a.* ସମକାଳୀନ ।

**Contemporary**, *a.* ସମସାମୟିକ; *n.* ସମକାଳୀନ ବ୍ୟକ୍ତି ।

**Contempt**, *n.* ଘୃଣା, ଅବଜ୍ଞା, ଅନାଦର, ଉପେକ୍ଷା । [ ଅବଜ୍ଞେୟ ।

**Contemptible**, *a.* ଘୃଣ୍ୟ, ହେୟ,

**Contemptibly**, *ad.* ଘୃଣାପୂର୍ବକ, ତୁଚ୍ଛଭାବରେ । [ ଅବଜ୍ଞାପୂର୍ଣ୍ଣ ।

**Contemptuous**, *a.* ଘୃଣାବିଶିଷ୍ଟ,

**Contemptuously**, *ad.* ଘୃଣା-ସହକାରେ, ଅବଜ୍ଞାପୂର୍ବକ । [ କରିବା ।

**Contend**, *v.* ବିବାଦ କରିବା, ବିରୋଧ

**Contender**, *n.* ପ୍ରତିଦ୍ୱନ୍ଦୀ, ବିରୋଧୀ ।

**Content**, *a.* ସନ୍ତୁଷ୍ଟ, ତୃପ୍ତ, ଶାନ୍ତ; *n.* ସନ୍ତୋଷ; *v.* ସନ୍ତୁଷ୍ଟ କରିବା । [ତୃପ୍ତ ।

**Contented**, *a.* ପରିତୁଷ୍ଟ, ପ୍ରୀତ,

**Contentedly**, *ad.* ସନ୍ତୋଷରେ, ତୃପ୍ତିସହକାରେ । [ ସନ୍ତୁଷ୍ଟ ଅବସ୍ଥା ।

**Contentedness**, *n.* ପରିତୋଷ,

**Contending**, *a.* ବିରୋଧୀ, ପ୍ରତିବାଦୀ, କଳହକାରୀ । [ ବିରୋଧ ।

**Contention**, *n.* ବିବାଦ, କଳହ,

**Contentious**, *a.* ବିରୋଧୀ, ବିବାଦୀ ।

**Contentment**, *n.* ସନ୍ତୋଷ, ପରିତୃପ୍ତି । [ ନିର୍ଘଣ୍ଟ ।

**Contents**, *n.* ସୂଚୀପତ୍ର, ବିଷୟ-

**Conterminous**, *a.* ସନ୍ନିହିତ, ସମୀପବର୍ତ୍ତୀ ।

**Contest**, *v.* ବାଦ କରିବା, ଯୁଦ୍ଧ କରିବା; *n.* ବିବାଦ, ଯୁଦ୍ଧ, ପ୍ରତିଯୋଗିତା ।

**Contestable**, *a.* ବିବାଦାର୍ହ, ବିରୋଧର ଯୋଗ୍ୟ । [ ପୂର୍ବାପର ସଙ୍ଗତି ।

**Context**, *n.* ପ୍ରସଙ୍ଗ, ସମ୍ବନ୍ଧ, ପ୍ରକରଣ,

**Contiguity**, *n.* ସାମୀପ୍ୟ, ନୈକଟ୍ୟ, ସନ୍ନିଧାନ । [ ସମୀପବର୍ତ୍ତୀ, ସଲଗ୍ନ ।

**Contiguous**, *a.* ସନ୍ନିହିତ,

**Contiguously**, *ad.* ସନ୍ନିଧିରେ, ସଲଗ୍ନଭାବରେ । [ ସଂଯମ, ବଶିତ୍ୱ ।

**Continence**, *n.* ଇନ୍ଦ୍ରିୟଦମନ,

**Continent**, *a.* ଜିତେନ୍ଦ୍ରିୟ, ସଂଯତ; *n.* ମହାଦେଶ ।

**Continental**, *a.* ମହାଦେଶୀୟ ।

**Continently**, *ad.* ସଂଯତଭାବରେ, ପରିମିତଭାବରେ ।

**Contingency**, *n.* ଦୈବୀ ଘଟନା, ଅପ୍ରତ୍ୟାଶିତ ବ୍ୟାପାର, ଅନିଶ୍ଚିତ ବିଷୟ ।

**Contingent**, *a.* ଅପ୍ରତ୍ୟାଶିତ, ଆକସ୍ମିକ, ଦୈବୀ; *n.* ଅନିଶ୍ଚିତ ଘଟନା, ସୈନ୍ୟଦଳ । [ ଦୈବାତ୍ ।

**Contingently**, *ad.* ହଠାତ୍,

**Continual**, *a.* ଅନବରତ, ଅବିଶ୍ରାନ୍ତ, ଅବିରତ ।

**Continually**, *ad.* ଅବିଶ୍ରାନ୍ତ ଭାବରେ । [ ସ୍ଥାୟିତ୍ୱ, ସ୍ଥିତି ।

**Continuance**, *n.* ଅବିଚ୍ଛିନ୍ନତା,

Continuation, *n.* କ୍ରମିକତା, ପାରମ୍ପର୍ଯ୍ୟ । [ ରହିବା, ପ୍ରବୃତ୍ତ ହେବା ।
Continue, *v.* ସ୍ଥିତ ଅବସ୍ଥାରେ
Continued, *a.* ଅବିଶ୍ରାନ୍ତ ।
Continuity, *n.* ଅବଚ୍ଛିନ୍ନତା, କ୍ରମିକତା । [ ସତତ, ନିରନ୍ତର ।
Continuous, *a.* ଅବଚ୍ଛିନ୍ନ, ଅବିଶ୍ରାନ୍ତ,
Continuously, *ad.* ଏକାଦିକ୍ରମେ, ଅନବରତ ।
Contort, *v.* ମୋଡ଼ିଦେବା ।
Contour, *n.* ଆକୃତି, ରୂପ, ପରିଧି ।
Contraband, *a.* ଅବୈଧ, ବେଆଇନ, ଧର୍ମବିରୁଦ୍ଧ ।
Contraception, *n.* ଗର୍ଭନିରୋଧ ।
Contraceptive, *a.* ଗର୍ଭନିରୋଧକାରୀ; *n.* ଗର୍ଭନିରୋଧର ଉପାୟ ।
Contract, *n.* ଚୁକ୍ତିପତ୍ର, ଚୁକ୍ତି; *v.* ଚୁକ୍ତି କରିବା, ସଙ୍କୋଚନ କରିବା ।
Contraction, *n.* ସଙ୍କୋଚନ ।
Contractor, *n.* ଠିକାଦାର, କାନଟ୍ରାକ୍ଟର, ଚୁକ୍ତିକର୍ତ୍ତା ।
Contradict, *v.* ବିରୋଧ କରିବା, ବିତର୍କ କରିବା, ଖଣ୍ଡନ କରିବା ।
Contradiction, *n.* ବିରୋଧ, ବିତର୍କ, ଖଣ୍ଡନ ।
Contradictory, *a.* ପରସ୍ପର ବିରୋଧୀ, ବିପରୀତ । [ ଭାବ ।
Contradistinction, *n.* ବିପରୀତ
Contradistinguish, *v.* ବିପରୀତ ଗୁଣଦ୍ୱାରା ଦୁଇ ବସ୍ତୁର ଭେଦ ପ୍ରଦର୍ଶନ କରିବା । [ ଭାବରେ ଅବସ୍ଥିତ ।
Contraposition, *n.* ବିପରୀତ
Contraries, *n.* ବିପରୀତ ଗୁଣବିଶିଷ୍ଟ ପଦାର୍ଥ । [ ଅସଙ୍ଗତ ।
Contrariety, *n.* ବୈପରୀତ୍ୟ,
Contrary, *a.* ବିପରୀତ, ପ୍ରତିକୂଳ, ବିରୋଧୀ, ସମ୍ମୁଖାଗତ ।
Contrast, *v.* ପ୍ରଭେଦ ଦେଖାଇବା, ଭିନ୍ନ ବସ୍ତୁର ତୁଳନା କରିବା; *n.* ପ୍ରଭେଦ, ବୈସାଦୃଶ୍ୟ, ବୈପରୀତ୍ୟ ।
Contravene, *v.* ଲଙ୍ଘନ କରିବା ।
Contravention, *n.* ଲଙ୍ଘନ ।
Contributary, *a.* ସାହାଯ୍ୟକାରୀ, ଅଂଶଦାନକାରୀ । [ ସାହାଯ୍ୟ କରିବା ।
Contribute, *v.* ଚାନ୍ଦା ଦେବା,
Contribution, *n.* ଚାନ୍ଦା, ସାହାଯ୍ୟ, ଅଂଶଦାନ ।
Contributive, *a.* ସାହାଯ୍ୟକାରୀ ।
Contrite, *a.* କ୍ଷୁବ୍ଧମନା, ଅନୁତପ୍ତ ।
Contrition, *n.* ଅନୁତାପ ।
Contrivance, *n.* ଉପାୟ ।
Contrive, *v.* ଉପାୟ କରିବା ।
Contriver, *n.* କଳ୍ପନାକାରୀ, ଉଦ୍ଭାବକ
Control, *v.* ଆୟତ୍ତ କରିବା, ପରିଚାଳନା କରିବା; *n.* ଦମନ, ନିୟନ୍ତ୍ରଣ ।

**Controller,** *n.* ନିୟନ୍ତ୍ରଣକାରୀ, ନିୟାମକ, ତତ୍ତ୍ୱାବଧାରକ ।

**Controversial,** *a.* ବିବଦମାନ, ବିବାଦମୂଳକ । [ ବାଗ୍‌ଯୁଦ୍ଧ ।

**Controversy,** *n.* ବାଦାନୁବାଦ,

**Contumely,** *n.* ନିନ୍ଦାବାଦ, କୁବାକ୍ୟ, ତିରସ୍କାର ।

**Conundrum,** *n.* ପ୍ରହେଳିକା ।

**Convalescence,** *n.* ରୋଗାନ୍ତିକ ଆରାମ, ରୋଗର ଉପଶମ ।

**Convalescent,** *a.* ଆରୋଗ୍ୟମୁଖୀ; *n.* ଆରୋଗ୍ୟଶୀଳ ରୋଗୀ ।

**Convene,** *v.* ସଭା ଆହ୍ୱାନ କରିବା ।

**Convener,** *n.* ଆବାହକ ।

**Convenience,** *n.* ସୁବିଧା, ସୁଯୋଗ । [ ଉପଯୁକ୍ତ ।

**Convenient,** *a.* ସୁବିଧାଜନକ,

**Conveniently,** *ad.* ସୁବିଧାମତେ ।

**Convent,** *n.* ମଠ, ବିହାର, ଆଶ୍ରମ ।

**Convention,** *n.* ବିଧି, ପରମ୍ପରା, ଲୋକାଚାର, ସଭା ।

**Conventional,** *a.* ପରମ୍ପରାଗତ, ବିଧିସଙ୍ଗତ, ଲୋକପ୍ରଚଳିତ । [ଏକତ୍ର ମିଳିବା

**Converge,** *v.* ସମ୍ମିଳିତ ହେବା,

**Convergence,** *n.* ଏକତ୍ର ମିଳନ ।

**Convergent,** *a.* ସମ୍ମିଳିତ, ଏକତ୍ର ମିଳିତ । [ ନିପୁଣ ।

**Conversant,** *a.* ପାରଗ, କୁଶଳ,

**Conversation,** *n.* କଥୋପକଥନ, କଥାବାର୍ତ୍ତା ।

**Conversational,** *a.* କଥୋପକଥନ ସମ୍ବନ୍ଧୀୟ । [ *n.* ବିପରୀତ ବିଷୟ ।

**Converse,** *v.* ଆଳାପ କରିବା;

**Conversely,** *ad.* ବିପରୀତ ଭାବରେ । [ ମତପରିବର୍ତ୍ତନ ।

**Conversion,** *n.* ଧର୍ମାନ୍ତର ଗ୍ରହଣ,

**Convert,** *v.* ଅନ୍ୟ ମତ ବା ଧର୍ମ ଗ୍ରହଣ କରାଇବା, ପରିବର୍ତ୍ତନ କରାଇବା; *n.* ଦୀକ୍ଷିତ ବ୍ୟକ୍ତି, ମତପରିବର୍ତ୍ତନକାରୀ ବ୍ୟକ୍ତି । [ ବିନିମୟଯୋଗ୍ୟ ।

**Convertible,** *a.* ପରିବର୍ତ୍ତନୀୟ,

**Convex,** *a.* ସ୍ଥୂଳମଧ୍ୟ, କଇଁଛପିଠିଆ, ନ୍ୟୁବ୍‌ଜ । [ ନେଇଯିବା ।

**Convey,** *v.* ବହନ କରିବା,

**Conveyance,** *n.* ଯାନବାହନ, ଗାଡ଼ି ସବାରି ଆଦି ।

**Conveyer,** *n.* ବହନକାରୀ, ବାହକ ।

**Convict,** *n.* ଦଣ୍ଡିତ ବ୍ୟକ୍ତି, କଏଦୀ; *v.* ଦଣ୍ଡିତ କରିବା, ଦୋଷୀ ବୋଲି ରାଏ ଦେବା । [ ନିର୍ଣ୍ଣୟ ।

**Conviction,** *n.* ଦୃଢ଼ ବିଶ୍ୱାସ, ଅପରାଧ

**Convince,** *v.* ପ୍ରତୀତ କରିବା, ନିଃସନ୍ଦେହ ହେବା, ସଂଶୟ ଦୂର କରିବା ।

**Convincible,** *a.* ପ୍ରମାଣ ଦ୍ୱାରା ପ୍ରତୀତର ଯୋଗ୍ୟ ।

Convincing, *a.* ବିଶ୍ୱାସଜନକ ।
Convocation, *n.* ସଭା, ସମାଜ, ସଂସଦ୍‌, ସମାବର୍ତ୍ତନ । [ କରିବା ।
Convoke, *v.* ଏକତ୍ର ହେବାକୁ ଆହ୍ୱାନ
Convoy, *n.* ପଥ-ରକ୍ଷକ, ସହଚର; *v.* ରକ୍ଷାର୍ଥ ସହଗମନ କରିବା [ ହେବା ।
Convulse, *v.* କମ୍ପିବା, ଆକୁଞ୍ଚିତ
Convulsion, *n.* ଆକ୍ଷେପ, କମ୍ପ ।
Convulsive, *a.* ଆକ୍ଷେପଜନକ ।
Cony, *n.* ଠେକୁଆ ।
Cook, *n.* ପାଚକ, ସୂଆର; *v.* ପାକ କରିବା, ରାନ୍ଧିବା । [ ବା ଯନ୍ତ୍ରବିଶେଷ ।
Cooker, *n.* ପାକ କରିବା ପାଇଁ ଆଧାର
Cookery, *n.* ପାକ-ବିଦ୍ୟା, ପାକଶାଳା ।
Cool, *a.* ଶୀତଳ, ଆର୍ଦ୍ର, ଧୀର; *n.* ଶୀତଳତା; *v.* ଶୀତଳ କରିବା ।
Coolness, *n.* ଶୀତଳତା, ଶୈତ୍ୟ ।
Co-operate, *v.* ସହଯୋଗ କରିବା, ସାହାଯ୍ୟ କରିବା ।
Co-operative, *a.* ସହଯୋଗମୂଳକ, ସମବାୟମୂଳକ, କୋଠ । [ ସହକାରୀ ।
Co-operator, *n.* ସହଯୋଗୀ,
Co-ordinate, *a.* ସମପଦସ୍ଥ, ତୁଲ୍ୟ-ପଦାଭିଷିକ୍ତ ।
Co-ordination, *n.* ସମପଦସ୍ଥତା ।
Co-partner, *n.* ଅଂଶଭାଗୀ, ଅଂଶୀଦାର ।

Cope, *v.* ଯୁଦ୍ଧ କରିବା, ବିରୋଧ କରିବା ।
Copier, *n.* ନକଲକାରୀ, ନକଲନବିସ ।
Coping, *n.* କାନ୍ଥର ମୁଣ୍ଡିଳ ।
Copious, *a.* ପ୍ରଚୁର, ବହୁଳ, ପ୍ରଭୂତ ।
Copiously, *ad.* ବହୁଳଭାବରେ ।
Copiousness, *n.* ପ୍ରାଚୁର୍ଯ୍ୟ, ବାହୁଲ୍ୟ ।
Copper, *n.* ତାମ୍ର, ତମ୍ବା ।
Copper-plate, *n.* ତାମ୍ରଫଳକ, ତମ୍ବାପଟା । [ ତମ୍ବାକାରିଗର ।
Coppersmith, *n.* ତାମ୍ରକାର,
Copula, *n.* ବନ୍ଧନୀ, ଉଦ୍ଦେଶ୍ୟ ଓ ବିଧେୟର ସଂଯୋଜକ ଶବ୍ଦ ।
Copulate, *v.* ମୈଥୁନ କରିବା, ରମଣ କରିବା । [ ସଙ୍ଗମ, ସଂଯୋଗକରଣ ।
Copulation, *n.* ରମଣ, ମୈଥୁନ,
Copy, *v.* ନକଲ କରିବା, ଅନୁକରଣ କରିବା; *n.* ନକଲ, ପ୍ରତିଲିପି ।
Copyist, *n.* ନକଲକାର, ଲିପିକାର ।
Copyright, *n.* ପୁସ୍ତକାଦିରେ ସ୍ୱତ୍ୱ ।
Coquet, *v.* ରସିକତା କରିବା ।
Coquetry, *n.* ରସିକତା, କୃତ୍ରିମ ପ୍ରେମ ପ୍ରଦର୍ଶନ । [ ନାରୀ ।
Coquette, *n.* ରସିକା, ଲୀଳାମୟୀ
Coral, *n.* ପ୍ରବାଳ, ବିଦ୍ରୁମ । [ ଗୁଣ ।
Cord, *n.* ମୋଟ ସୂତା, ରଜ୍ଜୁ, ପାଶ,
Cordial, *a.* ଆନ୍ତରିକ, ହାର୍ଦ୍ଦିକ, ଅଗ୍ନିବର୍ଦ୍ଧକ ।

Cordiality, *n.* ସୌହାର୍ଦ୍ଦ, ମୈତ୍ରୀ, ସୌଜନ୍ୟ, ସହୃଦୟତା, ଆନ୍ତରିକତା ।

Cordially, *ad.* ସୌହାର୍ଦ୍ଦପୂର୍ବକ, ଆଦରରେ । [ ପଥରୋଧ ।

Cordon, *n.* ଅର୍ଗଳ, ଯିବାଆସିବାର

Core, *n.* ଅଭ୍ୟନ୍ତର, ଗର୍ଭ, ହୃଦୟ ।

Coriander, *n.* ଧନିଆଁ ।

Cork, *n.* ବୋତଲ ଠିପି, ଶୋଲ ।

Cork-screw, *n.* ଠିପି ଖୋଲିବାର ପେଞ୍ଚ ।

Corn, *n.* ଶସ୍ୟ, ଧାନ୍ୟ ।

Corns, *n.* (*pl.*) ପାଦର ଖଣ୍ଡି ।

Cornea, *n.* ଚକ୍ଷୁର ଶୁକ୍ଳ ଅଂଶ ।

Corner, *n.* କୋଣ, ନିର୍ଜନ ସ୍ଥାନ ।

Cornet, *n.* ତୂରୀ, ମୁଖବାଦ୍ୟବିଶେଷ ।

Corollary, *n.* ଅନୁମାନ, ଉପସିଦ୍ଧାନ୍ତ । [ ଅଭିଷେକ ।

Coronation, *n.* ସିଂହାସନାରୋହଣ,

Coroner, *n.* ଅପମୃତ୍ୟୁ ଆଦିର କାରଣ ନିର୍ଦ୍ଦେଶକର୍ତ୍ତା ।

Coronet, *n.* ମୁକୁଟ, କିରୀଟ ।

Corporal, *a.* ଦୈହିକ, ଶାରୀରିକ; *n.* ସେନାବିଭାଗର କର୍ମଚାରୀବିଶେଷ ।

Corporate, *a.* ସଙ୍ଘବଦ୍ଧ, ସାମାଜିକ ।

Corporation, *n.* ସମାଜ, ସଙ୍ଘ, ସଭା । [ ସଦେହ ।

Corporeal, *a.* ଶରୀରଧାରୀ, ଶରୀରୀ,

Corps, *n.* ସେନାଦଳ ।

Corpse, *n.* ମୃତଦେହ, ଶବ ।

Corpulence, *n.* ଦେହର ସ୍ଥୂଳତା ।

Corpulent, *a.* ସ୍ଥୂଳଶରୀର, ମାଂସଳ, ଭୂଡ଼ଳ, ସ୍ଥୂଳକାୟ । [ ଲେଶ ।

Corpuscle, *n.* ଅଣୁ, କଣା, ଲବ,

Correct, *a.* ନିର୍ଭୁଲ, ଶୁଦ୍ଧ, ଠିକ୍; *v.* ସଂଶୋଧନ କରିବା ।

Correction, *n.* ସଂଶୋଧନ, ଶୁଦ୍ଧି ।

Corrective, *a.* ସଂଶୋଧନକାରକ; *n.* ସଂଶୋଧକ ପଦାର୍ଥ ।

Correctly, *ad.* ଶୁଦ୍ଧଭାବରେ, ନିର୍ଦ୍ଦୋଷରୂପେ । [ ଶୂନ୍ୟତା, ସତ୍ୟତା ।

Correctness, *n.* ଶୁଦ୍ଧତା, ଦୋଷ-

Correlate, *v.* ପରସ୍ପର ସମ୍ବନ୍ଧ ସ୍ଥାପନ କରିବା ।

Correlated, *a.* ପରସ୍ପର ସମ୍ବନ୍ଧାନ୍ୱିତ

Correlation, *n.* ପରସ୍ପର ସମ୍ବନ୍ଧ ।

Correlative, *a.* ପରସ୍ପରସମ୍ବନ୍ଧଶୀଳ

Correspond, *v.* ପତ୍ରଦ୍ୱାରା ସମ୍ବାଦ ପ୍ରେରଣ କରିବା, ଅନୁରୂପ ହେବା, ସଦୃଶ ହେବା । [ ବିନିମୟ, ଅନୁରୂପତା ।

Correspondence, *n.* ପତ୍ର-

Correspondent, *n.* ସମ୍ବାଦଦାତା, ପତ୍ରପ୍ରେରକ । [ ସଦୃଶ ।

Corresponding, *a.* ଅନୁରୂପ,

Corridor, *n.* ଆଚ୍ଛାଦିତ ପଥ ।

**Corrigendum,** *n.* ଶୁଦ୍ଧିପତ୍ର (*pl.* Corrigenda)।

**Corrigible,** *a.* ସଂଶୋଧନୀୟ।

**Corroborate,** *v.* ସମର୍ଥନ କରିବା, ପ୍ରମାଣିତ ବା ଦୃଢ଼ୀଭୂତ କରିବା।

**Corroboration,** *n.* ସମର୍ଥନ, ଦୃଢ଼ୀକରଣ, ନିଶ୍ଚିତକରଣ।

**Corroborative,** *a.* ସମର୍ଥନକାରୀ।

**Corrode,** *v.* କ୍ଷୟ କରିବା।

**Corrosion,** *n.* କ୍ଷୟକରଣ।

**Corrosive,** *a.* କ୍ଷୟକାରୀ।

**Corrugated,** *a.* ତରଙ୍ଗାୟିତ।

**Corrupt,** *v.* ଦୂଷିତ କରିବା, ଦୁର୍ନୀତିଗ୍ରସ୍ତ କରିବା; *a.* ଦୂଷିତ, ଦୁର୍ନୀତିଗ୍ରସ୍ତ।

**Corruptible,** *a.* ଦୂଷଣୀୟ।

**Corruption,** *n.* ଦୁର୍ନୀତି, ଚରିତ୍ରଭ୍ରଂଶ, ଭ୍ରଷ୍ଟାଚାର, ଅସାଧୁତା।

**Corruptive,** *a.* ଦୂଷକ, ନାଶକାରୀ।

**Corruptly,** *ad.* ଦୁର୍ନୀତିସହକାରେ।

**Corruptness,** *n.* ଦୁର୍ନୀତି, ନଷ୍ଟତା, ଦୁଷ୍ଟତା, ଭ୍ରଷ୍ଟତା।

**Cortege,** *n.* ପରିବାର, ଅନୁଚରବର୍ଗ।

**Cosmetic,** *a.* କାନ୍ତିବର୍ଦ୍ଧକ, ଶୋଭାଜନକ; *n.* ଶୋଭାବର୍ଦ୍ଧକ ଅଙ୍ଗରାଗ।

**Cosmic, Cosmical,** *a.* ଜାଗତିକ

**Cosmic ray,** *n.* ସୌରରଶ୍ମି।

**Cosmography,** *n.* ଜଗଦ୍‌ବିବରଣ

**Cosmopolitan,** *a.* & *n.* ବିଶ୍ୱଜନୀନ, ଜଗନ୍ମିତ୍ର।

**Cosmos,** *n.* ଜଗତ୍, ବିଶ୍ୱବ୍ରହ୍ମାଣ୍ଡ।

**Cost,** *n.* ବ୍ୟୟ, ଖରଚ, ମୂଲ୍ୟ।

**Costive,** *a.* ବଦ୍ଧକୋଷ୍ଠ।

**Costiveness,** *n.* କୋଷ୍ଠବଦ୍ଧତା, ମଳାବରୋଧ। [ ମହାର୍ଘ।

**Costly,** *a.* ବ୍ୟୟସାଧ୍ୟ, ବହୁମୂଲ୍ୟ,

**Costume,** *n.* ପୋଷାକ, ପରିଚ୍ଛଦ।

**Cosy,** *a.* ସୁଖକର, ହିତକର।

**Cot,** *n.* ଖଟ, ପଲଙ୍କ, ମଞ୍ଚ।

**Cottage,** *n.* କୁଟୀର, କୁଡ଼ିଆ,ପର୍ଣ୍ଣଶାଳା

**Cotton,** *n.* କପା, ତୁଳା।

**Couch,** *n.* ଶଯ୍ୟା, ପଲଙ୍କ, ଆସନ।

**Cough,** *n.* କାଶ; *v.* କାଶିବା।

**Council,** *n.* ପରିଷଦ, ମନ୍ତ୍ରଣାଳୟ, ସଭା। [ ସଭାସଦ୍।

**Councillor,** *n.* ସଦସ୍ୟ, ସଭ୍ୟ,

**Counsel,** *n.* ମନ୍ତ୍ରଣା, ପରାମର୍ଶ, ଓକିଲ; *v.* ପରାମର୍ଶ ବା ଉପଦେଶ ଦେବା।

**Counsellor,** *n.* ପରାମର୍ଶଦାତା।

**Count,** *v.* ଗଣନା କରିବା।

**Countenance,** *n.* ଚେହେରା, ମୁଖ, ଆକାର, ଆନୁକୂଲ୍ୟ; *v.* ସାହାଯ୍ୟ କରିବା, ସାହସ ଦେବା।

**Counteract,** *v.* ପ୍ରତିକାର କରିବା, ପ୍ରତିହତ କରିବା, ବିଫଳ କରିବା।

**Counterbalance,** *v.* ସମାନ ଓଜନ ହେବା; *n.* ତୁଲ୍ୟ ଭାର ।

**Counterfeit,** *a.* ଜାଲ୍, କୃତ୍ରିମ, ନକଲ୍; *v.* ଜାଲ୍ କରିବା ।

**Countermand,** *v.* ପୂର୍ବ ଆଦେଶ ରଦ୍ଦ କରିବା, ପ୍ରତ୍ୟାଦେଶ କରିବା ।

**Counterpart,** *n.* ପ୍ରତିରୂପ,ପ୍ରତିମୂର୍ତ୍ତି

**Countersign,** *v.* ସ୍ୱାକ୍ଷର ତଳେ ସ୍ୱାକ୍ଷର କରିବା, ପ୍ରମାଣିତ କରିବା ।

**Countless,** *a.* ଅଗଣ୍ୟ, ଅସଂଖ୍ୟ ।

**Country,** *n.* ଦେଶ, ରାଜ୍ୟ, ଜନପଦ ।

**Countryman,** *n.* ଦେଶବାସୀ, ପଲ୍ଲୀବାସୀ ।

**Couple,** *n.* ଯୁଗଳ, ଦମ୍ପତି; *v.* ସଂଯୋଗ କରିବା ।

**Couplet,** *n.* ଦୁଇ ଚରଣବିଶିଷ୍ଟ ପଦ, ଶ୍ଳୋକ, ପଙ୍‌କ୍ତିଦ୍ୱୟ ।

**Coupon,** *n.* କୁପନ ।

**Courage,** *n.* ସାହସ, ଶୌର୍ଯ୍ୟ, ପରାକ୍ରମ ।

**Courageous,** *a.* ସାହସୀ, ପରାକ୍ରାନ୍ତ, ନିର୍ଭୀକ ।

**Courageously,** *ad.* ସାହସ ସହକାରେ ।

**Courier,** *n.* ସମ୍ବାଦବାହକ, ବାର୍ତ୍ତାବହ

**Course,** *n.* ଗତିପଥ, ମାର୍ଗ, ପାଠ୍ୟକ୍ରମ

**Courser,** *n.* ବେଗଗାମୀ ଅଶ୍ୱ ।

**Court,** *n.* ବିଚାରାଳୟ, ରାଜସଭା, ଅଗଣା; *v.* ପ୍ରଣୟ ପ୍ରାର୍ଥନା କରିବା ।

**Courteous,** *a.* ଭଦ୍ର, ଶିଷ୍ଟ, ବିନୀତ ।

**Courteously,** *ad.* ବିନୀତଭାବରେ, ଭଦ୍ରଭାବରେ, ବିନୟପୂର୍ବକ ।

**Courtesan, Courtezan,** *n.* ବେଶ୍ୟା, ଗଣିକା, ବାରାଙ୍ଗନା ।

**Courtesy,** *n.* ଶିଷ୍ଟାଚାର, ବିନୟ, ସୌଜନ୍ୟ, ନମ୍ରତା ।

**Courtier,** *n.* ରାଜସଭାସଦ୍, ସଭ୍ୟ ।

**Courtly,** *a.* ରାଜସଭା ସମ୍ବନ୍ଧୀୟ, ସଭ୍ୟ, ଶିଷ୍ଟ ।

**Court-martial,** *n.* ସାମରିକ ବିଚାରାଳୟ ।

**Courtship,** *n.* ପୂର୍ବରାଗ, ବିବାହାର୍ଥ ପ୍ରଣୟ ସମ୍ଭାଷଣ ।

**Courtyard,** *n.* ପ୍ରାଙ୍ଗଣ, ଅଗଣା ।

**Cousin,** *n.* ପିତୃବ୍ୟଙ୍କର-ମାତୁଳଙ୍କର-ପିତୃଷ୍ୱସାଙ୍କର-ମାତୃଷ୍ୱସାଙ୍କର ପୁତ୍ରକନ୍ୟା (ଭାଇଭଉଣୀ) ।

**Cove,** *n.* ଖାଲ, ଗର୍ତ୍ତ; *v.* ଆଚ୍ଛାଦନ କରିବା ।

**Covenant,** *n.* ନିୟମ, ଚୁକ୍ତିପତ୍ର, ଅଙ୍ଗୀକାର; *v.* ଚୁକ୍ତିରେ ଆବଦ୍ଧ ହେବା ।

**Cover,** *n.* ଆବରଣ; *v.* ଆଚ୍ଛାଦନ କରିବା, ଢାଙ୍କିବା ।

**Coverlet,** *n.* ବିଛଣାଚାଦର ।

**Covert,** *a.* ଗୂଢ଼, ଗୁପ୍ତ, ଛଦ୍ମ; *n.* ନିବିଡ଼ ବନ, ଆଶ୍ରୟ ସ୍ଥାନ ।

**Covertly,** *ad.* ଗୁପ୍ତଭାବରେ ।

**Covet,** *v.* ଲୋଭ କରିବା, ଅଭିଳାଷ କରିବା ।

**Covetous**, *a.* ଲୋଲୁପ, ଅଭିଳାଷୀ, ଅର୍ଥଗୃଧ୍ନୁ । [ ଲାଳସା, ତୃଷ୍ଣା ।
**Covetousness**, *n.* ଲୋଭ, ଲିପ୍ସା,
**Cow**, *n.* ଧେନୁ, ଗାଭୀ, ଗାଈ ।
**Coward**, *n.* ଭୀରୁ ବ୍ୟକ୍ତି, କାପୁରୁଷ ।
**Cowardice**, *n.* ଭୀରୁତା, କାତରତା, କାପୁରୁଷତା, ନିର୍ବୀର୍ଯ୍ୟତା ।
**Cowardly**, *a.* ଭୀରୁ, କାତର, ନିର୍ବୀର୍ଯ୍ୟ
**Cowdung**, *n.* ଗୋମୟ, ଗୋବର ।
**Cower**, *v.* ପ୍ରଣତ ହେବା, ନଇଁ ପଡ଼ିବା । [ ଗୋରୁଜଗୁଆଳ ।
**Cowherd**, *n.* ଗୋପାଳ, ଗଉଡ଼,
**Cow-house**, *n.* ଗୁହାଳ ।
**Cowpox**, *n.* ଗୋବସନ୍ତ । [ କଉଡ଼ି ।
**Cowrie, Cowry**, *n.* କପର୍ଦ୍ଦକ,
**Coxcomb**, *n.* କୁକୁଡ଼ାର ଚୂଳ, ଫୁଲ୍‌ବାବୁ, ଦାମ୍ଭିକ ପୁରୁଷ ।
**Coy**, *n.* ଲଜ୍ଜାଶୀଳ, ଲାଜୁକ, ଅପ୍ରଗଲ୍‌ଭ ।
**Coyness**, *n.* ଲଜ୍ଜା, ସରମ ।
**Crab**, *n.* କର୍କଟ, କଙ୍କଡ଼ା ।
**Crabbed**, *a.* କର୍କଶ, ନିଷ୍ଠୁର ।
**Crack**, *n.* ଫାଟ, ଚଡ଼୍ ଚଡ଼୍ ଶବ୍ଦ; *v.* ଫାଟିବା, ଚଡ଼୍ ଚଡ଼୍ ଫୁଟିବା ।
**Cracker**, *n.* ଫଟକା ବାଣ ।
**Crackle**, *v.* ଚଡ଼ଚଡ଼ ଶବ୍ଦ କରିବା ।
**Cradle**, *n.* ଦୋଳି, ଶିଶୁର ଦୋଳା ।
**Craft**, *n.* ବ୍ୟବସାୟ, ବୃତ୍ତି, କଳା, କୌଶଳ ।

**Craftily**, *ad.* ଶଠତାପୂର୍ବକ ।
**Crafty**, *a.* କୌଶଳୀ, ଧୂର୍ତ୍ତ, ପ୍ରତାରକ । [ ଶିଖର ।
**Crag**, *n.* ବନ୍ଧୁର ପାହାଡ଼, ଶୃଙ୍ଗ,
**Craggy**, *a.* ଅସମାନ, ବିଷମ, ଆବଡ଼ା ଖାବଡ଼ା । [ ଭରିବା ।
**Cram**, *v.* ଠେଲି ଭର୍ତ୍ତି କରିବା, ପୂର୍ଣ୍ଣ
**Cramp**, *n.* ଅଙ୍ଗର ସଙ୍କୋଚନ, ଆକ୍ଷେପ, ବାତରୋଗ; *v.* ଅବଶ କରିବା, ଅଚଳ ହେବା ବା କରିବା ।
**Crane**, *n.* ବକ, ସାରସପକ୍ଷୀ, ଭାର-ଉତ୍ତୋଳକ ଯନ୍ତ୍ର ।
**Cranium**, *n.* ମୁଣ୍ଡର ଖପୁରି ।
**Crank**, *n.* ବକ୍ରୋକ୍ତି, ବକ୍ରପଥ ।
**Cranny**, *n.* ଛିଦ୍ର, ଫାଙ୍କ, ସନ୍ଧି ।
**Crash**, *n.* ଭାଙ୍ଗିବାର ମଡ଼ମଡ଼ ଶବ୍ଦ, ମହାଧ୍ୱନି; *v.* ଭାଙ୍ଗିପଡ଼ିବା ।
**Crate**, *n.* ବଡ଼ କାଠ ପେଡ଼ି ।
**Crater**, *n.* ଅଗ୍ନେୟଗିରିର ମୁଖଗହ୍ୱର ।
**Craunch, Crunch**, *v.* ଚର୍ବଣ କରିବା । [ ପ୍ରାର୍ଥନା କରିବା ।
**Crave**, *v.* ସବିନୟ ନିବେଦନ କରିବା,
**Craven**, *n.* କାପୁରୁଷ; *a.* ସାହସହୀନ ।
**Craving**, *n.* ଲାଳସା, ସ୍ପୃହା, ଅଭିଳାଷ, ଉତ୍କଣ୍ଠା, ଗଭୀର ଔତ୍ସୁକ୍ୟ ।
**Crawl**, *v.* ଗରୁଣ୍ଡିବା, ଘୁସୁରିବା ।

**Crayon,** *n.* ରଙ୍ଗତୂଳିକା, ଖଡ଼ି ପେନ୍‌ସିଲ୍ । [ କରିବା ।
**Craze,** *v.* ହତବୁଦ୍ଧି କରିବା, ପାଗଳ
**Crazily,** *ad.* ଉନ୍ମତ୍ତଭାବରେ ।
**Crazy,** *a.* ପାଗଳ, ବାତୁଳ, ଉନ୍ମତ୍ତ ।
**Creak,** *v.* କେଁ କେଁ ଶବ୍ଦ କରିବା ।
**Cream,** *n.* ସାରାଂଶ, ଦୁଧସର । [ଭାଙ୍ଗ ।
**Crease,** *v.* ଭାଙ୍ଗ ପଡ଼ିବା; *n.* ଲୁଗାର
**Create,** *v.* ସୃଷ୍ଟି କରିବା, ନିର୍ମାଣ କରିବା । [ ସୃଷ୍ଟ ପଦାର୍ଥ ।
**Creation,** *n.* ସୃଷ୍ଟି, ପୃଥିବୀ, ଜଗତ୍,
**Creative,** *a.* ସୃଷ୍ଟିଶୀଳ, ସର୍ଜନକ୍ଷମ ।
**Creator,** *n.* ସ୍ରଷ୍ଟା, ବିଧାତା, ଈଶ୍ୱର, ସୃଷ୍ଟିକର୍ତ୍ତା । [ ସୃଷ୍ଟି ।
**Creature,** *n.* ପ୍ରାଣୀ, ଜୀବଜନ୍ତୁ,
**Credence,** *n.* ବିଶ୍ୱାସ, ଶ୍ରଦ୍ଧା, ପ୍ରତ୍ୟୟ, ଗୀର୍ଜାର ଶ୍ରେଷ୍ଠ ଟେବୁଲ୍ ।
**Credent,** *a.* ସହଜବିଶ୍ୱାସୀ ।
**Credential,** *a.* ବିଶ୍ୱାସଜନକ ।
**Credentials,** *n. (pl.)* ପ୍ରମାଣପତ୍ର, ପରିଚୟପତ୍ର, ସୁପାରିସପତ୍ର ।
**Credibility,** *n.* ବିଶ୍ୱାସଯୋଗ୍ୟତା ।
**Credible,** *a.* ବିଶ୍ୱାସଯୋଗ୍ୟ, ବିଶ୍ୱାସ୍ୟ, ପ୍ରାମାଣିକ ।
**Credibly,** *ad.* ବିଶ୍ୱାସ ସହକାରେ ।
**Credit,** *n.* ବିଶ୍ୱାସ, ମାନସମ୍ଭ୍ରମ, ଖ୍ୟାତି; *v.* ବିଶ୍ୱାସ କରିବା, ଜମାଦେବା ।
**Creditable,** *a.* ପ୍ରଶଂସନୀୟ ।
**Creditably,** *ad.* ପ୍ରଶଂସା ସହକାରେ, ଉତ୍ତମରୂପେ ।
**Creditor,** *n.* ମହାଜନ, ଋଣଦାତା ।
**Credulity,** *n.* ସରଳ ବିଶ୍ୱାସ ।
**Credulous,** *a.* ସରଳବିଶ୍ୱାସୀ ।
**Creed,** *n.* ଧର୍ମମତ, ସ୍ୱୀକୃତ ମତ ।
**Creek,** *n.* ନଳା, କ୍ଷୁଦ୍ରନଦୀ, ସଙ୍କୀର୍ଣ୍ଣ ପ୍ରଣାଳୀ । [ ଧୀରଗତିରେ ଯିବା ।
**Creep,** *v.* ଲଟେଇବା, ଘୁସୁରିବା,
**Creeper,** *n.* ଲତା, ବଲ୍ଲରୀ, ବ୍ରତତୀ ।
**Cremate,** *v.* ଶବଦାହ କରିବା ।
**Cremation,** *n.* ଶବଦାହ ।
**Crematorium,** *n.* ଶବଦାହ ସ୍ଥାନ, ଶ୍ମଶାନ ।
**Crescent,** *n.* ଅର୍ଦ୍ଧଚନ୍ଦ୍ର, ଶୁକ୍ଳପକ୍ଷର ଚନ୍ଦ୍ର; *a.* ଅର୍ଦ୍ଧଚନ୍ଦ୍ରାକାର ।
**Cresset,** *n.* ଆକାଶଦୀପ । [ ଅଗ୍ରଭାଗ ।
**Crest,** *n.* ଚୂଡ଼ା, ମୁକୁଟ, ଶିଖା,
**Crested,** *a.* ଚୂଡ଼ାବିଶିଷ୍ଟ ।
**Crest-fallen,** *a.* ମ୍ଳାନମୁଖ, ବିଷଣ୍ଣ
**Crevice,** *n.* ରନ୍ଧ୍ର, ଛିଦ୍ର, ଫାଙ୍କ ।
**Crew,** *n.* ଜାହାଜର ଚାଳକ, ଦଳ ।
**Crib,** *n.* ଗୋରୁକୁଣ୍ଡ, ପିଲାଙ୍କ ଖଟ ।
**Cricket,** *n.* କ୍ରୀଡ଼ାବିଶେଷ, ଝିଙ୍କାରି ।
**Crier,** *n.* ଘୋଷଣାକାରୀ, ଢେଣ୍ଡୁରାବାଲା ।
**Crime,** *n.* ଅପରାଧ, ଦୋଷ, ଅନ୍ୟାୟ କର୍ମ ।

**Criminal**, *a.* ଦୋଷୀ, ଅପରାଧୀ, ଫୌଜଦାରି; *n.* ଆସାମୀ, ଅପରାଧୀ ବ୍ୟକ୍ତି ।

**Criminality**, *n.* ଅପରାଧପ୍ରବଣତା, ଅପରାଧିତା ।

**Criminally**, *ad.* ଅପରାଧପୂର୍ବକ ।

**Criminate**, *v.* ଦୋଷାରୋପ କରିବା, ଅଭିଯୁକ୍ତ କରିବା ।

**Crimp**, *a.* କ୍ଷଣଭଙ୍ଗୁର; *v.* କୁଞ୍ଚିତ କରିବା ।

**Crimson**, *a.* ଲାଲ, ରକ୍ତବର୍ଣ୍ଣବିଶିଷ୍ଟ; *n.* ରକ୍ତିମା, ଅରୁଣବର୍ଣ୍ଣ ।

**Cringe**, *v.* ଖୋସାମଦ କରିବା, ବିନତି କରିବା; *n.* ନୀଚତା, ବିନତି ।

**Cripple**, *n.* ପଙ୍ଗୁ, ଖଞ୍ଜ, ଲେଙ୍ଗଟା; *v.* ପଙ୍ଗୁ କରିବା ।

**Crippleness**, *n.* ପଙ୍ଗୁତା, ଖଞ୍ଜତା, ଅଙ୍ଗବୈକଲ୍ୟ ।

**Crisis**, *n.* ସନ୍ଧିକାଳ, ସଙ୍କଟ ସମୟ, ଘଡ଼ିସନ୍ଧି (*pl.* Crises) ।

**Crisp**, *a.* କୁଞ୍ଚିତ, ଭଙ୍ଗୁର ।

**Crispy**, *a.* କୁଞ୍ଚିତ ।

**Criterion**, *n.* ଚିହ୍ନ, ଲକ୍ଷଣ ।

**Critic**, *n.* ସମାଲୋଚକ, ଦୋଷଗୁଣ-ବିଚାରକର୍ତ୍ତା, ଗୁଣଗ୍ରାହକ ।

**Critical**, *a.* ସାଙ୍ଘାତିକ, ସଙ୍କଟପୂର୍ଣ୍ଣ, ବିବେଚକ, ଦୋଷାଦୋଷବିଚାରପୂର୍ଣ୍ଣ ।

**Critically**, *ad.* ସୂକ୍ଷ୍ମାନୁସୂକ୍ଷ୍ମଭାବରେ, ନିପୁଣଭାବରେ ।

**Criticise**, *v.* ସମାଲୋଚନା କରିବା, ବିବେଚନା କରିବା, ଦୋଷଗୁଣ ବିଚାର କରିବା ।

**Criticism**, *n.* ସମାଲୋଚନା, ଦୋଷଗୁଣବିଚାର ।

**Critique**, *n.* ଦୋଷଗୁଣର ବ୍ୟାଖ୍ୟା, ସମାଲୋଚନା ।

**Croak**, *v.* ବେଙ୍ଗପରି ରାବିବା; *n.* ବେଙ୍ଗର ରାବ ।

**Crockery**, *n.* ମାଟିର ବାସନ ପ୍ରଭୃତି ।

**Crocodile**, *n.* କୁମ୍ଭୀର, ମଗର ।

**Crone**, *n.* ବୃଦ୍ଧା ସ୍ତ୍ରୀ, ଜରତୀ, ବୁଢ଼ୀ ।

**Crony**, *n.* ବହୁ ଦିନର ବନ୍ଧୁ, ଚିରସୁହୃଦ୍ ।

**Crook**, *n.* ବକ୍ର ଯଷ୍ଟି, ଦଣ୍ଡ, ଆଙ୍କୁଡ଼ି, କୌଶଳ ।

**Crooked**, *a.* ବକ୍ର, କୁଟିଳ, ଅସରଳ ।

**Crookedness**, *n.* ବକ୍ରତା, କୁଟିଳତା, ବିରୂପତା ।

**Crop**, *n.* ଶସ୍ୟ, ଫସଲ, କୃଷିଜାତ ଦ୍ରବ୍ୟ; *v.* ଛେଦନ କରିବା, କାଟିବା ।

**Crore**, *n.* ଏକ କୋଟି ସଂଖ୍ୟା ।

**Croslet**, *n.* କ୍ଷୁଦ୍ର କ୍ରୁଶବିଶେଷ ।

**Cross**, *v.* ପରସ୍ପରକୁ ଛେଦ କରିବା, ପାର ହେବା; *n.* କ୍ରୁଶ ଯନ୍ତ୍ର; *a.* ବିରକ୍ତ, ପ୍ରତିକୂଳ ।

**Cross-examine**, *v.* ଜେରା କରିବା ।

**Crossness**, *n.* ବିରକ୍ତି, ପ୍ରତିକୂଳତା ।

**Cross-road**, *n.* ଚଉଛକ ରାସ୍ତା ।

**Crosswise**, *ad.* କଟାକଟି ହୋଇ ।

Crotch, *n.* ଆକର୍ଷଣୀ, ଆଙ୍କୁଡ଼ି ।

Crotchet, *n.* ଗୀତର ଲହର, ବକ୍ରୁତ ଖିଆଲ୍ ।

Croton, *n.* ଏକଜାତୀୟ ସୁଦୃଶ୍ୟ ଗୁଳ୍ମ ।

'Crouch, *v.* ନଇଁପଡ଼ିବା ।

Crow, *n.* କାକ, ବାୟସ, କୁକ୍କୁଡ଼ାର ରାବ; *v.* କୁକ୍କୁଡ଼ା ରାବିବା ।

Crowbar, *n.* ଶାବଳ ।

Crowd, *n.* ଲୋକଗହଳ, ଜନତା, ଭିଡ଼; *v.* ଗହଳି କରିବା ।

Crown, *n.* ରାଜମୁକୁଟ, କିରୀଟ, ଇଂଲଣ୍ଡର ଏକ ମୁଦ୍ରା; *v.* ରାଜ୍ୟାଭିଷିକ୍ତ କରିବା ।

Crucial, *a.* କୂଟ, କଠିନ, ସୂକ୍ଷ୍ମ ।

Crucible, *n.* ଧାତୁ ତରଳାଇବା ପାତ୍ର, କୋଇ ।

Crucifix, *n.* କ୍ରୁଶବଦ୍ଧ ଯୀଶୁଙ୍କ [ ମୂର୍ତ୍ତି ।

Crucify, *v.* କ୍ରୁଶ ଯନ୍ତ୍ରରେ ବଧ କରିବା ।

Crude, *a.* ଅପରିଣତ, ଅପରିପକ୍ୱ ।

Crudely, *ad.* ଅପରିପକ୍ୱ ଭାବରେ, ରୁକ୍ଷ ଭାବରେ । [ ଅପରିପକ୍ୱତା ।

Crudeness, Crudity, *n.*

Cruel, *a.* ନିର୍ଦ୍ଦୟ, ନିଷ୍ଠୁର, କ୍ରୂର, ନୃଶଂସ

Cruelly, *ad.* ନିର୍ଦ୍ଦୟଭାବରେ ।

Cruelty, *n.* ନିର୍ଦ୍ଦୟତା, ନିଷ୍ଠୁରତା ।

Cruise, *v.* ଜାହାଜରେ ଇତସ୍ତତଃ ଭ୍ରମଣ କରିବା ।

Cruiser, *n.* ଦ୍ରୁତଗାମୀ ଯୁଦ୍ଧଜାହାଜ ।

Crumb, *n.* ରୁଟିର ଖଣ୍ଡ, ଅଣ୍ଠି ।

Crumble, *v.* କ୍ଷୟ ପାଇବା, ଝଡ଼ି ପଡ଼ିବା, ଚୂର୍ଣ୍ଣୀଭୂତ ହେବା ।

Crump, *a.* କୁବ୍ଜ, ବକ୍ର ।

Crunch, *v.* ଚର୍ବଣ କରିବା ।

Crusade, *n.* ଧର୍ମଯୁଦ୍ଧ ।

Crusader, *n.* ଧର୍ମଯୁଦ୍ଧର ସୈନିକ ।

Crush, *v.* କୁଟିବା, ଗୁଣ୍ଡ କରିବା, ଦମନ କରିବା; *n.* ନିଷ୍ପେଷଣ ।

Crust, *n.* ରୁଟିର ଉପର ଅଂଶ, ଖ୍ୱେପା ।

Crusty, *a.* କଠିନ, କର୍କଶ, ଟାଣୁଆ ।

Crutch, *n.* ଆଶାବାଡ଼ି, ଆଶ୍ରୟଦଣ୍ଡ ।

Cry, *v.* କାନ୍ଦିବା, ଚିତ୍କାର କରିବା; *n.* ଘୋଷଣା, କ୍ରନ୍ଦନ, ଚିତ୍କାର ।

Crypt, *n.* ଗୁହାଘର, ଗୀର୍ଜାର ନିମ୍ନସ୍ଥ କବରଖାନା । [ ରହସ୍ୟମୟ ।

Cryptic, Cryptical, *a.* ଗୂଢ଼,

Crystal, *n.* ସ୍ଫଟିକ, କାଚ ।

Crystalline, *a.* ସ୍ଫଟିକତୁଲ୍ୟ, ସ୍ୱଚ୍ଛ ।

Crystallisation, *n.* ସ୍ଫଟିକୀକରଣ

Crystallise, *v.* ଦାନା ବାନ୍ଧିବା, ନିର୍ଦ୍ଦିଷ୍ଟ ରୂପ ଗ୍ରହଣ କରିବା । [ ଶାବକ ।

Cub, *n.* ବ୍ୟାଘ୍ର, ଭଲ୍ଲୁକ ଆଦି ପଶୁର

Cube, *n.* ଘନକ୍ଷେତ୍ର, କୌଣସି ସଂଖ୍ୟାର ଘନଫଳ ।

Cubeb, *n.* କବାବଚିନି ।

Cubic, Cubical, *a.* ଘନଫଳ ସମ୍ବନ୍ଧୀୟ, ଘନ ଚତୁରସ୍ରାକାର ।
Cubicle, *n.* କ୍ଷୁଦ୍ର ଶୟନ କକ୍ଷ ।
Cubit, *n.* ଏକ ହାତ ପରିମାଣ ।
Cuckoo, *n.* କୋକିଳ, କୋଇଲି ।
Cucumber, *n.* କର୍କଟୀ, କାକୁଡ଼ି ।
Cud, *n.* ରୋମନ୍ଥନ ପାଇଁ ଉଦ୍‌ଗୀର୍ଣ୍ଣ ଅର୍ଦ୍ଧଜୀର୍ଣ୍ଣ ଖାଦ୍ୟପଦାର୍ଥ ।
Cuddle, *v.* ଆଲିଙ୍ଗନ କରିବା, ସ୍ନେହ କରିବା । [ *v.* ଠେଙ୍ଗାରେ ପିଟିବା ।
Cudgel, *n.* ଠେଙ୍ଗା, ବାଡ଼ି;
Cue, *n.* ଇଙ୍ଗିତ, ସୂଚନା, ସୂତ୍ର ।
Cuff, *n.* ମୁଷ୍ଟ୍ୟାଘାତ, ବିଧା; *v.* ବିଧା ମାରିବା, ମୁଷ୍ଟିରେ ଆଘାତ କରିବା ।
Culinary, *a.* ରନ୍ଧନ ସମ୍ବନ୍ଧୀୟ ।
Cull, *v.* ମନୋନୀତ କରିବା, ବାଛିବା; ତୋଳିବା, ଏକତ୍ର କରିବା ।
Cullender, *n.* ଛାଲୁଣି ।
Culminate, *v.* ଶୀର୍ଷ ସ୍ଥାନରେ ପହଞ୍ଚିବା, ପରାକାଷ୍ଠା ଦେଖାଇବା ।
Culmination, *n.* ପରାକାଷ୍ଠା, ଚରମ ସୀମା, ଶୀର୍ଷ ଆରୋହଣ ।
Culpability, *n.* ଦୋଷାର୍ହତା ।
Culpable, *a.* ଦୂଷ୍ୟ, ନିନ୍ଦନୀୟ, ଅପରାଧଯୋଗ୍ୟ ।
Culpably, *ad.* ନିନ୍ଦନୀୟଭାବରେ ।
Culprit, *n.* ଅପରାଧୀ ବ୍ୟକ୍ତି, ଆସାମୀ ।
Cult, *n.* ପୂଜାପଦ୍ଧତି, କାହାରପ୍ରତି ପ୍ରଗାଢ଼ ଭକ୍ତି, ଧର୍ମମତ ।
Cultivable, *a.* କର୍ଷଣଯୋଗ୍ୟ ।
Cultivate, *v.* କୃଷି କରିବା, ଚଷିବା, ଅଭ୍ୟାସ କରିବା ।
Cultivation, *n.* କୃଷିକର୍ମ, ଚାଷ ।
Cultivator, କୃଷକ, ଚାଷୀ ।
Cultural, *a.* କୃଷ୍ଟିବିଷୟକ, ସାଂସ୍କୃତିକ
Culture, *n.* ଶିକ୍ଷା, ସଂସ୍କୃତି, କୃଷ୍ଟି, ସଭ୍ୟତା । [ ସମ୍ପନ୍ନ, ଶିକ୍ଷିତ ।
Cultured, *a.* ସଭ୍ୟ, ମାର୍ଜିତରୁଚି-
Culvert, *n.* ରାସ୍ତାତଳେ ପାଣିଯିବା ପୋଲ । [ ହେବା ।
Cumber, *v.* ବାଧାଦେବା, ଭାର
Cumbersome, Cumbrous, *a.* ବାଧାଦାୟକ, ପ୍ରତିବନ୍ଧକକାରୀ, କ୍ଳେଶକର । [ ପ୍ରତିବନ୍ଧ ।
Cumbrance, *n.* ଭାର, ବୋଝ,
Cumin, *n.* ଜୀରକ, ଜୀରା ।
Cumulate, *v.* ଠୁଳ କରିବା ବା ହେବା । [ ସମଷ୍ଟିଗତ ।
Cumulative, *a.* ସମବେତ,
Cunning, *a.* ଚତୁର, ଶଠ, ଧୂର୍ତ୍ତ, ଖଳ; *n.* ଚତୁରତା, ଶଠତା ।
Cunningly, *ad.* ଚତୁରତା ସହକାରେ, ପ୍ରତାରଣାପୂର୍ବକ ।
Cup, *n.* ଗିନା, ତାଟିଆ, ପାନପାତ୍ର ।

**Cupboard,** *n.* କାଠ ଆଲମାରି, ବାସନ ପ୍ରଭୃତି ରଖିବାର ଆଲମାରି ।
**Cupid,** *n.* କନ୍ଦର୍ପ, କାମଦେବ ।
**Cupidity,** *n.* ଲୋଭର ଇଚ୍ଛା, ମନ୍ଦ ଅଭିଳାଷ, ଅର୍ଥ ଲାଳସା ।
**Cur,** *n.* କୁକୁର, ଭୁଲକୁକ୍କୁର । [ କ୍ଷମ ।
**Curable,** *a.* ଚିକିତ୍ସାସାଧ୍ୟ, ଆରୋଗ୍ୟ-
**Curate,** *n.* ଧର୍ମୋପଦେଷ୍ଟାଙ୍କ ସହକାରୀ
**Curative,** *a.* ଆରୋଗ୍ୟକାରକ, ଚିକିତ୍ସାସମ୍ବନ୍ଧୀୟ । [ ତତ୍ତ୍ୱାବଧାରକ ।
**Curator,** *n.* ଯାଦୁଘର ବା ଗ୍ରନ୍ଥାଗାରର
**Curb,** *v.* ଖର୍ବ କରିବା, କ୍ଷୁଣ୍ଣ କରିବା ।
**Curd,** *n.* ଦହି, ବସାଦହି ।
**Curdle,** *v.* ଘନୀଭୂତ ହେବା ବା କରିବା
**Cure,** *v.* ଆରୋଗ୍ୟ କରିବା, ଲବଣାକ୍ତ କରିବା; *n.* ଔଷଧ, ପ୍ରତିକାର ।
**Curfew,** *n.* ସାନ୍ଧ୍ୟ ଆଇନ, ଦୀପ-ନିର୍ବାଣସୂଚକ ଘଣ୍ଟାଧ୍ୱନି । [ ବସ୍ତୁ ।
**Curio,** *n.* କୌତୂହଳୋଦ୍ଦୀପକ ଦୁଷ୍ପ୍ରାପ୍ୟ
**Curiosity,** *n.* କୌତୂହଳ, ବିସ୍ମୟ ।
**Curious,** *a.* କୌତୂହଳୀ, ବିସ୍ମିତ, ଆଶ୍ଚର୍ଯ୍ୟାନ୍ୱିତ, ଜିଜ୍ଞାସୁ ।
**Curiously,** *ad.* ବିସ୍ମୟସହକାରେ ।
**Curl,** *v.* କୁଞ୍ଚିତ କରିବା; *n.* କୁଞ୍ଚିତ କେଶ
**Curling,** *a.* କୁଞ୍ଚକୁଞ୍ଚିଆ ।
**Curly,** *a.* କୁଞ୍ଚିତ ।
**Currant,** *n.* ଶୁଷ୍କ ଫଳ ।
**Currency,** *n.* ପ୍ରଚଳିତ ମୁଦ୍ରା ।
**Currency-note,** *n.* ପ୍ରଚଳିତ କାଗଜ ମୁଦ୍ରା, ନୋଟ୍ ।
**Current,** *a.* ପ୍ରଚଳିତ, ପ୍ରବାହିତ; *n.* ପ୍ରବାହ, ଧାରା, ଜଳ-ବାୟୁ-ବିଦ୍ୟୁତ୍ ପ୍ରଭୃତିର ସ୍ରୋତ, ଗତିପଥ ।
**Currently,** *ad.* ପ୍ରଚଳିତଭାବରେ ।
**Curriculum,** *n.* ନିର୍ଦ୍ଦିଷ୍ଟ ପାଠ୍ୟକ୍ରମ (*pl.* **Curricula**) ।
**Currish,** *a.* କୁକ୍କୁରତୁଲ୍ୟ, ନୀଚ ।
**Curry,** *n.* ତରକାରି, ବ୍ୟଞ୍ଜନ ।
**Curse,** *n.* ଅଭିଶାପ; *v.* ଅଭିଶାପ ଦେବା
**Cursed,** *a.* ଅଭିଶପ୍ତ, ଶାପଗ୍ରସ୍ତ ।
**Cursive,** *a.* ଦ୍ରୁତଗାମୀ ।
**Cursorily,** *ad.* ସତ୍ୱର, ଅସାବଧାନ ଭାବରେ । [ ଉପରଠାଉରିଆ ।
**Cursory,** *a.* ଅସାବଧାନ, ଅନିର୍ଦ୍ଦିଷ୍ଟ,
**Curt,** *a.* ଅତି ସଂକ୍ଷିପ୍ତ ।
**Curtly,** *ad.* ଅତି ସଂକ୍ଷେପରେ ।
**Curtsy, Curtsey,** *v.* ନାରୀର ସମ୍ମାନ ପ୍ରଦର୍ଶନ କରିବା ।
**Curvature,** *n.* ବକ୍ରତା, ବାଙ୍କ ।
**Curve,** *n.* ବକ୍ରତା; *v.* ବକ୍ର ହେବା ।
**Curvilinear,** *a.* ବକ୍ରରେଖାବିଶିଷ୍ଟ ।
**Cushion,** *n.* ଗଦି; *v.* ଗଦି ଲଗାଇବା ।
**Custard,** *n.* ଦୁଧ ଓ ଅଣ୍ଡାରେ ପ୍ରସ୍ତୁତ ଖାଦ୍ୟବିଶେଷ ।

**Custard apple**, *n.* ସୀତାଫଳ, ଆତ

**Custodian**, *n.* ଜିମ୍ମାଦାର, ରକ୍ଷକ ।

**Custody**, *n.* ଜିମ୍ମା, ନ୍ୟାସ, କାରାରୋଧ ।

**Custom**, *n.* ରୀତି, ପ୍ରଚଳିତ ବିଧି, ଚଳଣି । [ ସମ୍ମତ, ରୀତିଗତ ।

**Customary**, *a.* ଚିରଚରିତ, ବିଧି-

**Customer**, *n.* କ୍ରେତା, ଗ୍ରାହକ ।

**Customs**, *n.* ଆମଦାନି-ରପ୍ତାନି ମାଶୁଲ । [ *n.* କ୍ଷତ, ଆଘାତ ।

**Cut**, *v.* କାଟିବା, ଆଘାତ କରିବା;

**Cutaneous**, *a.* ଚର୍ମସମ୍ବନ୍ଧୀୟ ।

**Cutlass**, *n.* କ୍ଷୁଦ୍ର ଖଣ୍ଡା ।

**Cutler**, *n.* ଛୁରି-କଇଞ୍ଚି ଆଦିର ନିର୍ମାତା ବା ବିକ୍ରେତା ।

**Cutlery**, *n.* ଛୁରି-କଇଞ୍ଚି ପ୍ରଭୃତି ।

**Cutlet**, *n.* ଭଜା ମାଂସଖଣ୍ଡ ।

**Cut-throat**, *n.* ଗଣ୍ଠିକଟା, ବିଶ୍ୱାସ-ଘାତକ ଲୋକ । [ *n.* କର୍ତ୍ତନ ।

**Cutting**, *a.* କଠୋର, ମର୍ମଭେଦୀ;

**Cycle**, *n.* ଯାନବିଶେଷ, ସାଇକେଲ, ନିୟମିତ କାଳକ୍ରମ ।

**Cyclic**, *a.* ସାଇକେଲ ସମ୍ବନ୍ଧୀୟ, ନିର୍ଦ୍ଦିଷ୍ଟ ସମୟକ୍ରମେ ଘଟୁଥିବା ।

**Cyclist**, *n.* ସାଇକେଲର ଆରୋହୀ ।

**Cyclone**, *n.* ଝଟିକା, ଘୂର୍ଣ୍ଣିବାୟୁ, ବତାସ ।

**Cyclonic**, *a.* ଝଟିକାପୂର୍ଣ୍ଣ ।

**Cyclopædia**, *n.* ବିଶ୍ୱକୋଷ, କୋଷଗ୍ରନ୍ଥ ।

**Cyclostyle**, *n.* କୌଣସି ଲେଖାର ଏକାଧିକ ନକଲ କରିବାର ଯନ୍ତ୍ର ।

**Cylinder**, *n.* ଗୋଲାକାର ନଳ ।

**Cylindrical**, *a.* ଗୋଲାକାର ନଳର ଆକାରବିଶିଷ୍ଟ ।

**Cymbal**, *n.* ଝାଞ୍ଜ, ଗିନି ।

**Cynic**, *n.* ଉଦାସୀନ ବ୍ୟକ୍ତି, ଏକ ଶ୍ରେଣୀର ଦାର୍ଶନିକ ।

**Cynical**, *n.* ଉଦାସୀନ ।

**Cypress**, *n.* ଏକପ୍ରକାର ବୃକ୍ଷ ।

**Czar, Tzar, Tsar**, *n.* ପ୍ରାଚୀନ ରୁଷିଆର ସମ୍ରାଟ୍ (*fem.* Czarina) ।

# D

**Dab**, *v.* ଧୀରେ ଧୀରେ ସ୍ପର୍ଶ କରିବା; *n.* ମୃଦୁ ସ୍ପର୍ଶ । [ କ୍ରୀଡ଼ା କରିବା ।

**Dabble**, *v.* ପରଚର୍ଚ୍ଚା କରିବା, ଜଳ-

**Dabbler**, *n.* ଜଳକ୍ରୀଡ଼ାକାରୀ, ପରଚର୍ଚ୍ଚାକାରୀ ।

**Dacoit**, *n.* ଡକାଏତ, ଦସ୍ୟୁ ।

**Dacoity**, *n.* ଡକାଏତି, ଦସ୍ୟୁପଣ ।
**Dad, Daddy**, *n.* ପିତା, ବାପା, ବାବା ।
**Daffodil**, *n.* ଏକପ୍ରକାର ଫୁଲ୍ ।
**Daft**, *a.* ମୂର୍ଖ, ଉନ୍ମତ୍ତ, ନିର୍ବୋଧ ।
**Dag**, *n.* ଛୁରୀ, ପିସ୍ତଲ, ଗ୍ରେଟ ବନ୍ଧୁକ ।
**Dagger**, *n.* ଛୁରୀ, କଟାରି ।
**Daggle**, *v.* କାଦୁଅରେ ଘୁଷୁରିବା ।
**Daily**, *a.* ଦୈନିକ, ଦୈନନ୍ଦିନ; *n.* ଦୈନିକ ପତ୍ରିକା; *ad.* ପ୍ରତ୍ୟହ, ପ୍ରତିଦିନ ।
**Daintily**, *ad.* ସୁନ୍ଦରଭାବରେ, ସୁରୁଚିରୂପେ । [ କୋମଳତା ।
**Daintiness**, *n.* ସୌନ୍ଦର୍ଯ୍ୟ, ମାଧୁର୍ଯ୍ୟ,
**Dainty**, *a.* ସୁନ୍ଦର, ଉତ୍ତମ, ସୁସ୍ୱାଦୁ; *n.* ଉତ୍ତମ ଖାଦ୍ୟ । [ ରଖିବା ଘର ।
**Dairy**, *n.* ଗୋଶାଳା, ଦୁଧ-ଘିଅ ଆଦି
**Dairy-maid**, *n.* ଗୋପାଳୁଣୀ, ଗଉଡୁଣୀ ।
**Dairy-man**, *n.* ଗଉଡ଼, ଗୋପାଳ ।
**Dais**, *n.* ସଭାମଞ୍ଚ, ରଙ୍ଗମଞ୍ଚ ।
**Daisy**, *n.* ଏକପ୍ରକାର ଫୁଲ ।
**Dale, Dell**, *n.* ଦୁଇ ପର୍ବତର ମଧ୍ୟବର୍ତ୍ତୀ ସ୍ଥାନ, ଉପତ୍ୟକା ।
**Dalliance**, *n.* ଲୀଳା, କ୍ରୀଡ଼ା, ବିଳାସ, ପରସ୍ପର ଆଲିଙ୍ଗନ ।
**Dally**, *v.* ଡେରି କରିବା, ମଟାଳିବା ।
**Dam**, *n.* ପଶୁର ମାଆ, ବନ୍ଧ; *v.* ନଦୀ-ସ୍ରୋତରେ ବନ୍ଧ ପକାଇବା ।
**Damage**, *n.* କ୍ଷତି, ହାନି, ଅପଚୟ; *v.* କ୍ଷତି କରିବା । [ କ୍ଷତିକାରକ ।
**Damaging**, *a.* ଅପମାନଜନକ,
**Damask**, *n.* ଏକପ୍ରକାର ରେଶମୀ ବସ୍ତ୍ର । [ ଗୃହକର୍ତ୍ତ୍ରୀ ।
**Dame**, *n.* ଗୃହିଣୀ, ମହିଳା, ଘରଣୀ,
**Damn**, *v.* ଅଭିଶାପ ଦେବା, ଦୋଷୀ କରିବା । [ ଦଣ୍ଡନୀୟ ।
**Damnable**, *a.* ନାରକୀୟ, ପାପିଷ୍ଠ,
**Damnably**, *ad.* ନାରକୀୟଭାବରେ ।
**Damnation**, *n.* ନରକଗମନ, ଧିକ୍କାର । [ ଘୃଣ୍ୟ ।
**Damnatory**, *a.* ନିନ୍ଦାଜନକ,
**Damned**, *a.* ଅଭିଶପ୍ତ, ନାରକୀ, ପାପୀ ।
**Damp**, *a.* ଆର୍ଦ୍ର, ସନ୍ତସନ୍ତିଆ; *n.* ଆର୍ଦ୍ରତା; *v.* ଆର୍ଦ୍ର କରିବା ।
**Dampness**, *n.* ଆର୍ଦ୍ରତା ।
**Damsel**, *n.* କୁମାରୀ, କନ୍ୟା, ବାଳିକା, ତରୁଣୀ । [ ନାଚ ।
**Dance**, *v.* ନୃତ୍ୟ କରିବା; *n.* ନୃତ୍ୟ,
**Dancer**, *n.* ନର୍ତ୍ତକ ବା ନର୍ତ୍ତକୀ ।
**Dancing**, *n.* ନୃତ୍ୟକଳା; *a.* ନୃତ୍ୟରତ ।
**Dandle**, *v.* ଶିଶୁକୁ ଗେଲ କରିବା, କୋଳରେ ଧରି ନଚାଇବା । [ ରୁସି ।
**Dandruff**, *n.* ମୁଣ୍ଡରେ ଥିବା ମଳଚମ,
**Dandy**, *n.* ଫୁଲବାବୁ, ବ୍ୟସନୀ ଲୋକ, ପୋଷାକରେ ସଉକୀ ଲୋକ ।

**Dandyism**, *n.* ବେଶବିଳାସ, ପୋଷାକରେ ସଉକ ।
**Danger**, *n.* ବିପଦ, ବିଘ୍ନ, ଆଶଙ୍କା ।
**Dangerous**, *a.* ବିପଜ୍ଜନକ, ଭୀଷଣ, ଭୟପ୍ରଦ । [ ଭାବରେ ।
**Dangerously**, *ad.* ବିପଜ୍ଜନକ
**Dangle**, *v.* ଝୁଲିବା, ଓହଳିବା, ପରାଧୀନ ହେବା । [ ଅଧୀନ ଲୋକ ।
**Dangler**, *n.* ପରନିର୍ଭରଶୀଳ, ସ୍ତ୍ରୀର
**Dank**, *a.* ଆର୍ଦ୍ର, ସନ୍ତସନ୍ତିଆ ।
**Dapper**, *a.* ଚଳାଖ, ଚଞ୍ଚଳ, ସୁନ୍ଦର ।
**Dapple**, *v.* ନାନା ରଙ୍ଗରେ ଚିତ୍ର କରିବା; ଟୋପି ଟୋପି ଚିତ୍ର କରିବା ।
**Dappled**, *a.* ଚିତ୍ରବିଚିତ୍ର, ଗୁପଗୁପିକିଆ
**Dare**, *v.* ସାହସ କରିବା, ସ୍ପର୍ଦ୍ଧା କରିବା ।
**Daredevil**, *n.* ଦୁଃସାହସୀ ଲୋକ; *a.* ଦୁଃସାହସୀ, ସ୍ପର୍ଦ୍ଧାକାରୀ ।
**Daring**, *a.* ସାହସୀ, ନିର୍ଭୀକ, ପରାକ୍ରମୀ; *n.* ଦୁଃସାହସ ।
**Daringly**, *ad.* ସାହସ ସହକାରେ ।
**Dark**, *a.* ଅନ୍ଧକାରମୟ, କୃଷ୍ଣବର୍ଣ୍ଣବିଶିଷ୍ଟ, ଅନ୍ଧାରୁଆ । [ ମହାଦେଶ, ଆଫ୍ରିକା ।
**Dark continent**, *n.* ତମସାଚ୍ଛନ୍ନ
**Darken**, *v.* ଅନ୍ଧାର କରିବା, ଆଚ୍ଛନ୍ନ କରିବା ।
**Darkish**, *a.* ଈଷତ୍ କୃଷ୍ଣ, ଅନ୍ଧାରୁଆ ।
**Darkly**, *ad.* ଅସ୍ପଷ୍ଟଭାବରେ ।
**Darkness**, *n.* ଅନ୍ଧକାର, ଅସ୍ପଷ୍ଟତା ।
**Darksome**, *a.* ଅନ୍ଧାରୁଆ, ଅସ୍ପଷ୍ଟ ।
**Darling**, *a.* ପ୍ରିୟତମ; *n.* ପ୍ରୀତିପାତ୍ର ।
**Darn**, *v.* ରଫୁ କରିବା, ଲୁଗାର କଣା ସିଲେଇ କରିବା । [ ଅଗଛ ।
**Darnel**, *n.* ବାଳୁଙ୍ଗା, ଅରମା,
**Dart**, *n.* ତୀର, ବାଣ, ବର୍ଚ୍ଛା; *v.* ଶୀଘ୍ର ଚଳିଯିବା, ହଠାତ୍ ଆଘାତ କରିବା ।
**Dash**, *v.* ଚୂର୍ଣ୍ଣୀଭୂତ କରିବା; *n.* ଆଘାତ, ଧକ୍କା, ବିରାମଚିହ୍ନବିଶେଷ(—) ।
**Dashing**, *a.* ଅବିବେକ, ଅସାବଧାନ, ଦୁଃସାହସୀ । [ କାପୁରୁଷ ।
**Dastard**, *n.* ଭୟାକ୍ରୁ ଲୋକ,
**Dastardly**, *a.* କାପୁରୁଷୋଚିତ, ଭୀରୁ; *ad.* ଭୀରୁତାପୂର୍ବକ ।
**Dastardy**, *n.* ଭୀରୁତା, କାପୁରୁଷତା ।
**Data**, *n.* (*pl.*) ସ୍ୱୀକୃତ ତଥ୍ୟାବଳୀ; (*sing.*) Datum ।
**Date**, *n.* ତାରିଖ, ଖଜୁରିକୋଳି; *v.* ଦିନ ସ୍ଥିର କରିବା, ତାରିଖ ଦେବା ।
**Dateless**, *a.* ତାରିଖହୀନ ।
**Date-palm**, *n.* ଖଜୁରି ଗଛ ।
**Dative case**, *n.* ସମ୍ପ୍ରଦାନ କାରକ
**Datum**, *n.* ସ୍ୱୀକୃତ ତଥ୍ୟ ।
**Daub**, *v.* ଲେପିବା, ଚିତ୍ରଣ କରିବା; *n.* ମୋଟାମୋଟି ଚିତ୍ର । [ ଝିଅ ।
**Daughter**, *n.* କନ୍ୟା, ଦୁହିତା,

**Daughter-in-law**, *n.* ପୁତ୍ରବଧୂ, ବୋହୂ, ପୁତ୍ରର ପତ୍ନୀ ।
**Daughterly**, *a.* କନ୍ୟାସୁଲଭ ।
**Daunt**, *v.* ଭୀତ କରିବା, ଧମକ ଦେବା ।
**Dauntless**, *a.* ନିର୍ଭୀକ, ସାହସୀ ।
**Daw**, *n.* ଡାମରିକାଉ ।
**Dawdle**, *v.* ସମୟ ଅପବ୍ୟୟ କରିବା ।
**Dawn**, *n.* ପ୍ରଭାତ, ପାହାନ୍ତା, ଉଷା ।
**Day**, *n.* ଦିବସ, ଦିନ, ଦିବାଭାଗ ।
**Day-book**, *n.* ଦୈନିକ ଜମାଖର୍ଚ୍ଚ ବହି, ରେକଡ଼, ସିହା । [ କାଳ, ପ୍ରତ୍ୟୂଷ ।
**Daybreak**, *n.* ଅରୁଣୋଦୟ, ଉଷା-
**Day-dream**, *n.* ଦିବାସ୍ୱପ୍ନ, ଅଳୀକ କଳ୍ପନା, ଅବାସ୍ତବ ଚିନ୍ତା ।
**Day-labourer**, *n.* ଦିନମଜୁରିଆ ।
**Day-light**, *n.* ସୂର୍ଯ୍ୟାଲୋକ, ଦିବାଲୋକ ।
**Daysman**, *n.* ବିଚାରକର୍ତ୍ତା, ମଧ୍ୟସ୍ଥ ।
**Day-star**, *n.* ଶୁକ୍ରତାରା, ପ୍ରଭାତୀ ତାରା । [ ସ୍ତମ୍ଭୀଭୂତ କରିବା ।
**Daze**, *v.* ଚକିତ କରିବା, ବିହ୍ୱଳ କରିବା,
**Dazzle**, *v.* ଝଲସାଇଦେବା, ଚକମକ କରିବା, ତେଜରେ ଅଭିଭୂତ କରିବା ।
**Deacon**, *n.* ଗୀର୍ଜାର ଉପାଧ୍ୟକ୍ଷ ।
**Dead**, *a.* ମୃତ, ନିର୍ଜୀବ, ପ୍ରାଣହୀନ, ଅପ୍ରଚଳିତ; *ad.* ସମ୍ପୂର୍ଣ୍ଣରୂପେ । [ମୁର୍ଦ୍ଦାର ।
**Dead-body**, *n.* ମୃତଦେହ, ଶବ,
**Deaden**, *v.* ତେଜୋହୀନ କରିବା, ଅବଶ କରିବା । [ ଆପଦବିପଦ ।
**Deadliness**, *n.* ମାରାତ୍ମକତା,
**Deadlock**, *n.* ଅଚଳନ୍ତ ଅବସ୍ଥା ।
**Deadly**, *a.* ପ୍ରାଣନାଶକ ।
**Deaf**, *a.* ବଧିର, କାଲ, ଅମନୋଯୋଗୀ ।
**Deafen**, *v.* ବଧିର କରିବା ।
**Deafening**, *a.* କର୍ଣ୍ଣବଧିରକାରୀ ।
**Deafness**, *n.* ବଧିରତା ।
**Deal**, *v.* ବଣ୍ଟନ କରିବା, କାରବାର କରିବା; *n.* ସଂଖ୍ୟା, ବିଭାଗ, ପରିମାଣ ।
**Dealer**, *n.* ବ୍ୟବସାୟୀ, ବଣ୍ଟନକାରୀ, ବେପାରୀ । [ ସମ୍ବନ୍ଧ ।
**Dealing**, *n.* ଦେଣନେଣ, ବ୍ୟବହାର,
**Deambulation**, *n.* ବିଦେଶ ଭ୍ରମଣ । [ ବିଦ୍ୟାଳୟର ବିଭାଗୀୟ ମୁଖ୍ୟ ।
**Dean**, *n.* ଧର୍ମାଧ୍ୟକ୍ଷବିଶେଷ, ବିଶ୍ୱ-
**Dear**, *a.* ପ୍ରିୟ, ମହର୍ଘ, ମହଙ୍ଗା ।
**Dearly**, *ad.* ସ୍ନେହ ସହକାରେ, ବହୁମୂଲ୍ୟରେ ।
**Dearness**, *n.* ଦୁର୍ମୂଲ୍ୟତା, ମୂଲ୍ୟବୃଦ୍ଧି ।
**Dearth**, *n.* ଦୁର୍ମୂଲ୍ୟତା, ଅଭାବ, ଅନାଟନ, ଦୁର୍ଭିକ୍ଷ ।
**Deary**, *n.* ପ୍ରିୟବ୍ୟକ୍ତି ।
**Death**, *n.* ମୃତ୍ୟୁ, ମରଣ, ପଞ୍ଚତ୍ୱପ୍ରାପ୍ତି ।
**Death-bed**, *n.* ମୃତ୍ୟୁଶଯ୍ୟା ।
**Death-blow**, *n.* ଜୀବନାନ୍ତକ ଆଘାତ, ସର୍ବନାଶୀ ଆଘାତ ।

**Death-duty**, *n.* ମୃତ ବ୍ୟକ୍ତିର ସମ୍ପତ୍ତି ଉପରେ ଉତ୍ତରାଧିକାର ଶୁଳ୍କ ।
**Deathless**, *a.* ଅମର, ଅବିନାଶୀ, ଚିରସ୍ଥାୟୀ । [ ସଦୃଶ ।
**Deathlike**, *a.* ମରଣତୁଲ୍ୟ, ମୃତ୍ୟୁ-
**Death rate**, *n.* ମୃତ୍ୟୁହାର ।
**Deathsman**, *n.* ବଧକାରୀ, ଜଲ୍ଲାଦ ।
**Death-trap**, *n.* ସାଙ୍ଘାତିକ ସ୍ଥାନ ।
**Debar**, *v.* ନିବାରଣ କରିବା, ବଞ୍ଚିତ କରିବା, ରହିତ କରିବା । [ କରିବା ।
**Debark**, *v.* ଜାହାଜରୁ ଅବତରଣ
**Debarkation**, *n.* ଜାହାଜରୁ ଅବତରଣ । [ ଅପମାନ ଦେବା ।
**Debase**, *v.* ମାନହାନି କରିବା,
**Debasement**, *n.* ମାନହାନି, ଅପମାନ । [ ତର୍କ ବିତର୍କର ଯୋଗ୍ୟ ।
**Debatable**, *a.* ବାଦାନୁବାଦାର୍ହ,
**Debate**, *v.* ବାଦାନୁବାଦ କରିବା; *n.* ବିତର୍କ ।
**Debater**, *n.* ତର୍କକାରୀ, ତାର୍କିକ ।
**Debating Society**, *n.* ତର୍କ-ସମିତି । [ *v.* ଭ୍ରଷ୍ଟାଚାର କରିବା ।
**Debauch**, *n.* ଲାମ୍ପଟ୍ୟ, ଭ୍ରଷ୍ଟାଚାର;
**Debauchee**, *n.* ଲମ୍ପଟୀ, ଇନ୍ଦ୍ରିୟ-ପରାୟଣ ବ୍ୟକ୍ତି । [ ଇନ୍ଦ୍ରିୟାସକ୍ତ ।
**Debauchery**, *n.* ଲାମ୍ପଟ୍ୟ,
**Debenture**, *n.* କମ୍ପାନିର ଋଣପତ୍ର ।

**Debilitate**, *v.* ଦୁର୍ବଳ କରିଦେବା ।
**Debility**, *n.* ଦୁର୍ବଳତା, ଦୌର୍ବଲ୍ୟ, କ୍ଷୀଣତା, ଅସାମର୍ଥ୍ୟ ।
**Debit**, *n.* ଖରଚ ପାଖ, ବ୍ୟୟ ଦିଗ; *v.* ହିସାବରେ ଖରଚରୂପେ ଦେଖାଇବା ।
**Debonair**, *a.* ସୁଶୀଳ, ଶିଷ୍ଟ, ସୁନ୍ଦର ।
**Debris**, *n.* ଭଗ୍ନସ୍ତୂପ, ଭଗ୍ନାବଶେଷ, ଧ୍ୱଂସସ୍ତୂପ, ଅଳିଆଗଦା ।
**Debt**, *n.* ଋଣ, କରଜ, ଧାର ।
**Debtor**, *n.* ଋଣୀ, ଖାତକ, ଅଧମର୍ଣ୍ଣ ।
**Debut**, *n.* ପ୍ରାରମ୍ଭିକ ଉଦ୍ୟମ, ପ୍ରଥମ ଅଭିନୟ । [ ଦଶନ୍ଧି, ଦଶକ ।
**Decade**, *n.* ଦଶବର୍ଷର ସମାହାର,
**Decadence, Decadency**, *n.* ଅବନତି, କ୍ଷୟ, ପତନ । [ ଶୀଳ ।
**Decadent**, *a.* ପତନୋନ୍ମୁଖ, କ୍ଷୟ-
**Decagon**, *n.* ଦଶଭୁଜକ୍ଷେତ୍ର ।
**Decalogue**, *n.* ଖ୍ରୀଷ୍ଟିଆନ ଧର୍ମର ଦଶ ଆଜ୍ଞା । [ ଯିବା ।
**Decamp**, *v.* ତମ୍ବୁ ଉଠାଇବା, ପଳାଇ-
**Decant**, *v.* ଢାଳିବା ।
**Decanter**, *n.* ମଦ୍ୟପାତ୍ରବିଶେଷ ।
**Decapitate**, *v.* ମସ୍ତକ ଛେଦନ କରିବା, ମୁଣ୍ଡ କାଟିବା ।
**Decapitation**, *n.* ଶିରଚ୍ଛେଦ ।
**Decarbonise**, *v.* ଅଙ୍ଗାରକହୀନ କରିବା ।

Decay, *v.* କ୍ଷୟ ପାଇବା, ହ୍ରାସ ହେବା; *n.* କ୍ଷୟ, ହ୍ରାସ, ଅବନତି ।
Decaying, *a.* ଜୀର୍ଣ୍ଣ, କ୍ଷୟପ୍ରାପ୍ତ, କ୍ଷୟଶୀଳ ।
Decease, *n.* ମୃତ୍ୟୁ, ମରଣ; *v.* ମରିବା
Deceased, *a.* ମୃତ, ସ୍ୱର୍ଗତ, ପଞ୍ଚତ୍ୱପ୍ରାପ୍ତ
Deceit, *n.* କପଟ, ଶଠତା, ଛଳନା, ପ୍ରତାରଣା । [ ପ୍ରବଞ୍ଚକ ।
Deceitful, *a.* ଶଠ, ପ୍ରତାରକ,
Deceitfully, *a.* ଶଠତାପୂର୍ବକ ।
Deceive, *v.* ଠକିବା, ଭୁଲାଇବା, ପ୍ରତାରଣା କରିବା ।
Deceiver, *n.* ପ୍ରତାରକ, ଯେ ଭୁଲାଏ ।
Decency, *n.* ଭଦ୍ରତା, ସୌଜନ୍ୟ, ସଭ୍ୟତା । [ ଅନୁଷ୍ଠିତ ।
Decennary, *a.* ଦଶବର୍ଷରେ
Decennial, *a.* ଦଶବର୍ଷବ୍ୟାପୀ, ଦଶବାର୍ଷିକ । [ ଶୋଭନୀୟ ।
Decent, *a.* ଭଦ୍ର, ସଭ୍ୟ, ଉପଯୁକ୍ତ,
Decently, *ad.* ଉପଯୁକ୍ତରୂପେ ।
Decentralisation, *n.* ବିକେନ୍ଦ୍ରୀକରଣ । [ କରିବା ।
Decentralise, *v.* ବିକେନ୍ଦ୍ରିତ
Deception, *n.* ପ୍ରବଞ୍ଚନା, ଛଳ, ଘୃରୂଷ୍ଟ, ପ୍ରତାରଣା ।
Deceptive, *a.* ମିଥ୍ୟା, ପ୍ରତାରଣାପୂର୍ଣ୍ଣ ।
Decide, *v.* ନିଷ୍ପତ୍ତି କରିବା, ସିଦ୍ଧାନ୍ତ କରିବା ।

Decided, *a.* ନିଷ୍ପତ୍ତିକୃତ, ସିଦ୍ଧାନ୍ତ ।
Decidedly, *ad.* ନିଶ୍ଚିତରୂପେ, ନିଃସନ୍ଦେହଭାବରେ ।
Deciduous, *a.* ଅସ୍ଥାୟୀ, କ୍ଷୟଶୀଳ, ପ୍ରତିବର୍ଷ ଯାହାର ପତ୍ର ଝଡ଼େ ।
Decimal, *a.* ଦଶମିକ, ଦଶସଂଖ୍ୟକ; *n.* ଏକକର ଦଶାଂଶ । [ ଭଗ୍ନାଂଶ ।
Decimal fraction, *n.* ଦଶମିକ
Decipher, *v.* ଗୂଢ଼ ଅର୍ଥ ପ୍ରକାଶ କରିବା । [ ସିଦ୍ଧାନ୍ତ ।
Decision, *n.* ନିଷ୍ପତ୍ତି, ମୀମାଂସା,
Decisive, *a.* ନିଷ୍ପତ୍ତିମୂଳକ, ସନ୍ଦେହ-ଶୂନ୍ୟ । [ ସିଦ୍ଧାନ୍ତରୂପେ ।
Decisively, *ad.* ନିଶ୍ଚିତଭାବରେ,
Deck, *n.* ଜାହାଜର ଉପର ତଳ; *v.* ଅଳଙ୍କୃତ କରିବା, ସଜାଇବା ।
Decker, *n.* ତଳବିଶିଷ୍ଟ ଜାହାଜ, ସଜ୍ଜାକାରୀ । [ କରିବା ।
Declaim, *v.* ବ୍ୟାଖ୍ୟାନ କରିବା, ନିନ୍ଦା
Declaimer, *n.* ବ୍ୟାଖ୍ୟାନକାରୀ, ବକ୍ତା । [ ବ୍ୟାଖ୍ୟାନ ।
Declamation, *n.* ଶବ୍ଦପାଣ୍ଡିତ୍ୟ,
Declamator, *n.* ବାକ୍‌ପଟୁ, ବାଗୀଶ ।
Declaration, *n.* ଘୋଷଣା, ବିଜ୍ଞାପନ, ପ୍ରଖ୍ୟାପନ ।
Declaratory, *a.* ଜ୍ଞାପକ, ସୂଚକ, ନିବେଦକ ।

**Declare**, *v.* ଘୋଷଣା କରିବା, ପ୍ରକଟ କରିବା, ଜଣାଇ ଦେବା । [ ସ୍ୱୀକାର ।

**Declension**, *n.* ବିଭକ୍ତିରୂପ, ଶବ୍ଦ-

**Declinable**, *a.* ପ୍ରତ୍ୟୟସାଧ୍ୟ ।

**Declination**, *n.* କ୍ଷୟ, ଚ୍ୟୁତ, ଶବ୍ଦସାଧନ ।

**Decline**, *v.* କ୍ଷୟ ପାଇବା, ଅସ୍ୱୀକାର କରିବା, ଅବନତ ହେବା, ବିଭକ୍ତିର ଶବ୍ଦ-ରୂପ କରିବା ।

**Declivitous**, *a.* ଢାଲୁ, ଗଡ଼ାଣିଆ ।

**Declivity**, *n.* ଗଡ଼ାଣିଆ ସ୍ଥାନ, ନିମ୍ନାଭିମୁଖତା । [ କରିବା ।

**Decoct**, *v.* ପାଚନ କରିବା, କ୍ୱାଥ

**Decoction**, *n.* କ୍ୱାଥ, ନିର୍ଯ୍ୟାସ, ପାଚନ

**Decomposable**, *a.* ବିଶ୍ଳେଷଣୀୟ, ପଚନୀୟ । [ ପୃଥକ୍ କରିବା, ପଚିବା ।

**Decompose**, *v.* ବିଶ୍ଳେଷଣ କରିବା,

**Decomposition**, *n.* ପୃଥକ୍‌କରଣ, ବିଶ୍ଳେଷଣ, ପଚନ । [ କରିବା ।

**Decontrol**, *v.* ନିୟନ୍ତ୍ରଣରୁ ମୁକ୍ତ

**Decorate**, *v.* ଭୂଷିତ କରିବା, ସଜ୍ଜିତ କରିବା ।

**Decoration**, *n.* ସଜ୍ଜୀକରଣ, ଭୂଷଣ

**Decorative**, *a.* ଶୋଭାକାରକ ।

**Decorous**, *a.* ଶିଷ୍ଟାଚାରସମ୍ମତ, ବିନୀତ, ଉପଯୁକ୍ତ, ଭଦ୍ରୋଚିତ ।

**Decorum**, *n.* ବିନୟ, ମର୍ଯ୍ୟାଦା, ଶିଷ୍ଟାଚାର, ସୌଜନ୍ୟ ।

**Decoy**, *v.* ଫୁସୁଲାଇବା, ଲୋଭ ଦେଖାଇ ଫାନ୍ଦରେ ପକାଇବା, ଭୁଲାଇବା ।

**Decrease**, *v.* ଊଣା ହେବା, କମିବା, ହ୍ରାସ ପାଇବା; *n.* ନ୍ୟୂନତା, ହ୍ରାସ, କ୍ଷୟ ।

**Decree**, *v.* ଆଦେଶ ଦେବା, ଆଜ୍ଞା ଦେବା; *n.* ଆଇନଗତ ନିର୍ଣ୍ଣୟ, ଡିଗ୍ରି ।

**Decrement**, *n.* ହ୍ରାସ, କ୍ଷୟ ।

**Decrepit**, *a.* ଜରାଗ୍ରସ୍ତ, ଜୀର୍ଣ୍ଣ, ଚଳତ୍-ଶକ୍ତିହୀନ । [ ଜୀର୍ଣ୍ଣାବସ୍ଥା ।

**Decrepitude**, *n.* ଜରା, ବାର୍ଦ୍ଧକ୍ୟ,

**Decretal**, *a.* ବ୍ୟବସ୍ଥାନୁଯାୟୀ ନିର୍ଣ୍ଣୀତ, ଆଦେଶଦ୍ୱାରା ନିର୍ଦ୍ଦିଷ୍ଟ, ଡିଗ୍ରି ସମ୍ବନ୍ଧୀୟ ।

**Decry**, *v.* ନିନ୍ଦା କରିବା, ଅପବାଦ ଦେବା ।

**Dedicate**, *v.* ଉତ୍ସର୍ଗ କରିବା, ନିକ୍ଷେପ କରିବା, ପ୍ରତିଷ୍ଠା କରିବା, ବିନିଯୋଗ କରିବା । [ ସମର୍ପଣ, ବିନିଯୋଗ ।

**Dedication**, *n.* ଉତ୍ସର୍ଗ, ପ୍ରତିଷ୍ଠା,

**Dedicator**, *n.* ଉତ୍ସର୍ଗକର୍ତ୍ତା ।

**Dedicatory**, *a.* ଉତ୍ସର୍ଗସମ୍ବନ୍ଧୀୟ ।

**Deduce**, *v.* ଅନୁମାନ କରିବା, ନିର୍ଣ୍ଣୟ କରିବା ।

**Deducible**, *a.* ଅନୁମେୟ ।

**Deduct**, *v.* ଫେଡ଼ିବା, ବିୟୋଗ କରିବା । [ ଅନୁମାନ ।

**Deduction**, *n.* ବିୟୋଗ, ଫେଡ଼ାଣ,

**Deductive**, *a.* ଆନୁମାନିକ, ଅନୁମାନସିଦ୍ଧ ।

Deductively, *ad.* ଅନୁମାନଦ୍ୱାରା ।
Deed, *n.* କାର୍ଯ୍ୟ, କର୍ମ, ଲେଖପ୍ରମାଣ, ଦଲିଲ ।
Deem, *v.* ବିଚାରିବା, ମନେ କରିବା, [ ବୋଧ କରିବା ।
Deep, *a.* ଗମ୍ଭୀର, ଅଗାଧ, ଗହନ, ଗାଢ଼; *n.* ସମୁଦ୍ର, ଅଗାଧ ଜଳ ।
Deepen, *v.* ଗମ୍ଭୀର କରିବା, ଘନ କରିବା, କ୍ରମଶଃ ନିମ୍ନ ହେବା ।
Deeply, *ad.* ଗମ୍ଭୀରଭାବରେ, ଅତ୍ୟନ୍ତ ।
Deepness, *n.* ଗମ୍ଭୀରତା, ଗାମ୍ଭୀର୍ଯ୍ୟ ।
Deer, *n.* ହରିଣ, ମୃଗ, କୁରଙ୍ଗ, କୃଷ୍ଣସାର ।
Deface, *v.* ବିକୃତ କରିବା, ବିରୂପ କରିବା, ନାଶ କରିବା ।
Defacement, *n.* ନାଶକରଣ, ବିରୂପକରଣ ।
Defacto, *ad.* ବସ୍ତୁତଃ, ପ୍ରକୃତରେ, [ କାର୍ଯ୍ୟତଃ ।
Defalcate, *v.* ତହବିଲ ତୋଷରପାତ କରିବା ।
Defalcation, *n.* ଅପଚୟ, ତହବିଲ [ ତୋଷରପାତ ।
Defalcator, *n.* ତହବିଲ ତୋଷରପ- କାରୀ ।
Defamation, *n.* ମାନହାନି, [ ଅପବାଦ, ଦୁର୍ନାମ ।
Defamatory, *a.* ମାନହାନିସୂଚକ, ଅପବାଦଜନକ, ଅକୀର୍ତ୍ତିକର ।
Defame, *v.* ମାନହାନି କରିବା, ଅପବାଦ ଦେବା, ଅପମାନିତ କରିବା ।
Defatigate, *v.* କ୍ଳାନ୍ତ କରିବା ।
Default, *n.* ଅପରାଧ, ଅାଦେଶଲଙ୍ଘନ, କର୍ତ୍ତବ୍ୟଚ୍ୟୁତି; *v.* ଆଦେଶ ଲଙ୍ଘନ କରିବା ।
Defaulter, *n.* ଅପରାଧୀ, ଆଦେଶ ଅମାନ୍ୟକାରୀ, ନିୟମଭଙ୍ଗକାରୀ ।
Defeasible, *a.* ଲୋପନୀୟ ।
Defeat, *v.* ପରାଜିତ କରିବା, ଜିଣିବା; *n.* ପରାଜୟ, ପରାଭବ । [ ଖଣ୍ଡ ।
Defect, *n.* ଦୋଷ, ତ୍ରୁଟି, ବିଚ୍ୟୁତ,
Defection, *n.* ତ୍ରୁଟି, ପକ୍ଷତ୍ୟାଗ, ବିଦ୍ରୋହ । [ ଅଙ୍ଗହୀନ ।
Defective, *a.* ଦୋଷଯୁକ୍ତ, ବିକୃତ,
Defectively, *ad.* ଦୋଷଯୁକ୍ତ ଭାବରେ ।
Defence, *n.* ପ୍ରତିରକ୍ଷା, ପକ୍ଷସମର୍ଥନ ।
Defenceless, *a.* ନିରକ୍ଷ, ଅଶରଣ, ଅନାଥ । [ କରିବା ।
Defend, *v.* ପ୍ରତିରକ୍ଷା କରିବା, ଉଦ୍ଧାର
Defendant, *n.* ପ୍ରତିବାଦୀ, ଅଭିଯୁକ୍ତ ବ୍ୟକ୍ତି, ଆସାମୀ ।
Defender, *n.* ରକ୍ଷାକାରୀ, ରକ୍ଷକ ।
Defensible, *a.* ପ୍ରତିରକ୍ଷଣୀୟ, ସମର୍ଥନଯୋଗ୍ୟ । [ ପ୍ରତିରକ୍ଷାପକ୍ଷୀୟ ।
Defensive, *a.* ପ୍ରତିରକ୍ଷାମୂଳକ,
Defer, *v.* ବିଳମ୍ବ କରିବା, କାଳକ୍ଷେପ କରିବା, ଅନୁରୋଧ କରିବା ।
Deference, *n.* ଅନୁରୋଧ, ବିନୟ, ସମ୍ଭ୍ରମ, ନମ୍ରତା, ସମ୍ମାନ, ଭକ୍ତି ।

Deferential, *a.* ସମ୍ମାନପୂର୍ଣ୍ଣ ।
Defiance, *n.* ଅବଜ୍ଞା, ଆସ୍ପର୍ଦ୍ଧା, ଯୁଦ୍ଧାର୍ଥ ଆହ୍ବାନ । [ ଦର୍ପୀ ।
Defiant, *a.* ଉଦ୍ଧତ, ଅବଜ୍ଞାକାରୀ,
Deficiency, *n.* ଅଭାବ, ନ୍ୟୂନତା, ବୈକଲ୍ୟ, କମ୍ତି । [ ନ୍ୟୂନ, ଊଣା ।
Deficient, *a.* ଅଭାବଯୁକ୍ତ, ବିକଳ,
Deficit, *n.* ଅଭାବ, ନିଅଣ୍ଟ ।
Defile, *v.* ଅପବିତ୍ର କରିବା, ଦୂଷିତ କରିବା, ଆବିଳ କରିବା; *n.* ସଙ୍କୀର୍ଣ୍ଣ ପଥ, ଦୁଇ ପର୍ବତମଧ୍ୟସ୍ଥ ପଥ ।
Defiled, *a.* ଅଶୁଚୀକୃତ, ଅପବିତ୍ରୀକୃତ ।
Defilement, *n.* ଅଶୌଚ ।
Definable, *a.* ବର୍ଣ୍ଣନୀୟ, ବ୍ୟାଖ୍ୟାର୍ହ ।
Define, *v.* ସଂଜ୍ଞା ଦେବା, ନିରୂପଣ କରିବା, ଲକ୍ଷଣ ନିର୍ଦ୍ଦେଶ କରିବା ।
Definite, *a.* ନିର୍ଣ୍ଣୀତ, ନିଶ୍ଚିତ, ନିର୍ଦ୍ଦିଷ୍ଟ, ନିର୍ଦ୍ଧାରିତ । [ ନିର୍ଦ୍ଦିଷ୍ଟରୂପେ ।
Definitely, *ad.* ନିଶ୍ଚିତଭାବରେ,
Definiteness, *n.* ନିର୍ଦ୍ଦିଷ୍ଟତା, ନିଶ୍ଚୟତା । [ ଲକ୍ଷଣନିର୍ଦ୍ଦେଶ ।
Definition, *n.* ସଂଜ୍ଞା, ବ୍ୟାଖ୍ୟା,
Definitive, *a.* ନିର୍ଣ୍ଣାୟକ ।
Deflect, *v.* ବିଚଳିତ କରିବା, ଭ୍ରଂଶ କରିବା । [ ଚ୍ୟୁତ ।
Deflection, *n.* ବିପଥଗମନ, ଭ୍ରଂଶ,
Defoliation, *n.* ବୃକ୍ଷର ପତ୍ରଚ୍ଛେଦନ ।
Deform, *v.* ବିକୃତ କରିବା, ବିରୂପ କରିବା । [ ବିକାର, ଅଙ୍ଗବୈକଲ୍ୟ ।
Deformation, *n.* ବିକୃତୀକରଣ,
Deformed, *a.* ବିକୃତ, ବିକଳାଙ୍ଗ, ବିରୂପ, କଦାକାର ।
Deformity, *n.* ବିକୃତି, କୁରୂପତା ।
Defraud, *v.* ପ୍ରତାରଣା କରିବା, ଠକିବା । [ କରିବା ।
Defray, *v.* ବ୍ୟୟ କରିବା, ପରିଶୋଧ
Deft, *a.* ପାରଗ, ଚତୁର, ଦକ୍ଷ ।
Deftly, *ad.* ଚତୁରଭାବରେ ।
Deftness, *n.* ପାରଗତା, ଦକ୍ଷତା ।
Defunct, *a.* ଅପ୍ରଚଳିତ, ଅବ୍ୟବହୃତ, ମୃତ; *n.* ମୃତ ବ୍ୟକ୍ତି ।
Defy, *v.* ଅବଜ୍ଞା କରିବା, ଅନାଦର କରିବା, ଯୁଦ୍ଧକୁ ଆହ୍ବାନ କରିବା ।
Degeneracy, *n.* ଧର୍ମଚ୍ୟୁତି ।
Degenerate, *v.* ଭ୍ରଷ୍ଟ ହେବା, ଧର୍ମଚ୍ୟୁତ ହେବା; *a.* ଅପକୃଷ୍ଟ, ଧର୍ମଚ୍ୟୁତ ।
Degeneration, *n.* ଅପକର୍ଷ, ଅଧଃପାତ, ନୀଚ ଅବସ୍ଥା ।
Degradation, *n.* ଭ୍ରଂଶ, ନୀଚଗତି, ପଦଚ୍ୟୁତି, ଅବମାନନା । [ଅସମ୍ମାନ କରିବା
Degrade, *v.* ପଦଚ୍ୟୁତ କରିବା,
Degraded, *a.* ପଦଚ୍ୟୁତ, ଅଧଃପତିତ ।
Degrading, *a.* ଅଗୌରବକର, ଅପମାନ-ଜନକ, ଲଜ୍ଜାଜନକ ।

**Degree**, *n.* ପଦ, ପରିମାଣ, ପଦବୀ, ଉପାଧି, ଅବସ୍ଥା, ଅକ୍ଷାଂଶ ।

**Deification**, *n.* ଦେବତ୍ୱପ୍ରଦାନ ।

**Deify**, *v.* ଦେବତ୍ୱ ଆରୋପଣ କରିବା, ଦେବତା ପରି ପୂଜା କରିବା । [ ଦେବା ।

**Deign**, *v.* ଅନୁଗ୍ରହ କରିବା, ପ୍ରସନ୍ନ

**Deism**, *n.* ଈଶ୍ୱରବାଦ, ଆସ୍ତିକତା ।

**Deist**, *n.* ଈଶ୍ୱରବାଦୀ, ଆସ୍ତିକ ।

**Deity**, *n.* ଦେବତା, ଈଶ୍ୱର, ପରଂବ୍ରହ୍ମ ।

**Deject**, *v.* ବିଷଣ୍ଣ କରିବା, ମ୍ଳାନ କରିବା । [ ଶୋକାକୁଳ ।

**Dejected**, *a.* ବିଷଣ୍ଣ, ଅବସନ୍ନ, ଖିନ୍ନ,

**Dejection**, *n.* ବିଷାଦ, ନିର୍ବେଦ, ଅବସାଦ, ଶୋକ । [ ବିଳମ୍ବ କରିବା ।

**Delay**, *n.* ବିଳମ୍ବ, କାଳାତିପାତ; *v.*

**Delectable**, *a.* ରମ୍ୟ, ମନୋଜ୍ଞ, ମନୋହର, ଆନନ୍ଦଜନକ ।

**Delectation**, *n.* ଗଭୀର ଆନନ୍ଦ ।

**Delegate**, *v.* ପ୍ରେରଣ କରିବା, ଭାର ଅର୍ପଣ କରିବା; *n.* ପ୍ରତିଭୂ, ପ୍ରତିନିଧି ।

**Delegation**, *n.* ନିଯୋଜନ, ପ୍ରେରଣ, ପ୍ରତିନିଧିବୃନ୍ଦ ।

**Delete**, *v.* ବିନାଶ କରିବା, ଲୋପ କରିବା, ଉଠାଇ ଦେବା ।

**Deleterious**, *a.* ଧ୍ୱଂସକ, ପ୍ରାଣ-ନାଶକ, କ୍ଷତିକାରକ ।

**Deliberate**, *a.* ସାବଧାନ, ବିଚାର-ଶୀଳ; *v.* ଚିନ୍ତା କରିବା, ବିବେଚନା କରିବା । [ ବିଚାରପୂର୍ବକ ।

**Deliberately**, *ad.* ଜାଣିଶୁଣିକରି, ଜାଣିସାରରେ,

**Deliberation**, *n.* ବିଚାର, ବିବେଚନା, ଚିନ୍ତା, ମନ୍ତ୍ରଣା, ବିତର୍କ ।

**Deliberative**, *a.* ବିଚାରଶୀଳ, ବିବେଚନାଯୋଗ୍ୟ, ବିଚାରକ୍ଷମ ।

**Delicacy**, *n.* ମାଧୁର୍ଯ୍ୟ, ସ୍ୱାଦୁତା, ସୌକୁମାର୍ଯ୍ୟ, ସୁସ୍ୱାଦୁ ଖାଦ୍ୟ । [ସୁକୁମାର ।

**Delicate**, *a.* ମଧୁର, ସୁସ୍ୱାଦୁ, ଲଳିତ,

**Delicately**, *ad.* ମୃଦୁଭାବରେ, ସୁନ୍ଦରରୂପେ । [ ମନୋହର, ଉପାଦେୟ ।

**Delicious**, *a.* ମିଷ୍ଟ, ରୁଚିକର,

**Deliciously**, *ad.* ମନୋଜ୍ଞଭାବରେ ।

**Delight**, *n.* ଆହ୍ଲାଦ, ଆମୋଦ, ହର୍ଷ, ସୁଖ; *v.* ଆନନ୍ଦ ଦେବା । [ ପୁଲକିତ ।

**Delighted**, *a.* ଆନନ୍ଦିତ, ହୃଷ୍ଟ,

**Delightful**, *a.* ହର୍ଷଜନକ, ଆନନ୍ଦ-ଦାୟକ, ମନୋହର । [ ସହକାରେ ।

**Delightfully**, *ad.* ଆନନ୍ଦ

**Delineate**, *v.* ବର୍ଣ୍ଣନା କରିବା, ଚିତ୍ରଣ କରିବା, ଚିତ୍ର ଆଙ୍କିବା ।

**Delineation**, *n.* ବର୍ଣ୍ଣନ, ଚିତ୍ରଣ ।

**Delinquency**, *n.* ଦୋଷ, ଅପରାଧ, ଦୁଷ୍କର୍ମ । [ ବ୍ୟକ୍ତି ।

**Delinquent**, *n.* ଅପରାଧୀ, ଦୋଷୀ

Delirious, *a.* ହତଚେତନ, ପ୍ରଳାପ-କାରୀ, ଚୈତନ୍ୟଶୂନ୍ୟ ।
Delirium, *n.* ଚିତ୍ତଭ୍ରମ, ଜ୍ଞାନଭ୍ରଂଶ, ଚୈତନ୍ୟଲୋପ, ପ୍ରଳାପ ।
Deliver, *v.* ମୁକ୍ତ କରିବା, ରକ୍ଷା କରିବା, ସମର୍ପଣ କରିବା ।
Deliverance, *n.* ମୁକ୍ତି, ଉଦ୍ଧାର ।
Deliverer, *n.* ଉଦ୍ଧାରକର୍ତ୍ତା ।
Delivery, *n.* ସମର୍ପଣ, ସନ୍ତାନ ପ୍ରସବ, ପ୍ରଦାନ, ଉଚ୍ଚାରଣ ।
Dell, *n.* ଦରୀ, କନ୍ଦର, ଗୁହା ।
Delta, *n.* ତ୍ରିକୋଣଭୂମି ।
Delude, *v.* ବିଭ୍ରମ କରିବା, ପ୍ରଲୁବ୍ଧ କରିବା, ପ୍ରତାରଣା କରିବା ।
Deluge, *n.* ପ୍ରଳୟ, ଜଳପ୍ଲାବନ, କଲ୍ୟାନ୍ତ, ଉତ୍ପାତ ।
Delusion, *n.* ମୋହ, ମାୟା, ଭ୍ରାନ୍ତି ।
Delusive, Delusory, *a.* ମାୟାମୟ, ଅସାର, ଭ୍ରମଜନକ ।
Delve, *v.* ଖୋଳିବା, ଗର୍ତ୍ତ କରିବା ।
Demagogue, *n.* ପ୍ରଜାନାୟକ, ଇତର ଲୋକଙ୍କ ନେତା ।
Demand, *v.* ଦାବି କରିବା, ଅଭିଯୋଗ କରିବା; *n.* ଦାବି, ପ୍ରାର୍ଥନା, ଅଭିଯୋଗ ।
Demarcate, *v.* ସୀମା ଚିହ୍ନିତ କରିବା ।
Demarcation, Demarkation, *n.* ସୀମା ନିର୍ଦ୍ଧାରଣ, ବିଭାଗୀକରଣ ।
Demean, *v.* ବ୍ୟବହାର ଦେଖାଇବା, ଆଚରଣ କରିବା, ମ୍ଳାନ କରିବା ।
Demeanour, *n.* ବ୍ୟବହାର, ଆଚରଣ, ଚାଲିଚଳନ ।
Demented, *a.* ଉନ୍ମତ୍ତ, ପାଗଳ ।
Demain, Demesne, *n.* ସ୍ୱାଧୀନ ଦେଶ ।
Demerit, *n.* ଦୋଷ, ଦୁର୍ଗୁଣ, [ ନ୍ୟୂନତା ।
Demigod, *n.* ଯକ୍ଷ, ଗନ୍ଧର୍ବ, କିନ୍ନର, ଦେବଯୋନି ।
Demi-official, *a.* ଅର୍ଦ୍ଧ-ସରକାରୀ ।
Demise, *n.* ମୃତ୍ୟୁ, ମରଣ ।
Demobilise, Demobilize, *v.* ବ୍ୟୂହଭଙ୍ଗ କରିବା, ସୈନ୍ୟଦଳ ଭାଙ୍ଗି ଦେବା ।
Democracy, *n.* ପ୍ରଜାତନ୍ତ୍ର ବା ଗଣତନ୍ତ୍ର ଶାସନ, ଗଣତନ୍ତ୍ର ରାଷ୍ଟ୍ର ।
Democrat, *n.* ଗଣତନ୍ତ୍ରବାଦୀ ।
Democratic, *a.* ଗଣତାନ୍ତ୍ରିକ ।
Democratical, *a.* ଗଣତନ୍ତ୍ର ସମ୍ବନ୍ଧୀୟ ।
Demolish, *v.* ନଷ୍ଟ କରିବା, ବିନାଶ କରିବା, ଧ୍ୱଂସ କରିବା ।
Demolition, *n.* ବିନାଶ, ଉଚ୍ଛେଦ, ଧ୍ୱଂସ, ଉନ୍ମୂଳନ ।

**Demon**, *n.* ଦାନବ, ଅସୁର, ରାକ୍ଷସ, ପିଶାଚ । [ ଅସୁରୀ ।
**Demoness**, *n.* ଦାନବୀ, ରାକ୍ଷସୀ,
**Demoniac**, *n.* ଭୂତାବିଷ୍ଟ ବ୍ୟକ୍ତି ।
**Demoniacal**, *a.* ଆସୁର, ପୈଶାଚିକ ।
**Demonstrable**, *a.* ପ୍ରମାଣସାଧ୍ୟ, ପ୍ରତିପାଦ୍ୟ । [ ପ୍ରତିପାଦନ କରିବା ।
**Demonstrate**, *v.* ପ୍ରମାଣ କରିବା,
**Demonstration**, *n.* ପ୍ରମାଣ, ପ୍ରତିପାଦନ ।
**Demonstrative**, *a.* ପ୍ରତିପାଦକ, ପ୍ରାମାଣିକ, ପ୍ରମାଣସିଦ୍ଧ, ନିର୍ଦ୍ଦେଶକ ।
**Demonstrator**, *n.* ପ୍ରଦର୍ଶନକାରୀ, ପ୍ରତିପାଦନକାରୀ ।
**Demoralisation**, *n.* ନୀତିଭ୍ରଷ୍ଟତା, ନୈତିକ ଅଧୋଗତି, ଧର୍ମବିଚ୍ୟୁତି, ଆଚାରଗ୍ଳାନତା । [ *v.* ନୀତିଭ୍ରଷ୍ଟ କରିବା ।
**Demoralise**, **Demoralize**,
**Demur**, *v.* ସନ୍ଦିଗ୍ଧ ହେବା, ବିଳମ୍ବ କରିବା, ଶଙ୍କା କରିବା; *n.* ସନ୍ଦେହ, ଆଶଙ୍କା, ଦ୍ୱିଧା ।
**Demure**, *a.* ଧୀର, ଶାନ୍ତ, ବିନୀତ ।
**Demurrage**, *n.* ବିଳମ୍ବଜନିତ କ୍ଷତିପୂରଣ । [ ୨୨"×୧୮"
**Demy**, *n.* କାଗଜର ମାପବିଶେଷ
**Den**, *n.* ବିବର, ଗର୍ତ୍ତ, ଗୁହା, କନ୍ଦର ।
**Dengue**, *n.* ଜ୍ୱର ରୋଗବିଶେଷ ।
**Denial**, *n.* ଅସ୍ୱୀକାର, ନିଷେଧ, ଅସମ୍ମତି
**Denizen**, *n.* ନିବାସୀ, ଅଧିବାସୀ ।
**Denominate**, *v.* ନାମ ଦେବା, ନିର୍ଦ୍ଦେଶ କରିବା । [ ଆଖ୍ୟା ।
**Denomination**, *n.* ନାମ, ସଂଜ୍ଞା,
**Denominational**, *a.* ସାମ୍ପ୍ରଦାୟିକ
**Denominator**, *n.* ଭଗ୍ନାଂଶର ହର ।
**Denotation**, *n.* ନିର୍ଦ୍ଦେଶ, ସୂଚନା, ଉପଲକ୍ଷଣ, ଶବ୍ଦର ଅର୍ଥ ।
**Denotative**, *a.* ନିର୍ଦ୍ଦେଶକ, ବାଚକ ।
**Denote**, *v.* ନିର୍ଦ୍ଦେଶ କରିବା, ସୂଚନା କରିବା । [ ଦର୍ଶାଇବା ।
**Denounce**, *v.* ନିନ୍ଦା କରିବା, ଦୋଷ
**Denouncement**, *n.* ଭୟପ୍ରଦର୍ଶନ, ଭର୍ତ୍ସନା ।
**De novo**, *ad.* ପୁନଶ୍ଚ, ପୁନର୍ବାର ।
**Dense**, *a.* ଘନ, ନିବିଡ଼, ସାନ୍ଦ୍ର ।
**Density**, *n.* ଘନତା, ସାନ୍ଦ୍ରତା ।
**Dent**, *n.* କ୍ଷୁଦ୍ର ଗର୍ତ୍ତ ।
**Dental**, *a.* ଦନ୍ତ ସମ୍ବନ୍ଧୀୟ, ଦନ୍ତ୍ୟ ।
**Dented**, **Dentated**, *a.* ଦନ୍ତୁରିତ, ଛିଦ୍ରାବୃତ ।
**Dentifrice**, *n.* ଦନ୍ତର ମଞ୍ଜନ ।
**Dentist**, *n.* ଦନ୍ତରୋଗର ଚିକିତ୍ସକ ।
**Dentistry**, *n.* ଦନ୍ତରୋଗର ଚିକିତ୍ସା ।
**Dentition**, *n.* ଦନ୍ତୋଦ୍ଗମ, ଦାନ୍ତଉଠା
**Denude**, *v.* ନଗ୍ନ କରିବା, ଶୂନ୍ୟ କରିବା

**Denunciation**, *n.* ଭୟପ୍ରଦର୍ଶନ, ଭର୍ତ୍ସନା, ତାଡ଼ନା । [ କରିବା ।
**Deny**, *v.* ଅସ୍ୱୀକାର କରିବା, ନିଷେଧ
**Depart**, *v.* ପ୍ରସ୍ଥାନ କରିବା, ସ୍ଥାନତ୍ୟାଗ କରିବା, ଦେହତ୍ୟାଗ କରିବା ।
**Departed**, *a.* ପ୍ରସ୍ଥିତ, ଅପଗତ ।
**Department**, *n.* ବିଭାଗ, ଅଂଶ, କାର୍ଯ୍ୟାଳୟର ଶାଖା ।
**Departmental**, *a.* ବିଭାଗୀୟ ।
**Departure**, *n.* ପ୍ରସ୍ଥାନ, ପ୍ରୟାଣ, ସ୍ଥାନତ୍ୟାଗ । [ କରିବା, ଅଧୀନ ହେବା ।
**Depend**, *v.* ନିର୍ଭର କରିବା, ଆଶ୍ରୟ
**Dependable**, *a.* ନିର୍ଭରଯୋଗ୍ୟ ।
**Dependant**, *n.* ଆଶ୍ରିତ ବ୍ୟକ୍ତି ।
**Dependence**, *n.* ନିର୍ଭର, ଭରସା, ଅବଲମ୍ବନ । [ କରଦ ରାଜ୍ୟ ।
**Dependency**, *n.* ଅଧୀନ ରାଜ୍ୟ,
**Dependent**, *a.* ନିର୍ଭରଶୀଳ, ପରାଧୀନ । [ କରିବା ।
**Depict**, *v.* ବର୍ଣ୍ଣନା କରିବା, ଚିତ୍ରଣ
**Depilate**, *v.* କେଶଶୂନ୍ୟ କରିବା ।
**Depilation**, *n.* ଲୋମନାଶନ, କେଶଶୂନ୍ୟକରଣ । [ କେଶନାଶକ ।
**Depilatory**, *a.* ଲୋମନାଶକ,
**Deplete**, *v.* ନିଃଶେଷ କରିବା ।
**Depletion**, *n.* ଶୂନ୍ୟତା, ନିଃଶେଷ ଅବସ୍ଥା, ରକ୍ତମୋକ୍ଷଣ ।
**Deplorable**, *a.* ଶୋଚନୀୟ ।
**Deplorably**, *ad.* ଶୋଚନୀୟ-ଭାବରେ । [ ଦୁଃଖିତ ହେବା ।
**Deplore**, *v.* ଶୋଚନା କରିବା,
**Deploy**, *v.* ବିସ୍ତୃତ କରିବା ବା ହେବା ।
**Depone**, *v.* ଶପଥ କରି କହିବା ।
**Deponent**, *n.* ଯେ ଶପଥପୂର୍ବକ ଲେଖିଦିଏ, ପ୍ରମାଣକାରୀ ବ୍ୟକ୍ତି ।
**Depopulate**, *v.* ଜନଶୂନ୍ୟ କରିବା ।
**Deport**, *v.* ନିର୍ବାସନ କରିବା ।
**Deportation**, *n.* ନିର୍ବାସନ, ଦେଶାନ୍ତରପ୍ରେରଣ । [ ବ୍ୟବହାର ।
**Deportment**, *n.* ଆଚରଣ,
**Depose**, *v.* ପଦଚ୍ୟୁତ କରିବା, ସାକ୍ଷ୍ୟ ଦେବା, ସିଂହାସନଚ୍ୟୁତ କରିବା ।
**Deposit**, *v.* ଜମା କରିବା, ନ୍ୟାସରୂପେ ରଖିବା; *n.* ଜମା, ନ୍ୟସ୍ତ ପଦାର୍ଥ ।
**Depository**, *n.* ନ୍ୟାସରକ୍ଷକ, ଜିମ୍ମାଦାର, ବିଶ୍ୱାସର ପାତ୍ର ।
**Deposition**, *n.* ଜମାନବନ୍ଦି ।
**Depositor**, *n.* ଜିମ୍ମାକାରୀ ।
**Depository**, *n.* ଆଧାର, ସଂଗ୍ରହ ସ୍ଥାନ
**Depot**, *n.* ମାଲଖାନା, ଭଣ୍ଡାର, ଡିପୁ ।
**Depravation**, *n.* ଭ୍ରଷ୍ଟକରଣ ।
**Deprave**, *v.* ଦୂଷିତ କରିବା, କଳୁଷିତ କରିବା । [ ଦୁରବସ୍ଥା ।
**Depraved**, *a.* ଦୁରାତ୍ମା, ନଷ୍ଟଚରିତ୍ର,

Depravity, *n.* ଭ୍ରଷ୍ଟତା, ଦୌରାତ୍ମ୍ୟ, ଦୁରାଚାର । [ ନିବାରଣ କରିବା ।
Deprecate, *v.* ପ୍ରାର୍ଥନାପୂର୍ବକ
Deprecation, *n.* ନିବର୍ତ୍ତିବା ପାଇଁ ପ୍ରାର୍ଥନା । [ *a.* ଅନିଷ୍ଟନିବାରକ ।
Deprecative, Deprecatory,
Depreciate, *v.* ଲଘୁ କରିବା, ମୂଲ୍ୟହ୍ରାସ କରିବା ।
Depreciation, *n.* ମୂଲ୍ୟହ୍ରାସ, ଅବମାନନା, ଅପକର୍ଷ ।
Depredate, *v.* ଲୁଣ୍ଠନ କରିବା, ବିନାଶ କରିବା । [ ଲୁଣ୍ଠନ, ଅତ୍ୟାଚାର ।
Depredation, *n.* ଅପହରଣ,
Depredator, *n.* ଲୁଣ୍ଠନକାରୀ, ବିନାଶକାରୀ । [ କରିବା ।
Depress, *v.* ବିଷଣ୍ଣ କରିବା, ଅବସନ୍ନ
Depressed, *a.* ବିଷଣ୍ଣ, ଅବସନ୍ନ, ଖିନ୍ନମନା । [ ଅବସାଦ, ଗର୍ତ୍ତ ।
Depression, *n.* ବିଷାଦ, ଉଦ୍‌ବେଗ,
Deprivation, *n.* ଅପହରଣ, ନାଶ, ହାନି, କ୍ଷତି । [ କରିବା ।
Deprive, *v.* ବଞ୍ଚିତ କରିବା, ଅପହରଣ
Depth, *n.* ଗମ୍ଭୀରତା, ଗାମ୍ଭୀର୍ଯ୍ୟ, ଗାଢ଼ତା, ଘନତା, ଅତଳସ୍ପର୍ଶତା ।
Depthless, *a.* ଅଗଭୀର ।
Deputation, *n.* ନିୟୋଗ, ପ୍ରେରଣ, ପ୍ରତିନିଧିଦଳ ।
Depute, *v* ପ୍ରେରଣ କରିବା, ନିଯୁକ୍ତ କରିବା । [ ସଭ୍ୟ ।
Deputy, *n.* ପ୍ରତିନିଧି, ପ୍ରତିନିଧିଦଳର
Derail, *v.* ଗାଡ଼ି ରେଳଲାଇନରୁ ବିଚ୍ୟୁତ ହେବା । [ ଗାଡ଼ିର ବିଚ୍ୟୁତି ।
Derailment, *n.* ରେଳଲାଇନରୁ
Derange, *v.* ବିକୃତ ହେବା, ବିପର୍ଯ୍ୟସ୍ତ ହେବା, ଗୋଳମାଳ କରିବା ।
Deranged, *a.* ବିକୃତ, ଉନ୍ମତ୍ତ ।
Derangement, *n.* ବିକୃତି, ଉନ୍ମତ୍ତ ଅବସ୍ଥା । [ *n.* ପରିତ୍ୟକ୍ତ ବସ୍ତୁ ।
Derelict, *a.* ପରିତ୍ୟକ୍ତ, ଉପେକ୍ଷିତ;
Dereliction, *n.* ପରିତ୍ୟାଗ, ଉପେକ୍ଷା, ଅବହେଳା । [ କରିବା ।
Deride, *v.* ଉପହାସ କରିବା, ଅବଜ୍ଞା
Derision, *n.* ଉପହାସକରଣ ।
Derisive, Derisory, *a.* ଉପହାସ୍ୟ, ଉପହାସପୂର୍ଣ୍ଣ ।
Derivation, *n.* ବ୍ୟୁତ୍ପତ୍ତି ।
Derivative, *a.* ବ୍ୟୁତ୍ପନ୍ନ, ଯୌଗିକ; *n.* ବ୍ୟୁତ୍ପନ୍ନ ଶବ୍ଦ ।
Derive, *v.* ପ୍ରାପ୍ତ ହେବା, ଉତ୍ପନ୍ନ ହେବା, ବ୍ୟୁତ୍ପତ୍ତି ପ୍ରକାଶ କରିବା ।
Dermal, *a.* ଚର୍ମସମ୍ବନ୍ଧୀୟ ।
Derogate, *v.* ଲଘୁ କରିବା, ଅଳ୍ପ କରିବା, ଖର୍ବ ହେବା ।
Derogation, *n.* ହ୍ରାସକରଣ ।

**Derogatory**, *a.* ଅପମାନଜନକ, ଅଯଶସ୍କର । [ ଓହ୍ଲେଇବା ।

**Descend**, *v.* ଅବତରଣ କରିବା,

**Descendant**, *n.* ସନ୍ତତି, ବଂଶଧର, ପୁତ୍ରପୌତ୍ରାଦି । [ ଅବତରଣ ।

**Descension**, *n.* ଅଧୋଗମନ,

**Descent**, *n.* ଅବତରଣ, ଜନ୍ମ ।

**Describable**, *a.* ବର୍ଣ୍ଣନଯୋଗ୍ୟ, ବର୍ଣ୍ଣନୀୟ । [ କରିବା ।

**Describe**, *v.* ବର୍ଣ୍ଣନା କରିବା, ବିବୃତ

**Description**, *n.* ବର୍ଣ୍ଣନ, ବିବରଣ, ବ୍ୟାଖ୍ୟାନ । [ ବିବରଣପୂର୍ଣ୍ଣ ।

**Descriptive**, *a.* ବର୍ଣ୍ଣନାତ୍ମକ,

**Descry**, *v.* ଦୂରରୁ ଦେଖିବା, ପ୍ରକାଶ କରିବା । [ ଦୂଷିତ କରିବା ।

**Desecrate**, *v.* ଅପବିତ୍ର କରିବା,

**Desecration**, *n.* ଅପବିତ୍ରୀକରଣ ।

**Desert**, *n.* ମରୁଭୂମି, ବାଲୁକାମୟ ପ୍ରଦେଶ, ଉପଯୁକ୍ତ ଦଣ୍ଡ ବା ପୁରସ୍କାର; *v.* ତ୍ୟାଗ କରିବା ।

**Deserter**, *n.* ପଳାତକ ବ୍ୟକ୍ତି ।

**Desertion**, *n.* ପଳାୟନ, ସ୍ଥାନତ୍ୟାଗ ।

**Deserve**, *v.* ଯୋଗ୍ୟ ହେବା ।

**Deserved**, *a.* ଉପଯୁକ୍ତ ।

**Deservedly**, *ad.* ନ୍ୟାଯ୍ୟତଃ, ଯଥାର୍ଥତଃ, ଉପଯୁକ୍ତରୂପେ ।

**Deserving**, *a.* ଯୋଗ୍ୟ, ଉପଯୁକ୍ତ ।

**Desideratum**, *n.* ଅଭୀଷ୍ଟ ବସ୍ତୁର ଅଭାବ (*pl.* **Desiderata**) ।

**Design**, *n.* ଉଦ୍ଦେଶ୍ୟ, ଅଭିପ୍ରାୟ, କଳ୍ପନା, ନକ୍ସା; *v.* ପରିକଳ୍ପନା କରିବା, ଚିନ୍ତା କରିବା । [ ନାମ ଦେବା ।

**Designate**, *v.* ନିର୍ଦ୍ଧାରିତ କରିବା,

**Designation**, *n.* ଉପାଧି, ସଂଜ୍ଞା, ନାମ । [ ଉଦ୍ଦେଶ୍ୟ ସହକାରେ ।

**Designedly**, *ad.* ଜ୍ଞାନତଃ,

**Designer**, *n.* ପରିକଳ୍ପନାକାରୀ, ନକ୍ସାନିର୍ମାତା । [ କାମ୍ୟତା ।

**Desirability**, *n.* ସ୍ପୃହଣୀୟତା,

**Desirable**, *a.* କାମ୍ୟ, ସ୍ପୃହଣୀୟ ।

**Desire**, *n.* କାମନା, ଅଭିଳାଷ, ଇଚ୍ଛା; *v.* ଇଚ୍ଛା କରିବା, ଅଭିଳାଷ କରିବା ।

**Desirous**, *a.* ଅଭିଳାଷୀ, ଇଚ୍ଛୁକ ।

**Desist**, *v.* ନିବୃତ୍ତ ହେବା, ବିରତ ହେବା । [ ବିରତି ।

**Desistance**, *n.* କ୍ଷାନ୍ତି, ନିବୃତ୍ତି,

**Desk**, *n.* ଲେଖନାଧାର, ଡେସ୍କ ।

**Desolate**, *a.* ନିର୍ଜନ, ବସତିଶୂନ୍ୟ, ବିଜନ; *v.* ବସତିହୀନ କରିବା ।

**Desolation**, *n.* ନିର୍ଜନତା, ଶୂନ୍ୟତା ।

**Despair**, *n.* ନୈରାଶ୍ୟ, ବିଷାଦ; *v.* ନିରାଶ ହେବା, ଆଶା ଛାଡ଼ିବା ।

**Despatch**, *v.* ପ୍ରେରଣ କରିବା, ବଧ କରିବା; *n.* ରାଜକୀୟ ଲେଖା ।

Desperado, *n.* ଅକୁତୋଭୟ, ଉଗ୍ର ବ୍ୟକ୍ତି । [ ଅବିମୃଷ୍ୟକାରୀ, ଦୁଃସାହସୀ ।
Desperate, *a.* ନିରାଶ, କ୍ଷିପ୍ତ,
Desperately, *ad.* କ୍ଷିପ୍ତଭାବରେ, ଉଗ୍ରଭାବରେ ।
Desperateness, *n.* ନୈରାଶ୍ୟଜନିତ ସାହସ, ଜୀବନପ୍ରତି ଉପେକ୍ଷା, କ୍ଷିପ୍ତତା ।
Desperation, *n.* ନୈରାଶ୍ୟ, ସାହସ ।
Despicable, *a.* ଘୃଣ୍ୟ, ଅଧମ, ନିନ୍ଦ୍ୟ, ଅବଜ୍ଞେୟ ।
Despicably, *ad.* ନୀଚଭାବରେ ।
Despise, *v.* ଘୃଣା କରିବା, ଅବଜ୍ଞା କରିବା । [ *ad.* ସତ୍ତ୍ୱେ, ତଥାପି ।
Despite, *n.* ଦ୍ୱେଷ, ଈର୍ଷା, ଘୃଣା;
Despoil, *v.* କ୍ଷତ କରିବା, ଅପହରଣ କରିବା, ଧ୍ୱଂସ କରିବା ।
Despond, *v.* ହତାଶ ହେବା ।
Despondence, Despondency, *n.* ନୈରାଶ୍ୟ, ହତାଶା ।
Despondent, *a.* ହତାଶ, ନିରାଶ ।
Despot, *n.* ଯଥେଚ୍ଛାଚାରୀ ଶାସକ, ପ୍ରଜାପୀଡ଼କ ରାଜା, ନିରଙ୍କୁଶ ଶାସକ ।
Despotic, Despotical, *a.* ଯଥେଚ୍ଛାଚାରୀ, ନିରଙ୍କୁଶ, ସ୍ୱୈର, ଅତ୍ୟାଚାରୀ ।
Despotism, *n.* ଯଥେଚ୍ଛାଚାରିତା, ନିରଙ୍କୁଶ ଶାସନ, ସ୍ୱୈର ଶାସନ ।
Dessert, *n.* ଭୋଜନାନ୍ତକ ଫଳାହାର ।
Destination, *n.* ଉଦ୍ଦିଷ୍ଟ ସ୍ଥାନ, ଲକ୍ଷ୍ୟ । [ ଅବଧାରଣ କରିବା ।
Destine, *v.* ନିର୍ଦ୍ଧାରଣ କରିବା,
Destined, *a.* ବିଧିନିର୍ଦ୍ଦିଷ୍ଟ, ଦୈବୀ ।
Destiny, *n.* ଦୈବ, ଭାଗ୍ୟ, ଅଦୃଷ୍ଟ, ନିୟତି । [ ଦରିଦ୍ର, ଅକିଞ୍ଚନ ।
Destitute, *a.* ନିଃସ୍ୱ, ନିରାଶ୍ରୟ,
Destitution, *n.* ଦାରିଦ୍ର୍ୟ, ଦୈନ୍ୟ, ଧନାଭାବ, ନିଃସ୍ୱତା ।
Destroy, *v.* ବିନାଶ କରିବା, ସଂହାର କରିବା, ବିଲୋପ କରିବା । [ବିନାଶକର୍ତ୍ତା ।
Destroyer, *n.* ଧ୍ୱଂସକର୍ତ୍ତା, ହନ୍ତା,
Destructible, *a.* ଧ୍ୱଂସକାରୀ, ବିନାଶକାରୀ, ଅନିଷ୍ଟକାରକ ।
Destruction, *n.* ବିନାଶ, ଧ୍ୱଂସ ।
Destructive, *a.* ଧ୍ୱଂସକାରକ ।
Desultory, *a.* ଉଚ୍ଛୃଙ୍ଖଳ, ଅଧୀର, ଅନିୟମିତ, ଅବ୍ୟବସ୍ଥିତ । [ କରିବା ।
Detach, *v.* ବିଚ୍ଛେଦ କରିବା, ପୃଥକ୍
Detachment, *n.* ପୃଥକ୍‌କରଣ, ନିର୍ଲିପ୍ତତା, ସୈନ୍ୟଦଳ ।
Detail, *v.* ବିସ୍ତୃତ ବର୍ଣ୍ଣନା କରିବା; *n.* ବିସ୍ତୃତ ବର୍ଣ୍ଣନା, ବୃତ୍ତାନ୍ତ କଥନ ।
Detailed, *a.* ସବିସ୍ତାର, ବିସ୍ତୃତ ବିବରଣସମ୍ବଳିତ, ନିର୍ଦ୍ଦିଷ୍ଟ ।
Detain, *v.* ଅଟକାଇବା, ନିରୋଧ କରିବା, ବଳାତ୍କାରରେ ରଖିବା ।

**Detect**, *v.* ଅନୁସନ୍ଧାନଦ୍ୱାରା ଦୋଷ ବାହାର କରିବା ।
**Detection**, *n.* ଅପରାଧର ଅନୁସନ୍ଧାନ ।
**Detective**, *a.* ଅନୁସନ୍ଧାନରେ ନିଯୁକ୍ତ; *n.* ଗୁଇନ୍ଦା, ଗୁପ୍ତପୋଲିସ, ଗୁପ୍ତଚର ।
**Detention**, *n.* ଅଟକ, ନିରୋଧ ।
**Detenu**, *n.* ଅଟକବନ୍ଦୀ ।
**Deter**, *v.* ବାଧାଦେବା, ନିବୃତ୍ତ କରିବା ।
**Deteriorate**, *v.* କ୍ଷୟ ପାଇବା, ଅପକୃଷ୍ଟ ହେବା । [ ଅପକର୍ଷ ।
**Deterioration**, *n.* ଅବନତି, କ୍ଷୟ,
**Determent**, *n.* ନିବାରଣ ।
**Determinable**, *a.* ସ୍ଥିରୀକରଣର ଯୋଗ୍ୟ । [ ନିଶ୍ଚିତ, ନିର୍ଦ୍ଧାରିତ ।
**Determinate**, *a.* ସ୍ଥିର, ଦୃଢ଼,
**Determination**, *n.* ପ୍ରତିଜ୍ଞା, ସଂକଳ୍ପ, ନିଷ୍ପତ୍ତି । [ ନିରୂପଣ କରିବା ।
**Determine**, *v.* ନିଷ୍ପତ୍ତି କରିବା,
**Determined**, *a.* କୃତନିଷ୍ପତ୍ତି, ଦୃଢ଼-ସଂକଳ୍ପ । [ ରୋଧକ ।
**Deterrent**, *a.* ନିବାରକ, ପ୍ରତି-
**Detest**, *v.* ଘୃଣା କରିବା, ନିନ୍ଦା କରିବା ।
**Detestable**, *a.* ଘୃଣ୍ୟ, ନିନ୍ଦନୀୟ ।
**Detestation**, *n.* ଘୃଣା, ବିଦ୍ୱେଷ ।
**Dethrone**, *v.* ସିଂହାସନଚ୍ୟୁତ କରିବା
**Dethronement**, *n.* ରାଜ୍ୟଚ୍ୟୁତି, ସିଂହାସନରୁ ବିତାଡ଼ନ ।
**Detonate**, *v.* ବିସ୍ଫୋରଣ କରିବା ।
**Detonation**, *n* ବିସ୍ଫୋରଣ ।
**Detonator**, *n.* ବିସ୍ଫୋରଣକାରୀ ଯନ୍ତ୍ର ।
**Detour**, *n.* ବକ୍ରପଥ, ବକ୍ରଗତି ।
**Detract**, *v.* ବିଚ୍ଛିନ୍ନ କରିବା, ଅପବାଦ ଦେବା, କମାଇ ଦେବା ।
**Detraction**, *n.* ମାନହାନି, ଅପବାଦ ।
**Detractive**, *a.* ଅଯଶସ୍କର, ଅପମାନ-ଜନକ, ହ୍ରାସକାରୀ ।
**Detractor**, *n.* ଅପବାଦକର୍ତ୍ତା ।
**Detractory**, *a.* ନିନ୍ଦୁକ, ଅପବାଦକାରୀ ।
**Detrain**, *v.* ରେଲଗାଡ଼ିରୁ ଓହ୍ଲାଇବା ।
**Detriment**, *n.* କ୍ଷତି, ହାନି, ଅପକାର । [ ବିରୋଧୀ, ଅପକାରୀ ।
**Detrimental**, *a.* କ୍ଷତିକର,
**Deuce**, *n.* ପିଶାଚ, ପଶାଖେଳର 'ଦୁଇ' ଦାନ, ଟେନିସ ଖେଳରେ ଏକ ପକ୍ଷର ଏକାଦିକ୍ରମେ ଦୁଇଥର ବିଜୟ । [ କରିବା ।
**Devastate**, *v.* ଧ୍ୱଂସ କରିବା, ଉଚ୍ଛେଦ
**Devastation**, *n.* ଧ୍ୱଂସ, ପ୍ରଳୟ, ବିନାଶ । [ କରିବା, ବୃଦ୍ଧି ସାଧନ କରିବା ।
**Develop**, *v.* ବିକାଶ କରିବା, ଉନ୍ନତ
**Development**, *n.* ବିକାଶ, ପ୍ରଗତି, ଉନ୍ନତି, ଉପଚୟ ।
**Deviate**, *v.* ବ୍ୟତିକ୍ରମ କରିବା, ବିଚ୍ୟୁତ ହେବା, ଭ୍ରଷ୍ଟ ହେବା । [ ପଥଭ୍ରଂଶ ।
**Deviation**, *n.* ବ୍ୟତିକ୍ରମ, ଚ୍ୟୁତି,

Device, *n.* ଉପାୟ, କଳ୍ପନା, ଛଳନା ।
Devil, *n.* ସଇତାନ, ପିଶାଚ, ଦାନବ ।
Devilish, *a.* ପୈଶାଚିକ, ନାରକୀୟ ।
Devilry, *n.* ସଇତାନ, ପୈଶାଚିକ କାଣ୍ଡ, ପିଶାଚପୂଜା ।
Devious, *a.* ବକ୍ର, କୁଟିଳ, ଭ୍ରାନ୍ତ ।
Devise, *v.* ଚିନ୍ତା କରିବା, କଳ୍ପନା କରିବା, କୌଶଳ ବାହାର କରିବା ।
Deviser, *n.* ପରିକଳ୍ପନାକାରୀ ବ୍ୟକ୍ତି ।
Devitalise, Devitalize, *v.* ଜୀବନୀଶକ୍ତି ନଷ୍ଟ କରିବା ।
Devoid, *a.* ବର୍ଜିତ, ରହିତ, ଶୂନ୍ୟ ।
Devoir, *n.* କର୍ତ୍ତବ୍ୟ, ନିଜର ପରିକାଷ୍ଠା, ଧର୍ମବୁଦ୍ଧି, ସେବା, ସୌଜନ୍ୟ ।
Devolve, *v.* ଭାର ଅର୍ପଣ କରିବା ।
Devolution, *n.* ସମର୍ପଣ, ଭାରଅର୍ପଣ ।
Devote, *v.* ବିନିଯୋଗ କରିବା, ଉତ୍ସର୍ଗ କରିବା, ଭକ୍ତି କରିବା । [ ଉତ୍ସର୍ଗୀକୃତ ।
Devoted, *a.* ଅନୁରକ୍ତ, ଆସକ୍ତ,
Devotedly, *ad.* ଭକ୍ତିପୂର୍ବକ, ନିଷ୍ଠା ସହକାରେ । [ ଆସକ୍ତି ।
Devotedness, *n.* ଭକ୍ତି, ନିଷ୍ଠା,
Devotee, *n.* ଭକ୍ତ, ଉପାସକ ।
Devotion, *n.* ଭକ୍ତି, ଅନୁରକ୍ତି, ଧର୍ମନିଷ୍ଠା, ଉପାସନା, ସେବା ।
Devotional, *a.* ଧର୍ମକର୍ମସମ୍ବନ୍ଧୀୟ, ଭକ୍ତିଶୀଳ, ନୈଷ୍ଠିକ ।
Devotionally, *ad.* ଭକ୍ତି ସହକାରେ, ନିଷ୍ଠାପର ଭାବରେ ।
Devour, *v.* ଗ୍ରାସ କରିବା, ଗିଳିଦେବା ।
Devout, *a.* ଧାର୍ମିକ, ଧର୍ମପରାୟଣ, ଈଶ୍ୱରନିଷ୍ଠ, ପୁଣ୍ୟାତ୍ମା । [ ସହକାରେ ।
Devoutly, *ad.* ଭକ୍ତିପୂର୍ବକ, ଶ୍ରଦ୍ଧା
Devoutness, *n.* ଧାର୍ମିକତା, ଈଶ୍ୱରଭକ୍ତି, ଧର୍ମସାଧନା ।
Dew, *n.* ଶିଶିର, ତୁଷାର, କାକର ।
Dewlap, *n.* ଗଳକମ୍ବଳ ।
Dewy, *a.* ଶିଶିରସିକ୍ତ, ତୁଷାରମୟ, ତୁଷାରବତ୍ ।
Dexter, *a.* ଦକ୍ଷିଣ, ଡାହାଣ ।
Dexterity, *n.* ଦକ୍ଷତା, ପଟୁତା, ନୈପୁଣ୍ୟ, ହସ୍ତକୌଶଳ ।
Dexterous, Dextrous, *a.* କୁଶଳ, ନିପୁଣ, ଦକ୍ଷ, ପଟୁ । [ ରୋଗ ।
Diabetes, *n.* ମଧୁମେହ, ବହୁମୂତ୍ର
Diabetic, *a.* ବହୁମୂତ୍ର ରୋଗାକ୍ରାନ୍ତ; *n.* ବହୁମୂତ୍ରରୋଗୀ ।
Diabolic, Diabolical, *a.* ପୈଶାଚିକ, ପାପିଷ୍ଠ, ଅତି ନିଷ୍ଠୁର ।
Diabolism, *n.* ପିଶାଚସାଧନା, ଗୁଣିଗାରେଡ଼ି । [ ନିର୍ଦ୍ଦେଶକ ।
Diacritical, *a.* ସାଙ୍କେତିକ,
Diadem, *n.* ମୁକୁଟ, କିରୀଟ, ଉଷ୍ଣୀଷ ।
Diagnose, *v.* ଲକ୍ଷଣରୁ ରୋଗ ନିର୍ଣ୍ଣୟ କରିବା ।

**Diagnosis**, *n.* ରୋଗନିର୍ଣ୍ଣୟ, ରୋଗନିଦାନ । [ ରୋଗଲକ୍ଷଣ ।
**Diagnostic**, *a.* ରୋଗନିର୍ଣ୍ଣାୟକ; *n.*
**Diagonal**, *n.* ଚତୁର୍ଭୁଜ କ୍ଷେତ୍ରର କର୍ଣ୍ଣ । [ କର୍ଣ୍ଣଭାବରେ ।
**Diagonally**, *ad.* କୋଣକୁକୋଣ,
**Diagram**, *n.* ଚିତ୍ର, ନକ୍ସା ।
**Dial**, *n.* ଘଣ୍ଟାଆଦିର ମୁହଁପାଖ, ସୂର୍ଯ୍ୟଘଡ଼ି ।
**Dialect**, *n.* ଉପଭାଷା, ପ୍ରାଦେଶିକ ଭାଷା ।
**Dialectical**, *a.* ତର୍କସମ୍ବନ୍ଧୀୟ, ଭାଷାସମ୍ବନ୍ଧୀୟ । [ ପ୍ରବୀଣ ବ୍ୟକ୍ତି ।
**Dialectician**, *n.* ତାର୍କିକ, ତର୍କରେ
**Dialectics**, *n.* ତର୍କବିଦ୍ୟା ।
**Dialogue**, *n.* କଥୋପକଥନ, ସଲାପ ।
**Diameter**, *n.* ବୃତ୍ତର ବ୍ୟାସ ।
**Diametrical**, *a.* ବ୍ୟାସମାର୍ଗାନୁସାରୀ, ବ୍ୟାସସମ୍ବନ୍ଧୀୟ । [ ଭାବରେ, ସିଧାସିଧି ।
**Diametrically**, *ad.* ବ୍ୟାସ-
**Diamond**, *n.* ହୀରକ, ହୀରା ।
**Diaphanous**, *a.* ସ୍ୱଚ୍ଛ ।
**Diaphragm**, *n.* ଉଦର ଓ ବକ୍ଷର ମଧ୍ୟବର୍ତ୍ତୀ ଅଂଶ ।
**Diarchy**, *n.* ଦ୍ୱୈତ ଶାସନ ।
**Diarist**, *n.* ଦିନ ପତ୍ରିକାର ଲେଖକ ।
**Diarrhœa**, *n.* ତରଳ ଝାଡ଼ା ।
**Diary**, *n.* ଦିନପତ୍ରିକା, ଦୈନନ୍ଦିନ ଲିପି, ଡାଏରୀ ।
**Dice**, *n.* ପଶାଖେଳ ।
**Dicer**, *n.* ପଶାଖେଳରେ ଅଭ୍ୟସ୍ତ ଲୋକ ।
**Dictaphone**, *n.* କଥିତ ଭାଷାକୁ ଲେଖିରଖିବା ଯନ୍ତ୍ର ।
**Dictate**, *v.* ଲେଖିବା ପାଇଁ ଡାକିବା, ଆଦେଶ ଦେବା; *n.* ଆଦେଶ, ଆଜ୍ଞା ।
**Dictation**, *n.* ଶ୍ରୁତଲିଖନ, ଆଦେଶ ।
**Dictator**, *n.* ନିରଙ୍କୁଶ ଶାସକ, ଏକଛତ୍ର ଶାସକ । [ ଯଥେଚ୍ଛାଚାରୀ ।
**Dictatorial**, *a.* ନିରଙ୍କୁଶ,
**Dictatorship**, *n.* ଯଥେଚ୍ଛାଚାର ଶାସନ । [ ରଚନାଶୈଳୀ ।
**Diction**, *n.* ଭାଷା, ବାକ୍ୟବିନ୍ୟାସ,
**Dictionary**, *n.* କୋଷଗ୍ରନ୍ଥ, ଅଭିଧାନ, ଶବ୍ଦସଂଗ୍ରହ ।
**Dictum**, *n.* ଆଦେଶ, ବିଧି, ନିୟମ, ପ୍ରବଚନ (*pl.* Dicta) ।
**Didactic**, **Didactical**, *a.* ନୀତିଗର୍ଭିକ, ଉପଦେଶମୂଳକ ।
**Diddle**, *v.* ଠକିବା, ଭୁଲାଇବା ।
**Die**, *v.* ପ୍ରାଣତ୍ୟାଗ କରିବା, ମରିବା; *n.* ଗୁଟି, ପଶାକାଠି (*pl.* Dice) ।
**Diet**, *n.* ପଥ୍ୟ, ଆହାର, ଭକ୍ଷ୍ୟ ।
**Dietary**, *a.* ପଥ୍ୟସମ୍ବନ୍ଧୀୟ; *n.* ଖାଦ୍ୟର ପ୍ରକୃତି । [ ପଥ୍ୟସମ୍ବନ୍ଧୀୟ ।
**Dietetic**, **Dietetical**, *a.*
**Dietetics**, *n.* ପଥ୍ୟବିଜ୍ଞାନ ।

Differ, *v.* ଭିନ୍ନ ହେବା, ଭିନ୍ନ ମତ ପୋଷଣ କରିବା, ଅସମ୍ମତ ହେବା ।

Difference, *n.* ପ୍ରଭେଦ, ଅନ୍ତର, ମତଭେଦ । [ ପୃଥକ୍ ।

Different, *a.* ଭିନ୍ନ, ଅପର, ଅନ୍ୟ,

Differentia, *n.* ପ୍ରଭେଦସୂଚକ ଲକ୍ଷଣ ବା ଚିହ୍ନ । [ ବିଶେଷକ ।

Differential, *a.* ଭେଦପ୍ରଦର୍ଶକ,

Differentiate, *v.* ପୃଥକ୍ କରିବା, ଭେଦ ପ୍ରଦର୍ଶନ କରିବା ।

Differentiation. *n.* ପୃଥକ୍‌କରଣ, ଭେଦପ୍ରଦର୍ଶନ । [ ଭିନ୍ନଭାବରେ ।

Differently, *ad.* ଅନ୍ୟଥା,

Difficult, *a.* କଠିନ, ଦୁଷ୍କର, ଦୁଃସାଧ୍ୟ ।

Difficulty, *n.* ଦୁଃଖ, କଷ୍ଟ, ଦୁଷ୍କରତା ।

Diffidence, *n.* ଆଶଙ୍କା, ଅବିଶ୍ୱାସ, ଆତ୍ମାବିଶ୍ୱାସହୀନତା ।

Diffident, *a.* ଶଙ୍କାକୁଳ, ଆତ୍ମାବିଶ୍ୱାସହୀନ (*opp.* Confident) । [ କରିବା ।

Diffuse, *v.* ବିସ୍ତାର କରିବା, ପ୍ରସାରିତ

Diffused, *a.* ପ୍ରସାରିତ, ବିକ୍ଷିପ୍ତ, ବିସ୍ତୃତ ।

Diffusible, *a.* ବିସ୍ତାରଯୋଗ୍ୟ ।

Diffusion, *n.* ବିକ୍ଷେପ, ବିସ୍ତୃତି, ପ୍ରସାର । [ ବିସ୍ତୃତିଶୀଳ ।

Diffusive, *a.* ବ୍ୟାପକ, ପ୍ରସାରି,

Dig, *v.* ଖୋଳିବା, ଖୋଦନ କରିବା ।

Digest, *v.* ଜୀର୍ଣ୍ଣ କରିବା, ପରିପାକ କରିବା, ମନରେ ଗ୍ରହଣ କରିବା ।

Digestibility, *n.* ପରିପାକ ଶକ୍ତି, ଜୀର୍ଣ୍ଣଶକ୍ତି, ହଜମ ଶକ୍ତି ।

Digestible, *a.* ପରିପାକଯୋଗ୍ୟ ।

Digestion, *n.* ପରିପାକ, ଜଠରାଗ୍ନି, ହଜମ ଶକ୍ତି । [ ଅଗ୍ନିବର୍ଦ୍ଧକ ।

Digestive, *a.* ପରିପାକସମ୍ବନ୍ଧୀୟ,

Digger, *n.* ଖନକ, ଖୋଦନକାରୀ ।

Digit, *n.* କଳା, ରେଖା, ସଂଖ୍ୟା ।

Dignified, *a.* ଗୌରବାନ୍ୱିତ, ମହାନୁଭବ, ମହାଶୟ ।

Dignify, *v.* ସମ୍ମାନିତ କରିବା ।

Dignitary, *n.* ମାନନୀୟ ବ୍ୟକ୍ତି ।

Dignity, *n.* ଗୌରବ, ମାହାତ୍ମ୍ୟ, ଉତ୍କର୍ଷ, ଔଦାର୍ଯ୍ୟ, ମହତ୍ତ୍ୱ, ପ୍ରତିଷ୍ଠା ।

Digress, *v.* ଅବାନ୍ତର ବିଷୟରେ କହିବା, ପ୍ରକୃତ ବିଷୟ ଛାଡ଼ିବା ।

Digression, *n.* ପ୍ରସଙ୍ଗ ପରିତ୍ୟାଗ, ଅବାନ୍ତର ବିଷୟର ଉତ୍ଥାପନ ।

Digressive, *a.* ଅସଙ୍ଗତ, ଅପ୍ରାସଙ୍ଗିକ, ଅସମ୍ବଦ୍ଧ, ଅବାନ୍ତର ।

Dike, Dyke, *n.* ସେତୁବନ୍ଧ, ପ୍ରଣାଳୀ ।

Dilapidate, *v.* ବିନାଶ କରିବା, ଧ୍ୱଂସ କରିବା । [ ପତନୋନ୍ମୁଖ ।

Dilapidated, *a.* ଧ୍ୱଂସପ୍ରାପ୍ତ,

Dilapidation, *n.* ଧ୍ୱଂସ, ଉଚ୍ଛେଦ, କ୍ଷୟ, ବିନାଶ, ଜୀର୍ଣ୍ଣାବସ୍ଥା ।

Dilate, *v.* ଦୀର୍ଘ କରିବା, ବିସ୍ତାର କରିବା, ସବିସ୍ତାର ବର୍ଣ୍ଣନ କରିବା ।

**Dilation**, *n.* ବିସ୍ତାରକରଣ ।
**Dilatory**, *a.* ମନ୍ଥର, ଦୀର୍ଘସୂତ୍ରୀ, କାଳକ୍ଷେପଣକାରୀ । [ ଗୋଳକଧନ୍ଦା ।
**Dilemma**, *n.* ଉଭୟ ସଙ୍କଟ,
**Diligence**, *n.* ଅଧ୍ୟବସାୟ, କଠୋର ପରିଶ୍ରମ, ଉଦ୍ୟୋଗ ।
**Diligent**, *a.* ପରିଶ୍ରମୀ, ଅଧ୍ୟବସାୟୀ ।
**Diligently**, *ad.* ଅଧ୍ୟବସାୟ ସହକାରେ ।
**Dilly-dally**, *v.* ଇତସ୍ତତଃ କରିବା, ଦ୍ୱିଧା କରିବା, ବିଳମ୍ବ କରିବା ।
**Dilute**, *v.* ଜଳୀୟ ପଦାର୍ଥସହ ମିଶାଇବା ।
**Dilution**, *n.* ଜଳୀୟ ଦ୍ରବ୍ୟସହ ମିଶ୍ରଣ ।
**Diluvial, Diluvian**, *a.* ବନ୍ୟାସମ୍ବନ୍ଧୀୟ । [ ଗୋଡ଼-ମାଟି ଆଦି ।
**Diluvium**, *n.* ବନ୍ୟାଦ୍ୱାରା ଆନୀତ
**Dim**, *a.* କ୍ଷୀଣ, ମଳିନ, ଅସ୍ପଷ୍ଟ, ନିଷ୍ପ୍ରଭ ।
**Dime**, *n.* ଏକ ଡଲାରର ଦଶମାଂଶ ।
**Dimension**, *n.* ବିସ୍ତାର, ପରିମାଣ, ଆକାର । [ ବିସ୍ତାର ସମ୍ବନ୍ଧୀୟ ।
**Dimensional**, *a.* ପରିମାଣ ବା
**Diminish**, *v.* କ୍ଷୁଦ୍ର ହେବା, କ୍ଷୟ ପାଇବା । [ ଅପଚୟ ।
**Diminution**, *n.* ହ୍ରାସ, କ୍ଷୟ,
**Diminutive**, *a.* କ୍ଷୁଦ୍ର, ଅଳ୍ପ, ସୂକ୍ଷ୍ମ, ଲଘୁ । [ ଚିବୁକ ବା ଗାଲର ନିମ୍ନ ଅଂଶ ।
**Dimple**, *n.* ଗଣ୍ଡତରଙ୍ଗ, କପୋଳଭଙ୍ଗ,
**Din**, *n.* ଗୋଳମାଳ, କୋଳାହଳ, ଧ୍ୱନି; *v.* ଶବ୍ଦ କରିବା ।
**Ding**, *v.* ଏକାଦିକ୍ରମେ ଘଣ୍ଟା ବଜାଇବା ।
**Dingey, Dinghy**, *n.* ଡଙ୍ଗି, କ୍ଷୁଦ୍ର ନୌକା । [ ହିଂସ୍ର ଜୀବ ।
**Dingo**, *n.* ଆଫ୍ରିକାର ଏକଜାତୀୟ
**Dingy**, *a.* କୁତ୍ସିତ, ମଇଳା, କୃଷ୍ଣକାୟ ।
**Dinky**, *a.* ସୁନ୍ଦର, ଚିତ୍ତାକର୍ଷକ ।
**Dinner**, *n.* ଆହାର, ଭୋଜନ ।
**Dinosaur**, *n.* ଅଧୁନା ବିଲୁପ୍ତ ପ୍ରାଚୀନ ଯୁଗର ବିରାଟକାୟ ଜନ୍ତୁବିଶେଷ ।
**Dint**, *n.* ପ୍ରହାର, ଆଘାତ, ପ୍ରଭାବ, ବଳ ।
**Dip**, *v.* ବୁଡ଼ିବା, ନିମଜ୍ଜିତ ହେବା, ବୁଡ଼ାଇବା । [ ବିଶେଷ ।
**Diphtheria**, *n.* କଣ୍ଠନାଳୀର ରୋଗ-
**Diphthong**, *n.* ଦୁଇ ସ୍ୱରବର୍ଣ୍ଣର ସଂଯୋଗ, ସଂଯୁକ୍ତ ସ୍ୱର । [ ପ୍ରମାଣପତ୍ର ।
**Diploma**, *n.* ପଦବୀସୂଚକ ପତ୍ର,
**Diplomacy**, *n.* କୂଟନୀତି, ଦୌତ୍ୟକର୍ମ ।
**Diplomat**, *n.* କୂଟନୀତିଜ୍ଞ ବ୍ୟକ୍ତି ।
**Diplomatic**, *a.* କୂଟନୈତିକ ।
**Diplomatist**, *n.* କୂଟନୀତିକୁଶଳ ବ୍ୟକ୍ତି, ଦୌତ୍ୟକର୍ମରେ ନିପୁଣ ବ୍ୟକ୍ତି ।
**Dire**, *a.* ଭୀଷଣ, ଦାରୁଣ, ଉଗ୍ର ।
**Direct**, *a.* ପ୍ରତ୍ୟକ୍ଷ, ସିଧାସିଧା; *v.* ପରିଚାଳନ କରିବା, ପଥ ଦେଖାଇବା ।
**Direction**, *n.* ଦିଗ, ନିର୍ଦ୍ଦେଶ, ପରିଚାଳନା । [ *n.* ଆଦେଶ ।
**Directive**, *a.* ନିର୍ଦ୍ଦେଶକ, ସୂଚକ;

Directly, *ad*. ପ୍ରତ୍ୟକ୍ଷଭାବରେ, ଶୀଘ୍ର, ତତ୍କ୍ଷଣାତ୍ । [ ନିର୍ଦ୍ଦେଶକ ।
Director, *n*. ପରିଚାଳକ, ଅଧ୍ୟକ୍ଷ,
Directorate, *n*. ପରିଚାଳକଙ୍କ କାର୍ଯ୍ୟାଳୟ, ପରିଚାଳକମଣ୍ଡଳୀ । [ପୁସ୍ତକ ।
Directory, *n*. ନାମଧାମ ସମ୍ବଳିତ
Direful, *a*. ଭୀଷଣ, ଭୟଙ୍କର, ଦାରୁଣ ।
Dirge, *n*. ଶୋକଗୀତିକା ।
Dirigible, *a*. ଇଚ୍ଛାନୁସାରେ ନିୟନ୍ତ୍ରିତ; *n*. ଇଚ୍ଛାନୁସାରେ ନିୟନ୍ତ୍ରିତ ବେଲୁନ ବା ଉଡ଼ାଜାହାଜ ।
Dirk, *n*. ଏକପ୍ରକାର ଛୁରି ।
Dirt, *n*. ମଇଳା, ଆବର୍ଜନା ।
Dirtily, *ad*. ଅପରିଷ୍କାର ଭାବରେ ।
Dirty, *a*. କୁତ୍ସିତ, ମଳିନ, ଦୂଷିତ ।
Disability, *n*. ଅସାମର୍ଥ୍ୟ, ଅକ୍ଷମତା ।
Disable, *v*. ଅସମର୍ଥ କରିବା, ବିକଳ କରିବା, ଅନୁପଯୁକ୍ତ କରିବା ।
Disabled, *a*. ସାମର୍ଥ୍ୟହୀନ, ବିକଳୀକୃତ
Disabuse, *v*. ଭ୍ରମ ଦୂର କରିବା, ଅପମାନିତ କରିବା । [ ଅପକାର, ଅନିଷ୍ଟ ।
Disadvantage, *n*. ଅସୁବିଧା,
Disadvantageous, *a*. ଅସୁବିଧା-ଜନକ, ଅନିଷ୍ଟକର, ପ୍ରତିକୂଳ ।
Disaffect, *v*. ବିରାଗ ଜନ୍ମାଇବା ।
Disaffected, *a*. ଅସନ୍ତୁଷ୍ଟ, ଅନନୁରକ୍ତ ।
Disaffection, *n*. ଅସନ୍ତୋଷ, ବିରାଗ ।
Disagree, *v*. ଅସମ୍ମତ ହେବା, ବିବାଦ କରିବା, ଭିନ୍ନ ମତ ପୋଷଣ କରିବା ।
Disagreeable, *a*. ଅରୁଚିକର, ଅପ୍ରିୟ, ଅପ୍ରୀତିକର ।
Disagreement, *n*. ମତର ଅନୈକ୍ୟ, ମତଭେଦ, ବିବାଦ ।
Disallow, *v*. ନାମଞ୍ଜୁର କରିବା, ନିଷେଧ କରିବା, ପ୍ରତ୍ୟାଖ୍ୟାନ କରିବା ।
Disappear, *v*. ଅନ୍ତର୍ହିତ ହେବା, ଚକ୍ଷୁର ଅଗୋଚର ହେବା । [ ଅନ୍ତର୍ଦ୍ଧାନ, ଅଦର୍ଶନ ।
Disappearance, *n*. ତିରୋଧାନ,
Disappoint, *v*. ହତାଶ କରିବା, ବିଫଳ କରିବା । [ ଭଗ୍ନମନୋରଥ ।
Disappointed, *a*. ହତାଶ, ନିରାଶ,
Disappointment, *n*. ନୈରାଶ୍ୟ, ଆଶାଭଙ୍ଗ । [ ବିରାଗ, ଅପ୍ରୀତି ।
Disapprobation, *n*. ନିନ୍ଦା,
Disapproval, *n*. ନାମଞ୍ଜୁର, ଦେପସନ୍ଦ । [ ଅଗ୍ରାହ୍ୟ କରିବା ।
Disapprove, *v*. ଦେପସନ୍ଦ କରିବା,
Disarm, *v*. ଅସ୍ତ୍ରହୀନ କରିବା ।
Disarmament, *n*. ନିରସ୍ତ୍ରୀକରଣ ।
Disarrange, *v*. କ୍ରମଭଙ୍ଗ କରିବା, ଇତସ୍ତତଃ କରିବା । [ *n*. ବିଶୃଙ୍ଖଳା ।
Disarray, *v*. ବିଶୃଙ୍ଖଳ କରିବା;
Disaster, *n*. ଘୋର ବିପତ୍ପାତ, ବିପତ୍ତି ।
Disastrous, *a*. ଦାରୁଣ, ଘୋର, ବିପଦପୂର୍ଣ୍ଣ ।

**Disavow**, *v.* ଅସ୍ୱୀକାର କରିବା ।
**Disavowal**, *n.* ଅସ୍ୱୀକାର, ପ୍ରତ୍ୟାଖ୍ୟାନ ।
**Disband**, *v.* ଯୁଦ୍ଧବ୍ୟାପାରରୁ ମୁକ୍ତ କରିବା, ସୈନ୍ୟଦଳ ଭାଙ୍ଗିଦେବା ।
**Disbelief**, *n.* ଅବିଶ୍ୱାସ ।
**Disbelieve**, *v.* ଅବିଶ୍ୱାସ କରିବା ।
**Disbeliever**, *n.* ଅବିଶ୍ୱାସୀ ଲୋକ, ନାସ୍ତିକ, ବିଧର୍ମୀ । [ ବିନିଯୋଗ କରିବା ।
**Disburse**, *v.* ବ୍ୟୟ କରିବା,
**Disc, Disk**, *n.* ମଣ୍ଡଳ, ପରିଧି, ଚକ୍ର, ବିମ୍ବ ।
**Discard**, *v.* ପରିତ୍ୟାଗ କରିବା ।
**Discern**, *v.* ବିଗ୍ଭର କରିବା, ବିବେଚନା କରିବା, ନିର୍ଣ୍ଣୟ କରିବା । [ ଦୃଷ୍ଟିଗୋଚର ।
**Discernible**, *a.* ଦୃଶ୍ୟମାନ,
**Discerning**, *a.* ଦୂରଦର୍ଶୀ, ବିଗ୍ଭରଶୀଳ । [ ତୀକ୍ଷ୍ଣ ବୁଦ୍ଧି ।
**Discernment**, *n.* ବିବେଚନା,
**Discharge**, *v.* ସାଧନ କରିବା, କର୍ମଚ୍ୟୁତ କରିବା, ଗୁଳି ମାରିବା; *n.* ନିର୍ବାହ, କର୍ମଚ୍ୟୁତି, ପରିଶୋଧ ।
**Disciple**, *n.* ଶିଷ୍ୟ, ଛାତ୍ର, ଶିକ୍ଷାର୍ଥୀ ।
**Discipleship**, *n.* ଶିଷ୍ୟତ୍ୱ, ଛାତ୍ରତ୍ୱ ।
**Disciplinarian**, *n.* କଠୋର ଶାସନକର୍ତ୍ତା, ଶୃଙ୍ଖଳାରକ୍ଷାକାରୀ ବ୍ୟକ୍ତି ।
**Disciplinary**, *a.* ଶୃଙ୍ଖଳାଗତ ।
**Discipline**, *n.* ଶୃଙ୍ଖଳା, ନିୟମ, ଶାସନ; *v.* ଶାସନାଧୀନ କରିବା, ସଂଯତ କରିବା, ନିୟମାଧୀନ ରଖିବା ।
**Disciplined**, *a.* ସୁଶୃଙ୍ଖଳ, ସଂଯତ ।
**Disclaim**, *v.* ଅସ୍ୱୀକାର କରିବା, ଅଧିକାର ତ୍ୟାଗ କରିବା । [ ପ୍ରତ୍ୟାଖ୍ୟାନ ।
**Disclaimer**, *n.* ଅସ୍ୱୀକାର, ସ୍ୱତ୍ୱତ୍ୟାଗ,
**Disclose**, *v.* ପ୍ରକଟ କରିବା, ଗୁପ୍ତ ବିଷୟ ପ୍ରକାଶ କରିବା । [ ପ୍ରକଟନ ।
**Disclosure**, *n.* ଗୁପ୍ତ ବିଷୟର ପ୍ରକାଶ,
**Discolour**, *v.* ବିବର୍ଣ୍ଣ ହେବା, ମଳିନ ପଡ଼ିବା, ରଙ୍ଗ ଉଠାଇ ଦେବା ।
**Discolouration, Discoloration**, *n.* ମଳିନତା, ବିବର୍ଣ୍ଣତା ।
**Discomfit**, *v.* ପରାଜିତ କରିବା, ବିଫଳ କରିବା । [ ପରାଭବ ।
**Discomfiture**, *n.* ପରାଜୟ, ବିଧ୍ୱଂସ,
**Discomfort**, *n.* କ୍ଳେଶ, ବ୍ୟଥା, ଅସ୍ୱସ୍ତି, ଅସ୍ୱାଚ୍ଛନ୍ଦ୍ୟ; *v.* ପୀଡ଼ା ଦେବା, ବାଧା ଦେବା । [ ଉଦ୍‌ବେଗ ଜନ୍ମାଇବା ।
**Discompose**, *v.* ଅସ୍ଥିର କରିବା,
**Discomposed**, *a.* ଆଲୋଡ଼ିତ, ଉଦ୍‌ବିଗ୍ନ । [ ଅସ୍ୱାଚ୍ଛନ୍ଦ୍ୟ ।
**Discomposure**, *n.* ଅସ୍ଥିରତା,
**Disconcert**, *v.* ବ୍ୟାଘାତ କରିବା, ହଇରାଣ କରିବା, ବିଫଳ କରିବା ।
**Disconnect**, *v.* ସଂଯୋଗ ଛିନ୍ନ କରିବା, ପୃଥକ କରିବା ।

Disconsolate, *a.* ବିଷଣ୍ଣ, ଖିନ୍ନ, ଶୋକାକୁଳ, ଉଦ୍‌ବିଗ୍ନ ।
Disconsolately, *ad.* ବିଷଣ୍ଣଭାବରେ, ଉଦ୍‌ବେଗ ସହକାରେ । [ ବିରକ୍ତ ।
Discontent, *n.* ଅସନ୍ତୋଷ, ଅତୃପ୍ତି,
Discontented, *a.* ଅସନ୍ତୁଷ୍ଟ, ଅତୃପ୍ତ ।
Discontentment, *n.* ଅସନ୍ତୋଷ, ଅଶାନ୍ତି, ଅତୃପ୍ତି ।
Discontinuation, Discontinuance, *n.* ନିବୃତ୍ତି, ବିରତି, କ୍ଷାନ୍ତି । [ ନିବୃତ୍ତ ହେବା, ବିରତ ହେବା ।
Discontinue, *v.* ରହିତ ହେବା,
Discontinuity, *n.* ପୃଥକ୍ ଭାବ, ବିଚ୍ଛେଦ । [ ସବିରାମ ।
Discontinuous, *a.* ବିଚ୍ଛିନ୍ନ,
Discord, *n.* ବିରୋଧ, ବିଭେଦ, ବିବାଦ (*opp.* Concord) ।
Discordance, Discordancy, *n.* ମତଭେଦ, ଅସଙ୍ଗତି, ବିରୋଧ ।
Discordant, *a.* ବିଷମ, ବିରୁଦ୍ଧ, ଅସଙ୍ଗତ, କର୍ଣ୍ଣକଟୁ ।
Discount, *n.* ଶିଆଢ଼ି, ଛାଡ଼, କମିଶନ, ଉଦ୍ଧୃତ ଭାଗ; *v.* ମୋଟ ମୂଲ୍ୟରୁ ଛାଡ଼ଦେବା, ବିଶ୍ୱାସରେ ନ ଆଣିବା ।
Discountenance, *v.* ଅନାଦର କରିବା, ଲଜ୍ଜିତ କରିବା, ସମର୍ଥନ ନ କରିବା; *n.* ଅନାଦର, ଅସମର୍ଥନ ।
Discourage, *v.* ନିରୁତ୍ସାହ କରିବା, ନିବର୍ତ୍ତାଇବା । [ ହୀନତା, ନୈରାଶ୍ୟ ।
Discouragement, *n.* ଉତ୍ସାହ-
Discouraging, *a.* ନୈରାଶ୍ୟଜନକ, ବିଷାଦଜନକ, ଧୈର୍ଯ୍ୟଚ୍ୟୁତିକାରକ ।
Discourse, *v.* ବକ୍ତୃତା ଦେବା; *n.* ଆଲାପ, ଭାଷଣ, କଥାବାର୍ତ୍ତା, ବକ୍ତୃତା ।
Discourteous, *a.* ଅଶିଷ୍ଟ, ଅଭଦ୍ର, ଅବିନୀତ, ଶିଷ୍ଟାଚାରବିରୁଦ୍ଧ ।
Discourtesy, *n.* ଅଶିଷ୍ଟତା, ଅଭଦ୍ର ବ୍ୟବହାର, ଅବିନୟ । [ ପ୍ରକଟ କରିବା ।
Discover, *v.* ଆବିଷ୍କାର କରିବା,
Discoverable, *a.* ଆବିଷ୍କାରଯୋଗ୍ୟ ।
Discoverer, *n.* ଆବିଷ୍କାରକର୍ତ୍ତା ।
Discovery, *n.* ଆବିଷ୍କାର, ଅଜ୍ଞାତ ବସ୍ତୁର ସନ୍ଧାନ, ଉପଲବ୍ଧି ।
Discredit, *n.* ଅପବାଦ, ନିନ୍ଦା, ଅଖ୍ୟାତି; *v.* ଅପବାଦ ଦେବା, ଅବିଶ୍ୱାସ କରିବା । [ ଅବିଶ୍ୱାସ୍ୟ ।
Discreditable, *a.* ନିନ୍ଦାଜନକ,
Discreet, *a.* ବିବେକୀ, ବିବେଚନାପୂର୍ଣ୍ଣ, ପରିଣାମଦର୍ଶୀ । [ ସହକାରେ ।
Discreetly, *ad.* ବିବେଚନା
Discreetness, *n.* ବିବେଚନା, ପରିଣାମଦର୍ଶିତା, ବିଚକ୍ଷଣତା ।
Discrepance, Discrepancy, *n.* ବିଭେଦ, ବିରୋଧ, ଅସଙ୍ଗତି, ଅମେଳ ।

**Discrepant**, *a.* ବିଭିନ୍ନ, ବିରୁଦ୍ଧ, ଅସଙ୍ଗତ, ବିପରୀତ ।

**Discrete**, *a.* ଭିନ୍ନ, ପୃଥକ୍ ।

**Discreteness**, *n.* ଭିନ୍ନତା, ପାର୍ଥକ୍ୟ

**Discretion**, *n.* ବିଚାର, ବିବେଚନା, ସାବଧାନତା, ବିଜ୍ଞତା ।

**Discretionary**, *a.* ଇଚ୍ଛାଧୀନ, ବିବେଚନାସାପେକ୍ଷ, ବୈକଳ୍ପିକ ।

**Discriminate**, *v.* ଭଲମନ୍ଦ ବିଚାର କରିବା, ଭେଦଭାବ ରଖିବା ।

**Discriminating**, *a.* ଭଲମନ୍ଦ ବିଚାରବନ୍ତ । [ ବିଚାର, ଅବଧାରଣ ।

**Discrimination**, *n.* ଭଲମନ୍ଦ

**Discriminative**, *a.* ଭେଦସୂଚକ, ସୂକ୍ଷ୍ମବିଚାରପ୍ରସୂତ, ବିବେକୀ ।

**Discursion**, *n.* ଇତସ୍ତତଃ ଧାବନ ।

**Discursive**, *a.* ଅସ୍ଥିର, ଚଞ୍ଚଳ, ଅପ୍ରାସଙ୍ଗିକ । [ ଭାବରେ ।

**Discursively**, *ad.* ଅସ୍ଥିର

**Discus**, *n.* ଲୌହଚକ୍ର ।

**Discuss**, *v.* ଆଲୋଚନା କରିବା, ବିଚାର କରିବା, ବିତର୍କ କରିବା ।

**Discussion**, *n.* ବିଚାର, ବିତର୍କ, ଆଲୋଚନା, ବାଦବିବାଦ ।

**Disdain**, *n.* ଅବମାନନା, ଉପେକ୍ଷା, ଅନାଦର, ଅବହେଳା; *v.* ଅବଜ୍ଞା କରିବା, ଘୃଣା କରିବା, ଅବହେଳା କରିବା ।

**Disdainful**, *a.* ଅବଜ୍ଞାପୂର୍ଣ୍ଣ, ଦାମ୍ଭିକ ।

**Disdainfully**, *ad.* ଅବଜ୍ଞା ସହକାରେ । [ ଅସ୍ୱାସ୍ଥ୍ୟ ।

**Disease**, *n.* ରୋଗ, ବ୍ୟାଧି, ପୀଡ଼ା,

**Diseased**, *a.* ରୁଗ୍ଣ, ବ୍ୟାଧିଗ୍ରସ୍ତ ।

**Disembark**, *v.* ଜାହାଜରୁ ଓହ୍ଲାଇବା

**Disembarkation**, *n.* ଜାହାଜରୁ ଅବତରଣ । [ ଅଶରୀରୀ ।

**Disembodied**, *a.* କାୟାହୀନ,

**Disengage**, *v.* ବନ୍ଧନମୁକ୍ତ କରିବା, ଛାଡ଼ିଦେବା । [ କରିବା ।

**Disentangle**, *v.* ବନ୍ଧନରୁ ମୁକ୍ତ

**Disfavour**, *v.* ଅନୁଗ୍ରହ ନ କରିବା, ଅନୁମୋଦନ ନ କରିବା; *n.* ପରାଙ୍ମୁଖତା, ଅପ୍ରସନ୍ନତା । [ ଅବସ୍ଥା ।

**Disfiguration**, *n.* କଦାକାର

**Disfigure**, *v.* ବିରୂପ କରିବା, ବିକୃତ କରିବା, କଦାକାର କରିବା ।

**Disfigurement**, *n.* ବିରୂପକରଣ ।

**Disfranchise**, *v.* ଭୋଟଦେବା ଅଧିକାରରୁ ବଞ୍ଚିତ କରିବା । [ ଅପହରଣ ।

**Disfranchisement**, *n.* ଅଧିକାର

**Disgorge**, *v.* ବମନ କରିବା, ଉଦ୍‌ଗାର କରିବା । [ ଉଦ୍‌ଗାର, ବାନ୍ତି ।

**Disgorgement**, *n.* ବମନ,

**Disgrace**, *n.* ନିନ୍ଦା, ଲଜ୍ଜା, ଅପମାନ; *v.* ଅପମାନ ଦେବା । [ ଅଯଶସ୍କର ।

**Disgraceful**, *a.* ଲଜ୍ଜାଜନକ,

**Disgracefully**, *ad.* ଲଜ୍ଜାକର ଭାବରେ ।

[ ବେଶ ଧାରଣ କରିବା ।

**Disguise**, *n.* ଛଦ୍ମ ବେଶ; *v.* ଛଦ୍ମ

**Disguised**, *a.* ଛଦ୍ମବେଶଧାରୀ ।

**Disgust**, *n.* ବିରକ୍ତି, ଉଦ୍‌ବେଗ, ଘୃଣା; *v.* ଘୃଣା ଜନ୍ମାଇବା ।

[ ବିରକ୍ତିକର ।

**Disgusting**, *a.* ଘୃଣାଜନକ,

**Dish**, *n.* ପାତ୍ର, ଥାଳି, ଥାଳିଆ ।

**Dishearten**, *v.* ନିରୁତ୍ସାହିତ କରିବା, ନିରାଶ କରିବା ।

[ କରିବା ।

**Dishevel**, *v.* କେଶକୁ ବିପର୍ଯ୍ୟସ୍ତ

**Dishonest**, *a.* ଅସାଧୁ, କୁଟିଳ, ଶଠ, କପଟୀ, ଅସତ୍ୟ, ଅବିଶ୍ୱାସୀ ।

**Dishonestly**, *ad.* ଅସତ୍ୟ ଭାବରେ, ଅସାଧୁ ଉପାୟରେ, ଅନ୍ୟାୟରେ ।

**Dishonesty**, *n.* ଅସାଧୁତା, ଶଠତା, ପ୍ରବଞ୍ଚନା, କୁଟିଳତା, କପଟତା ।

**Dishonour**, *n.* ଅସମ୍ମାନ, ଅବଜ୍ଞା, ଅବମାନନା; *v.* ଅପମାନ କରିବା ।

**Dishonourable**, *a.* କଳଙ୍କକର, ଅନାର୍ଯ୍ୟ, ଅପଶଯ୍ୟର, ଲଜ୍ଜାଜନକ ।

**Disillusion**, *v.* ଭ୍ରମ ଦୂରକରିବା ।

**Disinclination**, *n.* ବିରାଗ, ଅନିଚ୍ଛା, ବିମୁଖତା, ନିସ୍ପୃହତା ।

**Disincline**, *v.* ବିମୁଖ କରିବା ।

**Disinclined**, *a.* ନିସ୍ପୃହ, ଅନିଚ୍ଛୁକ, ବିମୁଖ, ବିରକ୍ତ, ପରାଙ୍ମୁଖ ।

**Disinfect**, *v.* ବିଶୋଧନ କରିବା ।

**Disinfectant**, *a.* ବିଶୋଧକ; *n.* ବିଶୋଧକ ଦ୍ରବ୍ୟ ।

[ ନିର୍ଦ୍ଦୋଷକରଣ ।

**Disinfection**, *n.* ବିଶୋଧନ,

**Disinherit**, **Disherit**, *v.* ପୈତୃକ ସମ୍ପତ୍ତିରୁ ବଞ୍ଚିତ କରିବା ।

**Disintegrate**, *v.* ଖଣ୍ଡବିଖଣ୍ଡ କରିବା, ଐକ୍ୟଭଙ୍ଗ କରିବା, ମୌଳିକ ପଦାର୍ଥରେ ବିଭକ୍ତ କରିବା ।

**Disintegration**, *n.* ସଙ୍ଗଠଭଙ୍ଗ ।

**Disinterested**, *a.* ନିଃସ୍ୱାର୍ଥପର, ନିସ୍ପୃହ, ଅପକ୍ଷପାତ ।

**Disinterestedness**, *n.* ନିଃସ୍ୱାର୍ଥପରତା, ନିର୍ଲୋଭତା ।

[ କରିବା ।

**Disjoin**, *v.* ବିଚ୍ଛେଦ କରିବା, ପୃଥକ୍

**Disjoint**, *v.* ବିଶ୍ଳିଷ୍ଟ କରିବା, ଗ୍ରନ୍ଥିଚ୍ଛେଦ କରିବା, ସମ୍ବନ୍ଧ ଛଡ଼ାଇବା ।

**Disjointed**, *a.* ବିଶ୍ଳିଷ୍ଟ, ଅସମ୍ବଦ୍ଧ ।

**Disk**, *n.* ଗ୍ରହାଦିର ମଣ୍ଡଳ ।

**Dislike**, *n.* ଅରୁଚି, ବିରାଗ, ଘୃଣା; *v.* ଘୃଣା କରିବା ।

[ ଗଣ୍ଠି ଖସିବା ।

**Dislocate**, *v.* ସ୍ଥାନଚ୍ୟୁତ କରିବା,

**Dislocation**, *n.* ସ୍ଥାନଚ୍ୟୁତି, ସନ୍ଧିଚ୍ୟୁତି, ପ୍ରସ୍ତର ପ୍ରସ୍ତରର ସ୍ଖଳନ ।

**Dislodge**, *v.* ସ୍ଥାନାନ୍ତର କରିବା, ନିର୍ବାସନ କରିବା, ଘରୁ ତଡ଼ିଦେବା ।

**Disloyal**, *a.* ରାଜଦ୍ରୋହୀ, ଅନନୁଗତ ।

**Disloyalty**, *n.* ଆନୁଗତ୍ୟର ଅଭାବ, ରାଜଦ୍ରୋହ, ପ୍ରଭୁପ୍ରତି ବିରାଗ ।

ଅନୁଷ୍ଠାନ, ସ୍ଥାପନ, ପ୍ରତିପାଦନ, ଭୃତ୍ୟାଦିବର୍ଗ । [ ଜମିଦାର ।

**Estate**, *n.* ଅବସ୍ଥା, ବିଭବ, ଭୂସମ୍ପତ୍ତି,

**Esteem**, *n.* ସମ୍ମାନ, ପୂଜା, ଆଦର, ସମ୍ଭ୍ରମ; *v.* ସମ୍ମାନ କରିବା, ବିବେଚନା କରିବା, ଆଦର କରିବା ।

**Esteemable**, *a.* ସମ୍ମାନାର୍ହ, ପୂଜ୍ୟ, ମାନନୀୟ । [ ସମ୍ମାନାସ୍ପଦ ।

**Esteemed**, *a.* ସମ୍ମାନନୀୟ,

**Esthetic, Aesthetic**, *a.* ମନୋବୃତ୍ତିସମ୍ବନ୍ଧୀୟ, ସୌନ୍ଦର୍ଯ୍ୟବୋଧ-ବିଷୟକ । [ ଶ୍ରଦ୍ଧେୟ ।

**Estimable**, *a.* ମାନନୀୟ, ପୂଜନୀୟ,

**Estimate**, *v.* ଗଣନା କରିବା, ଆନୁମାନିକ ମୂଲ୍ୟ ନିରୂପଣ କରିବା; *n.* ଗଣନା, ମୂଲ୍ୟନିରୂପଣ ।

**Estimation**, *n.* ଗଣନା, ମୂଲ୍ୟ-ନିର୍ଣ୍ଣୟ, ସମ୍ମାନ, ମର୍ଯ୍ୟାଦା, ବିବେଚନା ।

**Estimator**, *n.* ଆନୁମାନିକ ମୂଲ୍ୟ-ନିରୂପଣକାରୀ ।

**Estrange**, *v.* ବିରାଗ ଉତ୍ପାଦନ କରିବା, ବିବାଦ ଘଟାଇବା, ବିଚ୍ଛେଦ କରାଇବା, ଅପ୍ରୀତି ଜନ୍ମାଇବା ।

**Estrangement**, *n.* ବିଚ୍ଛେଦ, ବିରାଗ, ପୃଥଗ୍‌ଭାବ, ସୁହୃଦ୍‌ଭେଦ ।

**Estuary**, *n.* ନଦୀମୁହାଣ ।

**Etc. (Et cetera)**, *con.* ଇତ୍ୟାଦି, ପ୍ରଭୃତି ।

**Etch**, *v.* ଖୋଦନଦ୍ୱାରା ଧାତୁ ଉପରେ ଲେଖିବା ବା ଚିତ୍ର କରିବା ।

**Eternal**, *a.* ନିତ୍ୟ, ଶାଶ୍ୱତ, ଚିରନ୍ତନ, ସନାତନ । [ ଚିରସ୍ଥାୟୀଭାବରେ ।

**Eternally**, *ad.* ଚିରକାଳ, ନିରନ୍ତର,

**Eternise**, *v.* ଚିରସ୍ଥାୟୀ କରିବା, ଅମର କରିବା । [ ସନାତନତ୍ୱ ।

**Eternity**, *n.* ନିତ୍ୟତା, ଅନନ୍ତକାଳ,

**Ether**, *n.* ଆକାଶ, ତେଜୋବହ ଅଦୃଶ୍ୟ ବସ୍ତୁବିଶେଷ, ଔଷଧବିଶେଷ, ଉପରିସ୍ଥ ବାୟୁ ।

**Ethereal, Etherial**, *a.* ବୈହାୟସ, ଆକାଶୀୟ, ଅତିସୂକ୍ଷ୍ମ, ଇଥର ସମ୍ବନ୍ଧୀୟ ।

**Ethic, Ethical**, *a.* ନୀତିସମ୍ମତ, ନୈତିକ, ନୀତିସମ୍ବନ୍ଧୀୟ, ନୀତିଶାସ୍ତ୍ରୀୟ ।

**Ethically**, *ad.* ନୀତିଶାସ୍ତ୍ର ଅନୁସାରେ, ନୈତିକତା ଦୃଷ୍ଟିରେ ।

**Ethics**, *n.* ନୀତିଶାସ୍ତ୍ର, ଆଚାରନୀତି ।

**Ethnic, Ethnical**, *a.* ମାନବ-ଜାତିତତ୍ତ୍ୱବିଷୟକ । [ ବିଷୟକ ବିଜ୍ଞାନ ।

**Ethnology**, *n.* ବିଭିନ୍ନ ମାନବଜାତି-

**Ethology**, *n.* ନୀତିଶାସ୍ତ୍ର ।

**Etiquette**, *n.* ଶିଷ୍ଟାଚାର, ଭଦ୍ରତା, ସୌଜନ୍ୟ, ସଦାଚାର ।

**Etymological**, *a.* ଶବ୍ଦସାଧନ ବିଷୟକ, ବ୍ୟୁତ୍ପତ୍ତିଗତ ।

**Etymology**, *n.* ଶବ୍ଦସାଧନ, ଶବ୍ଦର ବ୍ୟୁତ୍ପତ୍ତି, ଶବ୍ଦବ୍ୟୁତ୍ପତ୍ତି ବିଦ୍ୟା ।

**Eugenics**, *n.* ପ୍ରଜନନ ବିଦ୍ୟା, ଯେଉଁ ବିଦ୍ୟାରେ ଯୌନମିଳନଦ୍ୱାରା ମାନବ-*ଜାତିର ଉତ୍କର୍ଷ ସାଧନ ପରିକଳ୍ପିତ ।

**Eulogise, Eulogize**, *v.* ପ୍ରଶଂସା କରିବା, ସ୍ତୁତିଗାନ କରିବା । [ଗୁଣଗାନ ।

**Eulogy**, *n.* ପ୍ରଶଂସା, ସ୍ତବ, ସ୍ତୁତି,

**Eunuch**, *n.* ନପୁଂସକ, ଛିନ୍ନମୁଷ୍କ ବ୍ୟକ୍ତି, କଞ୍ଚୁକୀ । [ କ୍ଲୀବତ୍ୱ ।

**Eunuchism**, *n.* ନପୁଂସକତ୍ୱ,

**Euphony**, *n.* ମଧୁର ସ୍ୱର ।

**Eurasian**, *n.* ଇଉରୋପୀୟ ଓ ଏସୀୟ ପିତାମାତାଙ୍କ ସନ୍ତାନ, ଇଉରେସିଆନ ।

**Evacuate**, *v.* ସ୍ଥାନତ୍ୟାଗ କରିବା, ଛାଡ଼ି ଚାଲିଯିବା, ବାହାର କରିଦେବା ।

**Evacuation**, *n.* ସ୍ଥାନତ୍ୟାଗ, ପରିତ୍ୟାଗ, ମଳୋତ୍ସର୍ଗ, ବିରେଚନ ।

**Evacuee**, *n.* ସ୍ଥାନଚ୍ୟୁତ ବ୍ୟକ୍ତି, ବାସ୍ତୁହୀନ ବ୍ୟକ୍ତି ।

**Evade**, *v.* ଛଳନାରେ ନିସ୍ତାର ପାଇବା, କୌଶଳରେ ପ୍ରକୃତ ବିଷୟକୁ ଏଡ଼ିବା ।

**Evaporate**, *v.* ବାଷ୍ପରେ ପରିଣତ ହେବା, ଖରରେ ଜଳ ଶୁଖିଯିବା, ଶୂନ୍ୟ ହେବା, ବିଲୀନ ହେବା । [ ଶୋଷଣ ।

**Evaporation**, *n.* ବାଷ୍ପୀକରଣ,

**Evasion**, *n.* କପଟ ବାକ୍ୟ, ବାକ୍‌ଛଳ, ଛଳନାଦ୍ୱାରା ନିସ୍ତାର ।

**Evasively**, *ad.* ବାକ୍‌ଛଳରେ, ପ୍ରକୃତ କଥା ଛାଡ଼ି, ଛଳନାପୂର୍ବକ ।

**Eve, Even, Evening**, *n.* ସାୟଂକାଳ, ସନ୍ଧ୍ୟା, ପ୍ରଦୋଷ ।

**Even**, *a.* ସମତଳ, ସମାନ, ଯୁଗ୍ମ; *ad.* ବରଂ, ତଥାପି, ଯଦ୍ୟପି ।

**Evenhanded**, *a.* ନିରପେକ୍ଷ, ଯଥାଯଥ, ନ୍ୟାଯ୍ୟ । [ ଶୁଭତାରା ।

**Evening star**, *n.* ସାନ୍ଧ୍ୟତାରା,

**Evenly**, *ad.* ସମାନଭାବରେ ।

**Evenness**, *n.* ସମତା, ଋଜୁତା ।

**Event**, *n.* ବୃତ୍ତାନ୍ତ, ଘଟନା ।

**Eventful**, *a.* ଘଟନାବହୁଳ, ବିଖ୍ୟାତ ।

**Eventide**, *n.* ସନ୍ଧ୍ୟା ସମୟ ।

**Eventual**, *a.* ଅନ୍ତ୍ୟ, ଅନ୍ତିମ, ଚରମ ।

**Eventually**, *ad.* ଅବଶେଷରେ, ପରିଣାମରେ, ପରିଶେଷରେ ।

**Ever**, *ad.* କଦାଚନ, କଦାଚିତ୍, ସର୍ବଦା, ଅହର୍ନିଶ, ସତତ, ନିରନ୍ତର ।

**Evergreen**, *a.* ଚିରଶ୍ୟାମଳ, ଚିରହରିତ୍ । [ ଅକ୍ଷୟ, ନିତ୍ୟ ।

**Everlasting**, *a.* ଚିରସ୍ଥାୟୀ,

**Everlastingly**, *ad.* ଚିରକାଳ ପାଇଁ ।

**Evermore**, *ad.* ସତତ, ନିତ୍ୟ ।

**Every**, *a.* ପ୍ରତ୍ୟେକ, ସର୍ବ, ସମସ୍ତ ।

**Everywhere**, *ad.* ସର୍ବତ୍ର, ସବୁଠାରେ, ଯତ୍ରତତ୍ର ।

**Evict**, *v.* ଉଚ୍ଛେଦ କରିବା, ବହିଷ୍କାର କରିବା, ବେଦଖଲ କରିବା ।

**Eviction**, *n.* ଉଚ୍ଛେଦ, ବହିଷ୍କରଣ, ଅଧିକାରଭ୍ରଂଶ, ବେଦଖଲ ।

**Evidence**, *n.* ସାକ୍ଷ୍ୟ, ପ୍ରମାଣ, ନିଦର୍ଶନ; *v.* ପ୍ରମାଣ କରିବା ।

**Evident**, *a.* ସୁସ୍ପଷ୍ଟ, ପରିସ୍ଫୁଟ, ବିଶଦ, ପ୍ରତ୍ୟକ୍ଷ, ପ୍ରମାଣିତ, ନିଃସନ୍ଦେହ ।

**Evidential**, *a.* ପ୍ରମାଣକାରୀ, ପ୍ରମାଣପ୍ରଦର୍ଶକ, ସାକ୍ଷ୍ୟରୁ ପ୍ରମାଣିତ ।

**Evidently**, *ad.* ସ୍ପଷ୍ଟଭାବରେ, ପ୍ରତ୍ୟକ୍ଷଭାବରେ, ବିଶଦରୂପେ ।

**Evil**, *a.* ଦୁଷ୍ଟ, ଖଳ, ଅସାଧୁ, ଅସତ୍, ଗର୍ହିତ; *n.* ପାପ, ଦୋଷ, ଅମଙ୍ଗଳ ।

**Evince**, *v.* ନିର୍ଦ୍ଦେଶ କରିବା, ପ୍ରକାଶ କରିବା, ସୂଚନା ଦେବା, ପ୍ରକଟ କରିବା ।

**Evincible**, *a.* ପ୍ରମାଣଯୋଗ୍ୟ ।

**Evitable**, *a.* ପରିହାର୍ଯ୍ୟ, ହେୟ, ବର୍ଜନୀୟ, ଅନାବଶ୍ୟକ ।

**Evoke**, *v.* ଜାତ କରିବା, ଉତ୍ତେଜିତ କରିବା, ଆହ୍ୱାନ କରିବା, ଡାକିବା ।

**Evolution**, *n.* ବିବର୍ତ୍ତନ, ପରମ୍ପରା, ପରିଣାମ, କ୍ରମବିକାଶ ।

**Evolve**, *v.* ପ୍ରକାଶ କରିବା, ଉନ୍ନତ କରିବା, ପ୍ରାକୃତିକ ଉପାୟରେ ବିକସିତ ହେବା, ପ୍ରକାଶିତ ହେବା ।

**Ewe**, *n.* ମେଷୀ, ମେଣ୍ଢୀ ।

**Exact**, *a.* ଯଥାର୍ଥ, ସତ୍ୟ, ଠିକ୍; *v.* ବଳପୂର୍ବକ ନେବା । [ ଅବୈଧ ଦାବି ।

**Exaction**, *n.* ବଳପୂର୍ବକ ଗ୍ରହଣ,

**Exactly**, *ad.* ଯଥାର୍ଥରେ, ଠିକ୍‌ରୂପେ ।

**Exactness, Exactitude**, *n.* ଯାଥାର୍ଥ୍ୟ, ସତ୍ୟତା, ନିର୍ଭୁଲତା ।

**Exaggerate**, *v.* ଅତିରଞ୍ଜନ କରିବା, ବାହୁଲ୍ୟ କରିବା, ବଢ଼ାଇ କହିବା ।

**Exaggeration**, *n.* ଅତିରଞ୍ଜନ, ବାହୁଲ୍ୟ, ଅତ୍ୟୁକ୍ତି । [ କରାଇବା ।

**Exalt**, *v.* ପ୍ରଶଂସା କରିବା, ପଦବୃଦ୍ଧି

**Exaltation**, *n.* ପ୍ରଶଂସା, ପଦୋନ୍ନତି, ଆନନ୍ଦ ।

**Exalted**, *a.* ଉନ୍ନୀତ, ପ୍ରଶଂସିତ ।

**Examinable**, *a.* ପରୀକ୍ଷଣୀୟ, ବିଚାର୍ଯ୍ୟ, ପରୀକ୍ଷାର ଯୋଗ୍ୟ ।

**Examination**, *n.* ପରୀକ୍ଷା, ବିଚାର ।

**Examine**, *v.* ପରୀକ୍ଷା କରିବା, ବିଚାର କରିବା, ସୂକ୍ଷ୍ମରୂପେ ଦେଖିବା ।

**Examinee**, *n.* ପରୀକ୍ଷାର୍ଥୀ ।

**Examiner**, *n.* ପରୀକ୍ଷକ, ବିଚାରକ ।

**Exampler**, *n.* ଆଦର୍ଶ, ଅନୁକରଣୀୟ ବସ୍ତୁ । [ ପ୍ରଶଂସନୀୟ ।

**Examplary**, *a.* ଅନୁକରଣୀୟ,

**Example**, *n.* ଉଦାହରଣ, ନମୁନା, ଆଦର୍ଶ, ନଜିର । [ ଉତ୍ତେଜିତ କରିବା ।

**Exasperate**, *v.* ବିରକ୍ତ କରିବା,

**Exasperation**, *n.* ବିରକ୍ତି, କ୍ରୋଧ ।

Excavate, *v.* ଖନନ କରିବା, ଖୋଳିବା, ଖୋଳି ନିର୍ମାଣ କରିବା ।
Excavation, *n.* ଖୋଦନ, ଖନନ ।
Excavator, *n.* ଖୋଦନକାରୀ, ଖନକ । [ ସୀମା ଅତିକ୍ରମ କରିବା ।
Exceed, *v.* ଅଧିକ ହେବା, ବଳିପଡ଼ିବା,
Exceeding, *a.* ଅତିଶୟ, ଅତ୍ୟଧିକ, ବହୁଳ, ଅତିରିକ୍ତ ।
Exceedingly, *ad.* ଅତ୍ୟନ୍ତ, ବହୁଳଭାବରେ, ଅତ୍ୟଧିକ ମାତ୍ରାରେ ।
Excel, *v.* ଉତ୍କୃଷ୍ଟତର ହେବା, ବଳିଯିବା । [ ପ୍ରାଧାନ୍ୟ ।
Excellence, *n.* ଉତ୍କର୍ଷ, ଶ୍ରେଷ୍ଠତା,
Excellency, *n.* ମହାମାନ୍ୟ, ଉପାଧିବିଶେଷ । [ ଅତ୍ୟୁତ୍ତମ ।
Excellent, *a.* ଉତ୍କୃଷ୍ଟ, ଶ୍ରେଷ୍ଠ,
Excellently, *ad.* ଉତ୍କୃଷ୍ଟଭାବରେ, ଅତିଉତ୍ତମରୂପେ, ପ୍ରସିଦ୍ଧଭାବରେ ।
Except, *pre.* ଛଡ଼ା, ବିନା, ବ୍ୟତୀତ; *v.* ତ୍ୟାଗ କରିବା, ଆପତ୍ତି କରିବା, ବାଦ୍ ଦେବା, ବିରୋଧ କରିବା ।
Excepting, *pre.* ବ୍ୟତୀତ, ଛଡ଼ା ।
Exception, *n.* ବ୍ୟତିରେକ, ଆପତ୍ତି, ନିୟମବହିର୍ଭୂତ ବିଷୟ ବା ନିପାତନ ।
Exceptionable, *a.* ବର୍ଜନୀୟ, ଅଗ୍ରାହ୍ୟ, ଆପତ୍ତିଜନକ ।
Exceptional, *a.* ଅସାଧାରଣ, ଅସାମାନ୍ୟ, ଅଲୌକିକ ।
Exceptionally, *ad.* ଅସାଧାରଣ ଭାବରେ, ଅଲୌକିକଭାବରେ ।
Exceptor, *n.* ଆପତ୍ତିକାରୀ ।
Excerpt, *n.* ଗ୍ରନ୍ଥବିଶେଷରୁ ଉଦ୍ଧୃତ ।
Excess, *n.* ଅତିରେକ, ଆଧିକ୍ୟ, ବାହୁଲ୍ୟ, ଅତ୍ୟାଚାର, ଅସଂଯମ ।
Excessive, *a.* ଅତିରିକ୍ତ, ଅତ୍ୟଧିକ, ସାତିଶୟ । [ ପରିମାଣରେ, ତୀବ୍ରଭାବରେ ।
Excessively, *ad.* ଅତ୍ୟଧିକ
Exchange, *v.* ବିନିମୟ କରିବା; *n.* ବିନିମୟ, ପରିବର୍ତ୍ତନ, ବଦଳାବଦଳି, ଅର୍ଥବିନିମୟ ଅଫିସ । [ ଯୋଗ୍ୟ ।
Exchangeable, *a.* ବିନିମୟ-
Exchequer, *n.* ରାଜକୋଷ, ରାଜଭଣ୍ଡାର, ଖଜଣାଖାନା ।
Excisable, *a.* ମାହାଶୁଲ ଧାର୍ଯ୍ୟଯୋଗ୍ୟ ।
Excise, *n.* ଅବକାରୀ ଶୁଳ୍କ, ରାଜସ୍ୱ, ମାହାଶୁଲ ।
Excision, *n.* ବିନାଶ, ଧ୍ୱଂସ ।
Excitable, *a.* କୋପନ, ଉତ୍ତେଜନୀୟ, କ୍ରୋଧଶୀଳ ।
Excitant, *a.* ଉତ୍ତେଜକ ।
Excitation, *n.* ଉତ୍ତେଜନ, ଉଦ୍ଦୀପନ । [ କରିବା, ଉତ୍ସାହ ଦେବା ।
Excite, *v.* ଉତ୍ତେଜିତ କରିବା, କୁପିତ
Excited, *a.* ଉତ୍ତେଜିତ, କ୍ଷୁବ୍ଧ, ଉଦ୍‌ବିଗ୍ନ । [ ବିକ୍ଷୋଭ, ଚିତ୍ତର ଉଦ୍‌ବେଗ
Excitement, *n.* ଉତ୍ତେଜନା,

**Exciting**, *a.* ଉତ୍ତେଜକ, ଉଦ୍‌ବେଗ-ଜନକ । [ ଚତ୍କାର କରିବା ।
**Exclaim**, *v.* ଉଚ୍ଚ ସ୍ୱରରେ କହିବା,
**Exclamation**, *n.* ଚତ୍କାର, ଘୋଷଣା, ବିସ୍ମୟ ବା ହର୍ଷସୂଚକ ଧ୍ୱନି ।
**Exclamatory**, *a.* ଉଚ୍ଚସ୍ୱରରେ ପ୍ରକାଶକାରୀ, ଘୋଷଣାସୂଚକ, ବିସ୍ମୟ ବା ହର୍ଷସୂଚକ । [ କରିଦେବା ।
**Exclude**, *v.* ବାଦ୍ ଦେବା, ବାହାର
**Exclusion**, *n.* ବର୍ଜନ, ତ୍ୟାଗ, ଦୂରୀକରଣ । [ ସ୍ୱତନ୍ତ୍ର ।
**Exclusive**, *a.* ଭିନ୍ନ, ବ୍ୟତୀତ,
**Exclusively**, *ad.* ସ୍ୱତନ୍ତ୍ରଭାବରେ ।
**Exclusiveness**, *n.* ସ୍ୱତନ୍ତ୍ରତା, ଭିନ୍ନ ଭାବ । [ କରିବା ।
**Excogitate**, *v.* ଚିନ୍ତାଦ୍ୱାରା ଉଦ୍ଭାବନ
**Excogitation**, *n.* ଗମ୍ଭୀର ଚିନ୍ତା, ଉଦ୍ଭାବନ, ପରିକଳ୍ପନା ।
**Excommunicate**, *v.* ସମାଜରୁ ବିତାଡ଼ିତ କରିବା, ଏକଘରିଆ କରିବା ।
**Excommunication**, *n.* ସମାଜରୁ ବିତାଡ଼ନ, ଅପାଙ୍‌କ୍ତେୟତା ।
**Excrement**, *n.* ବିଷ୍ଠା, ମଳ, ପୁରୀଷ ।
**Excrete**, *v.* ମଳତ୍ୟାଗ କରିବା ।
**Excretion**, *n.* ମଳତ୍ୟାଗ, ବିଷ୍ଠା, ମଳ । [ ଦୁଃଖ ଦେବା ।
**Excruciate**, *v.* ଯନ୍ତ୍ରଣା ଦେବା,
**Excruciating**, *a.* ମର୍ମଭେଦୀ, ଯନ୍ତ୍ରଣାଦାୟକ । [ ବିହାର ।
**Excursion**, *n.* ଭ୍ରମଣ, ପର୍ଯ୍ୟଟନ,
**Excursionist**, *n.* ପର୍ଯ୍ୟଟକ, ଆମୋଦ ଭ୍ରମଣକାରୀ ।
**Excusable**, *a.* କ୍ଷମଣୀୟ, ମାର୍ଜନୀୟ ।
**Excuse**, *n.* ଛଳନା, କ୍ଷମାପ୍ରାର୍ଥନା; *v.* କ୍ଷମା କରିବା, ଛଳନା କରିବା ।
**Execrable**, *a.* ଘୃଣିତ, ଜଘନ୍ୟ, ଘୃଣ୍ୟ । [ ଅମଙ୍ଗଳ କାମନା କରିବା ।
**Execrate**, *v.* ଅଭିଶାପ ଦେବା,
**Execration**, *n.* ଅଭିଶାପ, ଅମଙ୍ଗଳ କାମନା । [ କରିବା, ପ୍ରାଣଦଣ୍ଡ ଦେବା ।
**Execute**, *v.* ସମ୍ପାଦନ କରିବା, ନିର୍ବାହ
**Execution**, *n.* ସମ୍ପାଦନ, ନିର୍ବାହ, ଦଣ୍ଡିତ ବ୍ୟକ୍ତିର ପ୍ରାଣନାଶ ।
**Executioner**, *n.* ଘାତକ, ଜଲ୍ଲାଦ ।
**Executive**, *a.* କାର୍ଯ୍ୟକାରୀ, କର୍ମ-ସମ୍ପାଦକ, କାର୍ଯ୍ୟନିର୍ବାହକାରୀ ।
**Executor**, *n.* ମୃତ ବ୍ୟକ୍ତିର ସମ୍ପତ୍ତିର ପରିଚାଳକ, (*fem.* Executrix)।
**Exemplar**, *n.* ଆଦର୍ଶ ।
**Exemplary**, *a.* ଆଦର୍ଶସ୍ଥାନୀୟ, ଅନୁକରଣୀୟ, ଦୃଷ୍ଟାନ୍ତଯୋଗ୍ୟ ।
**Exemplification**, *n.* ନିଦର୍ଶନ, ଉଦାହରଣପ୍ରଦାନ । [ ପ୍ରଦର୍ଶନ କରିବା ।
**Exemplify**, *v.* ଉଦାହରଣ ଦେବା,

**Exempt**, *v.* ଅବ୍ୟାହ୍ଵତ ଦେବା, ମୁକ୍ତ କରବା, ଛାଡ଼ ଦେବା; *a.* ଅବ୍ୟାହ୍ଵତପ୍ରାପ୍ତ । [ ଅବ୍ୟାହ୍ଵତ, ଛାଡ଼ ।

**Exemption**, *n.* ମୁକ୍ତି, ରହ୍ଵତ୍ୟ,

**Exercise**, *v.* ପ୍ରୟୋଗ କରବା, ଅଭ୍ୟାସ କରବା, ଅନୁଶୀଳନ କରବା, ବ୍ୟାୟାମ କରବା, ଉଦ୍ୟମ କରବା; *n.* ପ୍ରୟୋଗ, ଅଭ୍ୟାସ, ଅନୁଶୀଳନ, ବ୍ୟାୟାମ ।

**Exert**, *v.* ପ୍ରବୃତ୍ତ ହେବା, ଉଦ୍ୟମ କରବା, ନଯୁକ୍ତ ହେବା । [ କାୟକ୍ଳେଶ, ଯନ୍ତ୍ର ।

**Exertion**, *n.* ଉଦ୍ୟମ, ଶ୍ରମ,

**Exhalation**, *n.* ନଶ୍ଵାସତ୍ୟାଗ ।

**Exhale**, *v.* ନଶ୍ଵାସତ୍ୟାଗ କରବା ।

**Exhaust**, *v.* ନଃଶେଷ କରବା, ଶୂନ୍ୟ କରବା, ଅବସନ୍ନ କରବା, କ୍ଷୟ କରବା ।

**Exhausted**, *a.* ଅବସନ୍ନ, କ୍ଳାନ୍ତ, ନଃଶେଷ, ଶୂନ୍ୟ ।

**Exhaustible**, *a.* କ୍ଷୟଶୀଳ ।

**Exhaustion**, *n.* ଅବସାଦ, ଅପଚୟ, କ୍ଷୟ, କ୍ଳାନ୍ତ । [ ସୂର୍ଣ୍ଣାଙ୍ଗ ।

**Exhaustive**, *a.* ସମ୍ପୂର୍ଣ୍ଣ,

**Exhibit**, *v.* ପ୍ରଦର୍ଶନ କରବା, ପ୍ରକାଶ କରବା; *n.* ପ୍ରଦର୍ଶନୀୟ ବସ୍ତୁ ।

**Exhibition**, *n.* ପ୍ରଦର୍ଶନ, ପ୍ରଦର୍ଶନୀ ।

**Exhilarate**, *v.* ହୃଷ୍ଟ କରବା, ଆନନ୍ଦତ କରିବା । [ ଉଲ୍ଲାସ ।

**Exhilaration**, *n.* ହର୍ଷ, ଆନନ୍ଦ,

**Exhort**, *v.* ସାଗ୍ରହ ପ୍ରାର୍ଥନା କରିବା, ଉପଦେଶ ଦେବା, ପ୍ରୋତ୍ସାହ୍ଵତ କରିବା ।

**Exhortation**, *n.* ଅନୁରୋଧ, ଉପଦେଶ, ପ୍ରୋତ୍ସାହନ । [ କରିବା ।

**Exhume**, *v.* କବରରୁ ବାହାର

**Exigence, Exigency**, *n.* ଆବଶ୍ୟକତା, ପ୍ରୟୋଜନ, ଆପଦବପଦ, ଅପରିହାର୍ଯ୍ୟତା, ସଙ୍କଟ ।

**Exiguous**, *a.* କ୍ଷୁଦ୍ର, ସୂକ୍ଷ୍ମ ।

**Exile**, *v.* ନର୍ବାସନ କରବା, ବହଷ୍କୃତ କରିବା; *n.* ନର୍ବାସନ, ନର୍ବାସିତ ବ୍ୟକ୍ତି ।

**Exist**, *v.* ବଦ୍ୟମାନ ହେବା, ରହବା, ଜୀବନଧାରଣ କରିବା । [ ସତ୍ତ୍ଵ, ଜୀବନ ।

**Existence**, *n.* ଅସ୍ତିତ୍ଵ, ଅବସ୍ଥିତ,

**Existent**, *a.* ଅବସ୍ଥିତ, ବର୍ତ୍ତମାନ, ସତ୍ତ୍ଵବଶିଷ୍ଟ ।

**Existing**, *a.* ବର୍ତ୍ତମାନ, ବଦ୍ୟମାନ ।

**Exit**, *n.* ପ୍ରସ୍ଥାନ, ନର୍ଗମନ, ନଷ୍କ୍ରମଣ ।

**Exodus**, *n.* ପ୍ରସ୍ଥାନ, ନର୍ଗମନ ।

**Exogamy**, *a.* ଅସବର୍ଣ୍ଣ ବବାହ ।

**Ex-officio**, *a.* & *ad.* କର୍ତ୍ତୃପକ୍ଷ-ସମ୍ବନ୍ଧୀୟ, କର୍ତ୍ତୃତ୍ଵ ବା ପଦବୀ ହେତୁ ।

**Exonerate**, *v.* ଦୋଷମୁକ୍ତ କରବା ।

**Exoneration**, *n.* ଦୋଷରୁ ଅବ୍ୟାହ୍ଵତ, ଭାରରୁ ମୁକ୍ତ ।

**Exonerative**, *a.* ଦୋଷମୋଚକ ।

**Exorable**, *a.* ପ୍ରାର୍ଥନାଦ୍ଵାରା ତୋଷଣୀୟ, ପ୍ରସାଦନୀୟ ।

Exorbitance, *n.* ବାହୁଲ୍ୟ, ପ୍ରାଚୁର୍ଯ୍ୟ, ଆଧିକ୍ୟ ।

Exorbitant, *a.* ଅପରିମିତ, ଅତିରିକ୍ତ, ଅତ୍ୟଧିକ । [ ଛଡ଼େଇବା ।

Exorcise, Exorcize, *v.* ଭୂତ

Exorciser, Exorcist, *n.* ଯେ ଭୂତ ଛଡ଼ାଏ ।

Exorcism, *n.* ଭୂତଛଡ଼ାଇବା ବିଦ୍ୟା ।

Exotic, Exotical, *a.* ବିଦେଶୀୟ, ବହିରାଗତ । [ ବିସ୍ତୃତ ହେବା ।

Expand, *v.* ବିସ୍ତାର କରିବା,

Expanse, *n.* ବିସ୍ତୃତ, ପ୍ରସାର ।

Expansible, *a.* ବିସ୍ତାରଯୋଗ୍ୟ ।

Expansion, *n.* ବିସ୍ତୃତୀକରଣ, ବ୍ୟାପ୍ତି ।

Expansive, *a.* ବ୍ୟାପକ, ବିସ୍ତୃତ, ପ୍ରସାରିତ, ସୁଦୂରପ୍ରସାରୀ ।

Ex-parte, *a.* ଏକତରଫା ।

Expatiate, *v.* ବିସ୍ତୃତ ବର୍ଣ୍ଣନା କରିବା ।

Expatiation, *n.* ବିସ୍ତାରିତ ବର୍ଣ୍ଣନ ।

Expatriate, *v.* ନିର୍ବାସନ କରିବା ।

Expatriation, *n.* ନିର୍ବାସନ, ଦେଶାନ୍ତରପ୍ରେରଣ । [ କରିବା ।

Expect, *v.* ଆଶା କରିବା, ପ୍ରତୀକ୍ଷା

Expectancy, *n.* ଆଶା, ପ୍ରତୀକ୍ଷା, ଆଶାର ବସ୍ତୁ ।

Expectant, *a.* ଆଶାସ୍ୱୀ, ଆକାଙ୍କ୍ଷୀ ।

Expectation, *n.* ଆଶା, ପ୍ରତ୍ୟାଶା, ପ୍ରତୀକ୍ଷା ।

Expected, *a.* ଆକାଙ୍କ୍ଷିତ, ଅଭିଳଷିତ

Expectorate, *v.* ଖଙ୍କାର କାଢ଼ିବା, କଫ ବାହାର କରିବା ।

Expedience, Expediency, *n.* ଔଚିତ୍ୟ, ଉପଯୋଗ, ହିତ ।

Expedient, *a.* ଉଚିତ, ଉପଯୁକ୍ତ, ହିତକର; *n.* ଉପାୟ । [ ଭାବରେ ।

Expediently, *ad.* ଯଥୋଚିତ

Expedite, *v.* ତ୍ୱରାନ୍ୱିତ ହେବା, ଶୀଘ୍ର ପଠାଇବା । [ ଅଭିଯାନ ।

Expedition, *n.* କ୍ଷିପ୍ରତା, ତ୍ୱରା,

Expeditious, *a.* ତ୍ୱରିତ, ଅବିଳମ୍ବ, ଦ୍ରୁତ । [ ଶୀଘ୍ର ।

Expeditiously, *ad.* ଅବିଳମ୍ବେ,

Expel, *v.* ବହିଷ୍କାର କରିବା, ବିତାଡ଼ିତ କରିବା । [ କରିବା ।

Expend, *v.* ବ୍ୟୟ କରିବା, ବିନିଯୋଗ

Expenditure, Expense, *n.* ବ୍ୟୟ, ଖରଚ, ବିନିଯୋଗ । [ ମହର୍ଘ ।

Expensive, *a.* ବ୍ୟୟସାଧ୍ୟ, ବହୁମୂଲ୍ୟ,

Experience, *n.* ଅଭିଜ୍ଞତା, ଅନୁଭୂତି; *v.* ଅନୁଭବ କରିବା, ବୋଧ କରିବା ।

Experienced, *a.* ଅଭିଜ୍ଞ, ବହୁଦର୍ଶୀ, ଅନୁଭବୀ, ପକ୍ୱଜ୍ଞାନ ।

Experiment, *n.* ପରୀକ୍ଷା, ପ୍ରୟୋଗ; *v.* ପରୀକ୍ଷା କରିବା, ପ୍ରୟୋଗ କରିବା ।

Experimental, *a.* ପରୀକ୍ଷାମୂଳକ, ଅନୁଭୂତିଲବ୍ଧ ।

Experimentally, *ad.* ପରୀକ୍ଷା-ପୂର୍ବକ, ପରୀକ୍ଷାଦ୍ୱାରା ।
Experimenter, *n.* ପରୀକ୍ଷାକାରୀ ।
Expert, *a.* ପ୍ରବୀଣ, ଦକ୍ଷ, ପାରଗ, ନିପୁଣ; *n.* ବିଶାରଦ, ପ୍ରବୀଣ ବ୍ୟକ୍ତି ।
Expertly, *ad.* ଦକ୍ଷଭାବରେ, ନିପୁଣ-ଭାବରେ, କୌଶଳ ସହକାରେ ।
Expiable, *a.* କ୍ଷମଣୀୟ ।
Expiate, *v.* ପ୍ରାୟଶ୍ଚିତ୍ତ କରିବା ।
Expiation, *n.* ପ୍ରାୟଶ୍ଚିତ୍ତ, ଶୋଧନ, ପାପକ୍ଷାଳନ । [ ଶେଷ ।
Expiration, *n.* ନିଶ୍ୱାସତ୍ୟାଗ, ମୃତ୍ୟୁ,
Expire, *v.* ନିଶ୍ୱାସ ଛାଡ଼ିବା, ପ୍ରାଣତ୍ୟାଗ କରିବା, ଶେଷ ହେବା ।
Expiring, *a.* ମୁମୂର୍ଷୁ, ମୃତ୍ୟୁକାଳୀନ ।
Expiry, *n.* ଶେଷ, ମୃତ୍ୟୁ ।
Explain, *v.* ବୁଝାଇବା, ବ୍ୟାଖ୍ୟା କରିବା, ବିଶଦ କରିବା, କାରଣ ଦର୍ଶାଇବା ।
Explanation, *n.* ବ୍ୟାଖ୍ୟା, ସ୍ପଷ୍ଟୀ-କରଣ, କାରଣପ୍ରଦର୍ଶନ ।
Explanatory, *a.* ବ୍ୟାଖ୍ୟାମୂଳକ ।
Explicit, *a.* ସୁସ୍ପଷ୍ଟ, ବିଶଦ, ପ୍ରାଞ୍ଜଳ ।
Explicitly, *ad.* ପ୍ରାଞ୍ଜଳଭାବରେ, ବିଶଦରୂପେ, ପରିଷ୍କାରଭାବରେ ।
Explicitness, *n.* ପ୍ରାଞ୍ଜଳତା, ସ୍ପଷ୍ଟତା
Explode, *v.* ବିସ୍ଫୋରଣ କରିବା, ଉଚ୍ଚ ଶବ୍ଦସହ ବିସ୍ଫୋରିତ ହେବା ।
Exploit, *n.* ପରାକ୍ରମ, ଅଦ୍ଭୁତ କର୍ମ; *v.* ନିଜପାଇଁ ବିନିଯୋଗ କରିବା ।
Exploitation, *n.* ଅର୍ଥଶୋଷଣ, ସ୍ୱାର୍ଥରେ ବିନିଯୋଗ । [ ଷଣ, ଅନୁସନ୍ଧାନ ।
Exploration, *n.* ଆବିଷ୍କାର, ଅନ୍ୱେ-
Exploratory, *a.* ଅନୁସନ୍ଧାନମୂଳକ ।
Explore, *v.* ଆବିଷ୍କାର କରିବା, ଅନୁସନ୍ଧାନ କରିବା । [ ବିଦାରଣ ।
Explosion, *n.* ବିସ୍ଫୋରଣ, ସଶବ୍ଦ
Explosive, *a.* ବିସ୍ଫୋରକ, ବିଦାରଣ-ଶୀଳ; *n.* ବିସ୍ଫୋରକ ଦ୍ରବ୍ୟ ।
Exponent, *n.* ଭାଷ୍ୟକାର, ବ୍ୟାଖ୍ୟା-କାର, ସମର୍ଥକ, ପ୍ରକାଶକ ।
Export, *v.* ରପ୍ତାନି କରିବା, ବିଦେଶକୁ ପଣ୍ୟଦ୍ରବ୍ୟ ପଠାଇବା; *n.* ରପ୍ତାନି, ବିଦେଶକୁ ପଣ୍ୟଦ୍ରବ୍ୟପ୍ରେରଣ ।
Exportable, *a.* ରପ୍ତାନିଯୋଗ୍ୟ ।
Exportation, *n.* ରପ୍ତାନିକରଣ ।
Exporter, *n.* ରପ୍ତାନିକାରୀ ।
Expose, *v.* ପ୍ରଦର୍ଶନ କରିବା, ଅନାବୃତ କରିବା, ସ୍ୱରୂପ ଦେଖାଇବା । [ ଉଦ୍‌ଘାଟନ ।
Exposition, *n.* ବ୍ୟାଖ୍ୟା, ପ୍ରଦର୍ଶନ,
Expositor, *n.* ବ୍ୟାଖ୍ୟାକାର ।
Expository, *a.* ବ୍ୟାଖ୍ୟାମୂଳକ, ଅର୍ଥବୋଧକ । [ ପ୍ରତିବାଦ କରିବା ।
Expostulate, *v.* ନିବର୍ତ୍ତାଇବା,
Expostulation, *n.* ନିବାରଣ, ନିଷେଧ, ପ୍ରତିବାଦ ।

**Expostulatory,** *a.* ପ୍ରତିବାଦ-ମୂଳକ, ଦୋଷପ୍ରଦର୍ଶକ ।

**Exposure,** *n.* ସ୍ୱରୂପ ପ୍ରଦର୍ଶନ, ଶୀତାତପରେ ଅବସ୍ଥାନ । [ କରିବା ।

**Expound,** *v.* ବୁଝାଇଦେବା, ବ୍ୟାଖ୍ୟା

**Expounder,** *n.* ବ୍ୟାଖ୍ୟାକାର ।

**Express,** *v.* ପ୍ରକାଶ କରିବା, ପରିସ୍ଫୁଟ କରିବା; *a.* ଶୀଘ୍ରଗାମୀ ।

**Expression,** *n.* ଉକ୍ତି, ବଚନ, ମୁଖର ଭାବଭଙ୍ଗୀ । [ ଭାବବ୍ୟଞ୍ଜକ ।

**Expressive,** *a.* ସୁବ୍ୟକ୍ତ, ପରିସ୍ଫୁଟ,

**Expressly,** *ad.* ସ୍ପଷ୍ଟଭାବରେ ।

**Expulsion,** *n.* ବିତାଡ଼ନ, ଅପସାରଣ, ବହିଷ୍କରଣ । [ ଉଚ୍ଛେଦ ।

**Expunction,** *n.* ବିଲୋପ, ବିନାଶ,

**Expunge,** *v.* ବିଲୋପ କରିବା, ବିନାଶ କରିବା, ପୋଛିଦେବା ।

**Expurgate,** *v.* ଶୋଧନ କରିବା ।

**Exquisite,** *a.* ବିଶିଷ୍ଟ, ଉତ୍କୃଷ୍ଟ, ଅତ୍ୟୁତ୍ତମ । [ ଭାବରେ ।

**Exquisitely,** *ad.* ଅତ୍ୟନ୍ତ, ଉତ୍କୃଷ୍ଟ-

**Exscind,** *v.* ଛେଦନ କରିବା ।

**Extant,** *a.* ବିଦ୍ୟମାନ, ବର୍ତ୍ତମାନ, ପ୍ରଚଳିତ ।

**Extempore,** *a.* ଅଚିନ୍ତିତପୂର୍ବ, ଅଯତ୍ନପୂର୍ବ, ଅକଳ୍ପିତପୂର୍ବ ।

**Extemporaneous,** *a.* ତତ୍କ୍ଷଣ-କୃତ, ସମୟୋଚିତ ।

**Extend,** *v.* ବିସ୍ତାର କରିବା, ଦୀର୍ଘ କରିବା । [ ବୃଦ୍ଧିଯୋଗ୍ୟ ।

**Extensible,** *a.* ବିସ୍ତାରଯୋଗ୍ୟ,

**Extension,** *n.* ବୃଦ୍ଧି, ବିସ୍ତାର, ପ୍ରସାରଣ, ବ୍ୟାପ୍ତି, ବିସ୍ତୀର୍ଣ୍ଣତା, ବର୍ଦ୍ଧିତ ଅଂଶ ।

**Extensive,** *a.* ବିସ୍ତୀର୍ଣ୍ଣ, ବିପୁଳ, ବିଶାଳ, ପ୍ରଚୁର, ବ୍ୟାପକ ।

**Extensively,** *ad.* ପ୍ରଚୁର ପରି-ମାଣରେ, ବହୁଳଭାବରେ । [ ପ୍ରଶସ୍ତତା ।

**Extensiveness,** *n.* ବିସ୍ତୃତି,

**Extent,** *n.* ବିସ୍ତାର, ବିଶାଳତା, ପରିମାଣ, ସୀମା । [ କରିବା ।

**Extenuate,** *v.* ଲଘୁ କରିବା, ମାର୍ଜନା

**Extenuating,** *a.* ଲଘୁକାରକ, ହ୍ରାସକାରୀ । [ ମାର୍ଜନା ।

**Extenuation,** *n.* ହ୍ରାସକରଣ,

**Exterior,** *a.* ବାହ୍ୟ, ବହିଃସ୍ଥ; *n.* ବାହ୍ୟରୂପ, ବହିର୍ଭାଗ । [ ବିନାଶ କରିବା ।

**Exterminate,** *v.* ନିର୍ମୂଳ କରିବା,

**Extermination,** *n.* ଧ୍ୱଂସ, ବିନାଶ, ଉଚ୍ଛେଦ । [ ଧ୍ୱଂସକାରକ ।

**Exterminator,** *n.* ବିନାଶକର୍ତ୍ତା,

**External,** *a.* ବାହ୍ୟ, ବହିଃସ୍ଥ ।

**Externally,** *ad.* ବାହାରେ, ବାହାରୁ

**Extinct,** *a.* ଧ୍ୱଂସପ୍ରାପ୍ତ, ଲୁପ୍ତ, ନିର୍ବାପିତ, ଉଚ୍ଛେଦିତ । [ ନିର୍ବାପନ ।

**Extinction,** *n.* ବିଲୋପ, ଧ୍ୱଂସ,

**Extinguish,** *v.* ଲିଭାଇଦେବା, ବିନାଶ କରିବା, ଲୋପ କରିବା ।

**Extinguishable,** *a.* ନିର୍ବାପନ-ଯୋଗ୍ୟ । [ କରିବା ।

**Extirpate,** *v.* ଧ୍ୱଂସ କରିବା, ନିର୍ମୂଳ

**Extirpation,** *n.* ଧ୍ୱଂସସାଧନ, ନିର୍ମୂଳନ, ବିନାଶସାଧନ । [ କରିବା ।

**Extol,** *v.* ଉଚ୍ଚ ପ୍ରଶଂସା କରିବା, ସ୍ତୁତି

**Extort,** *v.* ବଳପୂର୍ବକ ଆଦାୟ କରିବା, ପରସ୍ୱ ଅପହରଣ କରିବା ।

**Extortion,** *n.* ପରସ୍ୱାପହରଣ, ଅନ୍ୟାୟ ବଳାତ୍କାର, ଉତ୍ପୀଡ଼ନ ।

**Extra,** *a.* ଅଧିକା, ଅତିରିକ୍ତ; *ad.* ଅଧିକାଭାବରେ; *n.* ଅତିରିକ୍ତ ବସ୍ତୁ ।

**Extract,** *v.* ନିଷ୍କାସନ କରିବା; *n.* ରସ, ନିର୍ଯ୍ୟାସ, ସାର, ନିଷ୍କର୍ଷ, ଉଦ୍ଧୃତ ।

**Extraction,** *n.* ନିଷ୍କାସନ, କୁଳ, ବଂଶ ।

**Extractor,** *n.* ନିଷ୍କାସନକାରୀ, ଆକର୍ଷକ

**Extradite,** *v.* ବୈଦେଶିକ ଅପରାଧୀକୁ ତାହାର ଦେଶକୁ ସମର୍ପଣ କରିବା ।

**Extradition,** *n.* ବୈଦେଶିକ ଅପରାଧୀକୁ ତାହାର ନିଜ ଦେଶ ହାତରେ ସମର୍ପଣ । [ ବହିର୍ଭୂତ ।

**Extrajudicial,** *a.* ଆଇନ-

**Extramundane,** *a.* ସୃଷ୍ଟିଛଡ଼ା, ଜଗଦତିରିକ୍ତ ।

**Extramural,** *a.* ପ୍ରାଚୀରର ବହିଃସ୍ଥ ।

**Extraneous,** *a.* ବହିଃସ୍ଥ, ବାହ୍ୟ, ଅସମ୍ବନ୍ଧ, ଅସାର ।

**Extraordinarily,** *ad.* ଅଦ୍ଭୁତ-ଭାବରେ, ଅସାଧାରଣଭାବରେ ।

**Extraordinary,** *a.* ଅସାଧାରଣ, ଅଲୌକିକ, ଅସାମାନ୍ୟ ।

**Extravagance, Extravagancy,** *n.* ଅପବ୍ୟୟ, ଅପରିମିତ ବ୍ୟୟ ।

**Extravagant,** *a.* ବ୍ୟୟଶୀଳ, ମୁକ୍ତହସ୍ତ, ଅମିତବ୍ୟୟୀ, ଅତ୍ୟଧିକ ।

**Extravagantly,** *ad.* ଅପରିମିତ ଭାବରେ, ଅତିରିକ୍ତ ବ୍ୟୟରେ, ମୁକ୍ତହସ୍ତରେ । [ ଅତ୍ୟନ୍ତ ।

**Extreme,** *a.* ଚରମ, ଅନ୍ତିମ, ଚୂଡ଼ାନ୍ତ,

**Extremely,** *ad.* ଅତ୍ୟନ୍ତ, ଅତିଶୟ ।

**Extremity,** *n.* ପରାକାଷ୍ଠା, ଶେଷ-ସୀମା, ଦୁର୍ଦ୍ଦଶା, ଦୁରବସ୍ଥା ।

**Extricable,** *a.* ଉଦ୍ଧାରଯୋଗ୍ୟ ।

**Extricate,** *v.* ଉଦ୍ଧାର କରିବା, ବନ୍ଧନରୁ ମୁକ୍ତ କରିବା ।

**Extrication,** *n.* ଉଦ୍ଧାର, ମୋଚନ ।

**Exuberance, Exuberancy,** *n.* ଅତିବୃଦ୍ଧି, ପ୍ରଚୁରତା, ବହୁଳତା ।

**Exuberant,** *a.* ପ୍ରଚୁର, ବହୁଳ, ଅତିରିକ୍ତ । [ ପରିମାଣରେ ।

**Exuberantly,** *ad.* ବହୁଳ

**Exult,** *v.* ଆନନ୍ଦିତ ହେବା, ଉଲ୍ଲସିତ ହେବା ।

**Exultant**, *a.* ଉଲ୍ଲସିତ, ହୃଷ୍ଟ, ଆନନ୍ଦିତ । [ ହର୍ଷ ।

**Exultation**, *n.* ଆନନ୍ଦ, ଉଲ୍ଲାସ,

**Exultingly**, *ad.* ପରମାନନ୍ଦରେ, ଉଲ୍ଲାସରେ ।

**Eye**, *n.* ଚକ୍ଷୁ, ଆଖି ।

**Eyeball**, *n.* ଅକ୍ଷିଗୋଲକ ।

**Eyebrow**, *n.* ଭ୍ରୂ, ଭ୍ରୂଲତା ।

**Eye-glass**, *n.* ପ୍ରଚକ୍ଷୁ, ଚଶମା ।

**Eyelash**, *n.* ଚକ୍ଷୁପତାର ଲୋମ ।

**Eyelid**, *n.* ଆଖିପତା ।

**Eye-sight**, *n.* ଦୃଷ୍ଟିଶକ୍ତି ।

**Eyesore**, *n.* ଚକ୍ଷୁଃଶୂଳ, ଘୃଣ୍ୟ ବସ୍ତୁ ବା ବ୍ୟକ୍ତି । [ ସାକ୍ଷୀ ।

**Eye-witness**, *n.* ପ୍ରତ୍ୟକ୍ଷଦର୍ଶୀ

# F

**Fabian**, *a.* ଦୀର୍ଘସୂତ୍ରୀ ।

**Fable**, *n.* କଥା, ଆଖ୍ୟାୟିକା, ଉପାଖ୍ୟାନ, ଉପକଥା । [ ବର୍ଣ୍ଣିତ ।

**Fabled**, *a.* ପୁରାଣପ୍ରସିଦ୍ଧ, ଗଳ୍ପରେ

**Fabric**, *n.* ଗୃହ, ପ୍ରାସାଦ, ବସ୍ତ୍ର, ପରିଧେୟ, କାରଗର ।

**Fabricate**, *v.* ନିର୍ମାଣ କରିବା, କଳ୍ପନା କରିବା, ମନରୁ ଗଢ଼ିବା, ଜାଲ୍ କରିବା ।

**Fabricated**, *a.* କୃତ, କୃତ୍ରିମ, କଳ୍ପିତ । [ ସୃଷ୍ଟି ।

**Fabrication**, *n.* ନିର୍ମାଣ, କଳ୍ପନା,

**Fabricator**, *n.* ସ୍ରଷ୍ଟା, ନିର୍ମାତା ।

**Fabulise**, *v.* ଗଳ୍ପ ରଚନା କରିବା ।

**Fabulous**, *a.* କାଳ୍ପନିକ, ଅସତ୍ୟ, ଅଳୀକ । [ ରୂପେ ।

**Fabulously**, *ad.* କଳ୍ପନାର ବିଷୟ-

**Facade**, *n.* ପ୍ରାସାଦର ସମ୍ମୁଖଭାଗ ।

**Face**, *n.* ମୁଖ, ମୁହଁ, ଉପରଭାଗ; *v.* ସମ୍ମୁଖୀନ ହେବା, ମୁହଁ କରିବା ।

**Facet**, *n.* କଣା, ମୁହଁ, କ୍ଷୁଦ୍ର ମୁଖ ।

**Facetious**, *a.* ପରିହାସଶୀଳ, ରହସ୍ୟପ୍ରିୟ, ହାସ୍ୟରସିକ । [ ସହକାରେ ।

**Facetiously**, *ad.* ରସିକତା

**Facial**, *a.* ମୁଖାକୃତିସମ୍ବନ୍ଧୀୟ ।

**Facile**, *a.* ସୁସାଧ୍ୟ, ସୁକର, ଆୟାସହୀନ ।

**Facilitate**, *v.* ସହଜ କରିବା, ସୁଗମ କରିବା । [ ସୁବିଧା, ଲାଘବ ।

**Facility**, *n.* ଅନାୟାସ, ସୁଯୋଗ,

**Facsimile**, *n.* ପ୍ରତିଲିପି, ପ୍ରତିରୂପ ।

**Fact**, *n.* ତଥ୍ୟ, ସତ୍ୟ, ଯଥାର୍ଥତା ।

**Faction**, *n.* ଦଳ, ପକ୍ଷ, ବିରୋଧ, କଳହ । [ ଦଳଭୁକ୍ତ ।

**Factious**, *a.* ବିରୋଧୀ, ଉପଦ୍ରବକାରୀ,

**Factitious**, କୃତ୍ରିମ, କାଳ୍ପନିକ, ଅସ୍ୱାଭାବିକ, ଗତାନୁଗତିକ ।

**Factor**, *n.* ଉତ୍ପାଦକ (ଯେଉଁ ରାଶିଦ୍ୱାରା ଅନ୍ୟ ଏକ ରାଶି ସମ୍ପୂର୍ଣ୍ଣରୂପେ ବିଭାଜ୍ୟ), ପ୍ରତିନିଧି, ଉପାଦାନ ।

**Factory**, *n.* ଶିଳ୍ପଶାଳା, କାରଖାନା, ବାଣିଜ୍ୟକୋଠି । [ କରୁଥିବା ଭୃତ୍ୟ ।

**Factotum**, *n.* ସବୁପ୍ରକାର କାର୍ଯ୍ୟ

**Faculty**, *n.* ଶକ୍ତି, କ୍ଷମତା, ସାମର୍ଥ୍ୟ ।

**Fad**, *n.* ଖିଆଲ, ସାମୟିକ ଅଭିଳାଷ ।

**Fade**, *v.* ମ୍ଳାନ ହେବା, ଅସ୍ପଷ୍ଟ ହେବା, ଅବସନ୍ନ ହେବା, ବିବର୍ଣ୍ଣ ହେବା, ତେଜ ହରାଇବା, ମଉଳି ପଡ଼ିବା ।

**Fadeless**, *a.* ଅମ୍ଳାନ ।

**Fading**, *a.* ମ୍ଳାନ, ବିବର୍ଣ୍ଣ, ଅସ୍ପଷ୍ଟ, ତେଜୋହୀନ; *n.* ମଳିନତା, ବିବର୍ଣ୍ଣତା ।

**Fag**, *v.* କଠିନ ଶ୍ରମ କରିବା, କ୍ଳାନ୍ତ ହେବା ।

**Fag end**, *n.* ଅନ୍ତ, ଶେଷ ।

**Fagot, Faggot**, *n.* କାଠବିଡ଼ା, ଜାଳେଣି କାଠ; *v.* ବିଡ଼ା ବାନ୍ଧିବା ।

**Fahrenheit**, *n.* ଫରେନହିଟଙ୍କ ଦ୍ୱାରା ଉଦ୍ଭାବିତ ତାପମାନ ଯନ୍ତ୍ର (ଯହିଁରେ ୩୨° ହେଉଛି ହିମାଙ୍କ ଓ ୨୧୨° ହେଉଛି ସ୍ଫୁଟନାଙ୍କ) ।

**Fail**, *v.* ବିଫଳ ହେବା, ଅକୃତକାର୍ଯ୍ୟ ହେବା, ନିରାଶ ହେବା । [ ଅଭାବ ।

**Failing**, *n.* ଦୋଷ, ଦୁର୍ବଳତା,

**Failure**, *n.* ବିଫଳତା, ବ୍ୟର୍ଥତା, ହାନି, ଭୁଲ, ତ୍ରୁଟି, ଅକୃତକାର୍ଯ୍ୟତା ।

**Fain**, *a.* ଆନନ୍ଦିତ, ସନ୍ତୁଷ୍ଟ; *ad.* ଅତି ଆନନ୍ଦରେ ।

**Faint**, *a.* ଅବସନ୍ନ, ଦୁର୍ବଳ, କ୍ଷୀଣ, ଅସ୍ପଷ୍ଟ; *v.* ମୂର୍ଚ୍ଛିତ ହେବା, ଚେତନା ହରାଇବା । [ ସଂଜ୍ଞାଲୋପ ।

**Fainting**, *n.* ମୂର୍ଚ୍ଛା, ମୋହ,

**Faintly**, *ad.* ମୃଦୁଭାବରେ, କ୍ଷୀଣଭାବରେ । [ ବୈବର୍ଣ୍ଣ୍ୟ, ଦୁର୍ବଳତା ।

**Faintness**, *n.* ଅସ୍ପଷ୍ଟତା, କ୍ଷୀଣତା,

**Fair**, *a.* ସୁନ୍ଦର, ମନୋହର, ନ୍ୟାଯ୍ୟ, ଯୁକ୍ତିଯୁକ୍ତ; *n.* ହାଟ, ମେଳା, ସୁନ୍ଦରୀ ନାରୀ ।

**Fairly**, *ad.* ନିରପେକ୍ଷଭାବରେ, ଯଥାର୍ଥରେ, ନ୍ୟାୟତଃ । [ ପକ୍ଷପାତଶୂନ୍ୟ ।

**Fair-minded**, *a.* ନିରପେକ୍ଷ,

**Fairness**, *n.* ସୌନ୍ଦର୍ଯ୍ୟ, ଶୋଭା, ନ୍ୟାୟ, ସାଧୁତା, ସରଳତା ।

**Fair-play**, *n.* ନିରପେକ୍ଷ ବ୍ୟବହାର, ଅପକ୍ଷପାତିତା, ନ୍ୟାୟପରାୟଣତା ।

**Fair sex**, *n.* ନାରୀ ଜାତି ।

**Fairy**, *n.* ପରୀ, ବିଦ୍ୟାଧରୀ, ଅପ୍ସରା ।

**Faith**, *n.* ବିଶ୍ୱାସ, ଶ୍ରଦ୍ଧା, ଅନୁରକ୍ତି, ଧର୍ମ ।

**Faithful**, *a.* ବିଶ୍ୱାସୀ, ଅନୁରକ୍ତ, ସତ୍ୟପ୍ରତିଜ୍ଞ, ନିଷ୍ଠାପରାୟଣ ।

**Faithfully**, *ad.* ବିଶ୍ୱସ୍ତଭାବରେ ।

**Faithfulness**, *n.* ଦୃଢ଼ ଭକ୍ତି, ବିଶ୍ୱସ୍ତତା । [ ଘାତକ, ଅଧାର୍ମିକ ।

**Faithless**, *a.* ଅବିଶ୍ୱାସୀ, ବିଶ୍ୱାସ-

Faithlessly, *ad.* ବିଶ୍ୱାସଘାତକ-ଭାବରେ । [ ଘାତକତା, ଅବିଶ୍ୱାସ ।
Faithlessness, *n.* ବିଶ୍ୱାସ-
Fake, *v.* ପ୍ରତାରଣା କରିବା ।
Falcon, *n.* ଶ୍ୟେନ, ବାଜପକ୍ଷୀ, ସଞ୍ଚାଣ ।
Falconer, *n.* ଶ୍ୟେନପକ୍ଷୀର ପାଳକ ।
Fall, *n.* ପତନ, ବିନାଶ, ଧ୍ୱଂସ, ପଦଚ୍ୟୁତି, ସ୍ଖଳନ; *v.* ପଡ଼ିବା, ତଳକୁ ଯିବା ।
Fallacious, *a.* ଭ୍ରମଜନକ, ମିଥ୍ୟା, ଭ୍ରାନ୍ତିଯୁକ୍ତିବିଶିଷ୍ଟ । [ ଭ୍ରମ ।
Fallacy, *n.* ପ୍ରବଞ୍ଚନା, ମିଥ୍ୟା ଯୁକ୍ତି,
Fallen, *a.* ପରାଜିତ, ପତିତ ।
Fallibility, *n.* ଭ୍ରମଶୀଳତା, ସ୍ଖଳନଶୀଳତା ।
Fallible, *a.* ଭ୍ରମଶୀଳ, ଭ୍ରାନ୍ତ ।
Fallow, *a.* ଅକର୍ଷିତ, ପତିତ, ପଡ଼ିଆ ।
Fallowness, *n.* ପତିତ ଅବସ୍ଥା ।
False, *a.* ଅସତ୍ୟ, ଅଲୀକ, ମିଥ୍ୟା, କୃତ୍ରିମ, କପଟ, ବିଶ୍ୱାସଘାତକ, ଅମୂଳକ ।
Falsehood, *n.* ମିଥ୍ୟା କଥା, ଅସତ୍ୟ ବାକ୍ୟ, କପଟତା, ଅସାଧୁତା ।
Falsely, *ad.* ମିଥ୍ୟାରେ ।
Falseness, *n.* କାପଟ୍ୟ, ଅମୂଳକତା ।
Falsification, *n.* କୂଟ ରଚନା, ମିଥ୍ୟା ଲେଖନ । [ କରିବା ।
Falsify, *v.* ମିଥ୍ୟା ବୋଲି ପ୍ରମାଣିତ
Falsity, *n.* ଅସତ୍ୟତା, ମିଥ୍ୟାଭାଷଣ ।

Falter, *v.* ସ୍ଖଳିତ ହେବା, ଦ୍ୱିଧା କରିବା, ରହି ରହି କହିବା, ଟଳି ଟଳି ଚାଲିବା ।
Faltering, *a.* ସନ୍ଦିଗ୍ଧ, ଦ୍ୱିଧାଯୁକ୍ତ ।
Falteringly, *ad.* ରହି ରହି, ଇତସ୍ତତଃ ହୋଇ । [ ପ୍ରତିଷ୍ଠା, ପ୍ରସିଦ୍ଧି ।
Fame, *n.* ଯଶଃ, କୀର୍ତ୍ତି, ଖ୍ୟାତି,
Famed, *a.* ଖ୍ୟାତ, ପ୍ରସିଦ୍ଧ, ପ୍ରତିଷ୍ଠିତ, ଯଶସ୍ୱୀ । [ ଘନିଷ୍ଠ ।
Familiar, *a.* ସୁପରିଚିତ, ସୁବିଦିତ,
Familiarise, Familiarize, *v.* ପରିଚୟ କରାଇବା, ଅଭ୍ୟସ୍ତ କରାଇବା ।
Familiarity, *n.* ଅତି ପରିଚୟ, ଘନିଷ୍ଠତା । [ ପରି, ଘନିଷ୍ଠଭାବରେ ।
Familiarly, *ad.* ପରିଚିତ ବ୍ୟକ୍ତି-
Family, *n.* ବଂଶ, ପରିବାର, କୁଟୁମ୍ବ ।
Famine, *n.* ଦୁର୍ଭିକ୍ଷ, ଅନାଟନ, ଖାଦ୍ୟାଭାବ, ଏକାନ୍ତ ଅଭାବ ।
Famish, *v.* କ୍ଷୁଧାପୀଡ଼ିତ ହେବା, ଉପବାସ ହେତୁ ଶୀର୍ଣ୍ଣ ହେବା, ଖାଦ୍ୟ ଅଭାବରେ ମରିବା ।
Famished, *a.* ବୁଭୁକ୍ଷୁ, କ୍ଷୁଧାର୍ତ୍ତ ।
Famous, *a.* ବିଖ୍ୟାତ, ପ୍ରସିଦ୍ଧ, ପ୍ରତିଷ୍ଠିତ, କୀର୍ତ୍ତିଶାଳୀ, ଯଶସ୍ୱୀ ।
Famously, *ad.* ପ୍ରସିଦ୍ଧିସହକାରେ ।
Fan, *n.* ତାଳବୃନ୍ତ, ବ୍ୟଜନ, ପଙ୍ଖା, ଭକ୍ତ; *v.* ପଙ୍ଖାରେ ବିଞ୍ଚିବା, ଉଦ୍ଦୀପିତ କରିବା ।

**Fanatic**, *n.* ଧର୍ମୋନ୍ମତ୍ତ ବ୍ୟକ୍ତି, ଧର୍ମାନ୍ଧ ବ୍ୟକ୍ତି; *a.* କୌଣସି ବିଷୟରେ ଉନ୍ମତ୍ତ, ଧର୍ମାନ୍ଧ, ଅତିମାତ୍ରାରେ ଉତ୍ସାହୀ ।

**Fanatical**, *a.* ଧର୍ମାନ୍ଧ, ଉନ୍ମତ୍ତ ।

**Fanaticism**, *n.* କୌଣସି ବିଷୟରେ ଉନ୍ମତ୍ତତା, ମତାନ୍ଧତା ।

**Fancied**, *a.* କଳ୍ପିତ, ଅଭିଳଷିତ ।

**Fanciful**, *a.* ଚଳଚିତ୍ତ, କାଳ୍ପନିକ, ମାନସିକ, କପୋଳକଳ୍ପିତ ।

**Fancy**, *n.* କଳ୍ପନା, ରୁଚି, କାମନା; *v.* ଚିନ୍ତା କରିବା, ମନ କରିବା, ବୋଧ କରିବା, କଳ୍ପନା କରିବା ।

**Fane**, *n.* ଦେବମନ୍ଦିର ।

**Fanfare**, *n.* ବାଦ୍ୟର ଆଡ଼ମ୍ବର ।

**Fang**, *n.* ପଶୁର ଦନ୍ତ, ବିଷଦନ୍ତ, ଦଂଷ୍ଟ୍ରା ।

[ ନବପ୍ରଚଳିତ ।

**Fangled**, *a.* ନୂଆ ଆଡ଼ମ୍ବରପୂର୍ଣ୍ଣ,

**Fantastic**, **Fantastical**, *a.* ଅପରୂପ, ଅସଙ୍ଗତ, ଅଳୀକ, କାଳ୍ପନିକ ।

**Fantasy**, *n.* ଅସାର ଚିନ୍ତା, ଅଦ୍ଭୁତ କଳ୍ପନା ।

[ ଦୂରକୁ, ଦୂରରେ ।

**Far**, *a.* ଦୂରବର୍ତ୍ତୀ, ଦୂରସ୍ଥ; *ad.*

**Farce**, *n.* ପ୍ରହସନ, ଛଳନା ।

**Farcical**, *a.* ହାସ୍ୟୋଦ୍ଦୀପକ, ଉପହାସ୍ୟ, ହାସ୍ୟକର ।

**Fare**, *n.* ଆହାର, ଭୋଜନ, ଭଡ଼ା; *v.* ଭୋଜନ କରିବା, ଭଲ ବା ମନ୍ଦ ହେବା ।

**Farewell**, *int.* ବିଦାୟ, ସ୍ୱସ୍ତି; *n.* ବିଦାୟକାଳୀନ ନମସ୍କାର, ବିଦାୟଗ୍ରହଣ ।

**Farfetched**, *a.* କ୍ଲିଷ୍ଟ, ଟଣାଓଟରା ।

**Farm**, *n.* କୃଷିକ୍ଷେତ, ଚାଷଜମି; *v.* କୃଷିପାଇଁ ଜମିଦେବା, ଚାଷ କରିବା ।

**Farmer**, *n.* କ୍ଷେତ୍ରପତି, କୃଷକ, ଚାଷୀ ।

**Farming**, *n.* କୃଷି, ଚାଷକାର୍ଯ୍ୟ ।

**Far-sighted**, *a.* ଦୂରଦର୍ଶୀ ।

**Farsightedness**, *n.* ଦୂରଦର୍ଶିତା ।

**Farther**, *a.* ଦୂରତର, ଅପର; *ad.* ଅଧିକ ଦୂରରେ । [ ଅତି ଦୂରରେ ।

**Farthest**, *a.* ଦୂରତମ, ସୁଦୂର; *ad.*

**Farthing**, *n.* ଇଂଲଣ୍ଡର ମୁଦ୍ରା-ବିଶେଷ, ଏକ ପେନିର ¼ ଅଂଶ (ଫାର୍ଦିଙ୍ଗ = ୨ ପଇସାରୁ କିଛିକମ୍ ଊଣା), ନଗଣ୍ୟ ତାମ୍ରମୁଦ୍ରା ।

**Fascinate**, *v.* ମୁଗ୍ଧ କରିବା, ମନ୍ତ୍ର-ଦ୍ୱାରା ବଶୀଭୂତ କରିବା, ଆକର୍ଷଣ କରିବା ।

**Fascinating**, *a.* ମନୋହର, ଚିତ୍ତାକର୍ଷକ, ମୋହକର ।

**Fascination**, *n.* ସମ୍ମୋହନ, ଚିତ୍ତାକର୍ଷଣ, ଇନ୍ଦ୍ରଜାଲ ।

**Fashion**, *n.* ଗଢ଼, ବିଧି, ଲୋକାଚାର, ଉଚ୍ଚ ସମାଜର ଚଳଣି; *v.* ନିର୍ମାଣ କରିବା, ଗଢ଼ିବା । [ ଲୋକାଚାରସମ୍ମତ, ବିଳାସପ୍ରିୟ ।

**Fashionable**, *a.* ଲୌକିକ,

**Fashionably**, *ad.* ଉଚ୍ଚ ସମାଜର ଚଳଣି ଅନୁସାରେ ।

**Fast**, *a.* ଦୃଢ଼, ଗାଢ଼, ଅଟଳ, ସ୍ଥାୟୀ; *ad.* ଦୃଢ଼ଭାବରେ, ଗାଢ଼ଭାବରେ, ଶୀଘ୍ର; *v.* ଉପବାସ କରିବା । [କରିବା, ବାନ୍ଧିବା ।

**Fasten**, *v.* ସଂଯୁକ୍ତ କରିବା, ଦୃଢ଼

**Fastidious**, *a.* ଅସନ୍ତୁଷ୍ଟ, ଦୋଷଦର୍ଶୀ, ଖିଟିଖିଟିଆ । [ ଭାବରେ, ଗୁଁ ଗୁଁ ହୋଇ ।

**Fastidiously**, *ad.* ଅସନ୍ତୁଷ୍ଟ-

**Fasting**, *n.* ଅନଶନ, ଉପବାସ, ଲଙ୍ଘନ ।

**Fastness**, *n.* ଦୃଢ଼ତା, ସ୍ଥିରତା, ଦୁର୍ଗ ।

**Fat**, *n.* ଚର୍ବି, ମେଦ; *a.* ପୁଷ୍ଟ, ମାଂସଳ, ସ୍ଥୂଳ; *v.* ସ୍ଥୂଳ କରିବା ବା ହେବା ।

**Fatal**, *a.* ସାଙ୍ଘାତିକ, ମାରାତ୍ମକ ।

**Fatalism**, *n.* ଅଦୃଷ୍ଟବାଦ, ଦୈବ-ପରତା । [ ଅଦୃଷ୍ଟବାଦୀ ।

**Fatalist**, *n.* ଦୈବପରାୟଣ ବ୍ୟକ୍ତି,

**Fatalistic**, *a.* ଅଦୃଷ୍ଟବାଦସମ୍ବନ୍ଧୀୟ ।

**Fatality**, *n.* ଦୈବଘଟଣା, ମାରାତ୍ମକତା ।

**Fatally**, *ad.* ମାରାତ୍ମକଭାବରେ ।

**Fate**, *n.* ଦୈବ, ଭାଗ୍ୟ, ଅଦୃଷ୍ଟ, ବିଧାତା ।

**Fated**, *a.* ଦୈବାଧୀନ, ବିଧିନିର୍ଦ୍ଦିଷ୍ଟ ।

**Fateful**, *a.* ମାରାତ୍ମକ, ସାଙ୍ଘାତିକ ।

**Father**, *n.* ପିତା, ଜନକ, ଜନ୍ମଦାତା ।

**Fatherhood**, *n.* ପିତୃତ୍ୱ ।

**Father-in-law**, *n.* ଶ୍ୱଶୁର ।

**Fatherland**, *n.* ଜନ୍ମଭୂମି ।

**Fatherless**, *a.* ପିତୃହୀନ, ଅପିତୃକ ।

**Fatherliness**, *n.* ପିତୃସ୍ନେହ ।

**Fatherly**, *a.* ପିତୃତୁଲ୍ୟ, ପୈତୃକ ।

**Fathom**, *n.* ବ୍ୟାମ, ଗଭୀରତାର ମାପ-ବିଶେଷ ( ୧ ଫାଦମ = ୬ ଫୁଟ ); *v.* ଗଭୀରତା ମାପିବା । [ ଜଳମାପ୍ୟ ।

**Fathomable**, *a.* ପରିମେୟ,

**Fathomless**, *a.* ଅତଳସ୍ପର୍ଶ, ଅଗାଧ ।

**Fatigue**, *n.* ଶ୍ରମ, କ୍ଲାନ୍ତି, ଅବସାଦ, ଶ୍ରାନ୍ତି, କ୍ଲେଶ; *v.* ଖେଦ ଦେବା, ଅବସନ୍ନ କରିବା, ଶକ୍ତି କ୍ଷୟକରିବା ।

**Fatigued**, *a.* କ୍ଲାନ୍ତ, ଶ୍ରାନ୍ତ, ଅବସନ୍ନ ।

**Fatness**, *n.* ସ୍ଥୂଳତା, ମାଂସଳତା, ମେଦବୃଦ୍ଧି । [ କରିବା ।

**Fatten**, *v.* ସ୍ଥୂଳ କରିବା, ପରିପୁଷ୍ଟ

**Fatty**, *a.* ମାଂସଳ, ମେଦବହୁଳ, ଚର୍ବିଯୁକ୍ତ, ଚର୍ବିଗୁଣବିଶିଷ୍ଟ ।

**Fatuity**, *n.* ମନର ଦୁର୍ବଳତା ।

**Fatuous**, *a.* ଦୁର୍ବଳମନା, ମୂର୍ଖ ।

**Fault**, *n.* ଦୋଷ, ପାପ, ଅପରାଧ, ଭ୍ରମ ।

**Fault-finder**, *n.* ଦୋଷଦ୍ରଷ୍ଟା, ଛିଦ୍ରାନ୍ୱେଷୀ ବ୍ୟକ୍ତି । [ ଛିଦ୍ରାନ୍ୱେଷଣ ।

**Fault-finding**, *n.* ଦୋଷଦର୍ଶନ,

**Faultless**, *a.* ନିର୍ଦ୍ଦୋଷ, ନିରପରାଧ, ବିଶୁଦ୍ଧ, ଭ୍ରମଶୂନ୍ୟ । [ ନିନ୍ଦ୍ୟ, ଦୋଷଯୁକ୍ତ ।

**Faulty**, *a.* ତ୍ରୁଟିଯୁକ୍ତ, ଅପରାଧୀ,

**Fauna**, *n.* କୌଣସି ଅଞ୍ଚଳର ବା କୌଣସି ଯୁଗର ପ୍ରାଣୀସମୂହ ।

**Favour**, *n.* ଅନୁଗ୍ରହ, ଉପକାର; *v.* ସାହାଯ୍ୟ କରିବା, ଅନୁଗ୍ରହ କରିବା ।

**Favourable,** *a.* ଅନୁକୂଳ, ପ୍ରସନ୍ନ, ଉପକାରୀ, ହିତକାରୀ ।

[ ଭାବରେ ।

**Favourably,** *ad.* ଅନୁକୂଳ-

**Favoured,** *a.* ଅନୁଗୃହୀତ ।

**Favourite,** *a.* ପ୍ରିୟ, ଅଭୀଷ୍ଟ, ଆଦରଣୀୟ; *n.* ପ୍ରୀତିପାତ୍ର, ଅନୁଗୃହୀତ ବ୍ୟକ୍ତି ।

[ ଅନୁଗ୍ରହପ୍ରଦର୍ଶନ ।

**Favouritism,** *n.* ପକ୍ଷପାତିତା,

**Fawn,** *n.* ମୃଗଶାବକ, ହରିଣଶିଶୁ; *v.* ଚାଟୁବାକ୍ୟରେ ସନ୍ତୁଷ୍ଟ କରିବା, ତୋଷାମଦ କରିବା ।

**Fawningly,** *ad.* ତୋଷାମଦପୂର୍ବକ ।

**Fay,** *n.* କିନ୍ନରୀ, ପରୀ, ଅପସ୍ୱରା ।

**Fealty,** *n.* ଅନୁରାଗ, ପ୍ରଭୁଭକ୍ତି, ବିଶ୍ୱସ୍ତତା, ପ୍ରଭୁଭକ୍ତିର ଶପଥ ।

**Fear,** *n.* ଭୟ, ଶଙ୍କା, ତ୍ରାସ; *v.* ଭୟ କରିବା, ତ୍ରସ୍ତ ହେବା, ଆଶଙ୍କା କରିବା ।

**Fearful,** *a.* ଭୀଷଣ, ଭୟଙ୍କର, ଭୀତ, ତ୍ରସ୍ତ, ଶଙ୍କିତ ।

[ ଶଙ୍କିତଭାବରେ ।

**Fearfully,** *ad.* ଭୀଷଣଭାବରେ,

**Fearfulness,** *n.* ଭୟଙ୍କରତା, ଭୟ, ଆତଙ୍କ ।

[ ସାହସିକ ।

**Fearless,** *a.* ନିର୍ଭୀକ, ନିଃଶଙ୍କ,

**Fearlessly,** *ad.* ନିର୍ଭୀକଭାବରେ, ସାହସ ସହକାରେ ।

[ ସାହସିକତା ।

**Fearlessness,** *n.* ନିର୍ଭୀକତା,

**Fearsome,** *a.* ଭୀଷଣ, ଭୟଜନକ ।

**Feasibility,** *n.* ସୌକର୍ଯ୍ୟ, ସୁଗମତା, ସହଜସାଧ୍ୟତା ।

[ ସହଜସାଧ୍ୟ ।

**Feasible,** *a.* ସୁଗମ, ସୁକର,

**Feast,** *n.* ଭୋଜ, ପର୍ବ, ଉତ୍ସବ, ଆମୋଦ; *v.* ଭୋଜନରେ ତୃପ୍ତ କରିବା, ଆମୋଦ କରିବା, ଆନନ୍ଦିତ ହେବା ।

**Feat,** *n.* ଅଦ୍ଭୁତ କର୍ମ, ବୀରତ୍ୱପୂର୍ଣ୍ଣ କାର୍ଯ୍ୟ ।

**Feather,** *n.* ପକ୍ଷ, ପର ।

**Feathered,** *a.* ପକ୍ଷଯୁକ୍ତ, ପରବିଶିଷ୍ଟ ।

**Feathery,** *a.* ପକ୍ଷତୁଲ୍ୟ, ପରଦ୍ୱାରା ପରିପୂର୍ଣ୍ଣ, ପରନିର୍ମିତ ।

[ ଆକାର ।

**Feature,** *n.* ଆକୃତି, ରୂପ, ଚେହେରା,

**Febrifuge,** *n.* ଜ୍ୱରନାଶକ ଔଷଧ ।

**Febrile,** *a.* ଜ୍ୱରସମ୍ବନ୍ଧୀୟ ।

**February,** *n.* ଖ୍ରୀଷ୍ଟୀୟ ବର୍ଷର ଦ୍ୱିତୀୟ ମାସ ।

[ ବହୁଫଳପ୍ରଦ, ଉର୍ବର ।

**Fecund,** *a.* ବହୁସନ୍ତାନବିଶିଷ୍ଟ,

**Fecundate,** *v.* ଗର୍ଭବତୀ କରିବା, ସଫଳ କରିବା, ଉର୍ବର କରିବା ।

**Fecundity,** *n.* ସଫଳତା, ଫଳବତ୍ତା, ଉର୍ବରତା ।

[ ରାଷ୍ଟ୍ରଗୋଷ୍ଠୀଗତ ।

**Federal,** *a.* ସନ୍ଧିଦ୍ୱାରା ଆବଦ୍ଧ,

**Federalism,** *n.* ଗୋଷ୍ଠୀଗତ ଶାସନ-ପ୍ରଣାଳୀ, ରାଷ୍ଟ୍ରଗୋଷ୍ଠୀବାଦ ।

**Federate,** *v.* ସନ୍ଧିଦ୍ୱାରା ଗୋଷ୍ଠୀର ଅନ୍ତର୍ଗତ ହେବା ବା କରିବା ।

**Federation,** *n.* ସନ୍ଧିଦ୍ୱାରା ମିଳନ, ମିଳିତରାଷ୍ଟ୍ରଗୋଷ୍ଠୀ ।

Federative, *a.* ସନ୍ଧିଦ୍ୱାରା ମିଳିତ ବା ଆବଦ୍ଧ, ସଘବଦ୍ଧ ।

Fee, *n.* ଶୁଲ୍କ, ବେତନ, ପାରିଶ୍ରମିକ ।

Feeble, *a.* ଦୁର୍ବଳ, ଅଶକ୍ତ, ଅବସନ୍ନ, କ୍ଷୀଣ । [ ଭାବରେ ।

Feebly, *ad.* କ୍ଷୀଣଭାବରେ, ଦୁର୍ବଳ-

Feed, *v.* ଖୁଆଇବା, ଭୋଜନ କରାଇବା; *n.* ଅଶନ, ଭୋଜନ ।

Feeder, *n.* ପୋଷଣକର୍ତ୍ତା, ଖାଦ୍ୟଦାତା ।

Feeding, *n.* ଅନ୍ନଦାନ, ଭୋଜନ ।

Feel, *v.* ଅନୁଭବ କରିବା, ଜାଣିବା, ଅନୁକମ୍ପା କରିବା, ସ୍ପର୍ଶ କରିବା ।

Feeler, *n.* ସ୍ପର୍ଶକାରୀ, ଅନ୍ୟର ଉଦ୍ଦେଶ୍ୟ ଜାଣିବା ନିମନ୍ତେ ନିଜର ମତ ପ୍ରକାଶ ।

Feeling, *n.* ଅନୁଭବ, ବୋଧ, ଉପଲବ୍ଧି, ସମ୍ବେଦନା । [ ଆଦରସହିତ ।

Feelingly, *ad.* ସ୍ନେହସହକାରେ,

Feign, *v.* କଳ୍ପନା କରିବା, ଛଳନା କରିବା । [ ଛଳନାପୂର୍ଣ୍ଣ ।

Feigned, *a.* କଳ୍ପିତ, କୃତ୍ରିମ,

Feint, *n.* ଛଳ, କପଟତା ।

Felicitate, *v.* ଅଭିନନ୍ଦନ କରିବା, ଶୁଭେଚ୍ଛା ଜଣାଇବା ।

Felicitation, *n.* ଅଭିନନ୍ଦନ, ଧନ୍ୟବାଦାର୍ପଣ, ଶୁଭକାମନା ।

Felicitous, *a.* ଶ୍ରେୟସ୍କର, ଆହ୍ଲାଦିତ, ମଙ୍ଗଳମୟ । [ ସହକାରେ ।

Felicitously, *ad.* ଆନନ୍ଦ-

Felicity, *n.* ସୁଖ, ଶ୍ରେୟ, ଆନନ୍ଦ, ସୌଭାଗ୍ୟ । [ ସମ୍ବନ୍ଧୀୟ ।

Feline, *a.* ମାର୍ଜାରୀୟ, ବିଡ଼ାଳ-

Fell, *a.* କ୍ରୂର, ଦାରୁଣ, ନିଷ୍ଠୁର, ଉଗ୍ର; *v.* ଛେଦନ କରିବା, ଭୂପତିତ କରିବା ।

Feller, *n.* କାଷ୍ଠଚ୍ଛେଦକ, କାଠୁରିଆ ।

Fellow, *n.* ମିତ୍ର, ସହଚର, ସଙ୍ଗୀ, ସାଥି, ଜନସମାଜର ସଭ୍ୟ ।

Fellow-being, Fellow-creature, *n.* ସଜାତୀୟ ଲୋକ ।

Fellow-citizen, *n.* ଏକ ନଗରସ୍ଥ ଲୋକ । [ ଏକଦେଶୀୟ ଲୋକ ।

Fellow-countryman, *n.*

Fellow-feeling, *n.* ସହାନୁଭୂତି ।

Fellowship, *n.* ସାହଚର୍ଯ୍ୟ, ସଖ୍ୟ, ମୈତ୍ରୀ, ପଠନାର୍ଥ ବୃତ୍ତି ।

Fellow-soldier, *n.* ସହଯୋଦ୍ଧା, ସମଯୋଦ୍ଧା । [ ସହପାଠୀ, ସତୀର୍ଥ ।

Fellow-student, *n.* ସହାଧ୍ୟାୟୀ,

Felon, *n.* ମହାପାତକୀ, ଆତତାୟୀ ।

Felonious, *a.* ଜଘନ୍ୟ, ଦୁର୍ବୃତ୍ତ, ପାପୀ । [ ଅପରାଧ ।

Felony, *n.* ମହାପାତକ, ଘୋର

Felt, *n.* ଊର୍ଣ୍ଣା, କମ୍ବଳ ।

Female, *n.* ନାରୀ, ସ୍ତ୍ରୀ, ରମଣୀ ।

Feminine, *a.* ନାରୀସୁଲଭ, ସ୍ତ୍ରୀଜାତୀୟ, ସ୍ତ୍ରୀ(ଲିଙ୍ଗ) ।

**Fen**, *n.* ଆର୍ଦ୍ର ଭୂମି, ସନ୍ତସନ୍ତିଆ ଜାଗା ।

**Fence**, *n.* ବାଡ଼, ଆବରଣ, ପ୍ରାଚୀର; *v.* ବେଷ୍ଟନ କରିବା, ଅବରୋଧ କରିବା, ଦଣ୍ଡଯୁଦ୍ଧ ଅଭ୍ୟାସ କରିବା ।

**Fenced**, *a.* ବାଡ଼ଦ୍ୱାରା ବେଷ୍ଟିତ ।

**Fenceless**, *a.* ଅନାବୃତ, ଅରକ୍ଷିତ ।

**Fencing**, *n.* ଦଣ୍ଡଯୁଦ୍ଧ, ଶସ୍ତ୍ରଶିକ୍ଷା, ବାଡ଼ ଦେବାର ଉପକରଣ ।

**Fend**, *v.* ନିବାରଣ କରିବା, ଦୂରୀଭୂତ କରିବା ।

**Ferment**, *n.* ମଣ୍ଡ, ଫେନ, ଗୋଳମାଳ; *v.* ଫୁଲିଉଠିବା, ଫେଣ ହେବା, ବ୍ୟାକୁଳ କରିବା । [ ଗୋଳମାଳ, ଉତ୍ତେଜନା ।

**Fermentation**, *n.* ଫେନୋତ୍ପାଦନ,

**Fermentative**, *a.* ଫେନ-ଉତ୍ପାଦକ ।

**Fern**, *n.* ଏକ ପ୍ରକାର ସୁନ୍ଦର ପତ୍ରବିଶିଷ୍ଟ ବାକସ ଗଛ ।

**Ferocious**, *a.* ଉଗ୍ର, କ୍ରୂର, ମାରାତ୍ମକ, ଭୀଷଣ ।

**Ferociously**, *a.* ଭୀଷଣଭାବରେ, ପ୍ରଚଣ୍ଡଭାବରେ ।

**Ferociousness**, *n.* ଉଗ୍ରତା, କ୍ରୂରତା ।

**Ferocity**, *n.* ମାରାତ୍ମକତା, ଭୀଷଣତା, କ୍ରୂରତା ।

**Ferreous**, *a.* ଲୌହଘଟିତ, ଲୌହମୟ ।

**Ferrule**, *n.* ଯଷ୍ଟିର ଅଗ୍ରରେ ଥିବା ଧାତୁନିର୍ମିତ ବଳୟ, ଅଙ୍ଗୁଆ ।

**Ferry**, *n.* ଘାଟ, ନଦୀ ପାର ହେବା ସ୍ଥାନ; *v.* ଘାଟ ପାରି କରିବା ।

**Ferry-boat**, *n.* ଘାଟଡଙ୍ଗା ।

**Ferryman**, *n.* ନାବିକ, ଘାଟିଆ, ନାଉରି, ଘାଟର ମାଝି ।

**Fertile**, *a.* ଶସ୍ୟପ୍ରଦ, ଉର୍ବର ।

**Fertilise**, **Fertilize**, *v.* ଫଳପ୍ରଦ କରିବା, ଜମିରେ ସାର ଦେବା ।

**Fertiliser**, **Fertilizer**, *n.* ସାର, ଉର୍ବରତା ବଢ଼ାଇବା ପାଇଁ ବ୍ୟବହୃତ ଦ୍ରବ୍ୟ ।

**Fertility**, *n.* ଫଳବତ୍ତା, ଉର୍ବରତା ।

**Ferule**, *n.* ବେତ, ମାଡ଼ ଦେବାର ବାଡ଼ି ।

**Fervency**, *n.* ଔତ୍ସୁକ୍ୟ, ବ୍ୟଗ୍ରତା, ଉତ୍ସାହ, ଆଗ୍ରହ ।

**Fervent**, *a.* ଉତ୍ସୁକ, ଉତ୍ସାହପୂର୍ଣ୍ଣ, ବ୍ୟଗ୍ର ।

**Fervently**, *ad.* ଉତ୍ସାହ ସହକାରେ, ଆବେଗରେ, ଆଗ୍ରହପୂର୍ବକ ।

**Fervid**, *a.* ଉଷ୍ମ, ବ୍ୟଗ୍ର, ବ୍ୟାକୁଳ ।

**Fervidly**, *ad.* ସତ୍ୱର, ବ୍ୟଗ୍ରତାସହ ।

**Fervour**, *n.* ଉଦ୍ୟମ, ଉତ୍ସାହ, ଔତ୍ସୁକ୍ୟ, ଆଗ୍ରହ, ଆବେଗ ।

**Festal**, *a.* ପର୍ବସମ୍ବନ୍ଧୀୟ ।

**Festival**, *n.* ଉତ୍ସବ, ପର୍ବ, ମେଳା, ଯାତ୍ରା ।

**Festive**, *a.* ଆନନ୍ଦଦାୟକ, ଉତ୍ସବ-ପୂର୍ଣ୍ଣ ।

**Festivity**, *n.* ଉତ୍ସବ, ପ୍ରମୋଦ, ହର୍ଷ ।

**Festoon**, *n.* ହାର, ପତ୍ରଫୁଲର ମାଳା ।

**Fetal**, **Fœtal**, *a.* ଭ୍ରୂଣସମ୍ବନ୍ଧୀୟ, ଗର୍ଭସ୍ଥ ଶିଶୁବିଷୟକ ।

**Fetch**, *v.* ଆହରଣ କରିବା, ଯାଇ ଆଣିବା ।

**Fete**, *n.* ଉତ୍ସବ; *v.* ତୃପ୍ତ କରିବା, ସନ୍ତୁଷ୍ଟ କରିବା, ଭୋଜ ଦେବା ।
**Fetid**, *a.* ପଚା, ଦୁର୍ଗନ୍ଧ ।
**Fetidness, Fetor, Fœtor**, *n.* ପଚନଶୀଳତା, ଦୁର୍ଗନ୍ଧ ।
**Fetter**, *n.* ଶୃଙ୍ଖଳ, ନିଗଡ଼, ବେଡ଼ି; *v.* ଶୃଙ୍ଖଳାବଦ୍ଧ କରିବା, ବନ୍ଧନ କରିବା ।
**Fettered**, *a.* ଶୃଙ୍ଖଳାବଦ୍ଧ, ଆବଦ୍ଧ ।
**Fetus, Fœtus**, *n.* ଭ୍ରୂଣ, ଗର୍ଭସ୍ଥ ଶିଶୁ । [ ଯୁଦ୍ଧ ।
**Feud**, *n.* କଳହ, ବିବାଦ, ବିରୋଧ,
**Feudal**, *a.* ଜାଗିର ସମ୍ବନ୍ଧୀୟ ।
**Feudalism**, *n.* ସାମନ୍ତବାଦ, ଜାଗିର ପ୍ରଥା ।
**Feudality**, *n.* ଜାଗିରଦାରି ।
**Feudatary, Feudatory**, *a.* ସାମନ୍ତ, କରଦ, ଜାଗିରଦାର ।
**Fever**, *n.* ଜ୍ୱର, ତାପ, ଦେହଜ୍ୱାଳା ।
**Feverish**, *a.* ଜ୍ୱରଗ୍ରସ୍ତ, ଜ୍ୱରପୀଡ଼ିତ ।
**Feverous**, *a.* ଶୀଘ୍ର ପରିବର୍ତ୍ତନଶୀଳ, କମ୍ପଯୁକ୍ତ । [ କତିପୟ ।
**Few**, *a.* ଅଳ୍ପସଂଖ୍ୟକ, କେତେକ,
**Fiance**, *n.* ଭାବୀ ପତି, ପ୍ରେମିକ ।
**Fiancee**,*n.* ନିର୍ବାଚିତା ପତ୍ନୀ, ପ୍ରେମିକା ।
**Fiasco**, *n.* ଅକୃତକାର୍ଯ୍ୟତା, ବିଫଳତା ।
**Fiat**, *n.* ଆଦେଶ, ଆଜ୍ଞା, ନିର୍ଦ୍ଦେଶ ।
**Fib**, *n.* ମିଥ୍ୟା କଥା ।
**Fibre**, *n.* ତନ୍ତୁ, ସୂତା, ଅଂଶୁ ।
**Fibrous**, *a.* ତନ୍ତୁମୟ, ସୂତାବିଶିଷ୍ଟ ।
**Fickle**, *a.* ଚପଳ, ଚଞ୍ଚଳ, ଅନବସ୍ଥିତ, ଚଳଚିତ୍ତ, ଅସ୍ଥିରମନା ।
**Fickleminded**, *a.* ଚପଳମନା ।
**Fickleness**, *n.* ଚପଳତା, ଅନବସ୍ଥିତତା, ଅଧୀରତା ।
**Fiction**, *n.* କଳ୍ପନା, ଗଳ୍ପ, କାହାଣୀ ।
**Fictional**, *a.* କଳ୍ପନାମୂଳକ, କାହାଣୀମୂଳକ । [ କୃତ୍ରିମ, ମିଥ୍ୟା ।
**Fictitious**, *a.* କପୋଳକଳ୍ପିତ,
**Fictitiously**, *ad.* ମିଛରେ, ମନରୁ ଗଢ଼ି । [ ବେହେଲା ବଜାଇବା ।
**Fiddle**, *n.* ସାରଙ୍ଗୀ, ବେହେଲା; *v.*
**Fiddler**, *n.* ବେହେଲାବାଦକ ।
**Fiddling**, *n.* ବେହେଲାବାଦନ ।
**Fidelity**, *n.* ଆନୁଗତ୍ୟ, ବିଶ୍ୱସ୍ତତା, ପ୍ରଭୁଭକ୍ତି । [ ହେବା; *n.* ଚଞ୍ଚଳ ଅବସ୍ଥା ।
**Fidget**, *v.* ଚପଳ ହେବା, ଅସ୍ଥିର
**Fidgety**, *a.* ଚପଳ, ଚଞ୍ଚଳ, ଅସ୍ଥିର, ଅଧୀର, ଉଦ୍‌ବିଗ୍ନ ।
**Fie**, *int.* ଧିକ୍, ଛିଃ !
**Fief**, *n.* ଭୂମି, ବୃତ୍ତି, ଜାଗିର ଜମି ।
**Field**, *n.* ପଦିଆ, ରଣକ୍ଷେତ୍ର, ପ୍ରାନ୍ତର ।
**Field-book**,*n.* ଜମିମାପିବା ସମୟରେ ବ୍ୟବହୃତ ବହି ।
**Field marshal**, *n.* ସେନାପତି, ସୈନିକ ବିଭାଗର ଉଚ୍ଚ କର୍ମଚାରୀବିଶେଷ ।

**Fiend**, *n.* ପିଶାଚ, ରାକ୍ଷସ, ଅତି ନିଷ୍ଠୁର ବ୍ୟକ୍ତି । [ ଅତି କ୍ରୂର ।

**Fiendish**, *a.* ପୈଶାଚିକ, ଅମାନୁଷିକ,

**Fierce**, *a.* କ୍ରୂର, ଦାରୁଣ, ଭୀଷଣ, ପ୍ରଚଣ୍ଡ, ହିଂସ୍ର, ଭୟଙ୍କର ।

**Fiercely**, *ad.* ଭୀଷଣଭାବରେ ।

**Fierceness**, *n.* କ୍ରୂରତା, ତୀବ୍ରତା, ଭୀଷଣତା, ହିଂସ୍ର ପ୍ରକୃତି ।

**Fiery**, *a.* ଆଗ୍ନେୟ, ଜ୍ୱଳନ୍ତ, ତୀବ୍ର ।

**Fife**, *n.* ବଂଶୀ, ଶିଙ୍ଗା; *v.* ବଂଶୀ ବଜାଇବା ।

**Fifer**, *n.* ବଂଶୀବାଦକ ।

**Fifteen**, *n.* ପନ୍ଦର ।

**Fifteenth**, *a.* ପଞ୍ଚଦଶ ।

**Fifth**, *a.* ପଞ୍ଚମ ।

**Fifth columnist**, *n.* ପଞ୍ଚମ-ବାହିନୀ, ଦେଶଦ୍ରୋହୀ ।

**Fiftieth**, *a.* ପଞ୍ଚାଶତ୍ତ୍ୱ ।

**Fifty**, *a.* ପଞ୍ଚାଶ ।

**Fig**, *n.* ଡମ୍ବିର, ଉଦୁମ୍ବର, ନଗଣ୍ୟ ବସ୍ତୁ ।

**Fight**, *n.* ଯୁଦ୍ଧ, ସମର; *v.* ଯୁଦ୍ଧ କରିବା ।

**Fighter**, *n.* ଯୋଦ୍ଧା, ଲଢ଼ୁଆ ଉଡ଼ାଜାହାଜ । [ *a.* ଯୁଦ୍ଧରତ ।

**Fighting**, *n.* ଯୁଦ୍ଧ, ରଣ, ସମର;

**Figment**, *n.* କଳ୍ପନା, ଗଳ୍ପ, ମିଥ୍ୟା କଥା, କପୋଳକଳ୍ପନା ।

**Figurable**, *a.* ଗଠନୀୟ ।

**Figuration**, *n.* ନିର୍ଦ୍ଦିଷ୍ଟ ଆକାର ପ୍ରଦାନ । [ ଲାକ୍ଷଣିକ ।

**Figurative**, *a.* ଆଲଙ୍କାରିକ, ରୂପକ,

**Figuratively**, *ad.* ରୂପକ ଆକାରରେ, ଲାକ୍ଷଣିକ ଅର୍ଥରେ ।

**Figure**, *n.* ଆକାର, ମୂର୍ତ୍ତି, ସଂଖ୍ୟା, କାବ୍ୟାଲଙ୍କାର; *v.* ଅଙ୍କନ କରିବା, କଳ୍ପନା କରିବା ।

**Figurehead**, *n.* ନାମମାତ୍ର ଅଧ୍ୟକ୍ଷ ।

**Figure of speech**, *n.* ଭାଷା ବା କାବ୍ୟର ଅଲଙ୍କାର ।

**Figurine**, *n.* କ୍ଷୁଦ୍ର ମୂର୍ତ୍ତି ।

**Filament**, *n.* କେଶର, ତନ୍ତୁ, ଅଂଶୁ ।

**Filch**, *v.* ଚୋରି କରିବା ।

**Filcher**, *n.* ଚୋର ।

**File**, *n.* ନଥି, ଶ୍ରେଣୀ, ଉଖା; *v.* ଶ୍ରେଣୀବଦ୍ଧ କରିବା ବା ହେବା, ନଥିଭୁକ୍ତ କରିବା, ଉଖାରେ ଘୋରିବା ।

**Filial**, *a.* ପୁତ୍ରୋଚିତ, ସନ୍ତାନୋଚିତ ।

**Filigree**, *n.* ତାରକସି କାମ ।

**Filings**, *n.* (*pl.*) ଉଖା ଘଷିବାରେ ଉତ୍ପନ୍ନ ଗୁଣ୍ଡ । [ *n.* ପୂର୍ତ୍ତିତା ।

**Fill**, *v.* ଭର୍ତ୍ତି କରିବା, ପୂର୍ଣ୍ଣ କରିବା;

**Fillet**, *n.* ମୁଣ୍ଡରେ ବାନ୍ଧିବା ଫିତା; *v.* ଫିତାରେ ବାନ୍ଧିବା ।

**Fillip**, *n.* ନଖାଘାତ, ଚମୁଟା, ଉତ୍ତେଜକ ପଦାର୍ଥ; *v.* ଉତ୍ସାହ ବା ଉତ୍ତେଜନା ଦେବା ।

**Filly**, *n.* ମାଈ ଘୋଡ଼ାଛୁଆ, ଘୋଟକୀ ।

**Film**, *n.* ଅତି ସୂକ୍ଷ୍ମ ଚର୍ମ ବା ଝିଲ୍ଲୀ, ପରଳ, .ଚଳଚ୍ଚିତ୍ର, ଫଟୋ ଉଠାଇବାର ଉପକରଣବିଶେଷ ।

**Film-star**, *n.* ଚିତ୍ରତାରକା, ସିନେମାର ଶ୍ରେଷ୍ଠ ଅଭିନେତା ବା ଅଭିନେତ୍ରୀ ।

**Filmy**, *a.* ଝିଲ୍ଲୀସଦୃଶ ।

**Filter**, *v.* ଶୋଧନ କରିବା, କ୍ଷରିତ ହେବା; *n.* ଜଳୀୟ ଦ୍ରବ୍ୟର ଶୋଧକ ଯନ୍ତ୍ର ।

**Filth**, *n.* ମଳ, କଳୁଷ, ପଙ୍କ ।

**Filthily**, *ad.* କୁତ୍ସିତଭାବରେ, କଦର୍ଯ୍ୟଭାବରେ ।

**Filthiness**, *n.* ପଙ୍କିଳତା, ଅପବିତ୍ରତା ।

**Filthy**, *a.* ମଳିନ, କଳୁଷମୟ, ପଙ୍କିଳ, କୁତ୍ସିତ । [ କରିବା, କ୍ଷରିତ କରିବା ।

**Filtrate**, *a.* ଜଳୀୟ ଦ୍ରବ୍ୟକୁ ଶୋଧନ

**Filtration**, *n.* ଜଳୀୟ ଦ୍ରବ୍ୟର ଶୋଧନ, କ୍ଷରଣ ।

**Fin**, *n.* ମାଛର ଡେଣା ।

**Finable**, *a.* ଅର୍ଥଦଣ୍ଡଯୋଗ୍ୟ ।

**Final**, *a.* ଅନ୍ତିମ, ଶେଷ, ଚରମ, ଚୂଡ଼ାନ୍ତ ।

**Finale**, *n.* ଗୀତ-ବାଦ୍ୟ-ନାଟକଆଦିର ଉପସଂହାର । [ ଶେଷ ନିଷ୍ପତ୍ତି ।

**Finality**, *n.* ଅନ୍ତିମ କାର୍ଯ୍ୟ ବା ଅବସ୍ଥା,

**Finally**, *ad.* ପରିଶେଷରେ ।

**Finance**, *n.* ଆର୍ଥିକ ବ୍ୟାପାର, ରାଜସ୍ୱ; *v.* ଅର୍ଥ ଯୋଗାଇବା ।

**Financial**, *a.* ଆର୍ଥିକ, ରାଜ୍ୟର ରାଜସ୍ୱସମ୍ବନ୍ଧୀୟ, ଆୟବ୍ୟୟବିଷୟକ ।

**Financier**, *n.* ଅର୍ଥର ପରିଚାଳକ ।

**Finch**, *n.* କ୍ଷୁଦ୍ର ପକ୍ଷୀବିଶେଷ ।

**Find**, *v.* ପାଇବା, ଦେଖିବା, ସନ୍ଧାନ କରିବା; *n.* ଆବିଷ୍କାର, ଦୃଷ୍ଟ ବସ୍ତୁ । [ ରାୟ ।

**Finding**, *n.* ଆବିଷ୍କାର, ମକଦ୍ଦମାର

**Fine**, *a.* ସୂକ୍ଷ୍ମ, କୋମଳ, ସୁନ୍ଦର; *v.* ଦଣ୍ଡ ଦେବା, ଜରିମାନା କରିବା; *n.* ଅର୍ଥଦଣ୍ଡ, ଜରିମାନା । [ ସହକାରେ ।

**Finely**, *ad.* ସୁନ୍ଦରଭାବରେ, ଦକ୍ଷତା-

**Fineness**, *n.* ସୂକ୍ଷ୍ମତା, କୋମଳତା, ଶୋଭା । [ ପ୍ରଭୃତି ।

**Finery**, *n.* ସୁନ୍ଦର ବସ୍ତ୍ର-ଅଳଙ୍କାର

**Finesse**, *n.* ଛଳ, ପ୍ରତାରଣା ।

**Finger**, *n.* ଅଙ୍ଗୁଳି; *v.* ଅଙ୍ଗୁଳିରେ ସ୍ପର୍ଶ କରିବା । [ ସ୍ତମ୍ଭ ।

**Finger-post**, *n.* ପଥନିର୍ଦ୍ଦେଶକ

**Finger-print**, *n.* ଟିପଚିହ୍ନ, ଅଙ୍ଗୁଳିଚିହ୍ନ ।

**Finis**, *n.* ଶେଷ, ସମାପ୍ତି, ସମାପନ ।

**Finish**, *v.* ସମାପ୍ତ କରିବା, ନିଷ୍ପାଦନ କରିବା; *n.* ସମାପ୍ତି, ସମାପ୍ତିମୂଳକ କାର୍ଯ୍ୟ ।

**Finished**, *a.* ସମାପ୍ତ, ନିଷ୍ପନ୍ନ, ସମ୍ପୂର୍ଣ୍ଣ ।

**Finite**, *a.* ସସୀମ, ପରିମିତ, ସୀମାବଦ୍ଧ ।

**Finitely**, *ad.* ସସୀମଭାବରେ, ସୀମାମଧ୍ୟରେ । [ ଡେଣାଯୁକ୍ତ ।

**Finny**, *a.* ମାଛର ଡେଣାପରି

**Fiord**, *n.* ଅପ୍ରଶସ୍ତ ପାର୍ବତୀୟ ସମୁଦ୍ରତଟ ।
**Fir**, *n.* ଦେବଦାରୁ ବୃକ୍ଷ ।
**Fire**, *n.* ଅଗ୍ନି, ତେଜ, ଉତ୍ସାହ; *v.* ଗୁଳିମାରିବା । [ ତୋପ ପ୍ରଭୃତି ।
**Fire-arms**, *n.* ଆଗ୍ନେୟାସ୍ତ୍ର, ବନ୍ଧୁକ-
**Firebrand**, *n.* ଜଳନ୍ତା କାଠ, ଉତ୍ତେଜନାକାରୀ ବ୍ୟକ୍ତି, ନିଆଁ ଦୁଲା ।
**Fire-brigade**, *n.* ନିଆଁ ଲିଭାଳିଦଳ ।
**Fire-engine**, *n.* ନିଆଁ ଲିଭା କଳ, ଦମ୍‌କଳ । [ ଖଦ୍ୟୋତ ।
**Firefly**, *n.* ଜୁଳୁଜୁଳିଆ ପୋକ,
**Firelock**, *n.* ବନ୍ଧୁକ ।
**Fireman**, *n.* ନିଆଁ ଲିଭାଳି ।
**Fireplace**, *n.* ଚୁଲ୍ଲୀ, ଅଗ୍ନିକୁଣ୍ଡ ।
**Fireproof**, *a.* ଅଦାହ୍ୟ, ଯାହା ନିଆଁରେ ପୋଡ଼ିଯାଏ ନାହିଁ ।
**Fireside**, *n.* ଗୃହରେ ଅଗ୍ନି ଜାଳିବା ସ୍ଥାନ, ପାରିବାରିକ ଜୀବନ ।
**Firestone**, *n.* ଝିକମିକ ପଥର ।
**Firewood**, *n.* ଜାଳେଣି କାଠ, ଇନ୍ଧନ ।
**Fireworks**, *n.* ଅଗ୍ନିକ୍ରୀଡ଼ା, ବାଣ ।
**Firing**, *n.* ଜାଳେଣି, ବନ୍ଧୁକରୁ ଗୁଳି ମାରିବା କାର୍ଯ୍ୟ ।
**Firm**, *n.* ବ୍ୟବସାୟ ସଂସ୍ଥା, ବଣିକ୍‌-ସମବାୟ; *a.* ଦୃଢ଼, ସ୍ଥିର, ଅଚଳ ।
**Firmament**, *n.* ଆକାଶ, ନଭସ୍ତଳ, ବ୍ୟୋମ ।
**Firmly**, *ad.* ଦୃଢ଼ଭାବରେ ।
**Firmness**, *n.* ଦୃଢ଼ତା, ସ୍ଥୈର୍ଯ୍ୟ, ଧୃତି ।
**First**, *a.* ପ୍ରଥମ, ଆଦିମ, ଅଗ୍ରଣୀ ।
**First-aid**, *n.* ପ୍ରାଥମିକ ସାହାଯ୍ୟ ।
**First-born**, *n.* ଅଗ୍ରଜ, ପ୍ରଥମ ସନ୍ତାନ ।
**First-floor**, *n.* ଉପର ତାଲ୍ଲା ।
**Firstly**, *ad.* ପ୍ରଥମତଃ, ଆଦ୍ୟରେ, ପ୍ରଥମେ ।
**First-rate**, *a.* ଶ୍ରେଷ୍ଠ, ଉତ୍ତମ ।
**Fisc**, *n.* ରାଜସ୍ୱ, ରାଜକୋଷାଗାର ।
**Fiscal**, *a.* ରାଜସ୍ୱସଂକ୍ରାନ୍ତ, ଧନସମ୍ବନ୍ଧୀୟ, ଆର୍ଥିକ ।
**Fish**, *n.* ମାଛ, ମତ୍ସ୍ୟ; *v.* ମାଛ ଧରିବା ।
**Fisherman**, *n.* କେଉଟ, କୈବର୍ତ୍ତ ।
**Fishery**, *n.* ମାଛଚାଷ, ମତ୍ସ୍ୟ ବ୍ୟବସାୟ ।
**Fish-hook**, *n.* ବନଶୀକଣ୍ଟା ।
**Fishing**, *n.* ମାଛଧରା ।
**Fishing net**, *n.* ମାଛଧରା ଜାଲ ।
**Fishing rod**, *n.* ବନଶୀବେଡ଼ା ।
**Fishing tackle**, *n.* ବନଶୀସୂତା ।
**Fish market**, *n.* ମାଛହାଟ ।
**Fishmonger**, *n.* ମାଛବିକାଳି ।
**Fish-plate**, *n.* ଦୁଇ ରେଲ୍‌ରାସ୍ତାର ମୁଣ୍ଡକୁ ଯୋଡ଼ିବାର ଲୁହାପଟା ।
**Fish-pond**, *n.* ମାଛ ଥିବା ପୋଖରୀ ।
**Fishy**, *a.* ମତ୍ସ୍ୟସଦୃଶ, ସନ୍ଦେହଜନକ ।
**Fissible**, *a.* ବିଦାର୍ଯ୍ୟ, ବିଭାଜ୍ୟ ।
**Fission**, *n.* ବିଭାଗୀକରଣ, ଛେଦ ।

Fissure, *n.* ଫାଟ, ଫାଙ୍କ, ଛିଦ୍ର, ରନ୍ଧ୍ର ।
Fist, *n.* ମୁଷ୍ଟି, ମୂଠା, ବିଧା; *v.* ମୁଷ୍ଟ୍ୟାଘାତ କରିବା । [ ମୁଷ୍ଟିଯୁଦ୍ଧ ।
Fisticuff, *n.* ମୁଥ, ମୁଷ୍ଟ୍ୟାଘାତ,
Fistula, *n.* ନାଡ଼ିବ୍ରଣ, ଭଗନ୍ଦର ।
Fistular, *a.* ଭଗନ୍ଦର ସମ୍ବନ୍ଧୀୟ ।
Fit, *a.* ଯୋଗ୍ୟ, ଉପଯୁକ୍ତ, ସଙ୍ଗତ, ଉଚିତ; *v.* ଠିକ୍ ହେବା, ଯଥାସ୍ଥାନରେ ଖଞ୍ଜିବା; *n.* ମୃଗୀ ରୋଗ, ମୂର୍ଚ୍ଛା ।
Fitful, *a.* ଚଞ୍ଚଳ, ଚପଳ, ଅସ୍ଥିର ।
Fitly, *ad.* ଯଥାର୍ଥରେ, ଯଥାସ୍ଥାନରେ ।
Fitness, *n.* ଯୋଗ୍ୟତା, ଉପଯୋଗିତା ।
Fitted, *a.* ସଜ୍ଜିତ, ଖଚିତ, ଯୁକ୍ତ ।
Fitter, *n.* ଯନ୍ତ୍ରର ବିଭିନ୍ନ ଅଂଶକୁ ଖଞ୍ଜିବା ବ୍ୟକ୍ତି ।
Fitting, *a.* ଉପଯୁକ୍ତ, ସଙ୍ଗତ, ଯଥାର୍ଥ ।
Five, *a.* ପାଞ୍ଚ, ୫ ।
Fivefold, *a.* ପାଞ୍ଚଗୁଣ ।
Fix, *v.* ଦୃଢ଼ କରିବା, ନିରୂପଣ କରିବା, ସ୍ଥାପନ କରିବା; *n.* ସଙ୍କଟ ।
Fixable, *a.* ନିହିତ, ସ୍ଥାୟୀ, ଦୃଢ଼ ହେବାର ଯୋଗ୍ୟ ।
Fixation, *n.* ନିର୍ଦ୍ଧାରଣ, ସ୍ଥିରୀକରଣ ।
Fixed, *a.* ନିର୍ଦ୍ଧାରିତ, ଧ୍ରୁବ, ସ୍ଥିର, ନିଶ୍ଚଳ ।
Fixity, *n.* ଦୃଢ଼ତା, ନିଶ୍ଚଳତା ।
Fixture, *n.* ସ୍ଥିରତା, ସ୍ଥାବର ଦ୍ରବ୍ୟ ।

Flabbiness, *n.* କୋମଳତା, ଅଙ୍ଗର ଶିଥିଳତା, କମନୀୟତା ।
Flabby, *a.* କୋମଳ, ଶିଥିଳ ।
Flag, *n.* ପତାକା, ଧ୍ୱଜା; *v.* ଶିଥିଳ ହେବା, ଭଗ୍ନୋତ୍ସାହ ହେବା । [ ସ୍ଥାନତା ।
Flagginess, *n.* ଶୈଥିଲ୍ୟ, ଉତ୍ସାହ-
Flaggy, *a.* ଦୁର୍ବଳ, ଶିଥିଳ ।
Flagrance, Flagrancy, *n.* ପାପ, ଦୌରାତ୍ମ୍ୟ, ଦୁଷ୍ଟତା । [ ନିନ୍ଦନୀୟ ।
Flagrant, *a.* ଦୁଷ୍ଟ, ଦାରୁଣ, ପାପିଷ୍ଠ,
Flagrantly, *ad.* ଦାରୁଣଭାବରେ ।
Flag-staff, *n.* ପତାକାସ୍ତମ୍ଭ ।
Flair, *n.* ସ୍ୱାଭାବିକ ବସ୍ତୁଗତବୁଦ୍ଧି ।
Flake, *n.* ତୁଷାର ସ୍ତର, ଚ୍ଛମକଣା, ପିଣ୍ଡୁଳା । [ ପ୍ରତାରଣା କରିବା ।
Flam, *n.* ପ୍ରବଞ୍ଚନା, ମିଥ୍ୟା; *v.*
Flame, *n.* ଅଗ୍ନିଶିଖା, ତେଜ ।
Flaming, *a.* ଜଳନ୍ତା, ପ୍ରଜ୍ୱଳିତ ।
Flamingly, *ad.* ଜ୍ୱଳନ୍ତଭାବରେ, ଉଜ୍ଜ୍ୱଳରୂପେ ।
Flamingo, *n.* ଜଳଚର ପକ୍ଷୀବିଶେଷ ।
Flammability, *n.* ଦହନ ଶକ୍ତି, ଦାହ୍ୟତା ।
Flamy, *a.* ପ୍ରଜ୍ୱଳିତ ।
Flank, *n.* ପାର୍ଶ୍ୱଦେଶ, ଭାଗ; *v.* ପାର୍ଶ୍ୱରେ ରହିବା, ପାର୍ଶ୍ୱକୁ ଆକ୍ରମଣ କରିବା ।

**Flannel,** *n.* ଏକପ୍ରକାର ପଶମୀ ବସ୍ତ୍ର ।
**Flap,** *n.* ପକେଟ ଇତ୍ୟାଦିର ଢାଙ୍କୁଣି; *v.* ଡେଣା ଝାଡ଼ିବା, ଫଡ଼ଫଡ଼ କରିବା ।
**Flare,** *v.* ଜଳିଉଠିବା, ଦୀପ୍ତ ହେବା; *n.* ଅଗ୍ନିଶିଖା । [ *n.* ସ୍ଫୁରଣ, ଝଲକ ।
**Flash,** *v.* ସ୍ଫୁରିତ ହେବା, ଦୀପ୍ତ ହେବା;
**Flashily,** *ad.* ଚକ୍‌ଚକ୍ କରି ।
**Flash-light,** *n.* ଯେଉଁ ଆଲୋକ ଦୀପ୍ତ ଓ ନିର୍ବାପିତ ହେଉଥାଏ । [ ପୂର୍ଣ୍ଣ ।
**Flashy,** *a.* ସ୍ଫୁରିତ, ଦୀପ୍ତ, ଆଡ଼ମ୍ବର-
**Flask,** *n.* ପାନପାତ୍ର, ବୋତଲ ।
**Flat,** *a.* ସମତଳ, ନୀରସ, ଅବସନ୍ନ; *n.* କୋଠାଘରର ମହଲା ।
**Flatly,** *ad.* ସ୍ପଷ୍ଟଭାବରେ ।
**Flatness,** *n.* ନୀରସତା, ସମତଳ ଅବସ୍ଥା । [ କରିବା ।
**Flatten,** *v.* ସମତଳ କରିବା, ଚେପ୍‌ଟା
**Flatter,** *v.* ଚାଟୁ କରିବା, ଖୋସାମଦ କରିବା । [ ଖୋସାମଦିଆ ।
**Flatterer,** *n.* ଚାଟୁକାର, ସ୍ତାବକ,
**Flattering,** *a.* ଖୋସାମଦ କରୁଥିବା ।
**Flatteringly,** *ad.* ଖୋସାମଦ-ପୂର୍ବକ । [ ମିଥ୍ୟାପ୍ରଶଂସା ।
**Flattery,** *n.* ଚାଟୁବାକ୍ୟ, ସ୍ତୁତି,
**Flatulence, Flatulency,** *n.* ଉଦରାଧ୍ମାନ, ପେଟଫମ୍ପା ।
**Flatulent,** *a.* ବାୟୁପୂର୍ଣ୍ଣ, ଫାମ୍ପିଥିବା ।
**Flaunt,** *v.* ଆଡ଼ମ୍ବର ଦେଖାଇବା; *n.* ବୃଥା ଆଡ଼ମ୍ବର ।
**Flaunting,** *a.* ଆଡ଼ମ୍ବରସୂଚକ ।
**Flavorous,** *a.* ରୁଚିକର, ସୁସ୍ୱାଦୁ, ସୁଗନ୍ଧ ।
**Flavour,** *n.* ସ୍ୱାଦ, ରୁଚି, ସୁଗନ୍ଧ; *v.* ରୁଚିକର କରିବା, ସୁଗନ୍ଧ କରିବା ।
**Flavourless,** *a.* ବିସ୍ୱାଦ,ଅରୁଚିକର।
**Flaw,** *n.* ଦୋଷ, ଛିଦ୍ର, ତ୍ରୁଟି, ଖୁଣ ।
**Flawless,** *a.* ନିର୍ଦ୍ଦୋଷ, ତ୍ରୁଟିଶୂନ୍ୟ, ନିଖୁଣ ।
**Flax,** *n.* ଶଣ, ଶଣପଟ ।
**Flaxen,** *a.* ଶଣପଟରେ ନିର୍ମିତ, ଶଣସଦୃଶ ।
**Flay,** *v.* ଚମଡ଼ା ଉତାରିବା ।
**Flea,** *n.* ଓଡ଼ଶ, ଉକୁଣି, ଝିଙ୍କ ପ୍ରଭୃତି ପକ୍ଷହୀନ କୀଟ । [ ଚିହ୍ନିତ କରିବା ।
**Fleck,** *n.* ଦାଗ, ଚିହ୍ନ; *v.* ଦାଗ ଦେବା,
**Fleckless,** *a.* ନିଷ୍କଳଙ୍କ, ନିର୍ଦ୍ଦୋଷ ।
**Fledge,** *v.* ଦେହରେ ପର ଉଠିବା ।
**Fledged,** *a.* ଯାହାର ପର ଜନ୍ମିଅଛି, ଡେଣା ଲଗିଥିବା । [ କରି ଯିବା ।
**Flee,** *v.* ପଳାଇଯିବା, ପରିତ୍ୟାଗ
**Fleece,** *n.* ମେଷଲୋମ; *v.* ଅପହରଣ କରିବା, ଶୋଷଣ କରିବା ।
**Fleeced,** *a.* ଲୋମଶ, ଲୋମଯୁକ୍ତ ।
**Fleecer,** *n.* ଅପହରଣକାରୀ, ଶୋଷକ ।

**Fleecy**, *a.* ଲୋମଶ, ଲୋମାଚ୍ଛାଦିତ ।
**Fleet**, *n.* ପୋତମାଳା, ନୌବହର; *v.* ଦ୍ରୁତ ଗତିରେ ଯିବା; *a.* ବେଗବାନ୍, ଦ୍ରୁତଗାମୀ । [ ଚଞ୍ଚଳ ।
**Fleeting**, *a.* କ୍ଷଣିକ, ଅନିଶ୍ଚିତ,
**Fleetingly**, *ad.* ଶୀଘ୍ର, ବେଗରେ, ଦ୍ରୁତ ଗତିରେ ।
**Fleetness**, *n.* ଦ୍ରୁତଗାମିତା, ବେଗ ।
**Flesh**, *n.* ମାଂସ, ରକ୍ତର ସମ୍ବନ୍ଧ ।
**Fleshiness**, *n.* ସ୍ଥୂଳତା, ମାଂସ-ବହୁଳତା ।
**Fleshly**, *a.* ଶାରୀରିକ, ଇନ୍ଦ୍ରିୟପରାୟଣ ।
**Fleshy**, *a.* ମାଂସଳ, ହୃଷ୍ଟପୁଷ୍ଟ ।
**Flex**, *v.* ନତ କରିବା, ନୁଆଁଇବା ।
**Flexibility**, *n.* ନମନୀୟତା, କୋମଳତା ।
**Flexible**, *a.* ନମନୀୟ, କୋମଳ, ମୃଦୁ ।
**Flexion**, **Flexure**, *n.* ଆନମନ, ଆକୁଞ୍ଚନ, ବକ୍ରତା ।
**Flicker**, *v.* ଦପ୍‌ଦପ୍ ହେବା ।
**Flickering**, *a.* ଦପ୍‌ଦପ୍ ହେଉଥିବା ।
**Flight**, *n.* ପଳାୟନ, ଉଡ଼ୟନ, ପକ୍ଷୀପଙ୍କ୍ତି । [ କ୍ଷଣିକ ।
**Flighty**, *a.* ଚଞ୍ଚଳ, ଉଡ୍‌ଡୀୟମାନ,
**Flimsily**, *ad.* କ୍ଷୀଣଭାବରେ ।
**Flimsy**, *a.* କ୍ଷୀଣ, ଅସାର, ଅତିସାମାନ୍ୟ ।
**Flimsiness**, *n.* ଅସାରତା, ଦୁର୍ବଳତା ।
**Flinch**, *v.* ପଛେଇବା, ବିମୁଖ ହେବା ।
**Fling**, *v.* ନିକ୍ଷେପ କରିବା, ଫିଙ୍ଗିବା; *n.* ନିକ୍ଷେପ, ବିଦ୍ରୂପ । [ ପ୍ରସ୍ତର ।
**Flint**, *n.* ଚକମକି ପଥର, ଅଗ୍ନ୍ୟୁତ୍ପାଦକ
**Flinty**, *a.* ପ୍ରସ୍ତରମୟ, ନିଷ୍ଠୁର ।
**Flippancy**, *n.* ବାବଦୂକତା, ଗ୍ରଳ୍‌ଭ ।
**Flippant**, *a.* ବାଗ୍ମିଳ, ବାବଦୂକ, ଚଞ୍ଚଳ, ଚପଳ ।
**Flirt**, *v.* ବିଳାସ-ବିଭ୍ରମ ଦେଖାଇବା, ପ୍ରେମାଭିନୟ କରିବା; *n.* ଚପଳା ରମଣୀ ।
**Flirtation**, *n.* ଲୀଳା, ରସିକତା, ପ୍ରେମାଭିନୟ । [ ଭ୍ରମିବା ।
**Flit**, *v.* ବେଗରେ ପଳାଇବା, ଇତସ୍ତତଃ
**Flitting**, *n.* ଇତସ୍ତତଃ ଭ୍ରମଣ; *a.* ଅସ୍ଥାୟୀ ।
**Flitter**, *v.* ଡେଣା ଫଡ଼ଫଡ଼ କରିବା ।
**Float**, *v.* ଭାସିବା; *n.* ଭେଳା ।
**Floating**, *a.* ଭାସମାନ, ଭାସୁଥିବା ।
**Flock**, *n.* ଦଳ, ପଲ, ଯୂଥ, ସମୂହ ।
**Floe**, *n.* ଭାସମାନ ତୁଷାରଖଣ୍ଡ ।
**Flog**, *v.* ପ୍ରହାର କରିବା, ଆଘାତ କରିବା ।
**Flogging**, *n.* ପ୍ରହାର, କଶାଘାତ ।
**Flood**, *n.* ବନ୍ୟା, ବଢ଼ି, ପ୍ରବାହ, ସ୍ରୋତ; *v.* ବୁଡ଼ାଇଦେବା, ଭସାଇନେବା ।
**Flood-gate**, *n.* ଜଳ ଯିବାଆସିବା ପଥ ।
**Flood-tide**, *n.* ଜୁଆର ।
**Floor**, *n.* ଚଟାଣ, ମେଜିଆ, ଗୃହତଳ, ମହଲ; *v.* ପରାସ୍ତ କରିବା ।

**Floored**, *a.* ପରାସ୍ତ, ପରାଜିତ ।
**Flooring**, *n.* ଚଟାଣ ପ୍ରସ୍ତୁତକରଣ ।
**Flora**, *n.* ବନୌଷଧି, ବୃକ୍ଷଲତା ।
**Floral**, *a.* ପୁଷ୍ପନିର୍ମିତ, ପୁଷ୍ପସମ୍ବନ୍ଧୀୟ ।
**Floriculture**, *n.* ପୁଷ୍ପୋଦ୍ୟାନ-ନିର୍ମାଣ, ଫୁଲଚାଷ ।
**Florid**, *a.* ରକ୍ତବର୍ଣ୍ଣ,ଉଜ୍ଜ୍ୱଳ, ଅଳଙ୍କୃତ ।
**Floridity, Floridness**, *n.* ଅରୁଣିମା, ରକ୍ତିମା । [ ସ୍ୱର୍ଣ୍ଣମୁଦ୍ରାବିଶେଷ ।
**Florin**, *n.* ଇଂଲଣ୍ଡରେ ପ୍ରଚଳିତ
**Florist**, *n.* ମାଳାକାର, ମାଳୀ, ପୁଷ୍ପବିକ୍ରେତା, ଫୁଲଚାଷୀ ।
**Floss**, *n.* ମୋଟା ରେଶମ ।
**Flossy**, *a.* ମୋଟା ରେଶମରେ ନିର୍ମିତ ।
**Flotilla**, *n.* କ୍ଷୁଦ୍ର ପୋତମାଳା ।
**Flounce**, *v.* ଅଙ୍ଗବିକ୍ଷେପ କରିବା, ଇତସ୍ତତଃ ଯିବା; *n.* ବସ୍ତ୍ରର ଝାଲର ।
**Flour**, *n.* ମଇଦା, ଅଟା, ଶକ୍ତୁ ।
**Flourish**, *v.* ଉନ୍ନତ କରିବା, ଶୋଭା ପାଇବା, ବର୍ଦ୍ଧମାନ ହେବା । [ ସମୃଦ୍ଧ ।
**Flourishing**, *a.* ଉନ୍ନତିଶୀଳ,
**Flout**, *v.* ଅବମାନନା କରିବା, ଘୃଣା ପ୍ରକାଶ କରିବା । [ *n.* ପ୍ରବାହ ।
**Flow**, *v.* ବହିଯିବା, ପ୍ରବାହିତ ହେବା;
**Flower**, *n.* ଫୁଲ, ପୁଷ୍ପ; *v.* ଫୁଟିବା, ବିକଶିତ ହେବା, ଫୁଲଧରିବା ।
**Flowering**, *a.* ମୁକୁଳିତ ।
**Flowerless**, *a.* ପୁଷ୍ପହୀନ ।
**Flowery**, *a.* ପୁଷ୍ପମୟ, ସପୁଷ୍ପ, ଆଳଙ୍କାରିକ । [ ପରିବର୍ତ୍ତିତ ହେବା ।
**Fluctuate**, *v.* ଅସ୍ଥିର ହେବା,
**Fluctuation**, *n.* ପରିବର୍ତ୍ତନ, ଉତ୍ଥାନପତନ, ଅସ୍ଥିରତା ।
**Flu, Flue**, *n.* ଇନଫ୍ଲୁଏଞ୍ଜା,ସର୍ଦ୍ଦିଜ୍ୱର ।
**Flue**, *n.* ଧୂମଗମନାଗମନ ପଥ ।
**Fluency**, *n.* ବାଗ୍ମିତା, ବାକ୍‌ପଟୁତା ।
**Fluent**, *a.* ବାକ୍‌ପଟୁ, ଅନର୍ଗଳ, ଅବାଧ ।
**Fluently**, *ad.* ଅନର୍ଗଳଭାବରେ ।
**Fluid**, *a.* ତରଳ, ଦ୍ରବୀଭୂତ, ଚଳନଶୀଳ; *n.* ଦ୍ରବ, ରସ ।
**Fluidity, Fluidness**, *n.* ଦ୍ରବତା, ତରଳତା, ତରଳ ଅବସ୍ଥା ।
**Flume**, *n.* କୃତ୍ରିମ ଜଳନାଳୀ ।
**Flunk**, *v.* ବିଫଳ ହେବା; *n.* ବିଫଳତା ।
**Flunky**, *n.* ଦାସ, ଭୃତ୍ୟ, ସ୍ତାବକ ।
**Fluorescent**, *a.* ଜ୍ୟୋତି-ବିଚ୍ଛୁରଣକାରୀ । [ ଗୋଳମାଳ ।
**Flurry**, *n.* ବ୍ୟଗ୍ରତା, ବିଶୃଙ୍ଖଳ,
**Flush**, *v.* ରକ୍ତିମ ହେବା, ଦୃପ୍ତ ହେବା, ଜଳଧାର ଦ୍ୱାରା ସଫା କରିବା; *n.* ମୁଖର ରକ୍ତିମା, ସାମୟିକ ଉତ୍ତେଜନା ।
**Flushed**, *a.* ରକ୍ତିମ, ଉଦ୍ଧତ, ଦୃପ୍ତ ।
**Fluster**, *v.* ଚଞ୍ଚଳ ହେବା, ହତବୁଦ୍ଧି ହେବା; *n.* ମନର ଆବେଗ, ଉନ୍ମାଦନା ।

**Flute**, *n.* ବେଣୁ, ମୁରଳୀ, ବଂଶୀ; *v.* ବଂଶୀ ବଜାଇବା ।

**Flutist**, *n.* ବଂଶୀବାଦକ ।

**Flutter**, *v.* ଡେଣା ଝାଡ଼ିବା, ଡେଣା ଫଡ଼ଫଡ଼ କରିବା; *n.* ଆବେଗ, ପକ୍ଷସଞ୍ଚାଳନ, ମନର ଅସ୍ଥିରତା ।

**Flux**, *n.* ପ୍ରବାହ, କ୍ଷରଣ, ପୁନଃରକ୍ତସ୍ରାବ ।

**Fluxibility**, *n.* ଦ୍ରବଣୀୟତା ।

**Fluxible**, *a.* ଦ୍ରବଣୀୟ, ଗଳନୀୟ ।

**Fly**, *n.* ମକ୍ଷିକା, ମାଛି; *v.* ଉଡ଼ିଯିବା, ପଳାଇବା ।

**Flying-fox**, *n.* ଚେମେଣି, ବାଦୁଡ଼ି ।

**Fly-leaf**, *n.* ମୂଳ ପୃଷ୍ଠା, ପୁସ୍ତକର ଆଦ୍ୟରେ ବା ଶେଷରେ ଥିବା ସାଦା କାଗଜ ।

**Foal**, *n.* ଅଶ୍ୱଶାବକ, ଘୋଡ଼ାଛୁଆ ।

**Foam**, *n.* ଫେନ, ମଣ୍ଡ, କୋପ; *v.* ଫେନ ଜାତ କରିବା, କ୍ରୋଧ କରିବା ।

**Foamy**, *a.* ଫେନିଳ, ଫେନଯୁକ୍ତ ।

**Fob**, *n.* ପାଇଜାମାରେ ଘଣ୍ଟା ରଖିବାପାଇଁ ଥିବା ଗ୍ଲେଟ ପକେଟ ।

**Focal**, *n.* କେନ୍ଦ୍ରସ୍ଥ, ଅକ୍ଷବିନ୍ଦୁସୂଚକ ।

**Focalise**, *v.* କେନ୍ଦ୍ରଗତ କରିବା ।

**Focus**, *n.* ରଶ୍ମିମାନଙ୍କର ମିଳନବିନ୍ଦୁ, କେନ୍ଦ୍ରସ୍ଥଳ; *v.* କେନ୍ଦ୍ରୀଭୂତ କରିବା ।

**Fodder**, *n.* ଗୋରୁଙ୍କ ଖାଦ୍ୟ, ଘାସ-ନଡ଼ା ପ୍ରଭୃତି ।

**Foe**, *n.* ଅରି, ଶତ୍ରୁ, ଶତ୍ରୁ ।

**Fœtal, Fetal**, *a.* ଭ୍ରୂଣସମ୍ବନ୍ଧୀୟ ।

**Fœtus, Fetus**, *n.* ଭ୍ରୂଣ, ଗର୍ଭସ୍ଥ ଶିଶୁ ।

**Fog**, *n.* କୁଜ୍‌ଝଟିକା, କୁହୁଡ଼ି ।

**Fogginess**, *n.* ମେଘାଚ୍ଛନ୍ନତା ।

**Foggy**, *a.* କୁହୁଡ଼ିଦ୍ୱାରା ଆଚ୍ଛାଦିତ ।

**Foible**, *n.* ଚରିତ୍ରଗତ ଦୁର୍ବଳତା, ଦୋଷ, ତ୍ରୁଟି, ଅପରାଧ, ଛିଦ୍ର ।

**Foil**, *v.* ବ୍ୟର୍ଥ କରିବା, ପରାଜିତ କରିବା ।

**Foist**, *v.* ଜାଲ୍ କରିବା ।

**Fold**, *n.* ଭାଙ୍ଗ, ପ୍ରସ୍ଥ; *v.* ପ୍ରସ୍ଥକରି ଭାଙ୍ଗିବା । [ ମଲାଟ ।

**Folder**, *n.* ପୁସ୍ତକର ବହିରାବରଣ,

**Foliage**, *n.* ପଲ୍ଲବ, କିଶଳୟ, ପତ୍ରସମୂହ ।

**Folio**, *n.* କାଗଜ ଫର୍ଦ୍ଦକୁ ଥରେ ଭାଙ୍ଗିଲେ ଯେଉଁ ଆକାର ହୁଏ, ଏହି ଆକାରର ଛାପା ବହି ।

**Folk**, *n.* ଲୋକ, ଜନସମୂହ, ଜନତା ।

**Folk-dance**, *n.* ଲୋକନୃତ୍ୟ ।

**Folklore**, *n.* ଲୋକକଥା ।

**Folk-song**, *n.* ଲୋକଗୀତ ।

**Folk-tale**, *n.* ଲୋକକଥା, କାହାଣୀ ।

**Follow**, *v.* ଅନୁସରଣ କରିବା, ପଛରେ ଯିବା । [ ସେବକ ।

**Follower**, *n.* ଅନୁଚର, ପରିଜନ,

**Following**, *a.* ପରବର୍ତ୍ତୀ, ପଶ୍ଚାଦ୍ଭୁକ୍ତ; *n.* ଅନୁଚରବର୍ଗ ।

Folly, *n.* ନବୋଧତା, ମୂର୍ଖତା, ବୁଦ୍ଧିମାନ୍ଦ୍ୟ । [ କରିବା ।

Foment, *v.* ସେକିବା, ଉତ୍ତେଜିତ

Fomentation, *n.* ସେକ, ଉତ୍ତେଜନା ।

Fomenter, *n.* ଉତ୍ତେଜନାକାରୀ ।

Fond, *a.* ପ୍ରିୟ, ଆଦରଣୀୟ, ସ୍ନେହୀ ।

Fondle, *v.* କୋଳରେ ଧରିବା, ଆଲିଙ୍ଗନ କରିବା । [ ଜୀବ ।

Fondling, *n.* ସ୍ନେହପାତ୍ର, ସ୍ନେହପାଳିତ

Fondly, *ad.* ସ୍ନେହରେ, ଆଦର-ସହକାରେ ।

Fondness, *n.* ସ୍ନେହ, ଆଦର, ବାଞ୍ଛା ।

Font, *n.* ଜଳପାତ୍ର, କୁଣ୍ଡ, ପବିତ୍ର ଜଳାଧାର, ଏକ ଆକାରବିଶିଷ୍ଟ ଧାତୁନିର୍ମିତ ଅକ୍ଷରସମୂହ ।

Fontal, *a.* ଝରଣାସମ୍ବନ୍ଧୀୟ ।

Food, *n.* ଖାଦ୍ୟ, ଆହାର, ଭୋଜନ ।

Fool, *n.* ନବୋଧ ବ୍ୟକ୍ତି, ବିଦୂଷକ ।

Foolery, *n.* ନବୋଧତା, ବୁଦ୍ଧିହୀନ କାର୍ଯ୍ୟ, ବୋକାମି ।

Foolhardiness, *n.* ଦୁଃସାହସିକତା ।

Foolhardy, *a.* ଅତି ସାହସୀ, ଦୁଃସାହସିକ, ଉନ୍ମତ୍ତ ।

Fooling, *n.* ନବୋଧ ଆଚରଣ ।

Foolish, *n.* ନବୋଧ, ବୁଦ୍ଧିହୀନ, ବୋକା, ଜଡ଼, ମୂର୍ଖ, ଅଧମ ।

Foolishly, *ad.* ନବୋଧଭାବରେ ।

Foolishness, *n.* ମୂର୍ଖତା, ଅଜ୍ଞତା, ବୁଦ୍ଧିହୀନତା, ନବୋଧତା ।

Foolscap, *n.* କାଗଜର ଏକ ନିର୍ଦ୍ଦିଷ୍ଟ ଆକାର, ୧୭½ ଇଞ୍ଚ×୧୩½ ଇଞ୍ଚ ।

Foot, *n.* ପାଦ, ପାଦତଳ, ପଦାତିକ ସୈନ୍ୟ, ବାର ଇଞ୍ଚ ମାପ, କବିତାର ପାଦ; *v.* ପାଦ ପକାଇବା ।

Football, *n.* ପାଦରେ ଖେଳିବା ନିମିତ୍ତ ଚର୍ମନିର୍ମିତ ପେଣ୍ଡୁ ।

Foot-fall, *n.* ପଦବିକ୍ଷେପ, ପଦଚିହ୍ନ ।

Footing, *n.* ପଦ, ଅସ୍ଥାନ, ଅବଲମ୍ବନ ।

Footless, *a.* ପଦହୀନ, ନିଷ୍ପଦ ।

Footman, *n.* ପିଆଦା, ଚାକର ।

Foot-mark, *n.* ପଦଚିହ୍ନ ।

Foot-note, *n.* ପାଦଟୀକା ।

Footpath, *n.* ଚାଲିବାଟ, ପଦଯାତ୍ରୀଙ୍କ ପାଇଁ ନିର୍ଦ୍ଦିଷ୍ଟ ପଥ ।

Footprint, *n.* ପଦଚିହ୍ନ ।

Foot-soldier, *n.* ପଦାତିକ ସୈନ୍ୟ ।

Footsore, *a.* ପଥଶ୍ରାନ୍ତ, ଚାଲିବା ହେତୁ ପାଦ କ୍ଷତଯୁକ୍ତ । [ ଦୃଷ୍ଟାନ୍ତ ।

Footstep, *n.* ପଦକ୍ଷେପ, ପାଦନ୍ୟାସ,

Footstool, *n.* ପାଦପୀଠ, ପାଦାସନ ।

Footwear, *n.* ପାଦ ପାଇଁ ଜୋତା-ଚପଲ ଆଦି । [ ବେଶଭୂଷାପ୍ରିୟ ଲୋକ ।

Fop, *n.* ଆଡ଼ମ୍ବରପ୍ରିୟ ବ୍ୟକ୍ତି,

**Foppery**, *n.* ଆଡ଼ମ୍ବର, ଜାକଜମକ ।
**Foppish**, *a.* ବେଶ-ପୋଷାକପ୍ରିୟ ।
**For**, *pre. & con.* ପାଇଁ, ସକାଶେ, ଯେହେତୁ, ପରବର୍ତ୍ତିରେ ।
**Forage**, *n.* ତୃଣାଦ ଗୋଖାଦ୍ୟ, ଖାଦ୍ୟାର୍ଥେ ପରିଭ୍ରମଣ, ଖାଦ୍ୟ ଲୁଣ୍ଠନ; *v.* ଖାଦ୍ୟଦ୍ରବ୍ୟ ଲୁଣ୍ଠନ କରିବା ।
**Foray**, *n.* ଲୁଣ୍ଠନ, ଅପହରଣ ।
**Forbear**, *v.* ନିବୃତ୍ତ ହେବା, ତ୍ୟାଗ କରିବା, ସହିବା । [ ଧୈର୍ଯ୍ୟ, କ୍ଷମା ।
**Forbearance**, *n.* ସହିଷ୍ଣୁତା,
**Forbearing**, *a.* ସହିଷ୍ଣୁ, କ୍ଷମାଶୀଳ ।
**Forbid**, *v.* ନିଷେଧ କରିବା, ନିବୃତ୍ତ କରିବା, ବାଧା ଦେବା ।
**Forbiddance**, *n.*ନିଷେଧ,ନିବାରଣ ।
**Forbidden**, *a.* ନିଷିଦ୍ଧ, ନିବାରିତ ।
**Force**, *n.* ବଳ, ଶକ୍ତି, ସାମର୍ଥ୍ୟ, ପ୍ରଭାବ, ବେଗ; *v.* ବଳାତ୍କାର କରିବା । [ କୃତ ।
**Forced**, *a.* ବାଧ୍ୟତାମୂଳକ,ବଳାତ୍କାରରେ
**Forceful**, *a.* ବଳିଷ୍ଠ, ଶକ୍ତିଶାଳୀ ।
**Forceps**, *n.* ଚିମୁଟା, ସଣ୍ଢ଼ାସି, ସନ୍ଦଶକ । [ ସାଧିତ, ପ୍ରବଳ ।
**Forcible**, *a.* ସମର୍ଥ, ବଳପୂର୍ବକ
**Forcibly**, *ad.* ଜବରଦସ୍ତି, ବଳାତ୍କାରରେ ।
**Ford**, *n.* ନଦୀରେ ପଶି ଯିବା ଘାଟ; *v.* ଜଳରେ ପଶି ପାର ହେବା । [ ଯୋଗ୍ୟ ।
**Fordable**, *a.* ପଶି ପାର ହେବା
**Fore**, *a.* ଅଗ୍ରବର୍ତ୍ତୀ, ପୂର୍ବବର୍ତ୍ତୀ ।
**Forearm**, *n.* ଅଗ୍ରବାହୁ, ଅଗ୍ରହସ୍ତ, କହୁଣୀଠାରୁ ମଣିବନ୍ଧପର୍ଯ୍ୟନ୍ତ ଅଂଶ; *v.* ସଜ୍ଜୀଭୂତ ହେବା । [ଜଣାଇ ଦେବା ।
**Forebode**, *v.* ସୂଚନା ଦେବା, ପୂର୍ବରୁ
**Foreboding**, *n.*ଭାବୀ ଅନିଷ୍ଟର ସୂଚନା ।
**Forecast**, *v.* ଭବିଷ୍ୟତ୍ ଫଳ କହିବା; *n.* ପୂର୍ବ ସୂଚନା, ଭାବୀ ଘଟଣାର କଳ୍ପନା ।
**Forefather**, *n.* ପୂର୍ବପୁରୁଷ ।
**Forefinger**, *n.* ତର୍ଜ୍ଜନୀ ଅଙ୍ଗୁଳି ।
**Forefoot**, *n.* ଆଗ ପାଦ ।
**Forefront**, *n.* ପୁରୋଭାଗ, ସମ୍ମୁଖ; *ad.* ସବାଗ୍ରେ ।
**Forego**, *v.* ଛାଡ଼ି ଦେବା, ତ୍ୟାଗ କରିବା ।
**Foregoing**, *n.* ପୂର୍ବବର୍ତ୍ତୀ, ପୂର୍ବରୁ ଯାଇଥିବା । [ ସ୍ଥିରୀକୃତ ।
**Foregone**, *a.* ପୂର୍ବନିର୍ଦ୍ଦିଷ୍ଟ, ପୂର୍ବରୁ
**Forehead**, *n.* କପାଳ, ଲଲାଟ ।
**Foreign**, *a.* ବୈଦେଶିକ, ବିଦେଶାଗତ, ବିଜାତୀୟ । [ ବିଦେଶୀ ।
**Foreigner**, *n.* ବୈଦେଶିକ ବ୍ୟକ୍ତି,
**Foreknowledge**, *n.* ଭବିଷ୍ୟତ୍ ବିଷୟକ ଜ୍ଞାନ । [ କେଶ ।
**Forelock**, *n.* ମସ୍ତକର ସମ୍ମୁଖସ୍ଥ
**Foreman**, *n.* ଅଧ୍ୟକ୍ଷ, ଜୁରିର ମୁଖପାତ୍ର ।
**Foremast**, *n.* ଜାହାଜର ସମ୍ମୁଖସ୍ଥ ମାସ୍ତୁଲ । [ ସ୍ଥାନୀୟ ।
**Foremost**, *a.* ସର୍ବୋତ୍କୃଷ୍ଟ, ପ୍ରଥମ-

**Forenamed**, *a.* ପୂର୍ବୋଲ୍ଲିଖିତ ।
**Forenoon**, *n.* ପୂର୍ବାହ୍ଣ, ସକାଳ ବେଳା ।
**Forensic**, *a.* ବ୍ୟାବହାରିକ, ବିଚାରାଳୟବିଷୟକ, ଆଇନଗତ ।
**Forepart**, *n.* ଅଗ୍ରଭାଗ, ପ୍ରାରମ୍ଭ ।
**Forerunner**, *n.* ଅଗ୍ରଦୂତ, ଅଗ୍ରଗାମୀ, ପୂର୍ବଗାମୀ ।
**Foresaid**, *a.* ପୂର୍ବୋକ୍ତ, ପୂର୍ବକଥିତ ।
**Foresee**, *v.* ଭବିଷ୍ୟତ୍ ଦେଖିବା, ଆଗରୁ ଦେଖିବା । [ ଦେବା ।
**Foreshadow**, *v.* ପୂର୍ବରୁ ସୂଚନା
**Foresight**, *n.* ଦୂରଦୃଷ୍ଟି, ଦୂରଦର୍ଶିତା ।
**Foreskin**, *n.* ଲିଙ୍ଗାଗ୍ରଆବରକ ଚର୍ମ ।
**Forest**, *n.* ବନ, ଜଙ୍ଗଲ, ଅରଣ୍ୟ ।
**Forester**, *n.* ବନେଚର, ଆଟବିକ, ବନବିଭାଗର କର୍ମଚାରୀବିଶେଷ ।
**Forestry**, *n.* ବନବିଦ୍ୟା, ବନବିଜ୍ଞାନ ।
**Foretaste**, *n.* ପୂର୍ବାସ୍ୱାଦ, ପୂର୍ବାନୁଭୂତି ।
**Foretell**, *v.* ଭବିଷ୍ୟଦ୍‌ବାଣୀ କହିବା ।
**Foreteller**, *n.* ଭବିଷ୍ୟଦ୍‌ବକ୍ତା, ଦୈବଜ୍ଞ । [ ଦୂରଦୃଷ୍ଟି ।
**Forethought**, *n.* ପୂର୍ବବିଚାର,
**Foretooth**, *n.* ଗ୍ରମୁ ଦାନ୍ତ, ସମ୍ମୁଖ ଦନ୍ତ ।
**Forever**, *ad.* ଚିରକାଳ ପାଇଁ ।
**Forewarn**, *v.* ପୂର୍ବରୁ ସାବଧାନ କରିବା ।
**Foreword**, *n.* ପୁସ୍ତକର ମୁଖବନ୍ଧ ।
**Forfeit**, *v.* ବାଜ୍ୟାପ୍ତ କରିବା ।
**Forfeitable**, *a.* ବାଜ୍ୟାପ୍ତ ହେବାର ଯୋଗ୍ୟ । [ ଅଧିକାରଭ୍ରଂଶ, ଦଣ୍ଡ ।
**Forfeiture**, *n.* ବାଜ୍ୟାପ୍ତିକରଣ,
**Forge**, *v.* ଜାଲ୍ କରିବା, ନିର୍ମାଣ କରିବା; *n.* କମାରର ଅଗ୍ନିକୁଣ୍ଡ ।
**Forger**, *n.* କୂଟକାର, କପଟଲେଖକ, ଜାଲ୍‌କାରୀ । [ କପଟଲେଖନ ।
**Forgery**, *n.* ଜାଲ୍, କୂଟରଚନା,
**Forget**, *v.* ଭୁଲିଯିବା, ପାସୋରିବା, ବିସ୍ମୃତ ହେବା ।
**Forgetful**, *a.* ବିସ୍ମୃତିଶୀଳ, ଲୁପ୍ତସ୍ମୃତି ।
**Forgetfulness**, *n.* ବିସ୍ମୃତି, ସ୍ମୃତିଭ୍ରଂଶ, ବିସ୍ମରଣଶୀଳତା ।
**Forgive**, *v.* କ୍ଷମା କରିବା, ଦୋଷ ମାର୍ଜନା କରିବା । [ ଦୋଷମାର୍ଜନା ।
**Forgiveness**, *n.* କ୍ଷମା, ତିତିକ୍ଷା,
**Forgiving**, *a.* କ୍ଷମାଶୀଳ, ସହିଷ୍ଣୁ ।
**Forgo**, *v.* ପରିତ୍ୟାଗ କରିବା ।
**Fork**, *n.* ଦ୍ୱିଶାଖା କଣ୍ଟା; *v.* ଦ୍ୱିଶାଖାରେ ବିଭକ୍ତ କରିବା ବା ହେବା ।
**Forked**, *a.* ଦ୍ୱିଧାକୃତ, ଦ୍ୱିଶାଖାବିଶିଷ୍ଟ ।
**Forlorn**, *a.* ଏକାକୀ, ନିରାଶ୍ରୟ, ଅସହାୟ, ପରିତ୍ୟକ୍ତ ।
**Form**, *n.* ଆକାର, ଆକୃତି, ମୂର୍ତ୍ତି, ରୂପ; *v.* ଗଠନ କରିବା, ଉତ୍ପାଦନ କରିବା ।

**Formal**, *a.* ଉଦ୍ବୋଚତ, ବୈଧାନକ, ସ୍ୱତଗତ । [ ସ୍ୱଢ, ଲୌକିକକଥା ।
**Formality**, *n.* ଉଦ୍ରତା, ଶିଷ୍ଟାଗ୍ଧର,
**Formally**, *ad.* ଯଥାବଧି, ସ୍ୱଢ ଅନୁସାରେ । [ ରଚନା, ସୃଷ୍ଟି ।
**Formation**, *n.* ଗଠନ, ନର୍ମାଣ,
**Formative**, *a.* ଗଠନଶୀଳ ।
**Former**, *a.* ପୂର୍ବକଥିତ, ପୂର୍ବୋଲ୍ଲିଖିତ, ପୁରାତନ, ଆଦମ ।
**Formerly**, *ad.* ପୂର୍ବକାଳରେ, ଆଦମ ଯୁଗରେ, ପୁରାକାଳରେ ।
**Formidable**, *a.* ଭୟାବହ, ଭୀଷଣ, ଭୟଙ୍କର, ପ୍ରବଳ ।
**Formidableness**, *n.* ଭୀଷଣତା, ଦାରୁଣତା, ଭୟାନକତ୍ୱ ।
**Formidably**, *ad.* ଭୀଷଣଭାବରେ ।
**Formless**, *a.* ନରାକାର, ରୂପହୀନ, ଅରୂପ, ଆକୃତବହୀନ ।
**Formula**, *n.* ସୂତ୍ର, ନୟମ, ବଧି, ବ୍ୟବସ୍ଥା; (*pl.* Formulæ, Formulas) ।
**Formulate**, *v.* ବଧାନ କରିବା, ସୂତ୍ରରୂପେ ପରିଣତ କରିବା ।
**Fornicate**, *v.* ବ୍ୟଭିଗ୍ଧର କରିବା ।
**Fornication**, *n.* ଲମ୍ପଟ୍ୟ, ବ୍ୟଭିଗ୍ଧର ।
**Fornicator**, *n.* ବ୍ୟଭିଗ୍ଧାରୀ ପୁରୁଷ ।
**Forsake**, *v.* ତ୍ୟାଗ କରିବା, ପରିହାର କରିବା ।
**Forsaken**, *a.* ପରିତ୍ୟକ୍ତ ।
**Forsooth**, *ad.* ଯଥାର୍ଥତଃ, ନଶ୍ଚୟ, ଅବଶ୍ୟ, ଠିକ୍, ପ୍ରକୃତରେ ।
**Forswear**, *v.* ମିଥ୍ୟା ଶପଥ କରିବା ।
**Forswearer**, *n.* ମିଥ୍ୟାଶପଥକାରୀ ।
**Fort**, *n.* ଦୁର୍ଗ, ଗଡ଼, କିଲ୍ଲା ।
**Forte**, *n.* ବଶିଷ୍ଟ ଗୁଣ, ପ୍ରଧାନ ଗୁଣ ।
**Forth**, *ad.* ବାହାରେ, ବାହାରକୁ, ଆଗରେ, ଆଗକୁ । [ ଆସନ୍ନ, ଆଗତପ୍ରାୟ ।
**Forthcoming**, *a.* ଆଗାମୀ, ଆସନ୍ନ,
**Forthwith**, *ad.* ତତ୍କ୍ଷଣାତ୍, ଅଚରାତ୍, ଅବିଳମ୍ବେ, ଶୀଘ୍ର ।
**Fortieth**, *a.* ଚତ୍ୱାରିଂଶତ୍ତମ ।
**Fortification**, *n.* ଦୃଢ଼ୀକରଣ, ଦୁର୍ଗନର୍ମାଣ, ପ୍ରାଚୀର-ପରିଖାଦ ନର୍ମାଣ, ଦୁର୍ଗ ।
**Fortified**, *a.* ଦୁର୍ଗାଦଦ୍ୱାରା ସୁରକ୍ଷିତ ।
**Fortify**, *v.* ସୁଦୃଢ଼ କରିବା, ଦୁର୍ଗ ନର୍ମାଣ କରିବା । [ ସାହସ, ପୌରୁଷ ।
**Fortitude**, *n.* ଧୈର୍ଯ୍ୟ, ମନର ସ୍ଥିରତା,
**Fortnight**, *n.* ପକ୍ଷ, ମାସାର୍ଦ୍ଧ, ଅର୍ଦ୍ଧମାସ । [ ପନ୍ଦରେ ଥରେ ପ୍ରକାଶିତ ।
**Fortnightly**, *a.* ପାକ୍ଷିକ, ପନ୍ଦର
**Fortress**, *n.* ଦୁର୍ଗ, ଗଡ଼, ରକ୍ଷଣୋପାୟ ।
**Fortuitous**, *a.* ଦୈବାଯତ୍ତ, ଆକସ୍ମିକ । [ ଆକସ୍ମିକ ଭାବରେ ।
**Fortuitously**, *ad.* ଦୈବାତ୍,

**Fortuity**, *n.* ଭାଗ୍ୟ, ଅଦୃଷ୍ଟ, ଦୈବ, ଐଶ୍ୱର୍ଯ୍ୟ । [ ସୌଭାଗ୍ୟଶାଳୀ ।

**Fortunate**, *a.* ଭାଗ୍ୟବାନ୍,

**Fortunately**, *ad.* ସୌଭାଗ୍ୟବଶତଃ, ଦୈବାତ୍, ଭାଗ୍ୟବଳରୁ ।

**Fortune**, *n.* ଭାଗ୍ୟ, ବିଧାତା, ଐଶ୍ୱର୍ଯ୍ୟ, ସୌଭାଗ୍ୟ, ଭବିତବ୍ୟତା ।

**Fortune-teller**, *n.* ଗଣକ, ଜ୍ୟୋତିଷୀ, ଭବିଷ୍ୟଦ୍‌ବକ୍ତା ।

**Forty**, *a.* ଚାଳିଶ, ଚତ୍ୱାରିଂଶ ।

**Forum**, *n.* ପ୍ରକାଶ୍ୟ ବିଚାର ସ୍ଥାନ ।

**Forward**, *ad.* ଆଗକୁ, ଅଗ୍ରତଃ, ସମ୍ମୁଖରେ; *a.* ଅଗ୍ରବର୍ତ୍ତୀ, ଅଗ୍ରିମ, ଉତ୍ସାହୀ; *v.* ପ୍ରେରଣ କରିବା ।

**Forwardness**, *n.* ଉତ୍ସାହ, ଅବିନୟ, ଧୃଷ୍ଟତା, ପ୍ରଗଲ୍‌ଭତା ।

**Fosse**, *n.* ଗଡ଼ଖାଇ, ପରିଖା ।

**Fossil**, *n.* ପ୍ରସ୍ତରୀଭୂତ ଉଦ୍ଭିଦ, ଜାନ୍ତବଶିଳା, ଜୀବାଶ୍ମ । [ ପାଳନ କରିବା ।

**Foster**, *v.* ବର୍ଦ୍ଧନ କରିବା, ଲାଳନ-

**Foster-brother**, *n.* ଏକ ମାତାଦ୍ୱାରା ଲାଳିତପାଳିତ ଭ୍ରାତା ।

**Foster-child**, *n.* ପାଳିତ ସନ୍ତାନ ।

**Foster-father**, *n.* ପାଳକ ପିତା ।

**Foster-mother**, *n.* ଧାଈମାଆ, ଉପମାତା, ପ୍ରତିପାଳିକା । [ ବା ମାତା ।

**Foster-parent**, *n.* ପାଳକ ପିତା

**Foul**, *a.* ଦୂଷିତ, ଆବିଳ, କଳୁଷିତ, ଅପବିତ୍ର, ମଳିନ, ଅଶୁଚି ।

**Foulness**, *n.* ଅପରିଚ୍ଛନ୍ନତା, ଆବିଳତା । [ କରିବା ।

**Found**, *v.* ପ୍ରତିଷ୍ଠା କରିବା, ନିର୍ମାଣ

**Foundation**, *n.* ପ୍ରତିଷ୍ଠା, ମୂଳଦୁଆ, ଭିତ୍ତି । [ ପ୍ରସ୍ତର, ଭିତ୍ତିଫଳକ ।

**Foundation stone**, *n.* ଭିତ୍ତି-

**Founder**, *n.* ପ୍ରତିଷ୍ଠାତା ।

**Foundery, Foundry**, *n.* ଅକ୍ଷରଢାଳେଇ କାରଖାନା ।

**Foundling**, *n.* ଅନାଥ ଶିଶୁ, ପରିତ୍ୟକ୍ତ ଶିଶୁସନ୍ତାନ ।

**Fount**, *n.* ଏକ ପ୍ରକାର ଓ ଏକ ଆକାରବିଶିଷ୍ଟ ଧାତୁଅକ୍ଷର, ନିର୍ଝର, ଉତ୍ସ ।

**Fount, Fountain**, *n.* ଝରଣା, ମୂଳ, ଉତ୍ସ, ହେତୁ, ଆଦିକାରଣ ।

**Fountain pen**, *n.* ଝରକଲମ ।

**Four**, *a.* ଚାରି, ଚତୁଃସଂଖ୍ୟକ ।

**Fourfold**, *a.* & *ad.* ଚତୁର୍ଗୁଣ ।

**Four-footed**, *a.* ଚତୁଷ୍ପଦ, ଚାରିଗୋଡ଼ିଆ । [ ଅଶୀ ।

**Fourscore**, *a.* ଚାରିକୋଡ଼ି ଅର୍ଥାତ୍

**Fourteen**, *a.* ଚଉଦ, ଚତୁର୍ଦ୍ଦଶ ।

**Fourteenth**, *a.* ଚତୁର୍ଦ୍ଦଶସ୍ଥାନୀୟ ।

**Fourth**, *a.* ଚତୁର୍ଥ ।

**Fowl**, *n.* କୁକ୍‌କୁଡ଼ା, ପକ୍ଷୀ ।

Fowler, *n.* ପକ୍ଷୀଶିକାରୀ, ବ୍ୟାଧ, ଲୁବ୍ଧକ । [ ମାରିବା ।

Fowling, *n.* ପକ୍ଷୀଶିକାର, ଚଢ଼େଇ

Fowling piece, *n.* ପକ୍ଷୀମରା ବନ୍ଧୁକ ।

Fox, *n.* କୋକଶିଆଳ ।

Foxchase, *n.* କୋକଶିଆଳ ଶିକାର ।

Fox-hound, *n.* କୋକଶିଆଳ-ଶିକାରୀ କୁକ୍କୁର ।

Fox-like, *a.* ଧୂର୍ତ୍ତ, ଚତୁର, ମାୟାବୀ ।

Foxy, *a.* କୋକଶିଆଳ ପରି ଧୂର୍ତ୍ତ ।

Fracas, *n.* ଦଙ୍ଗାହଙ୍ଗାମା, କଳହ ।

Fraction, *n.* ଅଂଶ, ଭାଗ, ଭଗ୍ନାଂଶ ।

Fractional, *a.* ଆଂଶିକ, ଅପୂର୍ଣ୍ଣ, ଭଗ୍ନାଂଶଗତ ।

Fractious, *a.* କଳହପ୍ରିୟ ।

Fracture, *n.* ବିଭଙ୍ଗ, ଅସ୍ଥିଭଙ୍ଗ; *v.* ଭାଙ୍ଗିଯିବା । [ ଦୁର୍ବଳ ।

Fragile, *a.* ଭଙ୍ଗପ୍ରବଣ, ଭଙ୍ଗୁର,

Fragility, *n.* ଭଙ୍ଗପ୍ରବଣତା, ଦୁର୍ବଳତା ।

Fragment, *n.* ଖଣ୍ଡ, ଅଂଶ, ଭାଗ ।

Fragmentary, *a.* ଖଣ୍ଡିତ, ଅପୂର୍ଣ୍ଣ, ଆଂଶିକ, ଅସମ୍ବନ୍ଧ ।

Fragmentation, *n.* କ୍ଷୁଦ୍ର ଖଣ୍ଡରେ ବିଭାଗୀକରଣ ।

Fragrance, *n.* ସୁଗନ୍ଧ, ସୁବାସ, ପରିମଳ, ସୌରଭ ।

Fragrant, *a.* ସୁଗନ୍ଧ, ସୁବାସିତ, ସୁରଭିତ । [ ନଶ୍ୱର ।

Frail, *a.* ଦୁର୍ବଳ, ଭଙ୍ଗୁର, ଅନିତ୍ୟ,

Frailness, Frailty, *n.* ଚରିତ୍ରଗତ ଦୁର୍ବଳତା, ଦୋଷ, ପ୍ରମାଦ, ଭଙ୍ଗୁରତା ।

Frame, *n.* ରଚନା, ନିର୍ମାଣ, ଅବସ୍ଥା, ଦେହ, ଚିତ୍ର ଆଦି ବାନ୍ଧିବାର ପଟା; *v.* ଗଠନ କରିବା, ପଟା ଦେଇ ଚିତ୍ର ଆଦି ବାନ୍ଧିବା । [ ହୋଇଥିବା ।

Framed, *a.* ପଟାରେ ବନ୍ଧେଇ

Framework, *n.* ଗୁମ୍ଫ, ନମୁନା ।

Franchise, *n.* ନାଗରିକ ଅଧିକାର, ସ୍ୱାଧୀନତା; ମୁକ୍ତି; *v.* ନାଗରିକ ଅଧିକାର ଦେବା, ମୁକ୍ତ କରିବା । [ ଅମାୟିକ ।

Frank, *a.* ସରଳ, ନିଷ୍କପଟ, ସ୍ପଷ୍ଟବାଦୀ,

Frankly, *ad.* ସରଳଭାବରେ, ସ୍ପଷ୍ଟତଃ ।

Frankness, *n.* ସରଳତା, ସ୍ପଷ୍ଟବାଦିତା, ନିଷ୍କପଟତା ।

Frantic, *a.* ଉନ୍ମତ୍ତ, ବାତୁଳ, ବିହ୍ୱଳ ।

Franticness, *n.* ଉନ୍ମତ୍ତତା, ବିହ୍ୱଳତା, ଚିତ୍ତବିକ୍ଷେପ ।

Fraternal, *a.* ଭ୍ରାତୀୟ, ଭ୍ରାତୃତୁଲ୍ୟ ।

Fraternally, *ad.* ଭ୍ରାତୃଭାବରେ, ଭାଇପରି । [ ଆବଦ୍ଧକରଣ ।

Fraternisation, *n.* ଭ୍ରାତୃଭାବରେ

Fraternise, Fraternize, *v.* ଭ୍ରାତୃଭାବରେ ମିଳିତ ହେବା ।

**Fraternity**, *n.* ଭ୍ରାତୃତ୍ୱ, ସୌହାର୍ଦ୍ଦ, ବନ୍ଧୁତା, ସମାଜ । [ ଭ୍ରାତୃହତ୍ୟା ।
**Fratricide**, *n.* ଭ୍ରାତୃହନ୍ତା,
**Fraud**, *n.* ପ୍ରତାରଣା, ବଞ୍ଚନା, ଗୁରୁଷ, କାପଟ୍ୟ, ଚଞ୍ଚଳତା ।
**Fraudless**, *a.* ନିଷ୍କପଟ ।
**Fraudulence**, *n.* ପ୍ରତାରଣା, କପଟ, ଶଠତା । [ ପ୍ରବଞ୍ଚକ ।
**Fraudulent**, *n.* ପ୍ରତାରକ, ଶଠ,
**Fraudulently**, *ad.* କପଟରେ, ଛଳରେ, ପ୍ରତାରଣାପୂର୍ବକ ।
**Fraught**, *a.* ଭାରାକ୍ରାନ୍ତ, ପରିପୂର୍ଣ୍ଣ ।
**Fray**, *n.* କଳହ, କଳି, ଦ୍ୱନ୍ଦ୍ୱ, ଯୁଦ୍ଧ ।
**Freak**, *n.* ବିଭ୍ରମ, ସ୍ୱୈରତା, ଖିଆଲ; *v.* ଚପଳତାପ କରିବା ।
**Freakish**, *a.* ଖିଆଲି ।
**Free**, *a.* ସ୍ୱାଧୀନ, ଅନାସକ୍ତ, ସ୍ୱତନ୍ତ୍ର, ମୁକ୍ତ, ନିର୍ବିଘ୍ନ, ବିନାମୂଲ୍ୟ । [ ଲୁଣ୍ଠନକାରୀ ।
**Freebooter**, *n.* ଡକାଏତ,
**Freebooting**, *n.* ଡକାଏତି, ଦସ୍ୟୁବୃତ୍ତି ।
**Freeborn**, *a.* ଜନ୍ମରୁ ସ୍ୱାଧୀନ, ସ୍ୱତନ୍ତ୍ର ।
**Freedom**, *n.* ସ୍ୱାଧୀନତା, ସ୍ୱାତନ୍ତ୍ର୍ୟ, ମୁକ୍ତି । [ ମୁକ୍ତହସ୍ତ ।
**Freehanded**, *a.* ବଦାନ୍ୟ,
**Freehold**, *n.* ଜାଗିର, ନିଷ୍କର ଭୂମି ।
**Freeholder**, *n.* ଜାଗିରଦାର ।
**Freely**, *ad.* ସ୍ୱାଧୀନଭାବରେ, ସ୍ୱେଚ୍ଛାରେ, ସ୍ୱଚ୍ଛନ୍ଦରେ, ନିର୍ବାଧରେ, ଯଥେଚ୍ଛ ।
**Freeport**, *n.* ଯେଉଁ ବନ୍ଦରରେ ଶୁଳ୍କ ଦେବାକୁ ପଡ଼େ ନାହିଁ ।
**Free trade**, *n.* ଅବାଧ ବାଣିଜ୍ୟ ।
**Free will**, *n.* ସ୍ୱେଚ୍ଛା, ସ୍ୱାଧୀନ ଆଚରଣ । [ ହେବା ।
**Freeze**, *v.* ଜମାଟ ବାନ୍ଧିବା, ଘନୀଭୂତ
**Freezing point**, *n.* ହିମାଙ୍କ, ଯେଉଁ ତାପରେ ଜଳ ଜମାଟ ବାନ୍ଧେ ତାହାର ପରିମାଣ ।
**Freight**, *n.* ପୋତଦ୍ରବ୍ୟ, ନୌକା-ଭଡ଼ା, ମାଲ୍ ନେବା ଭଡ଼ା ।
**Freighter**, *n.* ମାଲବାହୀ ଜାହାଜ ।
**French**, *n.* ଫ୍ରାନ୍ସ ଦେଶର ଅଧିବାସୀ, ଫରାସୀ ଭାଷା । [ ଆବେଶ, ବିହ୍ୱଳତା ।
**Frenzy**, *n.* ଉନ୍ମାଦ, ଚିତ୍ତବିଭ୍ରମ,
**Frequence, Frequency**, *n.* ପୌନଃପୁନ୍ୟ, ଅବିରାମ, ଅବିଚ୍ଛେଦ ।
**Frequent**, *a.* ନିତ୍ୟ, ଅନବରତ, ବାରମ୍ବାର; *v.* ବାରମ୍ବାର ଗମନାଗମନ କରିବା । [ ଗମନକାରୀ ।
**Frequenter**, *n.* ବାରମ୍ବାର ଗମନା-
**Frequently**, *ad.* ପୁନଃପୁନଃ, ବାରମ୍ବାର, ମୁହୁର୍ମୁହୁଃ । [ ଚିତ୍ର କରିବା ।
**Fresco**, *n.* ଭିତ୍ତିଚିତ୍ର; *v.* ଭିତ୍ତିରେ
**Fresh**, *a.* ନୂତନ, ସଦ୍ୟ, ଅମ୍ଳାନ, ତଟକା ।

**Freshen**, *v.* ସତେଜ କରିବା ।
**Freshly**, *ad.* ସଦ୍ୟ, ନୂଆହୋଇ ।
**Freshness**, *n.* ନୂତନତା, ଅମ୍ଳାନତା, ସଦ୍ୟ ଅବସ୍ଥା । [ ଶୋଚନା କରିବା ।
**Fret**, *v.* କ୍ଷୁବ୍ଧ ହେବା, ବିରକ୍ତ ହେବା,
**Fretful**, *a.* କ୍ଷୁବ୍ଧ, ବ୍ୟଥିତ, ସନ୍ତପ୍ତ, ବିରକ୍ତ । [ ବ୍ୟଥିତଭାବରେ ।
**Fretfully**, *ad.* ମନସ୍ତାପରେ,
**Fretting**, *a.* ବିରକ୍ତିକର; *n.* କୋପନସ୍ୱଭାବ । [ ଭିକ୍ଷୁ ।
**Friar**, *n.* ଯୋଗୀ, ସନ୍ନ୍ୟାସୀ, ତପସ୍ୱୀ,
**Friary**, *n.* ସନ୍ନ୍ୟାସୀଙ୍କ ମଠ, ଆଶ୍ରମ ।
**Friction**, *n.* ଘର୍ଷଣ, ସଂଘର୍ଷ ।
**Frictional**, *a.* ଘର୍ଷଣଜନିତ, ଘର୍ଷଣ-ସମ୍ବନ୍ଧୀୟ, ଘର୍ଷଣମୂଳକ ।
**Friday**, *n.* ଶୁକ୍ରବାର ।
**Fried**, *a.* ଭଜାଯାଇଥିବା ।
**Friend**, *n.* ବନ୍ଧୁ, ମିତ୍ର, ସଖା, ସୁହୃଦ୍ ।
**Friendliness**, *n.* ମିତ୍ରତା, ସ୍ନେହଶୀଳତା, ହିତକାମନା । [ଅନୁକୂଳ,ମିତ୍ରରୂପୀ ।
**Friendly**, *a.* ସଦୟ, ସ୍ନେହଶୀଳ,
**Friendship**, *n.* ବନ୍ଧୁତା, ସଖ୍ୟ, ମିତ୍ରତା, ସୌହାର୍ଦ୍ଦ୍ୟ ।
**Frigate**, *n.* ବୃହତ୍ ରଣପୋତ ।
**Fright**, *n.* ଭୟ, ଆତଙ୍କ, ତ୍ରାସ, ଉଦ୍‌ବେଗ, ହାସ୍ୟାସ୍ପଦ ମୂର୍ତ୍ତି
**Frighten**, *v.* ଭୟ ପ୍ରଦର୍ଶନ କରିବା ।
**Frightened**, *a.* ତ୍ରସ୍ତ, ଭୀତ, ଆତଙ୍କିତ, ଚକିତ । [ ଭୟଙ୍କର ।
**Frightful**, *a.* ବିକଟ, ଭୀଷଣ,
**Frightfully**, *ad.* ଭୀଷଣଭାବରେ ।
**Frigid**, *a.* ଶୀତଳ, ହିମମୟ, ଉତ୍ସାହଶୂନ୍ୟ । [ ଉତ୍ସାହଶୂନ୍ୟତା ।
**Frigidity**, *n.* ଶୈତ୍ୟ, ଜଡ଼ତା,
**Frigidly**, *ad.* ନିରୁତ୍ସାହଭାବରେ ।
**Frill**, *n.* ଲୁଗା ବା ପୋଷାକର ଝାଲର, କିନାରି; *v.* ଝାଲର ଲଗାଇବା ।
**Fringe**, *n.* ଧାର, ପ୍ରାନ୍ତ, ଦଶି ।
**Frisk**, *v.* ଆନନ୍ଦରେ ଡେଇଁବା, ନାଚିବା, କ୍ରୀଡ଼ା କରିବା; *n.* ଆନନ୍ଦଜନିତ ନୃତ୍ୟ । [ କ୍ରୀଡ଼ାଶୀଳ ।
**Frisky**, *a.* ଉଲ୍ଲସିତ, ଉତ୍ଫୁଲ୍ଲ,
**Frivolity**, *n.* ଲଘୁତା, ଚପଳତା, ନିରର୍ଥକ କର୍ମ । [ ଚପଳ, ତୁଚ୍ଛ ।
**Frivolous**, *a.* ଲଘୁ, ନିରର୍ଥକ,
**Frivolously**, *ad.* ଚପଳଭାବରେ ।
**Frock**, *n.* ବାଳକ ବା ନାରୀମାନଙ୍କର କୁର୍ତ୍ତା ।
**Frog**, *n.* ଭେକ, ବେଙ୍ଗ ।
**Frolic**, *n.* କୌତୁକ, କ୍ରୀଡ଼ା, ପରିହାସ; *v.* କ୍ରୀଡ଼ା କରିବା, କୌତୁକ କରିବା ।
**Frolicsome**, *a.* କ୍ରୀଡ଼ାଚପଳ, କୌତୁକପ୍ରିୟ ।
**From**, *pre.* ରୁ, ଠାରୁ ।

**Front**, *n.* ଲଲାଟ, ସମ୍ମୁଖ, ଭ୍ରମୂ, ଅଗ୍ରଭାଗ । [ ସମ୍ମୁଖ ଅଂଶ ।
**Frontage**, *n.* ଗୃହର ପୁରୋଭାଗ ବା
**Frontal**, *a.* ଲଲାଟିକ, ସମ୍ମୁଖସ୍ଥ ।
**Frontier**, *n.* ସୀମାନ୍ତ, ଉପାନ୍ତ ଦେଶ, ପ୍ରାନ୍ତ ପ୍ରଦେଶ । [ ପଟରେ ଥିବା ଚିତ୍ର ।
**Frontispiece**, *n.* ପୁସ୍ତକର ଆଦ୍ୟ
**Frontless**, *a.* ନିର୍ଲଜ୍ଜ, ଲଜ୍ଜାହୀନ ।
**Frost**, *n.* ହିମ, ନୀହାର, ତୁଷାର ।
**Frosty**, *a.* ହିମମୟ, ତୁଷାରପୂର୍ଣ୍ଣ, ତୁଷାରତୁଲ୍ୟ । [ *v.* ଫେନିଲ କରିବା ।
**Froth**, *n.* ଫେନ, ଅସାର କଥା;
**Frothy**, *a.* ଫେନିଲ, ଫେନମୟ, ଅନ୍ତଃଶୂନ୍ୟ, ନିଃସାର । [ ଅବାଧ୍ୟ ।
**Froward**, *a.* ନିର୍ଲଜ୍ଜ, ଅବିବେକୀ,
**Frown**, *n.* ଭ୍ରୂଭଙ୍ଗୀ, ଭ୍ରୂକୁଟୀ, ଭ୍ରୂକୁଞ୍ଚନ; *v.* ଭ୍ରୂକୁଞ୍ଚନ କରିବା ।
**Frowning**, *a.* ଭ୍ରୂକୁଟୀଯୁକ୍ତ ।
**Frowningly**, *ad.* ଭ୍ରୂକୁଟୀ-ସହକାରେ, ଭ୍ରୂଭଙ୍ଗୀପୂର୍ବକ ।
**Frozen**, *a.* ଜଡ଼ୀଭୂତ, ଶିଳୀଭୂତ ।
**Fructify**, *v.* ଫଳ ଧରିବା, ସଫଳ ହେବା, ଫଳୋତ୍ପାଦନ କରିବା ।
**Fructuous**, *a.* ଫଳପ୍ରଦ, ସଫଳ ।
**Frugal**, *a.* ମିତବ୍ୟୟୀ, ସ୍ୱଳ୍ପବ୍ୟୟୀ, ସଞ୍ଚୟଶୀଳ । [ ଶୀଳତା ।
**Frugality**, *n.* ମିତବ୍ୟୟିତା, ସଞ୍ଚୟ-
**Frugally**, *ad.* ସ୍ୱଳ୍ପବ୍ୟୟରେ ।
**Fruit**, *n.* ଫଳ, ଉତ୍ପନ୍ନି, ପରିଣାମ ।
**Fruiterer**, *n.* ଫଳବିକେତା ।
**Fruitful**, *a.* ସଫଳ, ଫଳପ୍ରଦ, ଲାଭଜନକ । [ ଉର୍ବରତା ।
**Fruitfulness**, *n.* ସଫଳତା,
**Fruition**, *n.* ଫଳଲାଭ, ସାଫଲ୍ୟ, ଉପଭୋଗ, ସମ୍ଭୋଗ ।
**Fruitless**, *a.* ବୃଥା, ନିଷ୍ଫଳ, ନିରର୍ଥକ ।
**Fruitlessly**, *ad.* ବୃଥା, ନିରର୍ଥକ-ଭାବରେ । [ ରଖିବା ସ୍ଥାନ ।
**Fruitloft**, *n.* ଫଳାଗାର, ଫଳ-
**Frustrate**, *v.* ବିଫଳ କରିବା, ବ୍ୟର୍ଥ କରିବା । [ ପ୍ରଯତ୍ନ, ପ୍ରତିହତ ।
**Frustrated**, *a.* ବିଫଳ, ବ୍ୟର୍ଥ-
**Frustration**, *n.* ବିଫଳତା, ବ୍ୟର୍ଥତା, ବ୍ୟାଘାତ । [ ମିଛା ।
**Fry**, *v.* ଭାଜିବା; *n.* ମାଛ ଜାଆଁଳର
**Frying pan**, *n.* କରେଇ, ତାୱା ।
**Fuel**, *n.* ଜାଳେଣି, ଇନ୍ଧନ ।
**Fugitive**, *a.* ପଳାୟନଶୀଳ, ପଳାୟିତ; *n.* ପଳାତକ ବ୍ୟକ୍ତି ।
**Fulcrum**, *n.* ଆଶ୍ରୟ, ଅବଲମ୍ବନ (*pl.* Fulcra, Fulcrums) ।
**Fulfil**, *v.* ସମ୍ପନ୍ନ କରିବା, ସମାପ୍ତ କରିବା । [ ପ୍ରାପ୍ତି, ସମାପ୍ତି ।
**Fulfilment**, *n.* ସଫଳତା, ପୂର୍ଣ୍ଣତା-
**Fulgency**, *n.* ଜ୍ୟୋତିଃ, ଆଭା ।

**Fulgent**, *a.* ଜ୍ୟୋତିଷ୍ମାନ୍ ।
**Full**, *a.* ସମ୍ପୂର୍ଣ୍ଣ, ସମଗ୍ର, ଅଖଣ୍ଡ, ଭର୍ତ୍ତି; *n.* ପୂର୍ଣ୍ଣ ପରିମାଣ ।
**Fullfledged**, *a.* ପୂର୍ଣ୍ଣାବୟବ, ପୂର୍ଣ୍ଣାଙ୍ଗ ।
**Fullmoon**, *n.* ପୂର୍ଣ୍ଣଚନ୍ଦ୍ର ।
**Fullness, Fulness**, *n.* ପୂର୍ଣ୍ଣତା ।
**Fullstop**, *n.* ପୂର୍ଣ୍ଣଚ୍ଛେଦ ।
**Fully**, *ad.* ସମ୍ପୂର୍ଣ୍ଣରୂପେ, ବିସ୍ତୃତ-[ଭାବରେ ।
**Fulminate**, *v.* ବଜ୍ରନିର୍ଘୋଷରେ କହିବା, ନିନ୍ଦା କରିବା, ବିସ୍ଫୋରଣ ହେବା ।
**Fulmination**, *n.* ଉଚ୍ଚଧ୍ୱନି, ବିସ୍ଫୋରଣ, ନିନ୍ଦାବାଦ ।
**Fulsome**, *a.* ଘୃଣ୍ୟ, ଗର୍ହିତ, କୁତ୍ସିତ ।
**Fumble**, *v.* ଅଣ୍ଡାଳି ହେବା, କୁତ୍ସିତ ଭାବରେ କାର୍ଯ୍ୟ କରିବା ।
**Fume**, *n.* ଧୂଆଁ, ବାଷ୍ପ, କ୍ରୋଧ; *v.* କ୍ରୋଧ ପ୍ରକାଶ କରିବା ।
**Fun**, *n.* ଉପହାସ, କୌତୁକ, ତମାସା ।
**Funambulist**, *n.* ରଜ୍ଜୁଉପରେ ନୃତ୍ୟକାରୀ ।
**Function**, *n.* କର୍ତ୍ତବ୍ୟକର୍ମ, ବ୍ୟବସାୟ, ଆଚରଣ, ଉତ୍ସବ; *v.* କାର୍ଯ୍ୟ କରିବା ।
**Functional**, *a.* କର୍ମସମ୍ବନ୍ଧୀୟ ।
**Functionary**, *n.* କର୍ମଚାରୀ, କାର୍ଯ୍ୟ-ନିର୍ବାହକ ।
**Fund**, *n.* ପାଣ୍ଠି, ପୁଞ୍ଜି, ମୂଳଧନ ।
**Fundament**, *n.* ଆଦ୍ୟ, ମୂଳ ।
**Fundamental**, *a.* ମୌଳିକ, ସାରଭୂତ, ପ୍ରଧାନ, ପ୍ରାଥମିକ ।
**Fundamentally**, *ad.* ମୂଳତଃ ।
**Fundamentals**, *n.* ମୂଳମନ୍ତ୍ର, ମୂଳକଥା, ସାର ।
**Funeral**, *n.* ଅନ୍ତ୍ୟେଷ୍ଟିକ୍ରିୟା, ଶବ-ସତ୍କାର; *a.* ଅନ୍ତ୍ୟେଷ୍ଟିକ୍ରିୟା ସମ୍ବନ୍ଧୀୟ ।
**Funereal**, *a.* ଶବସତ୍କାରର ଯୋଗ୍ୟ ।
**Fungous**, *a.* ଛତୁସଦୃଶ, ଛତୁଜାତୀୟ ।
**Fungus**, *n.* ଛତୁ ।
**Funnel**, *n.* ଚୁଙ୍ଗୀ, ନଳୀ, ଧୂମପଥ ।
**Funny**, *a.* ହାସ୍ୟକର, କୌତୁକପୂର୍ଣ୍ଣ ।
**Fur**, *n.* ରୋମ, ଲୋମ, ପଶୁର ଲୋମ ।
**Furious**, *a.* କ୍ରୋଧାନ୍ୱିତ, ପ୍ରବଳ, ଉଗ୍ର, ରୁଷ୍ଟ, କୋପାବିଷ୍ଟ ।
**Furiously**, *ad.* କ୍ରୁଦ୍ଧଭାବରେ, ପ୍ରଚଣ୍ଡଭାବରେ, ମହାବେଗରେ ।
**Furl**, *v.* ଗୁଡ଼ାଇବା, ମୋଡ଼ିବା, ବନ୍ଦହେବା ।
**Furlong**, *n.* ଏକ ମାଇଲର ଅଷ୍ଟମାଂଶ (୨୨୦ ଗଜ) ।
**Furlough**, *n.* ସାମୟିକ ଛୁଟି ।
**Furnace**, *n.* ଚୁଲ୍ଲୀ, ଅଗ୍ନିକୁଣ୍ଡ ।
**Furnish**, *v.* ଯୋଗାଇବା, ସଜ୍ଜିତ କରିବା ।
**Furnished**, *a.* ସଜ୍ଜୀକୃତ, ସମନ୍ୱିତ, [ସୋପକରଣ ।
**Furnisher**, *n.* ସରବରାହକାରୀ ।
**Furniture**, *n.* ଆସବାବ, ଗୃହସାମଗ୍ରୀ, ଉପକରଣ, ଗୃହସଜ୍ଜା ।

**Furrow**, *n.* ଲଙ୍ଗଳସିଆର, ଲଙ୍ଗଳଗାର; *v.* ହଳ କରିବା ।

**Furry**, *a.* ଲୋମଶ, ଲୋମଯୁକ୍ତ ।

**Further**, *a.* ଦୂରତର, ଦୂରସ୍ଥ, ଅଧିକ, ଅଧିକତର; *ad.* ଅଧିକନ୍ତୁ, ପୁନଶ୍ଚ, ଅଧିକ ଦୂରରେ; *v.* ସାହାଯ୍ୟ ଦେବା, ଉନ୍ନତ କରିବା । [ ସାହାଯ୍ୟ ।

**Furtherance**, *n.* ଅଭିବୃଦ୍ଧି, ଉନ୍ନତି,

**Furthermore**, *ad.* ଅଧିକନ୍ତୁ ।

**Furthest**, *a.* ଦୂରତମ, ସୁଦୂରବର୍ତ୍ତୀ; *ad.* ସୁଦୂରରେ । [ କପଟରେ ଗୁପ୍ତ ।

**Furtive**, *a.* ଗୁପ୍ତ, ଗୋପନରେ କୃତ,

**Fury**, *n.* କ୍ରୋଧ, ମତ୍ତତା, କୋପ, ଉଗ୍ରତା, ରୋଷ । [ ସଂଯୁକ୍ତ କରିବା ।

**Fuse**, *v.* ବିଗଳିତ ହେବା, ମିଶ୍ରିତ କରିବା,

**Fusible**, *a.* ଦ୍ରାବ୍ୟ, ଦ୍ରବଣୀୟ, ଦ୍ରବଣଶୀଳ ।

**Fusil**, *n.* ହାଲୁକା ବନ୍ଧୁକ ।

**Fusion**, *n.* ଦ୍ରାବଣ, ବିଲୟ, ଦ୍ରବ ଅବସ୍ଥା । [ ଧୂମଧାମ ।

**Fuss**, *n.* ଆଡ଼ମ୍ବର, କୋଲାହଳ,

**Fussy**, *a.* ଧୂମଧାମପୂର୍ଣ୍ଣ, ଛୋଟକଥାରେ ଗୋଳମାଳକାରୀ । [ ଅସାର ।

**Futile**, *a.* ନିରର୍ଥକ, ବ୍ୟର୍ଥ, ବିଫଳ,

**Futility**, *n.* ଅସାରତା, ବ୍ୟର୍ଥତା ।

**Future**, *n.* ଭବିଷ୍ୟତ୍, ଅନାଗତ କାଳ; *a.* ଭାବୀ, ଆଗାମୀ, ଉତ୍ତରକାଳୀନ ।

**Futurity**, *n.* ଭବିଷ୍ୟତ୍ କାଳ, ଉତ୍ତର କାଳ ।

**Fy, Fie**, *int.* ଛି ! ଧିକ୍ !

---

# G

**Gab**, *v.* ବକ୍‌ବକ୍ ହେବା, ବଢ଼େଇ କରିବା; *n.* ବୃଥାଗଳ୍ପ । [ ହେବା ।

**Gabble**, *v.* ବୃଥା ଗପିବା, ବକ୍‌ବକ୍

**Gabbler**, *n.* ଗପଡ଼ି ।

**Gabion**, *n.* ଶୀଘ୍ର ଦୁର୍ଗ ନିର୍ମାଣ ଉଦ୍ଦେଶ୍ୟରେ ବ୍ୟବହାର୍ଯ୍ୟ ମୃତ୍ତିକାପୂର୍ଣ୍ଣ ଟୋକେଇ । [ ହାତଅନ୍ଧ ।

**Gable**, *n.* ଘରର ତ୍ରିକୋଣାକାର

**Gablet**, *n.* ଛୋଟ ଶୃଙ୍ଗୁଆ ।

**Gad**, *n.* ଖୋଳିବାର ଯନ୍ତ୍ର, ସୂକ୍ଷ୍ମାଗ୍ର ଲୌହଦଣ୍ଡ; *v.* ବୃଥା ଭ୍ରମଣ କରିବା ।

**Gadder**, *n.* ବୃଥାଭ୍ରମଣକାରୀ ।

**Gadfly**, *n.* ଡାଉଁଶ, ଦଂଶକ ।

**Gag**, *v.* ମୁଖବନ୍ଧନ କରିବା; *n.* ମୁଖରୋଧ ।

**Gage**, *n.* ବନ୍ଧକ, ଜାମିନ୍, ପଣ; *v.* ବନ୍ଧକ ଦେବା । [ କରିବା ।

**Gaggle**, *v.* କଲରବ କରିବା, କୂଜନ

**Gaiety**, *n.* ପ୍ରଫୁଲ୍ଲତା, ଆମୋଦ, ହର୍ଷ ।

**Gaily**, *ad.* ହର୍ଷରେ, ଆନନ୍ଦରେ ।
**Gain**, *n.* ଲଭ, ପ୍ରାପ୍ତି, ଅର୍ଜନ; *v.* ଲଭ କରିବା, ଅର୍ଜିବା, ବୃଦ୍ଧି ପାଇବା ।
**Gainer**, *n.* ଯେ ଲଭ କରେ ।
**Gainful**, *a.* ଲଭଜନକ, ଫଳଦାୟକ ।
**Gainless**, *a.* ନିରର୍ଥକ, ଲଭହୀନ ।
**Gainsay**, *v.* ବିରୋଧ କରିବା, ପ୍ରତିବାଦ କରିବା, ଖଣ୍ଡନ କରିବା ।
**Gairish**, *a.* ଅତିଶୋଭନ, ରୂପଗର୍ବିତ ।
**Gairishness**, *n.* ରୂପଗର୍ବ, ଦମ୍ଭ ।
**Gait**, *n.* ଗତି, ଗମନ, ପାଦକ୍ଷେପ, ଚାଲିବା ଠାଣି ।
**Gaiters**, *n.* ପାଦର ପରିଚ୍ଛଦବିଶେଷ ।
**Gala**, *n.* ଉତ୍ସବ, ସମାରୋହ, ଆମୋଦ-ପ୍ରମୋଦ । [ ମାନଙ୍କର ସମାବେଶ ।
**Galaxy**, *n.* ଛାୟାପଥ, ବିଶିଷ୍ଟ ବ୍ୟକ୍ତି-
**Gale**, *n.* ବାତ୍ୟା, ଝଡ଼, ପ୍ରବଳ ପବନ ।
**Galipot**, *n.* ଝୁଣା ।
**Gall**, *n.* ବିଷ, ପିତ୍ତ, କଟୁରସ; *v.* କ୍ଳେଶ ଦେବା, ବିରକ୍ତ କରିବା ।
**Gallant**, *a.* ସାହସୀ, କାମୁକ, ନାରୀଜାତି ପ୍ରତି ସମ୍ମାନପ୍ରଦର୍ଶକ; *n.* ବୀର, ଶୂର, ରସିକ । [ ବୀରତ୍ୱ ସହକାରେ ।
**Gallantly**, *ad.* ସାହସପୂର୍ବକ,
**Gallantry**, *n.* ଶୌର୍ଯ୍ୟ, ବୀରତ୍ୱ, ରସିକତା, ନାରୀଜାତିପ୍ରତି ସୌଜନ୍ୟ ।
**Gall-bladder**, *n.* ପିତ୍ତାଶୟ, ପିତ୍ତକୋଷ ।
**Gallery**, *n.* ଉଚ୍ଚମଞ୍ଚ ଆସନଶ୍ରେଣୀ ।
**Galley**, *n.* ଆହୁଲଚାଳିତ ପୋତ ।
**Galling**, *a.* ପୀଡ଼ାଦାୟକ, ମର୍ମଭେଦୀ ।
**Gallipot**, *n.* ଔଷଧ ରଖିବାର ଡବା ।
**Gallon**, *n.* ତରଳ ଦ୍ରବ୍ୟର ପରିମାଣ-ବିଶେଷ (ପ୍ରାୟ ୪ ସେର) ।
**Gallop**, *v.* ଡେଇଁ ଡେଇଁ ଯିବା, ଦ୍ରୁତ ଗତିରେ ଯିବା; *n.* ଅଶ୍ୱର ଦ୍ରୁତଗମନ, ଧାବନ ।
**Gallows**, *n.* ଫାଶିକାଠ, ବଧସ୍ତମ୍ଭ ।
**Gallows-bird**, *n.* ଫାଶି ପାଇବାର ଉପଯୁକ୍ତ ବ୍ୟକ୍ତି ।
**Gall-stone**, *n.* ପିତ୍ତପଥୁରି ରୋଗ ।
**Galore**, *ad.* ପ୍ରଚୁର ପରିମାଣରେ; *n.* ପ୍ରାଚୁର୍ଯ୍ୟ । [ ସମ୍ବନ୍ଧୀୟ ।
**Galvanic**, *a.* ରସାୟନିକ ତଡ଼ିତ୍-
**Galvanise**, *v.* ରସାୟନିକ ତଡ଼ିତ୍-ଶକ୍ତି ପ୍ରୟୋଗ କରିବା ।
**Galvanism**, *n.* ରସାୟନିକ ଶକ୍ତି-ଦ୍ୱାରା ତଡ଼ିତ୍‌ଶକ୍ତି ଉତ୍ପାଦନ ବିଦ୍ୟା ।
**Gamble**, *v.* ଜୁଆ ଖେଳିବା, ପଣ ରଖି ଖେଳିବା; *n.* ଦ୍ୟୂତ, ଜୁଆଖେଳ ।
**Gambler**, *n.* ଜୁଆଖେଳାଳି, ଦ୍ୟୂତକାର । [ ଦ୍ୟୂତକ୍ରୀଡ଼ା ।
**Gambling**, *n.* ଜୁଆଖେଳ,
**Gambol**, *v.* କ୍ରୀଡ଼ା କରିବା, କୌତୁକ କରିବା, ନୃତ୍ୟ କରିବା; *n.* କ୍ରୀଡ଼ା, ଖେଳ, ନୃତ୍ୟ ।

**Game**, *n*. କ୍ରୀଡ଼ା, ଖେଳ, ବନ୍ୟଜୀବ, ମୃଗୟା, ଶିକାର, କୌଶଳ ।
**Gamesome**, *a*. କ୍ରୀଡ଼ାପ୍ରିୟ, ଉଲ୍ଲସିତ ।
**Gamut**, *n*. ସଙ୍ଗୀତର ସ୍ୱରଗ୍ରାମ ।
**Gander**, *n*. ରାଜହଂସ ।
**Gang**, *n*. ଦଳ, ସଙ୍ଘ, ସମ୍ପ୍ରଦାୟ ।
**Ganglion**, *n*. ଆବୁ, ଫୁଲା, ଗ୍ରନ୍ଥି ।
**Gangrene**, *n*. ପୂତିମାଂସ, ପଚନ, ନାଲିଘାଆ; *v*. ପଚିବା । [ ପଚନଶୀଳ ।
**Gangrenous**, *a*. କ୍ଷତଯୁକ୍ତ,
**Gangster**, *n*. ଅପରାଧୀଦଳର ସଭ୍ୟ ।
**Gangway**, *n*. ଆରୋହଣ ଓ ଅବରୋହଣ ପାଇଁ ପଥ ।
**Ganja**, *n*. ଗଞ୍ଜେଇ ।
**Gaol**, *n*. କାରାଗାର, ଜେଲଖାନା ।
**Gaoler**, *n*. କାରାଗାରର ଅଧ୍ୟକ୍ଷ ।
**Gap**, *n*. ଫାଙ୍କ, ଫାଟ, ଛିଦ୍ର, ଗର୍ତ୍ତ ।
**Gape**, *v*. ହାଇ ମାରିବା, ମୁହଁ ମେଲା କରିବା; *n*. ମୁଖବ୍ୟାଦାନ ।
**Gaping**, *a*. ମୁହଁ ମେଲା ହୋଇଥିବା ।
**Garage**, *n*. ମୋଟର ଆଦି ରଖିବା ଘର ।
**Garb**, *n*. ବେଶ, ପୋଷାକ, ପରିଧାନ; *v*. ପିନ୍ଧାଇବା, ସଜ୍ଜିତ କରିବା ।
**Garbage**, *n*. ଆବର୍ଜନା, ମଳ, ମଇଳା ।
**Garden**, *n*. ଉଦ୍ୟାନ, ଉପବନ, ବଗିଚା ।
**Gardener**, *n*. ଉଦ୍ୟାନରକ୍ଷକ, ମାଳୀ ।
**Gardening**, *n*. ଉଦ୍ୟାନକର୍ମ ।
**Garden party**, *n*. ଉଦ୍ୟାନଭୋଜି ।
**Gargle**, *v*. କୁଳି କରିବା, ଆଚମନ କରିବା; *n*. ଆଚମନ ।
**Garish**, *a*. ଆଡ଼ମ୍ବରପ୍ରିୟ ।
**Garishness**, *n*. ଆଡ଼ମ୍ବରପ୍ରିୟତା ।
**Garland**, *n*. ପୁଷ୍ପମାଳ୍ୟ, ହାର, ମାଳା; *v*. ମାଳା ପିନ୍ଧାଇବା ।
**Garlic**, *n*. ରସୁଣ ।
**Garlicky**, *a*. ରସୁଣସଦୃଶ ।
**Garment**, *n*. ବସ୍ତ୍ର, ପୋଷାକ, ପରିଧାନ, ବେଶ ।
**Garner**, *n*. ଶସ୍ୟାଗାର, ଧାନକୋଠି ।
**Garnet**, *n*. ରକ୍ତବର୍ଣ୍ଣର ମଣିବିଶେଷ ।
**Garnish**, *v*. ଭୂଷିତ କରିବା, ମଣ୍ଡନ କରିବା ।
**Garniture**, *n*. ସରଞ୍ଜାମ, ଆଭରଣ ।
**Garret**, *n*. ଚନ୍ଦ୍ରଶାଳା, କୋଠାର ଉପରେ ଥିବା ଘର ।
**Garrison**, *n*. ଦୁର୍ଗରକ୍ଷୀ ସୈନ୍ୟଦଳ, ରକ୍ଷୀବର୍ଗ; *v*. ଦୁର୍ଗରକ୍ଷା କରିବା, ରକ୍ଷୀମାନଙ୍କୁ ଅବସ୍ଥାପିତ କରିବା ।
**Garrulity**, *n*. ବାବଦୂକତା, ବାଚାଳତା, ପ୍ରଗଲ୍‌ଭତା ।
**Garrulous**, *a*. ବାବଦୂକ, ବାଚାଳ, ବହୁଭାଷୀ, ଗପଡ଼ି । [ ମୋଜାର ଫିତା ।
**Garter**, *n*. ପାଦାବରଣର ବନ୍ଧନ,
**Gas**, *n*. ବାୟବୀୟ ପଦାର୍ଥ, ଗ୍ୟାସ ।

**Gaseous**, *a.* ବାଷ୍ପୀୟ, ଗ୍ୟାସସଦୃଶ ।
**Gash**, *n.* ଗଭୀର କ୍ଷତ ।
**Gasolene, Gasoline**, *n.* ପେଟ୍ରୋଲଜାତ ଇନ୍ଧନବିଶେଷ । [ ଯନ୍ତ୍ର ।
**Gasometer**, *n.* ଗ୍ୟାସ ପରିମାପକ
**Gasp**, *v.* ଧକେଇ ହେବା, କଷ୍ଟରେ ଶ୍ୱାସ ନେବା; *n.* ଶ୍ୱାସକଷ୍ଟ । [ ସମ୍ବନ୍ଧୀୟ ।
**Gastric**, *a.* ଉଦର ବା ପାକାଶୟ
**Gastritis**, *n.* ପାକାଶୟର ପ୍ରଦାହ ।
**Gastronome**, *n.* ଔଦରିକ, କ୍ଷୁଧିମୂଖ, ପେଟୁ । [ ଖାଦ୍ୟବିଜ୍ଞାନ ।
**Gastronomy**,*n.*ଉଦାରପରିତୃପ୍ତତା,
**Gate**, *n.* ଫାଟକ, ବାହାର ଦ୍ୱାର ।
**Gatekeeper, Gateman**, *n.* ଦ୍ୱାରରକ୍ଷକ, ଦ୍ୱାରପାଳ ।
**Gateway**, *n.* ତୋରଣ, ଦ୍ୱାରପଥ ।
**Gather**, *v.* ସଂଗ୍ରହ କରିବା, ଏକତ୍ର କରିବା, ଅନୁମାନ କରିବା ।
**Gathering**, *n.* ଲୋକସମାବେଶ, ଜନସମାଗମ, ଜନତା ।
**Gaude**, *n.* ଅଳଙ୍କାର, ସୁନ୍ଦର ଦ୍ରବ୍ୟ ।
**Gaudy**, *a.* ଆଡ଼ମ୍ବରପୂର୍ଣ୍ଣ, ସୁଦୃଶ୍ୟ ।
**Gauge**, *n.* ମାନ, ପରିମାଣବିଶେଷ, ଆନୁମାନିକ ଧାରଣା; *v.* ମାପିବା, ଅନୁମାନରେ ସ୍ଥିର କରିବା, ଅଟକଳ କରିବା ।
**Gaunt**, *a.* କୃଶ, କ୍ଷୀଣ । [ ଦସ୍ତାନା ।
**Gauntlet**, *n.* ହସ୍ତତ୍ରାଣ, ଲୌହନିର୍ମିତ
**Gauze**, *n.* ଅତିସୂକ୍ଷ୍ମ ସ୍ୱଚ୍ଛ ବସ୍ତ୍ର ।
**Gay**, *a.* ଆନନ୍ଦିତ, ପ୍ରଫୁଲ୍ଲ, ଉଲ୍ଲସିତ ।
**Gayety**, *n.* ହର୍ଷ, ଆନନ୍ଦ ।
**Gayly**, *ad.* ହର୍ଷରେ, ଆନନ୍ଦରେ ।
**Gayness**, *n.* ଉଲ୍ଲାସ, ଆମୋଦ, ହର୍ଷ, ପ୍ରଫୁଲ୍ଲତା, ଆଡ଼ମ୍ବରପ୍ରିୟତା ।
**Gaze**, *v.* ନିରୀକ୍ଷଣ କରିବା, ସ୍ଥିରଦୃଷ୍ଟିରେ ଚାହିଁବା; *n.* ନିରୀକ୍ଷଣ, ଅବଲୋକନ, ସ୍ଥିରଦୃଷ୍ଟି ।
**Gazelle**, *n.* ମୃଗ, ହରିଣ ।
**Gazette**,*n.*ସରକାରୀ ଘୋଷଣା ପତ୍ରିକା, ଗେଜେଟ;*v.* ଗେଜେଟରେ ପ୍ରକାଶ କରିବା ।
**Gazetteer**,*n.*ଭୌଗୋଳିକ ବିବରଣ-ସଂଗ୍ରହ, ଗେଜେଟର ଲେଖକ ।
**Gear**, *n.* ଉପକରଣ, ଘୋଡ଼ାର ସାଜ, ଦାନ୍ତ ଥିବା ଚକ; ସଜ୍ଜିତ ସଂଯୋଗ; *v.* ସଜ୍ଜିତ କରିବା, ବେଗ ବଢ଼ାଇବା । [ ଅଠା ।
**Gelatin, Gelatine**, *n.* ସିରିସ
**Gelatinous**,*a.*ଅଠାଳିଆ, ସଂଲଗ୍ନଶୀଳ
**Gem**, *n.* ରତ୍ନ, ମଣି ।
**Gemini**, *n.* ମିଥୁନ ରାଶି ।
**Geminy**, *n.* ମିଥୁନ, ଯୁଗଳ, ଯୋଡ଼ି ।
**Gendarme**, *n.* ସାମରିକ ପୋଲିସ ।
**Gender**, *n.* ଲିଙ୍ଗ; *v.* ଜାତ କରିବା ।
**Genealogical**, *a.* ବଂଶାବଳୀ-ସମ୍ବନ୍ଧୀୟ । [ ବଂଶପରମ୍ପରା ।
**Genealogy**,*n.* ବଂଶାବଳୀ, ବଂଶକ୍ରମ,

General, *a.* ସାଧାରଣ, ପ୍ରଚଳିତ, ସର୍ବବ୍ୟାପୀ; *n.* ସେନାପତି, ସେନାନୀ ।
Generalise, Generalize, *v.* ଏକ ସାଧାରଣ ଶ୍ରେଣୀଭୁକ୍ତ କରିବା ।
Generality, *n.* ପ୍ରଧାନ ଭାଗ, ମୁଖ୍ୟ ଅଂଶ । [ ନିର୍ଦ୍ଦେଶକରଣ ।
Generalization, *n.* ଜାତି-
Generally, *ad.* ସାଧାରଣତଃ, ପ୍ରାୟଶଃ, ସଚରାଚର । [ ବ୍ୟାପକତା ।
Generalness, *n.* ସାଧାରଣତ୍ୱ,
Generate, *v.* ଉତ୍ପାଦନ କରିବା, ଜାତ କରିବା । [ ପୁରୁଷ ବା ପୀଢ଼ି ।
Generation, *n.* ଉତ୍ପାଦନ, ବଂଶ,
Generative, *a.* ଉତ୍ପାଦନଶୀଳ ।
Generator, *n.* ଜନ୍ମଦାତା, ତଡ଼ିତ୍-ଶକ୍ତିର ଉତ୍ପାଦକ ଯନ୍ତ୍ର ।
Generic, *a.* ଶ୍ରେଣୀସ୍ଥ, ଜାତୀୟ, ଜାତିଗତ, ସାଧାରଣ । [ ଉଦାରତା ।
Generosity, *n.* ବଦାନ୍ୟତା,
Generous, *a.* ବଦାନ୍ୟ, ଉଦାର, ଦାନଶୀଳ, ଉଦାରଚେତା ।
Generously, *ad.* ଉଦାରଭାବରେ ।
Genesis, *n.* ଉତ୍ପତ୍ତି, ସୃଷ୍ଟି, ଆଦି ।
Genial, *a.* ସୁଖପ୍ରଦ, ଆନନ୍ଦଦାୟକ, ପ୍ରସନ୍ନ, ରମଣୀୟ । [ ପ୍ରସନ୍ନତା ।
Geniality, *n.* ଆନନ୍ଦ, ପ୍ରଫୁଲ୍ଲତା,
Genie, *n.* ଭୂତ, ପିଶାଚ ।
Genital, *a.* ଜନନସମ୍ବନ୍ଧୀୟ, ପ୍ରସବ ବିଷୟକ । [ ଯୋନି ।
Genitals, *n.* ଜନନେନ୍ଦ୍ରିୟ, ଉପସ୍ଥ,
Genitor, *n.* ଜନକ, ଜନ୍ମଦାତା ।
Genius, *n.* ପ୍ରତିଭା, ଧୀଶକ୍ତି, ପ୍ରତିଭା-ଶାଳୀ ବ୍ୟକ୍ତି । [ (*pl.* Genii)
Genius, *n.* ପ୍ରେତ, ପିଶାଚ
Gent, *n.* ଭଦ୍ରଲୋକ ।
Genteel, *a.* ବିନୀତ, ସୁଶୀଳ, ଶିଷ୍ଟ, କୁଳୀନ । [ ଭଦ୍ରତା, ଆଭିଜାତ୍ୟ ।
Gentility, *n.* ବିନୟ, ସୌଜନ୍ୟ,
Gentle, *a.* ଭଦ୍ର, କୋମଳ, ଧୀର, ମୃଦୁ ।
Gentleman, *n.* ଭଦ୍ରବ୍ୟକ୍ତି, କୁଳୀନ ବ୍ୟକ୍ତି, ମହାନୁଭବ ପୁରୁଷ ।
Gentlemanlike, Gentlemanly, *a.* ଶିଷ୍ଟ, ଭଦ୍ରଜନୋଚିତ ।
Gentleness, *n.* ମୃଦୁତା, କୋମଳତା, ସୌକୁମାର୍ଯ୍ୟ । [ ଧୀରେଧୀରେ ।
Gently, *ad.* କୋମଳଭାବରେ,
Gentry, *n.* ଭଦ୍ରସମାଜ, ବିଶିଷ୍ଟ ଲୋକ-ସମୂହ । [ ଯଥାର୍ଥ ।
Genuine, *a.* ଅକୃତ୍ରିମ, ନିଷ୍କପଟ,
Genuinely, *ad.* ଯଥାର୍ଥତଃ, ପ୍ରକୃତରେ । [ ଯଥାର୍ଥତା, ଅକୃତ୍ରିମତା ।
Genuineness, *n.* ସତ୍ୟତା,
Genus, *n.* ଜାତି, ବର୍ଗ, ଶ୍ରେଣୀ (*pl.* Genera) ।

Geographer, *n.* ଭୂଗୋଲ-ବିଦ୍ୟାଭିଜ୍ଞ, ଭୂଗୋଲବେତ୍ତା ।

Geographic, Geographical, *a.* ଭୌଗୋଳିକ, ଭୂଗୋଲ-ବିଦ୍ୟାବିଷୟକ ।

Geography, *n.* ଭୂଗୋଲବିଦ୍ୟା ।

Geological, *a.* ଭୂତତ୍ତ୍ୱବିଷୟକ ।

Geologist, *n.* ଭୂତତ୍ତ୍ୱବିତ୍, ଭୂତତ୍ତ୍ୱଜ୍ଞ, ଭୂତାତ୍ତ୍ୱିକ ।

Geology, *n.* ଭୂତତ୍ତ୍ୱବିଦ୍ୟା ।

Geomancer, *n.* ଗଣକ, ଯେ ଗଣନା କରି ଭବିଷ୍ୟତ କଥା କହେ ।

Geomancy, *n.* ଗଣନା, ଖଡ଼ି-ପକାଇବା ବିଦ୍ୟା ।

Geometric, Geometrical, *a.* ଜ୍ୟାମିତିକ, ରେଖାଗଣିତବିଷୟକ ।

Geometrician, *n.* ଜ୍ୟାମିତିବେତ୍ତା, ରେଖାଗଣିତଜ୍ଞ ।

Geometry, *n.* ଜ୍ୟାମିତି, ରେଖା-ଗଣିତ ।

Geophysics, *n.* ଭୂ-ପଦାର୍ଥବିଦ୍ୟା ।

Geostatic, *a.* ଚତୁଷ୍ପାର୍ଶ୍ୱରୁ ପୃଥିବୀର ଚାପସହନକ୍ଷମ । [ ସ୍ଥିତିବିଜ୍ଞାନ ।

Geostatics, *n.* ଘନ ପଦାର୍ଥର

Geranium, *n.* ଏକ ଜାତୀୟ ଫୁଲ ।

Germ, *n.* କୀଟାଣୁ, ରୋଗଜୀବାଣୁ, ବୀଜର ଅଙ୍କୁର ।

Germicidal, *a.* କୀଟାଣୁବିନାଶକାରୀ ।

Germicide, *n.* କୀଟାଣୁନାଶକ ଦ୍ରବ୍ୟ ।

Germinal, *a.* ଜୀବାଣୁ ସମ୍ବନ୍ଧୀୟ, ଅଙ୍କୁର ସମ୍ବନ୍ଧୀୟ । [ ଗଜାହେବା ।

Germinate, *v.* ଅଙ୍କୁରିବା,

Germination, *n.* ଅଙ୍କୁରୋଦ୍‌ଗମ ।

Germinative, *a.* ଅଙ୍କୁରୋଦ୍‌ଗମ-ବିଷୟକ, ଉଦ୍ଭେଦକାରୀ ।

Gerund, *n.* କ୍ରିୟାରୁ ଗଠିତ ବିଶେଷ୍ୟ ।

Gestation, *n.* ଗର୍ଭଧାରଣ, ଗର୍ଭାବସ୍ଥା ।

Gesticulate, *v.* ଅଙ୍ଗଭଙ୍ଗୀ କରିବା, ସୂଚନା ଦେବା । [ ଚେଷ୍ଟା, ସୂଚନା ।

Gesticulation, *n.* ଅଙ୍ଗବିକ୍ଷେପ,

Gesture, *n.* ଚେଷ୍ଟା, ଇଙ୍ଗିତ, ଅଭିନୟ, ହାବ, ହସ୍ତାଦି ଚାଳନ ।

Get, *v.* ପାଇବା, ଲାଭ କରିବା, ଅର୍ଜିବା ।

Get away, *v.* ପଳାଇଯିବା, ଅପସୃତ ହେବା । [ ପହଞ୍ଚିଯିବା ।

Get back, *v.* ଫେରିପାଇବା,

Get down, *v.* ଅବତରଣ କରିବା, ଓହ୍ଲାଇବା ।

Get in, *v.* ପ୍ରବେଶ କରିବା ।

Get off, *v.* ନିର୍ଗତ ହେବା, ନିସ୍ତାର ପାଇବା । [ କରିବା ।

Get on, *v.* ପ୍ରବୃତ୍ତ ହେବା, ଉନ୍ନତି

Get out, *v.* ବାହାରି ଯିବା ।

**Get over, Get through,** *v.* ପାରହେବା, ଅତିକ୍ରମ କରିବା, ସମାପ୍ତ କରିବା, ନିସ୍ତାର ପାଇବା ।

**Get up,** *v.* ଉଠିବା, ନିଦ୍ରାତ୍ୟାଗ କରିବା ।

**Get-up,** *n.* ସାଜସଜ୍ଜା, ସ୍ଥୂଳ ଆକାର ।

**Gewgaw,** *n.* ଖେଳନା, ତୁଚ୍ଛ ଜିନିଷ ।

**Geyser,** *n.* ନିର୍ଝର, ସ୍ରୋତ ।

**Ghastliness,** *n.* ବୈବର୍ଣ୍ଣ୍ୟ, ବିକଟତା, ଭୀଷଣତା ।

**Ghastly,** *a.* ବିବର୍ଣ୍ଣ,ବିକଟ,ଶବତୁଲ୍ୟ ।

**Ghee,** *n.* ଘୃତ, ଘିଅ । [ ପିଶାଚ ।

**Ghost,** *n.* ଭୂତ, ପ୍ରେତ, ନିଶାଚର,

**Ghost-like,** *a.* ପ୍ରେତତୁଲ୍ୟ ।

**Ghostliness,** *n.* ପୈଶାଚିକତା ।

**Ghostly,** *a.* ପୈଶାଚିକ, ଭୌତିକ ।

**Giant,** *n.* ଦୈତ୍ୟ, ଦାନବ, ରାକ୍ଷସ, ଅସୁର । [ ଅସୁରୀ ।

**Giantess,** *n.* ରାକ୍ଷସୀ, ଦାନବୀ,

**Giantlike,** *a.* ବିରାଟ ଆକାରବିଶିଷ୍ଟ, ରାକ୍ଷସ ସଦୃଶ । [ ଏଣୁତେଣୁ ବକିବା ।

**Gibber,** *n.* ଅସ୍ପଷ୍ଟ କଥା, ପ୍ରଳାପ; *v.*

**Gibberish,** *a.* ଅବୋଧ, ଅର୍ଥହୀନ, ପ୍ରଳାପତୁଲ୍ୟ ।

**Gibbet,** *n.* ଫାଶିଖୁଣ୍ଟ; *v.* ଫାଶି-ପାଇଥିବା ଲୋକର ଶବକୁ ଖୁଣ୍ଟରେ ଝୁଲାଇବା । [ ବିଶେଷ ।

**Gibbon,** *n.* ଦୀର୍ଘବାହୁବିଶିଷ୍ଟ ବାନର-

**Gibbous,** *a.* ନ୍ୟୁବ୍ଜ, କୂର୍ମପୃଷ୍ଠାକାର ।

**Gibbosity,** *n.* କୁବ୍ଜତା ।

**Gibe,** *n.* ଥଟ୍ଟା, ବିଦ୍ରୂପ, ଉପହାସ; *v.* ଥଟ୍ଟା କରିବା ।

**Giddily,** *ad.* ମସ୍ତକଘୂର୍ଣ୍ଣନସହ ।

**Giddiness,** *n.* ଶିରୋଘୂର୍ଣ୍ଣନ, ମୂଣ୍ଡବୁଲା ରୋଗ । [ ଶିରୋଘୂର୍ଣ୍ଣନରୋଗଗ୍ରସ୍ତ ।

**Giddy,** *a.* ଅସ୍ଥିର, ବିଭ୍ରାନ୍ତ,

**Gift,** *n.* ଗୁଣ, ଦାନ, ଉପହାର, ଉପାୟନ; *v.* ଦାନ କରିବା । [ କ୍ଷମତାବିଶିଷ୍ଟ ।

**Gifted,** *a.* ପ୍ରତିଭାଶାଳୀ, ଗୁଣସମ୍ପନ୍ନ,

**Gig,** *n.* ଦୁଇଚକିଆ ଘୋଡ଼ାଗାଡ଼ି, କ୍ଷୁଦ୍ର ପୋତ । [ ବିରାଟକାୟ, ରାକ୍ଷସତୁଲ୍ୟ ।

**Gigantic,** *a.* ଅତିମାନୁଷ, ଅତିବିଶାଳ,

**Giggle,** *v.* ଦାନ୍ତ ଚିପି ହସିବା, ଥଟ୍ଟା କରିବା । [ ରଙ୍ଗ ଦେବା ।

**Gild,** *v.* ସ୍ୱର୍ଣ୍ଣରଞ୍ଜିତ କରିବା, ସୁନେଲି-

**Gilded, Gilt,** *a.* ସ୍ୱର୍ଣ୍ଣରଞ୍ଜିତ, ସ୍ୱର୍ଣ୍ଣଖଚିତ ।

**Gill,** *n.* ମତ୍ସ୍ୟଜାତୀୟ ଜୀବଙ୍କର ଫୁସ୍‌ଫୁସ୍, ଗାଲପି, ଫଙ୍କାର୍ଣ୍ଣ ପାର୍ଶ୍ୱସ୍ଥ ଝରଣା ।

**Gimlet,** *n.* ଫୋଡ଼ଣୀ, ଭଅଁର ।

**Gin,** *n.* ଏକ ପ୍ରକାର ମଦ୍ୟ, ଫାଶ, ବାଗୁରା, କପାରୁ ମଞ୍ଜି ବାହାର କରିବା ଯନ୍ତ୍ର ।

**Ginger,** *n.* ଆଦ୍ରକ, ଅଦା; *a.* ସାବଧାନ । [ ମଦ୍ୟ ।

**Ginger beer,** *n.* ଅଦାରୁ ପ୍ରସ୍ତୁତ

**Gingerbread**, *n*. ଅଦାମିଶ୍ରିତ ପିଷ୍ଟକ । [ ଭାବରେ ।

**Gingerly**, *ad*. ଧୀରେ, ସାବଧାନ

**Gingle**, *v*. ଠନ୍‌ଠନ୍ ଶବ୍ଦ କରିବା ।

**Gipsy, Gypsy**, *n*. ଯାଯାବର, ଭ୍ରମଣକାରୀ ଜାତି ।

**Giraffe**, *n*. ଚତ୍ରିତ ଶରୀରବିଶିଷ୍ଟ ଉଷ୍ଟ୍ରଜାତୀୟ ଜୀବ, ଜିରାଫ । [ ଦେବା ।

**Gird**, *v*. ପରିବେଷ୍ଟନ କରିବା, ବଳ

**Girder**, *n*. କଡ଼ିକାଠ, ଲୁହାକଡ଼ି ।

**Girdle**, *n*. ମେଖଳା, କଟିସୂତ୍ର, ବଳୟ, କମରବନ୍ଧ; *v*. ପରିବେଷ୍ଟନ କରିବା ।

**Girl**, *n*. କନ୍ୟା, ବାଳିକା, କୁମାରୀ, ପ୍ରେମିକା । [ କୁମାରୀତ୍ୱ ।

**Girlhood**, *n*. ବାଳିକା ଅବସ୍ଥା,

**Girlish**, *a*. ବାଳିକାସୁଲଭ ।

**Girlishness**, *n*. ବାଳିକାସୁଲଭ ଆଚରଣ ।

**Girt**, *a*. ପରିବେଷ୍ଟିତ, ବଳୟିତ ।

**Girth**, *n*. ପରିସର, ବେଧ, ପରିଧି ।

**Gist**, *n*. ସାରାଂଶ, ନିଷ୍କର୍ଷ, ଫଳିତାର୍ଥ, ଭାବ । [ କରିବା ।

**Give**, *v*. ଦେବା, ଦାନ କରିବା, ଉତ୍ସର୍ଗ

**Give away**, *v*. ଦାନ କରିବା, ବାଣ୍ଟି ଦେବା ।

**Give in**, *v*. ବଶୀଭୂତ ହେବା ।

**Give out**, *v*. ପ୍ରକାଶ କରିଦେବା ।

**Giver**, *n*. ଦାତା, ଦାନକର୍ତ୍ତା ।

**Give up**, *v*. ତ୍ୟାଗ କରିବା ।

**Give way**, *v*. ସ୍ୱୀକୃତ ହେବା, ପଛେଇବା । [ ତୁଷାରମୟ ।

**Glacial**, *a*. ତୁଷାରସମ୍ବନ୍ଧୀୟ,

**Glacier**, *n*. ହିମାନୀକ୍ଷେତ୍ର, ତୁଷାରସ୍ରୋତ ।

**Glad**, *a*. ଆନନ୍ଦିତ, ହୃଷ୍ଟ, ପ୍ରୀତ ।

**Gladden**, *v*. ଆନନ୍ଦିତ କରିବା ।

**Glade**, *n*. ବନପଥ, ତରୁଗହ୍ୱନ ମାର୍ଗ ।

**Gladiator**, *n*. ପ୍ରାଚୀନ ରୋମର ମଲ୍ଲ, ଅସିକ୍ରୀଡ଼ାକାରୀ ।

**Gladly**, *ad*. ଆନନ୍ଦରେ ।

**Gladness**, *n*. ଆନନ୍ଦ, ହର୍ଷ ।

**Gladsome**, *a*. ସନ୍ତୁଷ୍ଟ, ଆନନ୍ଦିତ ।

**Glamour**, *n*. ଆଡ଼ମ୍ବର, ଚିତ୍ତାକର୍ଷକ ସୌନ୍ଦର୍ଯ୍ୟ । [ ଦୃଷ୍ଟି ।

**Glance**, *n*. କଟାକ୍ଷ, ଦୃଷ୍ଟିପାତ, କ୍ଷଣିକ

**Gland**, *n*. ମାଂସପିଣ୍ଡ, ଗ୍ରନ୍ଥି, ଗିଲ୍‌ଟି ।

**Glandular**, *a*. ଗ୍ରନ୍ଥିଳ, ମାଂସପିଣ୍ଡ-ସମ୍ବନ୍ଧୀୟ ।

**Glandule**, *n*. କ୍ଷୁଦ୍ର ଗ୍ରନ୍ଥି ।

**Glare**, *v*. ଉଜ୍ଜ୍ୱଳ ହେବା, ଝଲସାଇ ଦେବା; *n*. ତେଜ, ଝଟକ । [ ଉଜ୍ଜ୍ୱଳ ।

**Glaring**, *a*. ଦେଦୀପ୍ୟମାନ, ସୁସ୍ପଷ୍ଟ,

**Glaringly**, *ad*. ସ୍ପଷ୍ଟଭାବରେ ।

**Glass**, *n*. କାଚ, ଗିଲାସ, ଦର୍ପଣ ।

**Glassware**, *n*. କାଚ ବାସନ ।

Glassy, *a.* କାଚପରି ସ୍ୱଚ୍ଛ, କାଚମୟ ।
Glaze, *v.* ସ୍ୱଚ୍ଛ କରିବା, ଚକ୍‌ଚକ୍ କରିବା, କାଚ ଖଞ୍ଜିବା; *n.* ସ୍ୱଚ୍ଛତା, ଶୁକଚକ୍ୟ ।
Glazier, *n.* ଯେ ଝରକା ଆଦିରେ [ କାଚ ଖଞ୍ଜେ ।
Gleam, *v.* ସ୍ଫୁରିବା, ଦୀପ୍ତ ହେବା; *n.* ତେଜ, ପ୍ରଭା, ରଶ୍ମି, ଉଜ୍ଜ୍ୱଳତା ।
Gleamy, *a.* ଚକଚକିଆ, ରଶ୍ମିବିଶିଷ୍ଟ ।
Glean, *v.* ଗୋଟେଇବା, ସଂଗ୍ରହ କରିବା ।
Gleaner, *n.* ସଂଗ୍ରହକାରୀ । [ ଉଲ୍ଲାସ ।
Glee, *n.* ଆହ୍ଲାଦ, ଆନନ୍ଦ, ହର୍ଷ,
Gleeful, *a.* ଆନନ୍ଦଦାୟକ, ଉଲ୍ଲସିତ, ହୃଷ୍ଟ, ଆହ୍ଲାଦିତ ।
Gleet, *n.* ମଧୁମେହ ରୋଗ, ପୂଯ ।
Glen, *n.* ଦରୀ, କନ୍ଦର, ଉପତ୍ୟକା ।
Glib, *a.* ବହୁଭାଷୀ, ବାବଦୂକ ।
Glibly, *ad.* ଚପଳଭାବରେ ।
Glibness, *n.* ବାକ୍‌ଚାପଲ୍ୟ, ବାବଦୂକତା ।
Glide, *v.* ଧୀରେ ବହିଯିବା, ବେଗରେ ଚାଲିଯିବା । [ ଦୃଷ୍ଟି ।
Glim, *n.* ମଳିନ ଜ୍ୟୋତି, ପାଣ୍ଡୁର
Glimmer, *n.* କ୍ଷୀଣ ଆଲୋକ, ମିଞ୍ଜି-ମିଞ୍ଜି ଆଲୁଅ; *v.* କ୍ଷୀଣଭାବରେ ଜଳିବା, ମିଞ୍ଜିମିଞ୍ଜି ଜଳିବା । *n.* [ କ୍ଷୀଣ ।
Glimmering, *a.* ଈଷତ୍ ଆଲୋକିତ,
Glimpse, *n.* କ୍ଷଣିକ ଦର୍ଶନ, ଈଷଦ୍ଦୃଷ୍ଟି, କ୍ଷୀଣ ଦୃଷ୍ଟିପାତ ।

Glisten, Glister, *v.* ଚକ୍‌ଚକ୍ କରିବା । [ କରୁଥିବା ।
Glistening, *a.* ମସୃଣ, ଚକ୍‌ଚକ୍
Glitter, *v.* ଦୀପ୍ତ ହେବା, ଝଟକିବା; *n.* ଦୀପ୍ତି, ତେଜ, ଜ୍ୟୋତି ।
Glittering, *a.* ଉଜ୍ଜ୍ୱଳ, ଦୀପ୍ତିମାନ୍ ।
Gloat, *v.* ଲୋଭାକୃଷ୍ଟ ହୋଇ ଚାହିଁବା ।
Globe, *n.* ଗୋଲାକାର ପଦାର୍ଥ, ପୃଥିବୀ, ଭୂଗୋଳକ । [ ଗୋଲାକାର ।
Globosity, *n.* ବର୍ତ୍ତୁଳାବସ୍ଥା,
Globular, *a.* ଗୋଲ, ଗୋଲାକାର-ବିଶିଷ୍ଟ, ମଣ୍ଡଳାକାର, ବର୍ତ୍ତୁଳ । [ ବଟିକା ।
Globule, *n.* କ୍ଷୁଦ୍ର ଗୋଳକ, ଗୋଲ,
Globulous, *a.* ବର୍ତ୍ତୁଳାକାରବିଶିଷ୍ଟ ।
Gloom, *n.* ଅନ୍ଧକାର, ତମିର, ବିଷାଦ ।
Gloomily, *a.* ବିଷଣ୍ଣଭାବରେ, ବିଷାଦରେ । [ ନିଷ୍ପ୍ରଭ, ମ୍ଳାନ ।
Gloomy, *a.* ତମସାବୃତ, ବିଷଣ୍ଣ,
Glorify, *v.* ପ୍ରଶଂସା କରିବା, ସ୍ତୁତିଗାନ କରିବା । [ ବିଖ୍ୟାତ, ଯଶସ୍ୱର, ତେଜସ୍ୱୀ ।
Glorious, *a.* ଗୌରବମୟ, କୀର୍ତ୍ତିମାନ୍
Gloriously, *ad.* ଉତ୍କୃଷ୍ଟରୂପେ, କୀର୍ତ୍ତି ସହକାରେ, ଉଜ୍ଜ୍ୱଳଭାବରେ ।
Glory, *n.* କୀର୍ତ୍ତି, ଯଶ, ଖ୍ୟାତି, ମହିମା ପ୍ରତାପ, ଗୌରବ; *v.* ଗର୍ବ କରିବା ।
Gloss, *n.* କାନ୍ତି, ମସୃଣତା, ଟୀକା ଭାଷ୍ୟ, ବ୍ୟାଖ୍ୟା; *v.* ବ୍ୟାଖ୍ୟା କରିବା ।

**Glossarist**, *n.* କୋଷଲେଖକ, ସଙ୍କଳୟିତା । [ ଅଭିଧାନ ।
**Glossary**, *n.* ଶବ୍ଦକୋଷ, ନିଘଣ୍ଟୁ,
**Glossiness**, *n.* ସ୍ନିଗ୍ଧତା, ମସୃଣତା ।
**Glossy**, *a.* ଚକ୍‌ଚକ, ସ୍ନିଗ୍ଧ, ମସୃଣ, ଆପାତମନୋହର । [ ବରଣ ।
**Glove**, *n.* ଦସ୍ତାନା, ହସ୍ତତ୍ରାଣ, ହସ୍ତା-
**Glover**, *n.* ଦସ୍ତାନାବ୍ୟବସାୟୀ ।
**Glow**, *n.* ଦୀପ୍ତି, ତେଜ, ଉତ୍ତାପ, ରକ୍ତିମା; *v.* ଦୀପ୍ତ ହେବା, ରକ୍ତିମ ହେବା ।
**Glowing**, *a.* ପ୍ରଦୀପ୍ତ, ଜ୍ୱଳନ୍ତ, ଉଜ୍ଜ୍ୱଳ, ଦେଦୀପ୍ୟମାନ । [ ଜୁଳିଆ ପୋକ ।
**Glow-worm**, *n.* ଖଦ୍ୟୋତ, ଜୁଳୁ-
**Glue**, *n.* ଶିରିଷ ଅଠା ।
**Gluey**, *a.* ଅଠାଳିଆ ।
**Glum**, *a.* ପ୍ରତିକୂଳ, ବାମ, ବିଷଣ୍ଣ ।
**Glut**, *v.* ଗ୍ରାସ କରିବା, ପେଟପୂରି ଗିଳିବା; *n.* ପ୍ରାଚୁର୍ଯ୍ୟ, ବାହୁଲ୍ୟ ।
**Glutinous**, *a.* ଅଠାଳିଆ, ସ୍ନିଗ୍ଧ ।
**Glutton**, *n.* ଔଦରିକ, କୁକ୍ଷିମ୍ଭରି, ପେଟୁ । [ ଭୋଜନ, ପେଟୁ ।
**Gluttonous**, *a.* ଅତ୍ୟାହାରୀ, ବହୁ-
**Gluttony**, *n.* ଔଦରିକତା, ଅତ୍ୟାହାର । [ ଗଣ୍ଠି ।
**Gnarl**, *v.* ଗର୍ଜନ କରିବା; *n.* କାଠର
**Gnarly**, *a.* ଗଣ୍ଠିଳ, ଗଣ୍ଠିମୟ ।
**Gnash**, *v.* ଦାନ୍ତ କଡ଼ମଡ଼ କରିବା, କ୍ରୋଧରେ ଦନ୍ତଘର୍ଷଣ କରିବା ।
**Gnat**, *n.* ମଶକ, ମଶା । [ କରିବା ।
**Gnaw**, *v.* କାମୁଡ଼ିବା, କାମୁଡ଼ି ଟିକଟିକ
**Gnome**, *n.* ଭୂତ, ପିଶାଚ ।
**Go**, *v.* ଯିବା, ଗ୍ଭଲିବା ।
**Goad**, *n.* ଅଙ୍କୁଶ, ପଶୁତାଡ଼ନ ଦଣ୍ଡ; *v.* ଉତ୍ସାହିତ କରିବା, ପ୍ରବର୍ତ୍ତାଇବା ।
**Goal**, *n.* ଲକ୍ଷ୍ୟ, ଉଦ୍ଦେଶ୍ୟ, ଅଭିପ୍ରାୟ, ଲକ୍ଷ୍ୟସ୍ଥଳ, ଶେଷସୀମା ।
**Goat**, *n.* ଅଜ, ଛାଗ, ଛେଳି ।
**Goatherd**, *n.* ଅଜାଜୀବ, ଛାଗପୋଷକ, ଛେଳିଜଗୁଆଳ । [ ଚଞ୍ଚଳ ଖାଇବା ।
**Gobble**, *v.* ଗିଳି ପକାଇବା, ଚଞ୍ଚଳ
**Gobbler**, *n.* ପେଟୁ, ଔଦରିକ, ଗିଳା ।
**Go-between**, *n.* ମଧ୍ୟସ୍ଥ, ପଞ୍ଚାୟତ ।
**Goblet**, *n.* ଚଷକ, ପାନପାତ୍ର ।
**Goblin**, *n.* ଭୂତ, ବେତାଳ, ପିଶାଚ, ଅପଦେବତା ।
**God**, *n.* ପରମେଶ୍ୱର, ଦେବତା ।
**God-child**, *n.* ଧର୍ମପୁଅ ବା ଧର୍ମଝିଅ ।
**Goddess**, *n.* ଦେବୀ, ସୁରାଙ୍ଗନା, ଠାକୁରାଣୀ ।
**God-father**, *n.* ଧର୍ମପିତା ।
**Godhead**, *n.* ଦେବତ୍ୱ, ଈଶ୍ୱରତ୍ୱ ।
**Godless**, *a.* ନାସ୍ତିକ, ନିରୀଶ୍ୱର ।
**Godlessness**, *n.* ନାସ୍ତିକତା, ନିରୀଶ୍ୱରତା ।
**Godlike**, *a.* ଈଶ୍ୱରତୁଲ୍ୟ, ଦେବୋପମ ।

Godliness, *n.* ଧାର୍ମିକତା, ଈଶ୍ୱରଭକ୍ତି, ପୁଣ୍ୟଶୀଳତା, ଧର୍ମପରାୟଣତା ।

Godly, *a.* ଧାର୍ମିକ, ଧର୍ମନିଷ୍ଠ, ପୁଣ୍ୟାତ୍ମା ।

God-mother, *n.* ଧର୍ମମାତା ।

Go down, *v.* ଅଧୋଗାମୀ ହେବା, ଧ୍ୱଂସପାଇବା, ଅସ୍ତ ହେବା ।

Godown, *n.* ଗୋଦାମ ଘର ।

Godsend, *n.* ଈଶ୍ୱରପ୍ରେରିତ ସୌଭାଗ୍ୟ ।

God-son, *n.* ଧର୍ମପୁତ୍ର ।

Godspeed, *n.* ଶୁଭେଚ୍ଛା ଜ୍ଞାପନ ।

Goer, *n.* ପଥିକ, ଯାଉଥିବା ଲୋକ ।

Goggle, *v.* ଆଖି ବୁଲେଇବା, ଟେରେଇ ଚାହିଁବା । [ ରକ୍ଷା କରିବା ଚଶମା ।

Goggles, *n.* ଖରା ଓ ଧୂଳିରୁ ଆଖିକୁ

Go in, *v.* ପ୍ରବେଶ କରିବା । [ ରୋଗ ।

Goiter, Goitre, *n.* ଗଳଗଣ୍ଡ

Gold, *n.* ସ୍ୱର୍ଣ୍ଣ, ସୁବର୍ଣ୍ଣ, ସୁନା ।

Golden, *a.* ସ୍ୱର୍ଣ୍ଣନିର୍ମିତ, ସ୍ୱର୍ଣ୍ଣାଭ, ଶ୍ରେଷ୍ଠ ।

Gold-dust, *n.* ସ୍ୱର୍ଣ୍ଣରେଣୁ ।

Goldsmith, *n.* ସ୍ୱର୍ଣ୍ଣକାର, ସୁନାରି ।

Golf, *n.* କ୍ରୀଡ଼ାବିଶେଷ ।

Gondola, *n.* କ୍ଷୁଦ୍ର ନୌକାବିଶେଷ ।

Gong, *n.* ଘଣ୍ଟ, ପିତ୍ତଳଘଣ୍ଟ । [ ରୋଗ ।

Gonorrhœa, *n.* ଶୁକ୍ରଦୋଷ, ମେହ

Good, *a.* ସାଧୁ, ସୁନ୍ଦର, ଉପକାରୀ, ସୁଶୀଳ, ନିର୍ଦ୍ଦୋଷ; *n.* ମଙ୍ଗଳ, କୁଶଳ, ଲାଭ ।

Good-bye, *int.* ବିଦାୟ, ନମସ୍କାର ।

Good-evening, *int.* (ଅପରାହ୍ଣ-କାଳୀନ) ନମସ୍କାର, ଅଭିବାଦନ, ସ୍ୱାଗତ-ସମ୍ଭାଷଣ । [ ଅକାମିକା ।

Good-for-nothing, *a.* ଅପଦାର୍ଥ,

Good Friday, *n.* ଯୀଶୁଖ୍ରୀଷ୍ଟଙ୍କ କ୍ରୁଶବିଦ୍ଧ ହେବା ଦିବସର ସ୍ମାରକ ଖ୍ରୀଷ୍ଟିଆନ ପର୍ବ ।

Goodly, *a.* ସୁନ୍ଦର, ସୁଦୃଶ୍ୟ, ସୁରୂପ ।

Good-morning, *int.* (ପୂର୍ବାହ୍ଣ-କାଳୀନ) ନମସ୍କାର, ସୁପ୍ରଭାତ, ସ୍ୱାଗତ-ସମ୍ଭାଷଣ । [ ସୁଶୀଳ ।

Good-natured, *a.* ସଚ୍ଚରିତ,

Goodness, *n.* ସୁଶୀଳତା, ଉତ୍ତମତା, ସୁଗୁଣ । [ ବିଭବ ।

Goods, *n.* ଦ୍ରବ୍ୟ, ପଦାର୍ଥସମୂହ, ସାମଗ୍ରୀ,

Good-will, *n.* ଶୁଭେଚ୍ଛା, ବ୍ୟବସାୟଗତ ସୁନାମ ।

Go off, *v.* ପ୍ରସ୍ଥାନ କରିବା, ଗୁଳିଫୁଟିବା ।

Go on, *v.* ପ୍ରବୃତ୍ତ ରହିବା, ଅଗ୍ରସର ହେବା, ଉଦ୍ୟମ କରିବା ।

Goose, *n.* ହଂସୀ, ରାଜହଂସୀ ।

Gooseberry, *n.* ବଦରୀସଦୃଶ ଫଳ-ବିଶେଷ । [ ବ୍ୟାପାର ।

Gordian-knot, *n.* ସଙ୍କଟ, ମୁସ୍କିଲ

Gore, *n.* ରକ୍ତ, ଶୋଣିତ, ରୁଧିର; *v.* ବିନ୍ଧିବା, ଭୁଷିବା, ବିଦୀର୍ଣ୍ଣ କରିବା ।

**Gorge**, *n.* ଦୁର୍ଗପଥ, ପର୍ବତସଙ୍କଟ, ଗିଳଗଦ୍ବର; *v.* ଶୀଘ୍ର ଶୀଘ୍ର ଗିଳିଦେବା ।

**Gorgeous**, *a.* ଅତିସୁନ୍ଦର, ତେଜସ୍ୱାନ୍, ଦୀପ୍ତିମନ୍ତ, ଉଜ୍ଜ୍ୱଳ । [ ସଜ୍ଜକାରେ ।

**Gorgeously**, *ad.* ଜାକ୍‌ଜମକ

**Gorgeousness**, *n.* ଉଜ୍ଜ୍ୱଳତା, ତେଜ, ସୌନ୍ଦର୍ଯ୍ୟ, ଚକଚକ୍ୟ । [ ମନୁଷ୍ୟ ।

**Gorilla**, *n.* ଗରିଲ, ଏକଜାତୀୟ ବନ-

**Gory**, *a.* ରକ୍ତାକ୍ତ, ରକ୍ତରଞ୍ଜିତ ।

**Gosling**, *n.* ହଂସଶାବକ, ହଂସର ଛୁଆ । [ ସୁସମାଚାର, ବାଇବେଲ ।

**Gospel**, *n.* ଖ୍ରୀଷ୍ଟୀୟ ଧର୍ମଶାସ୍ତ୍ରବିଶେଷ,

**Gossamer**, *n.* ବୁଢ଼ିଆଣୀଜାଲପରି ସୂକ୍ଷ୍ମ ବସ୍ତ୍ର ।

**Gossip**, *n.* ଗପଛ, ବାଚାଳ, ଜନରବ, ବୃଥାଗଳ୍ପ; *v.* ବୃଥାଗଳ୍ପ କରିବା ।

**Gothic**, *a.* ଅଶିଷ୍ଟ, ଅଭଦ୍ର, ଗଥନାମକ ଏକ ଜାତିବିଷୟକ । [ ଶେଷ କରିବା ।

**Go through**, *v.* ଅତିକ୍ରମ କରିବା,

**Gourd**, *n.* ଅଳାବୁ, ଲାଉ ।

**Gout**, *n.* ବାତରୋଗ, ଗଣ୍ଠିବାତ ।

**Gouty**, *a.* ବାତରୋଗଗ୍ରସ୍ତ ।

**Govern**, *v.* ଶାସନ କରିବା, ପ୍ରଭୁତ୍ୱ କରିବା ।

**Governable**, *a.* ଶାସନୀୟ ।

**Governance**, *n.* ଶାସନକାର୍ଯ୍ୟ, ରାଜତ୍ୱ । [ ଶିକ୍ଷୟିତ୍ରୀ ।

**Governess**, *n.* ଶିକ୍ଷୟିତ୍ରୀ, ଗୃହ-

**Government**, *n.* ଶାସନ-ପରିଚାଳନା, ପ୍ରଭୁତ୍ୱ, ଶାସକବର୍ଗ ।

**Governmental**, *a.* ଶାସନ-ବିଷୟକ, ଶାସନଗତ । [ ପାଳ ।

**Governor**, *n.* ଶାସନକର୍ତ୍ତା, ରାଜ୍ୟ-

**Governorship**, *n.* ଶାସନକର୍ତ୍ତା ବା ରାଜ୍ୟପାଳ ପଦ ।

**Gown**, *n.* ସ୍ତ୍ରୀମାନଙ୍କ ପରିଧେୟ-ବିଶେଷ, ଜଜ୍, ଓକିଲ ପ୍ରଭୃତିଙ୍କର ଢିଲା ଅଙ୍ଗରଖା । [ ମୁଠେଇଧରିବା ।

**Grab**, *v.* ହଠାତ୍ ଧରିପକାଇବା,

**Grabble**, *v.* ଅଣ୍ଡାଳିବା ।

**Grace**, *v.* ଅନୁଗୃହୀତ କରିବା, ଭୂଷିତ କରିବା; *n.* କୃପା, କରୁଣା, ସୌନ୍ଦର୍ଯ୍ୟ ।

**Graceful**, *a.* ସୁନ୍ଦର, ଚାରୁ, ଲଳିତ ।

**Gracefully**, *ad.* ସୁନ୍ଦରଭାବରେ, ସୁଚାରୁରୂପେ ।

**Graceless**, *a.* ଶ୍ରୀହୀନ, ଅସୁନ୍ଦର, ନିର୍ଲଜ୍ଜ । [ ସଦୟ ।

**Gracious**, *a.* ଦୟାଳୁ, କୃପାଳୁ,

**Graciously**, *ad.* ଦୟାପୂର୍ବକ ।

**Gradation**, *n.* ଆନୁପୂର୍ବିକତା, ପର୍ଯ୍ୟାୟ, କ୍ରମ, ଶ୍ରେଣୀବିନ୍ୟାସ ।

**Grade**, *n.* ଶ୍ରେଣୀ, ବର୍ଗ, ଅବସ୍ଥା ।

**Gradual**, *a.* ଶ୍ରେଣୀବଦ୍ଧ, ଅନୁପୂର୍ବ, କ୍ରମିକ । [ କ୍ରମରେ ।

**Gradually**, *ad.* କ୍ରମଶଃ, ଯଥା-

**Graduate**, *v.* ସମଭାଗରେ ଚିହ୍ନିତ କରିବା, ବିଶ୍ୱବିଦ୍ୟାଳୟର ଉପାଧି ପାଇବା; *n.* ବିଶ୍ୱବିଦ୍ୟାଳୟର ଉପାଧିପ୍ରାପ୍ତ ବ୍ୟକ୍ତି ।

**Graduation**, *n.* କ୍ରମିକ ଚିହ୍ନାଙ୍କନ, ବିଶ୍ୱବିଦ୍ୟାଳୟର ଉପାଧିପ୍ରାପ୍ତି ।

**Graff, Graft**, *v.* ଗଛର କଲମି କରିବା; *n.* କଲମି ଗଛ ।

**Grain**, *n.* ଶସ୍ୟ, ଧାନ ପ୍ରଭୃତି, ଶସ୍ୟକଣିକା, କଣିକା, ଓଜନ ପରିମାଣବିଶେଷ । [ ଶସ୍ୟମୟ ।

**Grainy**, *a.* କଣିକାମୟ, ଦାନାବିଶିଷ୍ଟ,

**Gram**, *n.* ବୁଟ, ଚଣା, କୋଳଥ, ଓଜନ ପରିମାଣବିଶେଷ (ଏକ କିଲୋଗ୍ରାମର ସହସ୍ରାଂଶ) । [ ତୃଣତୁଲ୍ୟ ।

**Gramineous**, *a.* ତୃଣମୟ,

**Graminivorous**, *a.* ତୃଣଭୋଜୀ, ତୃଣାହାରୀ ।

**Grammar**, *n.* ବ୍ୟାକରଣ ।

**Grammarian**, *n.* ବୈୟାକରଣ, ବ୍ୟାକରଣବେତ୍ତା ।

**Grammatic, Grammatical**, *a.* ବ୍ୟାକରଣଗତ, ବ୍ୟାକରଣସିଦ୍ଧ ।

**Grammatically**, *ad.* ବ୍ୟାକରଣର ସୂତ୍ରାନୁସାରେ ।

**Gramme**, *n.* ଓଜନ ପରିମାଣବିଶେଷ (ଏକ କିଲୋଗ୍ରାମର ସହସ୍ରାଂଶ) ।

**Gramophone**, *n.* କଳଗାଉଣା, ଗ୍ରାମୋଫୋନ ।

**Granary**, *n.* ଧାନକୋଠି, ଶସ୍ୟାଗାର । [ ମୁଖ୍ୟ ।

**Grand**, *a.* ବୃହତ୍, ମହାନ୍, ଉତ୍ତମ,

**Grandma, Grandam**, *n.* ଆଈମାଆ, ଆଈବୁଢ଼ୀ, ବୁଢ଼ୀମାଆ ।

**Grand-aunt**, *n.* ପିତାଙ୍କର ବା ମାତାଙ୍କର ମାଉସୀ ବା ପିଉସୀ ।

**Grandchild**, *n.* ପୌତ୍ର ବା ପୌତ୍ରୀ, ନାତି ବା ନାତୁଣୀ ।

**Grand-daughter**, *n.* ପୌତ୍ରୀ, ପୁଅର ଝିଅ, ଦୌହିତ୍ରୀ, ଝିଅର ଝିଅ, ନାତୁଣୀ । [ ଲୋକ ।

**Grandee**, *n.* କୁଳୀନ ବ୍ୟକ୍ତି, ବିଶିଷ୍ଟ

**Grandeur**, *n.* ମହିମା, ଉତ୍କର୍ଷ, ପ୍ରାଧାନ୍ୟ, ଶ୍ରେଷ୍ଠତା, ବିଭବ, ଆଡ଼ମ୍ବର, ସମାରୋହ । [ ମାତାମହ, ଅଜା ।

**Grand-father**, *n.* ପିତାମହ,

**Grandiloquence**, *n.* ଅତିଶୟୋକ୍ତି, ସାଳଙ୍କାର ବାକ୍ୟ, ବାଗାଡ଼ମ୍ବର ।

**Grandiloquent**, *a.* ଆଳଙ୍କାରିକ, ଶବ୍ଦାଡ଼ମ୍ବରପୂର୍ଣ୍ଣ । [ ପୂର୍ଣ୍ଣ ।

**Grandiose**, *a.* ଚମତ୍କାର, ଶବ୍ଦାଡ଼ମ୍ବର-

**Grand-mother**, *n.* ପିତାମହୀ, ମାତାମହୀ, ଆଈ । [ ଭାଇଙ୍କ ନାତି ।

**Grand-nephew**, *n.* ଭ୍ରାତୃପୌତ୍ର,

**Grandsire**, *n.* ପିତାମହ, ମାତାମହ, ଅଜା ।

**Grandson,** *n.* ନପ୍ତା, ପୌତ୍ର, ଦୌହିତ୍ର, ନାତି, ପୁଅ ବା ଝିଅର ପୁଅ ।

**Grand total,** *n.* ସର୍ବମୋଟ, ଗାଏ ମୋଟ ।

**Granite,** *n.* ଆଗ୍ନେୟ ସ୍ଫଟିକ ପ୍ରସ୍ତର ।

**Granivorous,** *a.* ଶସ୍ୟଭୋଜୀ, ଶସ୍ୟଖାଦୀ ।

**Granny,** *n.* ଆଈମାଆ ।

**Grant,** *v.* ଦେବା, ମଞ୍ଜୁର କରିବା, ସ୍ୱୀକାର କରିବା, ଅନୁମୋଦନ କରିବା; *n.* ଦାନ, ଉତ୍ସର୍ଗ, ଦତ୍ତ ବସ୍ତୁ, ଦାନପତ୍ର ।

**Grantee,** *n.* ଦାନଗ୍ରହୀତା, ଦାନଭୋଗୀ । [ ମଞ୍ଜୁରକର୍ତ୍ତା ।

**Granter, Grantor,** *n.* ଦାତା,

**Granular,** *a.* ଶସ୍ୟାକାର, ଦାନାବିଶିଷ୍ଟ । [ ଦାନା ବାନ୍ଧିବା ।

**Granulate,** *v.* ଘନ କରିବା,

**Granulation,** *n.* ଦାନାରେ ପରିଣତ, ଦାନାର ଆକାର ଧାରଣ ।

**Granule,** *n.* କଣିକା, ଦାନା ।

**Granulous,** *a.* ଦାନାବିଶିଷ୍ଟ, ଅଣୁମୟ, କଣିକାମୟ ।

**Grape,** *n.* ଦ୍ରାକ୍ଷା, ଅଙ୍ଗୁର ।

**Grapery,** *n.* ଦ୍ରାକ୍ଷାବଗିଚ୍ଚ ।

**Graph,** *n.* ଗାଣିତିକ ବିଷୟର ରେଖାଚିତ୍ରଦ୍ୱାରା ଉପସ୍ଥାପନ, ଏ ପ୍ରକାର ରେଖାଚିତ୍ର । [ ସୁନିର୍ଦ୍ଦିଷ୍ଟ ।

**Graphic, Graphical,** *a.* ସୁସ୍ପଷ୍ଟ,

**Graphite,** *n.* କୃଷ୍ଣସୀସକ, ଏକ ପ୍ରକାର ସୀସା, ଖନିଜଦ୍ରବ୍ୟବିଶେଷ ।

**Grapple,** *v.* ଧରାଧରି ହେବା, ବନ୍ଧନ କରିବା, ଯୁଦ୍ଧ କରିବା; *n.* ବାହୁଯୁଦ୍ଧ, ମଲ୍ଲଯୁଦ୍ଧ ।

**Grasp,** *v.* ମୁଠେଇ ଧରିବା, ଅବଲମ୍ବନ କରିବା, ଗ୍ରହଣ କରିବା, ଆକ୍ରମଣ କରିବା ।

**Grass,** *n.* ତୃଣ, ଘାସ । [ ବିଶେଷ ।

**Grasshopper** *n.* ଝିଣ୍ଟିକା, ପତଙ୍ଗ-

**Grassland,** *n.* ତୃଣାଚ୍ଛନ୍ନ ପ୍ରାନ୍ତର ।

**Grassy,** *a.* ତୃଣାଚ୍ଛାଦିତ, ତୃଣମୟ, ଘାସପୂର୍ଣ୍ଣ । [ କରିବା, ପୀଡ଼ା ଦେବା ।

**Grate,** *n.* ଚୁଲି, ଲୁହାଜାଲି; *v.* ଘର୍ଷଣ

**Grateful,** *a.* କୃତଜ୍ଞ, ଉପକାରଜ୍ଞ ।

**Gratefully,** *ad.* କୃତଜ୍ଞତା ସହକାରେ ।

**Gratefulness,** *n.* କୃତଜ୍ଞତା ।

**Gratification,** *n.* ସନ୍ତୋଷ, ତୃପ୍ତି, ଆନନ୍ଦ ।

**Gratify,** *v.* ତୁଷ୍ଟ କରିବା, ପ୍ରୀତ କରିବା, ଆହ୍ଲାଦ ଦେବା ।

**Grating,** *a.* ରୁକ୍ଷ, କର୍କଶ, କଟୁ ।

**Gratis,** *a.* ବିନାମୂଲ୍ୟ, ମାଗଣା; *ad.* ମାଗଣାରେ, ବିନାମୂଲ୍ୟରେ ।

**Gratitude,** *n.* କୃତଜ୍ଞତା, ଉପକାରସ୍ମରଣ । [ ମୂଲ୍ୟରେ ଦତ୍ତ, ସ୍ୱେଚ୍ଛାମୂଳକ ।

**Gratuitous,** *a.* ଅଯାଚିତ, ବିନା-

**Gratuitously**, *ad.* ବିନାମୂଲ୍ୟରେ, ଅଯାଚିତଭାବରେ । [ ଭତ୍ତା ।
**Gratuity**, *n.* ପୁରସ୍କାର, ଉପାୟନ,
**Grave**, *a.* ଗମ୍ଭୀର, ଗୁରୁ, ମନ୍ଦ; *n.* କବର, ଶ୍ମଶାନ, ସମାଧି ।
**Gravel**, *n.* ଗୋଡ଼, କଙ୍କର ।
**Gravely**, *ad.* ଗମ୍ଭୀରଭାବରେ ।
**Graveness**, *n.* ଗାମ୍ଭୀର୍ଯ୍ୟ, ମହତ୍ତ୍ୱ, ଗୌରବ । [ ଶ୍ମଶାନ ।
**Graveyard**, *n.* କବରଖାନା,
**Gravitate**, *v.* ଆକୃଷ୍ଟ ହେବା, ଅଧୋଗମନ କରିବା, ପଡ଼ିବା ।
**Gravitation**, *n.* ମାଧ୍ୟାକର୍ଷଣ, ଅଧଃପତନଶୀଳତା ।
**Gravity**, *n.* ଗୁରୁତ୍ୱ, ଗାମ୍ଭୀର୍ଯ୍ୟ, ଭାର, ଆକର୍ଷଣଶକ୍ତି । [ ଜୁସ ।
**Gravy**, *n.* ମାଂସର ସାର, ମାଂସର
**Gray, Grey**, *a.* ଧୂସର, ପାଂଶୁ; *n.* ଧୂସର ବର୍ଣ୍ଣ ।
**Grayish**, *a.* ଈଷତ୍ ଧୂସର ।
**Grayness**, *n.* ଧୂସରତା । [ କରିବା ।
**Graze**, *v.* ଘାସ ଚରିବା, ତୃଣଭୋଜନ
**Grazer**, *n.* ତୃଣଭୋଜୀ ଜୀବ ।
**Grazier**, *n.* ଗାଈଆଳ, ଗୋପାଳ ।
**Grazing**, *n.* ତୃଣଭୋଜନ ।
**Grease**, *n.* ବସା, ମେଦ, ଚର୍ବି; *v.* ଚର୍ବି ବୋଳିବା ।
**Greasiness**, *n.* ମସୃଣତା, ତୈଳାକ୍ତତା ।
**Greasy**, *a.* ଚକ୍‌ଚକ୍, ସ୍ନିଗ୍ଧ, ଚର୍ବି-ଯୁକ୍ତ, ଚର୍ବିଲିପ୍ତ । [ ଶ୍ରେଷ୍ଠ, ପ୍ରସିଦ୍ଧ ।
**Great**, *a.* ମହାନ୍, ବୃହତ୍, ବିରାଟ,
**Great-grandfather**, *n.* ଅଣଅଜା, ପିତାମହଙ୍କର ପିତା ।
**Great-grandson**, *n.* ଅଣନାତି ।
**Greatly**, *ad.* ବହୁପରିମାଣରେ, ବିଶେଷଭାବରେ । [ ଗୌରବ, ବିଶାଳତା ।
**Greatness**, *n.* ଉତ୍କର୍ଷ, ମହତ୍ତ୍ୱ,
**Greed**, *n.* ଲୋଭ, ଲୋଲୁପତା, ଅପରିତୋଷ ।
**Greedily**, *ad.* ଅତିଲୋଭପୂର୍ବକ ।
**Greediness**, *n.* ଲୋଭପରତା, କୃପଣତା, ଔଦରିକତା ।
**Greedy**, *a.* ଲୋଭୀ, କୃପଣ, ଅର୍ଥଗୃଧ୍ନୁ ।
**Greek**, *n.* ଗ୍ରୀସ ଦେଶର ଲୋକ, ଗ୍ରୀକ୍ ଭାଷା । [ *n.* ତୃଣାଚ୍ଛାଦିତ ଭୂମି ।
**Green**, *a.* ସବୁଜ, ହରିତ୍, ଅପକ୍ୱ;
**Green-hand**, *n.* ଶିକ୍ଷାନବିସ, ନୂତନଶିକ୍ଷାର୍ଥୀ ।
**Green-house**, *n.* ଉଦ୍ଭିଦରକ୍ଷଣାଗାର, ବୃକ୍ଷଗଛ ରଖିବା ଘର ।
**Greenish**, *a.* ଈଷତ୍‌ହରିତ୍, କଳିତ୍ ସବୁଜ ।

Green-room, *n.* ନେପଥ୍ୟ ଗୃହ, ଅଭିନେତାମାନଙ୍କ ସାଜସଜ୍ଜା ପାଇଁ ଘର ।

Greens, *n.* ଶାକସବଜି, ପନପରିବା ।

Greet, *v.* ଅଭିନନ୍ଦନ କରିବା, ଅର୍ଚ୍ଚନା କରିବା । [ ବାଦନ, ଶୁଭେଚ୍ଛାଜ୍ଞାପନ ।

Greeting, *n.* ଅଭିନନ୍ଦନ, ଅଭି-

Gregarian, *a.* ଦଳ ସମ୍ବନ୍ଧୀୟ ।

Gregarious, *a.* ଦଳପ୍ରିୟ, ଯୂଥଗୃଖ୍ନ ।

Grenade, *n.* ଗୋଲା, ଏକପ୍ରକାର ଗୁଳି, ବାରୁଦର ଥଳି । [ ସୈନ୍ୟ ।

Grenadier, *n.* ଦୀର୍ଘକାୟ ପଦାତିକ

Greyhaired, *a.* ପଳିତକେଶ, ବୃଦ୍ଧ ।

Greyhound, *n.* ଏକପ୍ରକାର ଶିକାରି କୁକ୍କୁର । [ କ୍ଳେଶ ।

Grief, *n.* ବିଷାଦ, ଦୁଃଖ, ଖେଦ,

Grievance, *n.* ଅଭିଯୋଗ, ଦୁଃଖ ବା କ୍ଳେଶର ହେତୁ ।

Grieve, *v.* ଦୁଃଖ କରିବା, ବ୍ୟଥା ଦେବା, ଶୋଚନା କରିବା ।

Grieved, *a.* ଦୁଃଖିତ, ଶୋକାର୍ତ୍ତ ।

Grievous, *a.* ବିଷାଦଜନକ, ଦାରୁଣ, ଦୁଃଖକର ।

Grievously, *ad.* ଦାରୁଣଭାବରେ ।

Grim, *a.* ଭୀଷଣ,ଦାରୁଣ, ବିକଟାକାର ।

Grimace, *n.* ବିକୃତ ମୁଖଭଙ୍ଗୀ, ମୁଖବିକାର; *v.* ମୁଖବିକୃତ କରିବା ।

Grimness, *n.* ଭୀଷଣତା, ମୁଖର ବିକୃତି ।

Grin, *v.* ଦାନ୍ତ ଦେଖାଇବା, ବିକୃତ ମୁଖରେ ହସିବା, ଖଡେଇହେବା; *n.* ବିକୃତ ହାସ୍ୟ । [ ଦେବା ।

Grind, *v.* ପେଷିବା, ଚୂରିବା, ଶାଣ

Grinder, *n.* ପେଷଣା, ପେଷଣଯନ୍ତ୍ର, କଳଦାନ୍ତ । [ ଶାଣପଥର ।

Grindstone, *n.* ପେଷଣାଚକ,

Grip, *n.* ମୁଷ୍ଟି, ମୁଠା, ଦୃଢ଼ରୂପେ ଧାରଣ; *v.* ଦୃଢ଼ଭାବରେ ଧରିବା ।

Gripe, *v.* ଦୃଢ଼ରୂପେ ଧରିବା, ଉଦରରେ ବେଦନା ହେବା ।

Griping, *a.* ଅତିଶୟ ଯନ୍ତ୍ରଣାଦାୟକ ।

Grips, *n.* ଉଦରବେଦନା, ପେଟ-କାମୁଡ଼ା । [ ଭୟାନକ ।

Grisly, *a.* ବିକଟାକାର, କରାଳ,

Grist, *n.* ଗହମଚୂନା, ମଇଦା, ଅଟା ।

Grit, *n.* ମୋଟା ବାଲି, କଙ୍କର, ମାନସିକ ଦୃଢ଼ତା ।

Gritty, *a.* କଙ୍କରମୟ । [ ରଙ୍ଗ ।

Grizzle, *n.* ଧୂସରବର୍ଣ୍ଣ, ପାଉଁଶିଆ

Grizzly, *a.* ଧୂସର, ପାଉଁଶିଆ ।

Groan, *v.* ଗଁ ଗଁ ହେବା, କାତର ଧ୍ୱନି କରିବା; *n.* ଗଁ ଗଁ ଶବ୍ଦ, କାତରଧ୍ୱନି ।

Groaning, *n.* କାତରଧ୍ୱନି ।

Grocer, *n.* ମୁଦିଦୋକାନୀ, ବଣିକ, ବେପାରୀ । [ ଦୋକାନ ।
Grocery, *n.* ବାଣିଜ୍ୟଦ୍ରବ୍ୟ, ମୁଦି-
Groin, *n.* ଉରୁସନ୍ଧି ।
Groom, *n.* ଭୃତ୍ୟ, ସଇସ, ଅଶ୍ୱରକ୍ଷକ; *v.* ଘୋଡ଼ାର ଯତ୍ନ ନେବା ।
Groove, *n.* ଘେର, ଘସ୍ରା, ଗୁଳା; *v.* ଘସ୍ରା ଢଆର କରିବା ।
Grope, *v.* ଅନ୍ଧାରିଆହେବା, ଦଉଣ୍ଡିବା ।
Gross, *a.* ସ୍ଥୂଳକାୟ, ବୃହତ୍, ଅଶ୍ଳୀଳ; *n.* ବାର ଡଜନ ବା ୧୪୪ଟି ।
Grossly, *ad.* ସ୍ଥୂଳତଃ, ଅଢମାତ୍ରାରେ ।
Grossness, *n.* ସ୍ଥୂଳତା, ଅଶିଷ୍ଟତା, ଅଶ୍ଳୀଳତା, ଆତ୍ୟନ୍ତ୍ୟ ।
Grot, *n.* ଗୁହା, କନ୍ଦର ।
Grotesque, *a.* ବିରୂପ, ବିକୃତ, କଦାକାର, ଅସ୍ୱାଭାବିକ । [ ଭାବରେ ।
Grotesquely, *ad.* ଅସ୍ୱାଭାବିକ
Grotto, *n.* କୁହର, ଗୁହା, କନ୍ଦର ।
Ground, *n.* ଭୂମି, ପଡ଼ିଆ, କାରଣ; *v.* ପ୍ରତିଷ୍ଠା କରିବା, ମୂଳସ୍ଥାପନ କରିବା ।
Ground-floor, *n.* ଗୃହର ନିମ୍ନତମ ତଳ । [ କାରଣଶୂନ୍ୟ ।
Groundless, *a.* ଯୁକ୍ତିହୀନ, ଅମୂଳକ,
Groundnut, *n.* ଚିନାବାଦାମ, ଭୂଇଁଚଣା । [ ନିଅଁ ।
Groundwork, *n.* ମୂଳପତ୍ତନ,
Group, *n.* ଦଳ, ସଙ୍ଘ, ବର୍ଗ, ଗୋଷ୍ଠ ।
Grove, *n.* କୁଞ୍ଜ, ଉପବନ, ବୃକ୍ଷ-ବାଟିକା, ତୋଟା । [ ଯିବା ।
Grovel, *v.* ଭୂଇଁରେ ଘୁଷୁରିବା, ଗଡ଼ୁଣ୍ଡି
Grow, *v.* ବୃଦ୍ଧି ପାଇବା, ପୁଷ୍ଟ ହେବା, ଜାତ କରିବା ।
Growl, *v.* ଗର୍ଜିବା, ହେଣ୍ଟାଳିବା ।
Grown up, *n.* ବୟଃପ୍ରାପ୍ତ, ପ୍ରୌଢ଼ ।
Growth, *n.* ବୃଦ୍ଧି, ବିକାଶ, ପୁଷ୍ଟି ।
Grub, *v.* ଖୋଳିବା, ଖନନ କରିବା ।
Grudge, *n.* ଈର୍ଷା, ଆକ୍ରୋଶ, ଅସୂୟା; *v.* ଈର୍ଷା କରିବା, ଦାଉସାଧିବା ।
Grudgingly, *ad.* ଅନିଚ୍ଛାପୂର୍ବକ, କୁଣ୍ଠିତଭାବରେ ।
Gruel, *n.* ଜାଉ, ତୋରାଣି ।
Gruesome, *a.* ଭୀଷଣ, ବୀଭତ୍ସ ।
Gruff, *a.* କର୍କଶ, କଠୋର, ନିଷ୍ଠୁର, ରୂକ୍ଷ ।
Gruffly, *ad.* କର୍କଶଭାବରେ ।
Grumble, *v.* ଅସନ୍ତୋଷ ପ୍ରକାଶ କରିବା, ଆପତ୍ତି କରିବା, ଖେଦ କରିବା; *n.* ଖେଦ ।
Grumbling, *n.* ଅସନ୍ତୋଷ ।
Grunt, *v.* ଘୁଷୁରି ପରି ଶବ୍ଦ କରିବା; *n.* ଘୁଷୁରିର ଶବ୍ଦ ।
Guarantee, *n.* ନିର୍ଭର ପ୍ରତିଶ୍ରୁତି, ଜାମିନ୍; *n.* ପ୍ରତିଶ୍ରୁତି ଦେବା, ଜାମିନ୍ ଦେବା ।

Guard, *v.* ଜଗିବା, ପହରା ଦେବା; *n.* ରକ୍ଷକ, ପ୍ରହରୀ, ଜଗୁଆଳ ।
Guardian, *n.* ଅଭିଭାବକ, ରକ୍ଷକ, ତତ୍ତ୍ୱାବଧାରକ ।
Guardianship, *n.* ଅଭିଭାବକତ୍ୱ ।
Guava, *n.* ପିଜୁଳି ।  [ ତୋଷିକ ।
Guerdon, *n.* ପୁରସ୍କାର, ପାରି-
Guerilla, *a.* ଅନିୟମିତ (ଯୁଦ୍ଧ) ।
Guess, *v.* ଅନୁମାନ କରିବା, ଅନ୍ଦାଜ କରିବା; *n.* ଅନୁମାନ, ଅଟକଳ ।
Guest, *n.* ଅତିଥି, ଅଭ୍ୟାଗତ, ଆଗନ୍ତୁକ ବ୍ୟକ୍ତି ।
Guest-house, *n.* ଅତିଥିନିବାସ ।
Guidance, *n.* ପଥପ୍ରଦର୍ଶନ, ଉପଦେଶ, ନେତୃତ୍ୱ ।
Guide, *v.* ପଥ ଦେଖାଇବା, ଉପଦେଶ ଦେବା; *n.* ଉପଦେଷ୍ଟା, ପଥପ୍ରଦର୍ଶକ ।
Guild, *n.* ସମାଜ, ସଙ୍ଘ, ଶ୍ରେଣୀ ।
Guile, *n.* ଛଳନା, ଶଠତା, କପଟତା, ଠକାମି ।  [ ଶୀଳ ।
Guileful, *a.* ଠକ, ଧୂର୍ତ୍ତ, ବଞ୍ଚନ-
Guileless, *a.* ନିରପରାଧ, ନିଷ୍କପଟ, ସରଳହୃଦୟ ।
Guillotine, *n.* ଶିରଶ୍ଛେଦନ ଯନ୍ତ୍ର ।
Guilt, *n.* ଅପରାଧ, ଦୋଷ, ପାପକର୍ମ ।
Guiltiness, *n.* ଅପରାଧିତା । [ ନିଷ୍ପାପ
Guiltless, *a.* ନିର୍ଦ୍ଦୋଷ, ନିରପରାଧ,
Guilty, *a.* ଅପରାଧୀ, ଦୋଷୀ, ପାପକର୍ମୀ ।  [ ମୁଦ୍ରାବିଶେଷ ।
Guinea, *n.* ଗିନି, ଇଂଲଣ୍ଡର ସ୍ୱର୍ଣ୍ଣ-
Guinea-pig, *n.* ଲାଙ୍ଗୁଳହୀନ ମୂଷିକ-ସଦୃଶ ଜୀବବିଶେଷ ।  [ ଛଦ୍ମବେଶ ।
Guise, *n.* ବେଶ, ପୋଷାକ, ରୂପ,
Guitar, *n.* ବୀଣା, ସାରଙ୍ଗୀ, ବଇଁଶୀ ।
Gulf, *n.* ଉପସାଗର, ଅତଳସ୍ପର୍ଶ ସ୍ଥାନ ।
Gull, *n.* ହଂସଜାତୀୟ ସାମୁଦ୍ରିକ ପକ୍ଷୀ-ବିଶେଷ ।
Gullet, *n.* ଗଳା, ଗଳନାଳୀ ।
Gullibility, *n.* ସରଳତା, ଉଦାରତା ।
Gullible, *a.* ସହଜରେ ପ୍ରତାରିତ ।
Gully, *n.* ପ୍ରଣାଳୀ, ଜଳମାର୍ଗ ।
Gulp, *v.* ଗ୍ରାସକରିବା, ଗିଳିବା, ଢୋକିବା ।  [ ଲଗାଇବା ।
Gum, *n.* ରସ, ଅଠା; *v.* ଅଠା
Gum-boil, *n.* ଦନ୍ତବ୍ରଣ, ଦନ୍ତ ବିସ୍ଫୋଟକ, ମାଢ଼ିଫୁଲା ।
Gummy, *a.* ଅଠାଳିଆ ।
Gun, *n.* ବନ୍ଧୁକ, ଆଗ୍ନେୟାସ୍ତ୍ରବିଶେଷ ।
Gunboat, *n.* କମାଣବାହୀ ପୋତ ।
Gunner, *n.* ଗୋଲନ୍ଦାଜ, ବନ୍ଧୁକଧାରୀ ସୈନିକ ।
Gunny, *n.* ଅଖା, ବସ୍ତା ।
Gunpowder, *n.* ବାରୁଦ ।
Gunshot, *n.* ବନ୍ଧୁକର ଗୁଳି ଯିବା ପର୍ଯ୍ୟନ୍ତ ସ୍ଥାନ ।

Gunsmith, *n.* ବନ୍ଧୁକନିର୍ମାତା ।
Gurgle, *n.* ଜଳସ୍ରୋତର କଳକଳ ଶବ୍ଦ; *v.* କଳକଳ ଶବ୍ଦ କରିବା ।
Gush, *v.* ହଠାତ୍ ନିର୍ଗତ ହେବା, ବେଗରେ ନିଃସୃତ ହେବା; *n.* ସବେଗ ନିଃସରଣ ।
Gust, *n.* ବାତ୍ୟା, ତୋଫାନ, ପ୍ରବଳ ପବନ, ରସ, ସ୍ୱାଦ ।
Gustful, *a.* ସରସ, ରୁଚିକର, ସୁସ୍ୱାଦ ।
Gustless, *a.* ନୀରସ, ବିସ୍ୱାଦ ।
Gusto, *n.* ରୁଚି, ସୁସ୍ୱାଦୁ ।
Gusty, *a.* ଝଟିକାମୟ ।
Gut, *n.* ଅନ୍ତ୍ର, ଶିରା, ନାଡ଼ୀ; *v.* ସର୍ବସ୍ୱ ନେଇଯିବା ।
Gutter, *n.* ଜଳମାର୍ଗ, ନର୍ଦ୍ଦମା, ପ୍ରଣାଳୀ । [ ଉଚ୍ଚାରିତ ।
Guttural, *a.* କଣ୍ଠ୍ୟ, କଣ୍ଠସାହାଯ୍ୟରେ
Gymnasium, *n.* ବ୍ୟାୟାମଶାଳା, ଆଖଡ଼ା । [ ବ୍ୟକ୍ତି ।
Gymnast, *n.* ମଲ୍ଲ, ବ୍ୟାୟାମନିପୁଣ
Gymnastic, *a.* ବ୍ୟାୟାମସମ୍ବନ୍ଧୀୟ ।
Gymnastics, *n.* ବ୍ୟାୟାମ କୌଶଳ, ମଲ୍ଲବିଦ୍ୟା । [ ଭ୍ରମଣକାରୀ ଜାତି ।
Gypsy, Gipsy, *n.* ଯାଯାବର,
Gyve, *n.* ନିଗଡ଼, ପାଦର ବେଡ଼ି; *v.* ପାଦରେ ବେଡ଼ି ଦେବା ।

# H

Ha, *int.* ହା, ଆହା, ହାଃ, ହାୟ, ଆଃ ।
Habeas Corpus, *n.* ବନ୍ଦୀକୁ ବିଚାର ନିମନ୍ତେ ବିଚାରାଳୟରେ ଉପସ୍ଥାପିତ କରିବାର ଆଦେଶ । [ବିକ୍ରେତା, ପସାରି ।
Haberdasher, *n.* କ୍ଷୁଦ୍ର ପଣ୍ୟ-
Haberdashery, *n.* ଷ୍ଟେଟ ଦୋକାନର ବିଭିନ୍ନ ଦ୍ରବ୍ୟ, ପସରା ।
Habiliment, *n.* ବେଶ, ପୋଷାକ, ବସ୍ତ୍ର । [ ପୋଷାକ ।
Habit, *n.* ଅଭ୍ୟାସ, ପ୍ରକୃତି, ଆଚାର,
Habitable, *a.* ବାସଯୋଗ୍ୟ, ବସତିକ୍ଷମ ।
Habitant, *n.* ଅଧିବାସୀ, ନିବାସୀ ।
Habitat, *n.* ପ୍ରାଣୀ ବା ଉଦ୍ଭିଦର ପ୍ରାକୃତିକ ଜନ୍ମସ୍ଥାନ । [ ଗୃହ ।
Habitation, *n.* ବାସସ୍ଥାନ, ନିବାସ,
Habitual, *a.* ଅଭ୍ୟାସଗତ, ସ୍ୱାଭାବିକ ।
Habitually, *ad.* ସତତ, ଯଥାରୀତି, ଅଭ୍ୟାସମତେ । [ ଅନୁଶୀଳନ କରିବା ।
Habituate, *v.* ଅଭ୍ୟସ୍ତ କରାଇବା,

**Hack**, *v.* ଖଣ୍ଡଖଣ୍ଡ କରିବା, ଛେଦନ କରିବା; *n.* ଛେଦନ ।

**Hackery**, *n.* ବଳଦଗାଡ଼ି ।

**Hackle**, *v.* ଖଣ୍ଡବିଖଣ୍ଡ କରିବା, ବିଦୀର୍ଣ୍ଣ କରିବା ।

**Hackney**, *n.* ଭଡ଼ାଟିଆ ଘୋଡ଼ା ବା ଗାଡ଼ି, ନୀଚକାର୍ଯ୍ୟ ପାଇଁ ଭଡ଼ାରେ ନିଯୁକ୍ତ ବ୍ୟକ୍ତି । [ ଘୋଡ଼ାଗାଡ଼ି ।

**Hackney-coach**, *n.* ଭଡ଼ାବୁହା

**Hackneyed**, *a.* ଭଡ଼ାଟିଆ, ସର୍ବସାଧାରଣଙ୍କ ଦ୍ୱାରା ବ୍ୟବହୃତ, ଗଣଭୋଗ୍ୟ, ବହୁପ୍ରଯୁକ୍ତ ।

**Hades**, *n.* ପାତାଳ, ନରକପୁର ।

**Hadj, Hajj**, *n.* ମୁସଲମାନଙ୍କ ମକ୍କାକୁ ତୀର୍ଥଯାତ୍ରା ।

**Hadji, Hajji**, *n.* ମକ୍କା ତୀର୍ଥଯାତ୍ରୀ ।

**Hæmoglobin**, *n.* ଲାଲ ରକ୍ତକଣିକାରେ ଥିବା ଲାଲ ପଦାର୍ଥ ।

**Hæmorrhage**, *n.* ରକ୍ତସ୍ରାବ ।

**Hag**, *n.* କୁରୂପା ବୃଦ୍ଧା ସ୍ତ୍ରୀ, ଡାଆଣୀ ।

**Haggard**, *a.* କୃଶ, କ୍ଷୀଣ, ରୁକ୍ଷ, ଶୁଷ୍କମୁଖ ।

**Haggish**, *a.* ଡାଆଣୀସଦୃଶ ।

**Haggle**, *v.* ଦର କଷାକଷି କରିବା ।

**Hah**, *int.* ହା, ହାଃ, ହାୟ, ଆଃ ।

**Hail**, *v.* ଆହ୍ୱାନ କରିବା, କରକା ବର୍ଷିବା; *n.* ଶିଳାବୃଷ୍ଟି, କରକାପାତ; *int.* ସ୍ୱସ୍ତି, ସ୍ୱାଗତ, ନମସ୍କାର !

**Hailstone**, *n.* କରକା, କୁଆପଥର ।

**Hail-storm**, *n.* କରକାପାତସହ ଝଡ଼, ଶିଳାବୃଷ୍ଟି ।

**Haily**, *a.* କରକାମୟ । [ ଲୋମ ।

**Hair**, *n.* ବାଳ, କେଶ, କୁନ୍ତଳ,

**Hairbreadth, Hair's breadth**, *n.* କେଶପରିମିତ ବ୍ୟବଧାନ, ଅତି ସାମାନ୍ୟ ବ୍ୟବଧାନ ।

**Hair cloth**, *n.* ଲୋମନିର୍ମିତ ବସ୍ତ୍ର ।

**Hairdresser**, *n.* କେଶବିନ୍ୟାସକାରୀ । [ ଲୋମାଧିକ୍ୟ ।

**Hairiness**, *n.* ଲୋମଶତା,

**Hairless**, *a.* କେଶହୀନ, ଲୋମହୀନ ।

**Hair-oil**, *n.* ମୁଣ୍ଡରେ ଲଗାଇବା ପାଇଁ ସୁବାସିତ ତୈଳ । [ ଲୋମଶ ।

**Hairy**, *a.* କେଶତୁଲ୍ୟ, କେଶବହୁଳ,

**Hajj**, *n.* Hadj (ଦେଖ) ।

**Halberd**, *n.* ଏକପ୍ରକାର ଟାଙ୍ଗିଆ ।

**Halcyon**, *a.* ଧୀର, ଶାନ୍ତ ।

**Hale**, *a.* ସୁସ୍ଥ, ନୀରୋଗ, ନିରାମୟ ।

**Half**, *n.* ଅର୍ଦ୍ଧାଂଶ, ଅର୍ଦ୍ଧଭାଗ ( *pl.* Halves); *a.* ଅର୍ଦ୍ଧ, ଅଧ, ଅସମ୍ପୂର୍ଣ୍ଣ ।

**Half-blood**, *n.* ଏକ ପିତାଙ୍କର ଦୁଇ ପତ୍ନୀଙ୍କ ଗର୍ଭଜାତ ସନ୍ତାନ ବା ଏକ ମାତାଙ୍କର ଦୁଇ ପିତାଙ୍କ ଔରସଜାତ ସନ୍ତାନମାନଙ୍କ ମଧ୍ୟରେ ଥିବା ସମ୍ବନ୍ଧ ।

**Half-bred**, *a.* ଅର୍ଦ୍ଧଶିକ୍ଷିତ ।

Half-brother, *n.* ବୈମାତ୍ରେୟ ଭ୍ରାତା, ବୈମାତ୍ର । [ ଉପରଠାଉରିଆ ।
Halfhearted, *a.* ଆଗ୍ରହଶୂନ୍ୟ,
Halfmast, *n.* ଶୋକପ୍ରକାଶ ବା ବିପଦର ସୂଚନା ପାଇଁ ପତାକାର ଅର୍ଦ୍ଧ ଅବନମନ । [ ଦରମା ।
Half-pay, *n.* ଅର୍ଦ୍ଧବେତନ, ଅଧା
Half-truth, *n.* ଅର୍ଦ୍ଧସତ୍ୟ ।
Half-way, *n.* ଅର୍ଦ୍ଧପଥ ।
Half-witted, *a.* ଅଳ୍ପବୁଦ୍ଧି, ବୋକାଳିଆ । [ ବାର୍ଷିକ ।
Half-yearly, *a.* ଷାଣ୍ମାସିକ, ଅର୍ଦ୍ଧ-
Hall, *n.* ବୃହତ୍ ପ୍ରକୋଷ୍ଠ, ମଣ୍ଡପ, ହଲ୍
Hallelujah, *n.* ଈଶ୍ୱରଙ୍କ ସ୍ତୁତି ।
Hallo, Halloa, *int.* ହେ, ଆହେ, ଆରେ, ହୋ !
Halloo, *v.* ଉଚ୍ଚସ୍ୱରରେ କହିବା ।
Hallow, *v.* ପବିତ୍ର କରିବା ।
Hallowed, *a.* ପବିତ୍ରୀକୃତ ।
Hallucinate, *v.* ସମ୍ମୋହିତ କରିବା, ଭ୍ରମ ଜନ୍ମାଇବା ।
Hallucination, *n.* ମତିବିଭ୍ରମ, ସମ୍ମୋହନ, ଇନ୍ଦ୍ରଜାଲ । [ ତେଜ ।
Halo, *n.* ପ୍ରଭା, ମଣ୍ଡଳ, ପରିବେଶ,
Halt, *v.* ବନ୍ଦ କରିବା ବା ହେବା, ବିରତ ହେବା; *n.* ଗତିର ବିରାମ; *a.* ପଙ୍ଗୁ, ଖୋଟା ।
Halter, *n.* ଫାଶିଦଉଡ଼ି, ରଜ୍ଜୁ ।
Halting, *a.* ଚେଷ୍ଟାରହିତ, ଗତିରୁ ବିରତ, ଦ୍ୱିଧାଯୁକ୍ତ । [ ଅଟକେଇ ଅଟକେଇ ।
Haltingly, *ad.* ରହି ରହି,
Halve, *v.* ଦୁଇ ସମାନ ଭାଗକରିବା, ଅଧାକରିବା । [ ଶୂକର ମାଂସ ।
Ham, *n.* ଜାନୁର ଅଧୋଭାଗ, ଲବଣାକ୍ତ
Hamlet, *n.* କ୍ଷୁଦ୍ର ପଲ୍ଲୀ, ପଡ଼ାଗାଆଁ ।
Hammer, *n.* ହାତୁଡ଼ି, ମୁଦ୍‌ଗର; *v.* ହାତୁଡ଼ିରେ ପିଟିବା ।
Hammock, *n.* ନାବିକମାନଙ୍କ ପାଇଁ ଜାହାଜରେ ଥିବା ଦୋଳାସ୍ୱମାନ ଶଯ୍ୟା ।
Hamper, *v.* ବାଧା ଦେବା, ଅଟକାଇବା, ବ୍ୟାହତ କରିବା ।
Hand, *n.* ହସ୍ତ, କର, ହାତ, ଶ୍ରମିକ, ହସ୍ତକୌଶଳ; *v.* ହାତରେ ଦେବା ।
Hand-bag, *n.* ହାତରେ ନେବା ଆଣିବା ପାଇଁ ଥଳି, ଝୁଲମୁଣି ।
Hand-bill, *n.* ପ୍ରଚାରପତ୍ର, ବିଜ୍ଞାପନ ପତ୍ରିକା । [ ବିଷୟସମ୍ବଳିତ ପୁସ୍ତକ ।
Handbook, *n.* ପ୍ରଧାନ ଜ୍ଞାତବ୍ୟ-
Handcuff, *n.* ବେଡ଼ି, ହାତକଡ଼ି ।
Handful, *n.* ମୁଠାଏ । [ ଦୌଡ଼ ।
Hand-gallop, *n.* ଘୋଡ଼ାର ଧୀର
Hand-grenade, *n.* ହାତବୋମା ।
Handicap, *n.* ବାଧା, ପ୍ରତିବନ୍ଧକ; *v.* ବାଧା ଦେବା ।

Handicraft, *n.* ହାତକାମ, ହସ୍ତ-ଶିଳ୍ପ । [ କାରଗର ।
Handicraftman, *n.* ମିସ୍ତ୍ରି,
Handily, *ad.* ନିପୁଣଭାବରେ, ଉପଯୁକ୍ତରୂପେ । [ ଯୋଗିତା ।
Handiness, *n.* ପଟୁତା, ଉପ-
Hand in hand, *ad.* ଏକସଙ୍ଗରେ, ମିଳିମିଶି, ହାତ ଧରାଧରି ହୋଇ ।
Handiwork, *n.* ହସ୍ତକୃତ କର୍ମ, ବୁଦ୍ଧି ବା କୌଶଳପୂର୍ଣ୍ଣ କର୍ମ ।
Handkerchief, *n.* ରୁମାଲ, ମୁହଁ-ପୋଛା କନା ।
Handle, *v.* ହାତରେ ଧରିବା ବା ସ୍ପର୍ଶ କରିବା, ହାତ ଦେବା; *n.* ବେଣ୍ଟ, ମୁଠା ।
Handless, *a.* ହସ୍ତହୀନ ।
Handmaid, Handmaiden, *n.* ପରିଚାରିକା, ଦାସୀ, ସହଚରୀ ।
Handmill, *n.* ପେଷଣୀ, ଚକି ।
Handsaw, *n.* ହାତକରତ ।
Handshake, *n.* କରମର୍ଦ୍ଦନ ।
Handshel, *n.* ଦାଦନ, ବନ୍ଧନୀ ।
Handsome, *a.* ସୁନ୍ଦର, ମନୋହର, ଯଥେଷ୍ଟ । [ ଯଥେଷ୍ଟ ପରିମାଣରେ ।
Handsomely, *ad.* ସୁନ୍ଦରରୂପେ,
Handsomeness, *n.* ସୌନ୍ଦର୍ଯ୍ୟ ।
Hand-to-hand, *a.* ହାତାହାତି ।
Handwork, *n.* ହାତକାମ ।
Handwriting, *n.* ହସ୍ତାକ୍ଷର, ହସ୍ତଲେଖନ । [ ଜନକ ।
Handy, *a.* କାର୍ଯ୍ୟୋପଯୋଗୀ, ସୁବିଧା-
Hang, *v.* ଝୁଲାଇବା, ଫାଶି ଦେବା ।
Hangable, *a.* ଫାଶି ପାଇବାର ଯୋଗ୍ୟ । [ ପ୍ରଭୃତି ରହିବା ସ୍ଥାନ ।
Hangar, *n.* ଉଡ଼ାଜାହାଜ, ଗାଡ଼ି
Hanger, *n.* କ୍ଷୁଦ୍ର ଖଣ୍ଡା, ଯହିଁରୁ କିଛି ଝୁଲୁଥାଏ ।
Hanger-on, *n.* ଗଲଗ୍ରହ,ପରନିର୍ଭର-ଶୀଳ ବ୍ୟକ୍ତି, ଖୋସାମଦିଆ ଲୋକ ।
Hangings, *n.* ପରଦା, ଯବନିକା ।
Hangman, *n.* ଘାତକ, ଜଲ୍ଲାଦ ।
Hanker, *v.* ଲାଳସା କରିବା, ଅତିଶକ୍ତ ଲୋଭ କରିବା ।
Hankering, *n.* ଲାଳସା, ଲୋଭ ।
Hap, *n.* ଦୈବଘଟଣା, ଭାଗ୍ୟ । [ ଦୈବୀ ।
Haphazard, *n.* ଦୈବଯୋଗ; *a.*
Haphazardly, *ad.* ଯଥାତଥା ।
Hapless, *a.* ହତଭାଗ୍ୟ, ଅଭାଗା ।
Haplessness, *n.* ଦୁର୍ଦ୍ଦୈବ ।
Haply, *ad.* ଦୈବାତ୍, ଦୈବବଶରୁ ।
Happen, *v.* ଘଟିବା, ହେବା ।
Happening, *n.* ଘଟଣା ।
Happily, *ad.* ସୌଭାଗ୍ୟବଶତଃ, ଆନନ୍ଦରେ, ସୁଖରେ । [ସନ୍ତୋଷ, ତୃପ୍ତି ।
Happiness, *n.* ଆନନ୍ଦ, ସୁଖ,

**Happy**, *a.* ସୁଖୀ, ଆନନ୍ଦମୟ, ହୃଷ୍ଟ, ସନ୍ତୁଷ୍ଟ, ଆନନ୍ଦଦାୟକ ।

**Harangue**, *n.* ଉଚ୍ଚସ୍ୱରରେ କଥନ, ସାଳଙ୍କାର ବଚନ; *v.* ଉଚ୍ଚସ୍ୱରରେ ବା ଆଳଙ୍କାରିକ ଭାଷାରେ ବକ୍ତୃତା ଦେବା ।

**Haranguer**, *n.* ବାଗୀଶ, ବାଗ୍ମୀ, ବକ୍ତା । [କରିବା, ଉତ୍ପୀଡ଼ନ କରିବା ।

**Harass**, *v.* ହଇରାଣ କରିବା, ବିରକ୍ତ

**Harassing**, *a.* ଉତ୍ପୀଡ଼କ, କ୍ଲେଶଦାୟକ । [ କ୍ଲେଶ, ବିରକ୍ତି ।

**Harassment**, *n.* ଉତ୍ପୀଡ଼ନ,

**Harbinger**, *n.* ଅଗ୍ରଦୂତ, ସମ୍ବାଦବାହକ, ସୂଚକ ।

**Harbour**, *n.* ବନ୍ଦର, ପୋତାଶ୍ରୟ; *v.* ଆଶ୍ରୟ ଦେବା, ସ୍ଥାନ ଦେବା ।

**Harbourage**, *n.* ଆଶ୍ରୟ, ଆଶ୍ରୟସ୍ଥଳ । [ କଷ୍ଟକର ।

**Hard**, *a.* କଠିନ, କର୍କଶ, ଘନ, ଦୃଢ଼

**Hard-earned**, *a.* କଷ୍ଟଲବ୍ଧ, କଷ୍ଟୋପାର୍ଜିତ । [ କରିବା ।

**Harden**, *v.* ଘନୀଭୂତ କରିବା, ଦୃଢ଼

**Hardened**, *a.* କଠିନୀଭୂତ, ପାପାଚରଣରେ କୃତନିଶ୍ଚୟ । [ କୁରୂପ ।

**Hard-featured**, *a.* କଦାକାର,

**Hard-fisted**, *a.* କୃପଣ, କଞ୍ଜୁସ୍ ।

**Hard-headed**, *a.* ବୁଦ୍ଧିମାନ୍ ।

**Hard-hearted**, *a.* କଠୋରହୃଦୟ, ନିଷ୍ଠୁର ।

**Hardihood**, *n.* ଶୌର୍ଯ୍ୟ, ସାହସିକତା, ଧୃଷ୍ଟତା । [ ସହିଷ୍ଣୁତା ।

**Hardiness**, *n.* ଶୌର୍ଯ୍ୟ, କଷ୍ଟ-

**Hardly**, *ad.* ଅତିକଷ୍ଟରେ, କୌଣସି ପ୍ରକାରେ, ପ୍ରାୟ ନୁହେଁ ।

**Hardness**, *n.* କାଠିନ୍ୟ, ଦୃଢ଼ତା ।

**Hard-pressed**, *a.* ଅଭାବଗ୍ରସ୍ତ, ଦୁଃଖାପନ୍ନ । [ ବାଧା ।

**Hardship**, *n.* କଷ୍ଟ, ଦୁଃଖ, କ୍ଲେଶ,

**Hardware**, *n.* ଲୌହନିର୍ମିତ ପାତ୍ରାଦି । [ କର୍ମଠ ।

**Hardy**, *a.* ସାହସୀ, ନିର୍ଭୀକ, ଧୀର,

**Hare**, *n.* ଶଶକ, ଠେକୁଆ ।

**Harelip**, *n.* ଓଷ୍ଠଖଣ୍ଡିଆ, ଜନ୍ମରୁ ଖଣ୍ଡିଆ ଓଠ । [ ଦାସୀମହଲ ।

**Harem**, *n.* ଅନ୍ତଃପୁର, ଅବରୋଧ,

**Hark**, *int.* ଶୁଣ୍, ଶୁଣ; *v.* ଶୁଣିବା ।

**Harlot**, *n.* ବେଶ୍ୟା, ରକ୍ଷିତା ସ୍ତ୍ରୀ, କୁଳଟା । [ ବ୍ୟଭିଚାର ।

**Harlotry**, *n.* ବେଶ୍ୟାବୃତ୍ତି,

**Harm**, *n.* କ୍ଷତି, ହାନି, ନାଶ, ବାଧା, ପୀଡ଼ା, ଅପକାର; *v.* କ୍ଷତି କରିବା, ଅପକାର କରିବା ।

**Harmful**, *a.* ଅପକାରୀ, କ୍ଷତିକାରକ ।

**Harmless**, *a.* ନିରୀହ, ଅହିଂସ, ନିର୍ଦ୍ଦୋଷ । [ଏକତାନବିଶିଷ୍ଟ, ସମସ୍ୱରବିଶିଷ୍ଟ

**Harmonic, Harmonical**, *a.*

**Harmonious**, *a.* ସଦୃଶ, ଅବରୁଦ୍ଧ, ଅନୁରୂପ । [ ନିର୍ବିରୋଧରେ ।

**Harmoniously**, *ad.* ଏକସ୍ୱରରେ,

**Harmonise**, *v.* ସଦୃଶ କରିବା ବା ହେବା । [ ବିଶେଷ ।

**Harmonium**, *n.* ବାଦ୍ୟଯନ୍ତ୍ର-

**Harmony**, *n.* ସ୍ୱରର ଐକ୍ୟ, ଏକତାନ, ଐକ୍ୟ, ସ୍ୱରମାଧୁରୀ, ସାଦୃଶ୍ୟ ।

**Harness**, *n.* ଘୋଡ଼ାର ସାଜ, ସଜ୍ଜା; *v.* ସଜ୍ଜିତ କରିବା ।

**Harp**, *n.* ବିପଞ୍ଚୀ, ବୀଣା; *v.* ବୀଣା ବଜାଇବା, ଏକ ବିଷୟ ପୁନଃପୁନଃ କହିବା ।

**Harper, Harpist**, *n.* ବୀଣା-ବାଦକ ।

**Harpy**, *n.* ବିକଟ ନାରୀରୂପଧାରୀ କଳ୍ପିତ ପକ୍ଷୀବିଶେଷ, ଲୋଭୀ ବ୍ୟକ୍ତି ।

**Harrow**, *n.* କୃଷକର ମଇ; *v.* ଜମିରେ ମଇ ଦେବା । [ କରିବା ।

**Harry**, *v.* ବିରକ୍ତ କରିବା, ହଇରାଣ

**Harsh**, *a.* ରୁକ୍ଷ, କଠୋର, କର୍କଶ, ପରୁଷ । [ ଉଗ୍ରଭାବରେ ।

**Harshly**, *ad.* କଠୋରଭାବରେ,

**Harshness**, *n.* କଠୋରତା, କର୍କଶତା, ଉଗ୍ରତା ।

**Hart**, *n.* ମୃଗ, ହରିଣ ।

**Harvest**, *n.* ଫସଲ ଅମଳ, ଆମଦାନୀ ଶସ୍ୟ; *v.* ଫସଲ ଅମଳ କରିବା ।

**Haste**, *n.* ତ୍ୱରା, ବେଗ; *v.* ତ୍ୱରିତ ହେବା । [ ଶୀଘ୍ର ଯିବା

**Hasten**, *v.* ତ୍ୱରାନ୍ୱିତ ହେବା,

**Hastily**, *ad.* ଶୀଘ୍ର, ସହସା, ଦ୍ରୁତଗତିରେ, ବେଗରେ ।

**Hastiness**, *n.* ବେଗ, ତ୍ୱରା ।

**Hasty**, *a.* ସତ୍ୱର, ତ୍ୱରାନ୍ୱିତ, କ୍ଷିପ୍ର, ଦ୍ରୁତ ।

**Hat**, *n.* ଟୋପି, ଶିରସ୍ତ୍ରାଣ ।

**Hatable**, *a.* ଘୃଣାର୍ହ, ନିନ୍ଦନୀୟ ।

**Hatch**, *v.* ଡିମ୍ବ ଉଷୁମାଇବା, ଷଡ଼ଯନ୍ତ୍ର କରିବା; *n.* ପକ୍ଷୀଶାବକଗଣ ।

**Hatchet**, *n.* ଟାଙ୍ଗିଆ, କୁରାଢ଼ି, କୁଠାର ।

**Hate**, *n.* ଘୃଣା, ବିଦ୍ୱେଷ; *v.* ଘୃଣା କରିବା ।

**Hateful**, *a.* ଘୃଣ୍ୟ, ନିନ୍ଦିତ, କୁତ୍ସିତ ।

**Hatred**, *n.* ଘୃଣା, ବିଦ୍ୱେଷ, ନିନ୍ଦା, ଜୁଗୁପ୍ସା । [ ବିକ୍ରେତା ।

**Hatter**, *n.* ଟୋପିନିର୍ମାତା, ଟୋପି-

**Hat-trick**, *n.* ଟୋପି ସାହାଯ୍ୟରେ ଯାଦୁଗିରି ।

**Haughtily**, *ad.* ସଗର୍ବରେ, ଉଦ୍ଧତଭାବରେ । [ ଦାମ୍ଭିକତା ।

**Haughtiness**, *n.* ଔଦ୍ଧତ୍ୟ, ଗର୍ବ,

**Haughty**, *a.* ଉଦ୍ଧତ, ଦାମ୍ଭିକ, ଗର୍ବିତ, ଅଭିମାନୀ । [*n.* ଆକର୍ଷଣ, ଆକୃଷ୍ଟ ଦ୍ରବ୍ୟ ।

**Haul**, *v.* ଆକର୍ଷଣ କରିବା, ଓଟାରିବା;

**Haunch**, *n.* ଜଙ୍ଘ, ଜଘନ, ନିତମ୍ବ, କଟି ।

**Haunt**, *v.* ସର୍ବଦା ଯିବାଆସିବା କରିବା,

ଆଶ୍ରସ୍ଥ କରିବା; *n.* ନିତ୍ୟବ୍ୟବହାର ସ୍ଥଳ, ଆଶ୍ରୟସ୍ଥାନ ।

**Haunted,** *a.* ଭୂତଗ୍ରସ୍ତ, ଭୂତଦ୍ୱାରା ଆକ୍ରାନ୍ତ । [ ହେବା, ଧାରଣ କରିବା ।

**Have,** *v.* ପ୍ରାପ୍ତ ହେବା, ଅଧିକାରୀ

**Haven,** *n.* ପୋତାଶ୍ରୟ, ବନ୍ଦର, ଆଶ୍ରୟସ୍ଥଳ ।

**Haversack,** *n.* ସୈନିକର ନିତ୍ୟ-ବ୍ୟବହାର୍ଯ୍ୟ ଜିନିଷ ରଖିବାର ଥଳି ।

**Havoc,** *n.* ବିନାଶ, ଧ୍ୱଂସ, ସଂହାର, ଉଚ୍ଛେଦ, ପ୍ରଳୟ ।

**Hawk,** *n.* ଶ୍ୟେନ, ବାଜପକ୍ଷୀ; *v.* ବାଜପକ୍ଷୀ ସାହାଯ୍ୟରେ ଶିକାର କରିବା ।

**Hawker,** *n.* ଶ୍ୟେନପାଳକ, ବୁଲି-ବିକାଳି । [ ବିଶେଷ ।

**Hawthorn,** *n.* କଣ୍ଟକମୟ ଗୁଳ୍ମ-

**Hay,** *n.* ନଡ଼ା, ଶୁଷ୍କ ତୃଣ, ଘାସ ।

**Hayloft,** *n.* ଶୁଖିଲା ଘାସ ରଖିବାର ଘର ।

**Haystack,** *n.* ନଡ଼ାଗଦା, ଘାସଗଦା ।

**Hazard,** *n.* ସଙ୍କଟ, ବିପଦ, ଦୈବୀ ଘଟଣା; *v.* ଦୈବାଧୀନ ହେବା ।

**Hazardous,** *a.* ସନ୍ଦେହଜନକ, ସଙ୍କଟମୟ, ଦୈବାଧୀନ ।

**Haze,** *n.* ଧୂମ, କୁଜ୍ଝଟିକା, କୁହେଳି ।

**Hazel,** *n.* ଏକଜାତୀୟ ଫଳବୃକ୍ଷ; *a.* ଧୂସର, କପିଶ, ତାମ୍ରାଭ ।

**Haziness,** *n.* ଅସ୍ପଷ୍ଟତା, ଅନ୍ଧକାର ।

**Hazy,** *a.* ଅସ୍ପଷ୍ଟ, ଧୂମମୟ, କୁଜ୍ଝଟିକାଚ୍ଛନ୍ନ ।

**He,** *pr.* ସେ, ସେହି (ପୁଂଲିଙ୍ଗରେ) ।

**Head,** *n.* ମସ୍ତକ, ମୁଣ୍ଡ, ଅଗ୍ରଣୀ, ଶିରୋଦେଶ; *v.* ଅଗ୍ରସର ହେବା ।

**Headache,** *n.* ଶିରୋବ୍ୟଥା, ମସ୍ତକର ବେଦନା, ମୁଣ୍ଡବିନ୍ଧା ।

**Head-dress, Headgear,** *n.* ଶିରୋଭୂଷଣ, କିରୀଟ, ମୁକୁଟ, ଟୋପି, ପଗଡ଼ି ।

**Headland,** *n.* ଅନ୍ତରୀପ ।

**Headless,** *a.* ମସ୍ତକହୀନ ।

**Headline,** *n.* ଶିରୋନାମା ।

**Headlong,** *ad.* ଆଗକୁ ମୁଣ୍ଡକରି, ଅବିମୃଷ୍ୟକାରୀଭାବରେ, ବିଚାର ନ କରି ।

**Headman,** *n.* ନେତା, ଦଳପତି, ମୁଖ୍ୟ ବ୍ୟକ୍ତି । [ବ୍ୟକ୍ତିର ଶିରଚ୍ଛେଦନ କରେ ।

**Headsman,** *n.* ଘାତକ, ଯେ ବଧ

**Headmaster,** *n.* ପ୍ରଧାନଶିକ୍ଷକ ।

**Headmistress,** *n.* ପ୍ରଧାନ ଶିକ୍ଷୟିତ୍ରୀ ।

**Headquarters,** *n.* ସଦର ମହକୁମା ।

**Headstrong,** *a.* ଏକଜିଦିଆ, ସ୍ୱେଚ୍ଛାଚାରୀ, ଦୁର୍ଦ୍ଦାନ୍ତ ।

**Headway,** *n.* ଅଗ୍ରଗତି ।

**Head-wind,** *n.* ପ୍ରତିକୂଳ ବାୟୁ ।

**Head-work,** *n.* ମାନସିକ ଶ୍ରମ ।

**Heady,** *a.* ସାହସିକ, ଅବିବେକୀ ।

**Heal,** *v.* ଆରୋଗ୍ୟ କରିବା ।

**Healer**, *n.* ଆରୋଗ୍ୟକାରୀ, ଚିକିତ୍ସକ ।
**Health**, *n.* ସ୍ୱାସ୍ଥ୍ୟ, ନିରାମୟତ୍ୱ, ନୀରୋଗ ଅବସ୍ଥା ।
**Healthful**, *a.* ସ୍ୱାସ୍ଥ୍ୟଜନକ, ସୁସ୍ଥ ।
**Healthiness**, *n.* ସୁସ୍ଥତା, ନୀରୋଗତା ।
**Healthless**, *a.* ରୁଗ୍ଣ, ସ୍ୱାସ୍ଥ୍ୟହୀନ ।
**Healthy**, *a.* ସୁସ୍ଥ, ସ୍ୱାସ୍ଥ୍ୟକର, ନିରାମୟ, ନୀରୋଗ ।
**Heap**, *n.* ଗଦା, ସ୍ତୂପ, ରାଶି; *v.* ଗଦା କରିବା, ଜମାଇବା, ସ୍ତୂପୀକୃତ କରିବା ।
**Hear**, *v.* ଶ୍ରବଣ କରିବା, ଶୁଣିବା ।
**Hearer**, *n.* ଶ୍ରୋତା, ଶୁଣିବା ଲୋକ ।
**Hearing**, *n.* ଶ୍ରବଣେନ୍ଦ୍ରିୟ, ଶୁଣାଣି ।
**Hearken**, *v.* ଶୁଣିବା, ମନୋଯୋଗ ଦେବା । [ ଜନରବ ।
**Hearsay**, *n.* ଶୁଣାକଥା, ଜନଶ୍ରୁତି,
**Hearse**, *n.* ଶବାଧାର, କୋକେଇ, ଶବବୁହା ଗାଡ଼ି ।
**Heart**, *n.* ହୃତ୍ପିଣ୍ଡ, ହୃଦୟ, ଚିତ୍ତ, ମନ, ଅନ୍ତଃକରଣ, ମଜ୍ଜା ।
**Heartache**, *n.* ହୃଦୟସନ୍ତାପ, ମନୋବେଦନା । [ ବିଦାରକ ।
**Heartbreaking**, *a.* ହୃଦୟ-
**Heart-broken**, *a.* ଭଗ୍ନହୃଦୟ ।
**Heart-burn**, *n.* ମର୍ମଦାହ, ମନସ୍ତାପ, ହୃଦୟବେଦନା । [ କରିବା ।
**Hearten**, *v.* ଉତ୍ସାହ ଦେବା, ସାହାଯ୍ୟ
**Heartfelt**, *a.* ଆନ୍ତରିକ, ନିଷ୍କପଟ, ଅକୃତ୍ରିମ ।
**Hearth**, *n.* ଚୁଲ୍ଲି ।
**Heartily**, *ad.* ହୃଦୟସହିତ, ଆନ୍ତରିକଭାବରେ । [ ନିଷ୍କପଟତା ।
**Heartiness**, *n.* ମନର ନିର୍ମଳତା,
**Heartless**, *a.* ନିଷ୍ଠୁର, ନିର୍ଦ୍ଦୟ ।
**Heartlessness**, *n.* ନିଷ୍ଠୁରତା, ନିର୍ଦ୍ଦୟତା । [ ବିଦାରକ, ମର୍ମଭେଦୀ ।
**Heartrending**, *a.* ହୃଦୟ-
**Hearty**, *a.* ହାର୍ଦ୍ଦିକ, ଆନ୍ତରିକ ।
**Heat**, *n.* ଉତ୍ତାପ, ଉଷ୍ଣତା, ଆବେଶ, କ୍ରୋଧ; *v.* ଗରମ କରିବା, ତପ୍ତ କରିବା ।
**Heath**, *n.* ବନଭୂମି, ବୁଦାଜଙ୍ଗଲ ।
**Heathen**, *n.* ମୂର୍ତ୍ତିପୂଜକ, ପ୍ରତିମା-ଉପାସକ, ପୌତ୍ତଳିକ । [ ପ୍ରତିମାପୂଜା ।
**Heathenism**, *n.* ମୂର୍ତ୍ତିପୂଜନ,
**Heather**, *n.* ବନ, ବୁଦା ।
**Heave**, *v.* ଉଚ୍ଚକୁ ଉଠାଇବା, ଦୀର୍ଘଶ୍ୱାସ ପକାଇବା, ଟେକିବା ।
**Heaven**, *n.* ସ୍ୱର୍ଗ, ଦେବପୁର, ଆକାଶ ।
**Heavenly**, *a.* ସ୍ୱର୍ଗୀୟ, ଦିବ୍ୟ, ଅପାର୍ଥିବ । [ ଅଧିକମାତ୍ରାରେ ।
**Heavily**, *ad.* ଗୁରୁତରଭାବରେ,
**Heaviness**, *n.* ଗୁରୁତ୍ୱ, ଓଜନ, ଶୋକ ।
**Heavy**, *v.* ଗୁରୁ, ଭାରି, ଓଜନଦାର, ଶୋକାର୍ତ୍ତ ।

**Hebrew**, *n.* ହିବ୍ରୁ ବା ଇହୁଦୀ ଜାତି, ହିବ୍ରୁ ଭାଷା । [ ବିବ୍ରତ କରିବା ।
**Heckle**, *v.* ଉପର୍ଯ୍ୟୁପରି ପ୍ରଶ୍ନ ପଚାରି
**Hectic, Hectical**, *a.* ସ୍ୱାଭାବିକ, ଶାରୀରିକ ଅଭ୍ୟାସଗତ ।
**Hector**, *n.* ଆତ୍ମଶ୍ଳାଘାକାରୀ ବ୍ୟକ୍ତି ।
**Hedge**, *n.* ବାଡ଼, ବେଷ୍ଟନ, ଆବରଣ; *v.* ବାଡ଼ଦ୍ୱାରା ଆବଦ୍ଧ କରିବା ।
**Hedge-born**, *a.* ନୀଚଜାତ,ଅନ୍ତ୍ୟଜ ।
**Hedge-hog**, *n.* ଶଲ୍ଲକୀ, ଝିଙ୍କ ।
**Hedonic**, *a.* ସୁଖବାଦ ସମ୍ବନ୍ଧୀୟ ।
**Hedonism**, *n.* ସୁଖବାଦ, ସୁଖଭୋଗହିଁ ଜୀବନର ପରମ ପୁରୁଷାର୍ଥ—ଏହି ମତବାଦ ।
**Hedonist**, *n.* ସୁଖବାଦୀ, ଯେ ସୁଖଭୋଗକୁ ଜୀବନର ଚରମ ଲକ୍ଷ୍ୟ ମନେକରେ ।
**Heed**, *n.* ମନୋଯୋଗ, ସାବଧାନତା; *v.* ମନ ଦେବା, ସାବଧାନ ହେବା ।
**Heedful**, *a.* ସତର୍କ, ମନୋଯୋଗୀ ।
**Heedless**, *a.* ଅସାବଧାନ, ଅମନୋଯୋଗୀ । [ ଭାବରେ ।
**Heedlessly**, *ad.* ଅସାବଧାନ
**Heedlessness**, *n.* ଅସାବଧାନତା ।
**Heel**, *n.* ଗୋଇଠି, ପାଦମୂଳ ।
**Hegemony**, *n.* ଏକ ଦେଶର ଅନ୍ୟ ଦେଶ ଉପରେ ଆଧିପତ୍ୟ, ପ୍ରଭୁତ୍ୱ ।
**Heifer**, *n.* ମାଈ ବାଛୁରୀ ।
**Height**, *n.* ଉଚ୍ଚତା, ପରାକାଷ୍ଠା, ଶୀର୍ଷ ସ୍ଥାନ । [ ବର୍ଦ୍ଧିତ କରିବା ।
**Heighten**, *v.* ଉନ୍ନତ କରିବା,
**Heinous**, *a.* ଘୋର, ଦାରୁଣ, ପାପିଷ୍ଠ, ଅତି ଜଘନ୍ୟ ।
**Heinously**, *ad.* ଜଘନ୍ୟଭାବରେ ।
**Heinousness**, *n.* ଦାରୁଣତା, ଜଘନ୍ୟତା, ନିନ୍ଦନୀୟତା ।
**Heir**, *n.* ଉତ୍ତରାଧିକାରୀ, ଦାୟାଦ ।
**Heir-apparent**, *n.* ଭାବୀ ଉତ୍ତରାଧିକାରୀ, ଯୁବରାଜ ।
**Heiress**, *n.* ଉତ୍ତରାଧିକାରିଣୀ ।
**Heirless**, *a.* ଦାୟାଦଶୂନ୍ୟ, ବେଓ୍ୱାରିସ । [ ନୁକ୍ରମେ ଅଧିକୃତ ଦ୍ରବ୍ୟ ।
**Heirloom**, *n.* ପରିବାରରେ ପୁରୁଷା-
**Heir-presumptive**, *n.* ସମ୍ଭାବ୍ୟ ଉତ୍ତରାଧିକାରୀ । [ ଉତ୍ତରାଧିକାରିତ୍ୱ ।
**Heirship, Heirdom**, *n.*
**Helianthus**, *n.* ସୂର୍ଯ୍ୟମୁଖୀ ଫୁଲ ।
**Helicopter**, *n.* ଆଧୁନିକ ଆକାଶ-ବିମାନବିଶେଷ ।
**Heliograph**, *n.* ସୂର୍ଯ୍ୟକିରଣ ସାହାଯ୍ୟରେ ସଙ୍କେତଦ୍ୱାରା ବାର୍ତ୍ତାପ୍ରେରକ ଯନ୍ତ୍ର, ସୂର୍ଯ୍ୟଙ୍କର ଫଟୋ ନେବାପାଇଁ ଯନ୍ତ୍ରବିଶେଷ ।
**Heliolater**, *n.* ସୂର୍ଯ୍ୟୋପାସକ ।
**Heliolatry**, *n.* ସୂର୍ଯ୍ୟୋପାସନା ।

**Helioscope,** *n.* ସୂର୍ଯ୍ୟଙ୍କୁ ପର୍ଯ୍ୟବେକ୍ଷଣ କରିବାରେ ବ୍ୟବହୃତ ଦୂରବୀକ୍ଷଣ ଯନ୍ତ୍ରବିଶେଷ ।

**Helium,** *n.* ସୌରମଣ୍ଡଳରୁ ଆବିଷ୍କୃତ ଏକ ମୌଳିକ ପଦାର୍ଥ, ଅତି ଲଘୁ ଓ ଅଦାହ୍ୟ ଗ୍ୟାସ୍‌ବିଶେଷ ।

**Hell,** *n.* ନରକ, ଯମପୁର ।

**Hell-fire,** *n.* ନରକଯନ୍ତ୍ରଣା ।

**Hellish,** *a.* ନାରକୀୟ, ପାପମୟ ।

**Helm,** *n.* ନୌକାର କର୍ଣ୍ଣ, ମଙ୍ଗ, ସୁକାନ ।

**Helmet,** *n.* ଶିରସ୍ତ୍ରାଣ, ଧାତୁନିର୍ମିତ ଟୋପି ।

**Helmless,** *a.* କର୍ଣ୍ଣହୀନ ।

**Helmsman,** *n.* କର୍ଣ୍ଣଧାର, ମାଝି, ମଙ୍ଗୁଆଲ ।

**Helot,** *n.* କ୍ରୀତଦାସ ।

**Helotry,** *n.* କ୍ରୀତଦାସଶ୍ରେଣୀ ।

**Help,** *n.* ସାହାଯ୍ୟ, ଉପକାର, ଆନୁକୂଲ୍ୟ; *v.* ସାହାଯ୍ୟ କରିବା, ଉପକାର କରିବା ।

**Helper,** *n.* ସହାୟକ, ଉପକାରକ ।

**Helpful,** *a.* ସାହାଯ୍ୟକାରୀ, ଉପକାରୀ ।

**Helpless,** *a.* ନିଃସହାୟ, ନିରାଶ୍ରୟ, ନିରୁପାୟ, ନାଚାର ।

**Helplessly,** *ad.* ଅସହାୟଭାବରେ ।

**Helpmate,** *n.* ସହକାରୀ, ସହାୟ, ସହଧର୍ମିଣୀ ।

**Helter-skelter,** *ad.* ଇତସ୍ତତଃ, ଅବ୍ୟବସ୍ଥିତଭାବରେ ।

**Hem,** *n.* ଲୁଗାର ଧଡ଼ି, ଦଶି; *v.* ଧଡ଼ି ସିଲେଇ କରିବା ।

**Hemeralopia,** *n.* ଦିବାନ୍ଧତା ରୋଗ ।

**Hemicrania,** *n.* ଅଧାକପାଳ ରୋଗ ।

**Hemiplegia,** *n.* ଅର୍ଦ୍ଧାଙ୍ଗ ପକ୍ଷାଘାତ ।

**Hemisphere,** *n.* ଗୋଲାର୍ଦ୍ଧ, ଭୂଗୋଳକର ଅର୍ଦ୍ଧାଂଶ ।

**Hemlock,** *n.* ଏକପ୍ରକାର ଉଦ୍ଭିଜ୍ଜ ବିଷ ।

**Hemorrhage,** *n.* ରକ୍ତସ୍ରାବ ।

**Hemorrhoid,** *n.* ଅର୍ଶରୋଗ ।

**Hemp,** *n.* ଶଣ, ଛଣପଟ ।

**Hen,** *n.* କୁକ୍କୁଟୀ, ମାଈ କୁକୁଡ଼ା ।

**Hence,** *conj.* ତେଣୁ, ଏହି ହେତୁରୁ, ଏହିଠାରୁ, ଏହି ମୁହୂର୍ତ୍ତରୁ; *int.* ଦୂରହୁଅ!

**Henceforth, Henceforward,** *ad.* ଏହାପରେ, ଆଜିଠାରୁ, ଏଣିକି ।

**Henchman,** *n.* ପାର୍ଶ୍ୱଚର, ଅନୁଚର ।

**Henpecked,** *a.* ସ୍ତ୍ରୈଣ, ମାଇପିବୋଲା, ନାରୀବଶ ।

**Henroost,** *n.* କୁକ୍କୁଡ଼ାର ବସା ।

**Hepatic,** *a.* ଯକୃତ୍ ସମ୍ବନ୍ଧୀୟ ।

**Hepatitis,** *n.* ଯକୃତ୍‌ର ପ୍ରଦାହ ।

**Heptagon,** *n.* ସପ୍ତଭୁଜ କ୍ଷେତ୍ର, ସପ୍ତକୋଣୀ କ୍ଷେତ୍ର ।

**Heptangular,** *a.* ସପ୍ତକୋଣୀ ।

**Her,** *pr.* ତାହାର, ତାହାକୁ (ସ୍ତ୍ରୀଲିଙ୍ଗରେ) ।

**Herald**, *n.* ଅଗ୍ରଦୂତ, ଘୋଷଣାକାରୀ; *v.* ଘୋଷଣା କରିବା ।
**Herb**, *n.* ଶାକ, ବୃକ୍ଷଲତା ।
**Herbage**, *n.* ଶାକ ତୃଣ ପ୍ରଭୃତି, ଶାକସବଜି । [ ଜାତ, ଉଦ୍ଭିଜ୍ଜ ।
**Herbal**, *a.* ଭେଷଜ-ବୃକ୍ଷଲତା-
**Herbalist**, *n.* ଉଦ୍ଭିଦ ବିଷୟରେ ଅଭିଜ୍ଞ ବ୍ୟକ୍ତି । [ ତୃଣଲତାଭୋଜୀ ।
**Herbivorous**, *a.* ଉଦ୍ଭିଦଭୋଜୀ,
**Herbose, Herbous**, *a.* ଉଦ୍ଭିଦମୟ । [ ଶାଳୀ ।
**Herculean**, *a.* ଦୁଷ୍କର, ମହାବଳ-
**Herd**, *n.* ଯୂଥ, ଦଳ, ପଲ, ଗୋଠ ।
**Herdsman**, *n.* ଗୋରୁପଲ ଆଦିର ରଖୁଆଳ, ଜଗୁଆଳ ।
**Here**, *ad.* ଏଠାରେ, ଏଣେ । [ କେଉଁଠି
**Hereabouts**, *ad.* ଏହିଠାରେ
**Hereafter**, *ad.* ଏତଦନନ୍ତର, ଏହାପରେ; *n.* ପରଲୋକ । [ ସ୍ଥାନରେ ।
**Hereat**, *ad.* ଏହିଠାରେ, ଏହି
**Hereby**, *ad.* ଏତଦ୍ଦ୍ୱାରା ।
**Hereditable**, *a.* ଉତ୍ତରାଧିକାର-ସୂତ୍ରେ ପ୍ରାପ୍ୟ । [ ବଂଶାନୁଗତ ।
**Hereditary**, *a.* ପୈତୃକ,
**Heredity**, *n.* ବଂଶାନୁଗୁଣ, କୌଳିକ ଗୁଣରେ ଉତ୍ତରାଧିକାର ।
**Herein**, *ad.* ଏଥିରେ ।
**Hereof**, *ad.* ଏହାର, ଏଠାରୁ ।
**Hereon**, *ad.* ଏହାଉପରେ । [ ମତ ।
**Heresy**, *n.* ପ୍ରଚଳିତ ଧର୍ମର ବିରୁଦ୍ଧ
**Heretic**, *a.* ବିଧର୍ମୀ, ପ୍ରତିଷ୍ଠିତ ଧର୍ମ-ମତର ବିରୋଧୀ । [ ପୂର୍ବରୁ ।
**Heretofore**, *ad.* ଏପର୍ଯ୍ୟନ୍ତ, ଏଥି-
**Herewith**, *ad.* ଏତତ୍ସହ, ଏହା ସଙ୍ଗେ । [ ଯୋଗ୍ୟ ।
**Heritable**, *a.* ଉତ୍ତରାଧିକାର-
**Heritage**, *n.* କୌଳିକ ଧନ ବା ଗୁଣ, ପୈତୃକ ସମ୍ପତ୍ତି ।
**Hermit**, *n.* ସନ୍ନ୍ୟାସୀ, ତପସ୍ୱୀ, ଋଷି ।
**Hernia**, *n.* ଅନ୍ତ୍ରବୃଦ୍ଧି, ଅଣ୍ଡକୋଷ ରୋଗ । [ ନାୟକ ।
**Hero**, *n.* ବୀର, ଶୂର, ନାଟକାଦିର
**Heroic**, *a.* ବୀରତ୍ୱବ୍ୟଞ୍ଜକ, ସାହସିକ ।
**Heroically**, *ad.* ବୀରତ୍ୱ ସହକାରେ ।
**Heroine**, *n.* ବୀରରମଣୀ, ନାଟକାଦିର ନାୟିକା ।
**Heroism**, *n.* ବୀରଧର୍ମ, ବୀରତ୍ୱ ।
**Heron**, *n.* ବଗ, ବକଜାତୀୟ ଜଳଚର ପକ୍ଷୀବିଶେଷ ।
**Herring**, *n.* ସାମୁଦ୍ରିକ ମତ୍ସ୍ୟବିଶେଷ ।
**Herse**, *n.* ଶବବାହୀ ଗାଡ଼ି ।
**Herself**, *pr.* ସେ ନିଜେ (ସ୍ତ୍ରୀଲିଙ୍ଗରେ)
**Hesitancy**, *n.* ସନ୍ଦେହ, ଦ୍ୱିଧା, ସଂଶୟ, ପଛଘୁଞ୍ଚା ।

Hesitant, *a.* ସନ୍ଦେହପ୍ରବଣ, ଇତସ୍ତତଃ । [ ସନ୍ଦେହ କରିବା ।
Hesitate, *v.* ଇତସ୍ତତଃ କରିବା,
Hesitation, *n.* ଦ୍ୱିଧା, ସନ୍ଦେହ, ସଂଶୟ । [ ତାରା ।
Hesper, *n.* ଶୁକ୍ରତାରା, ସାନ୍ଧ୍ୟତାରା
Hesperian, *a.* ପାଶ୍ଚାତ୍ୟ, ପଶ୍ଚିମଦିଗସ୍ଥିତ ।
Hest, *n.* ଆଦେଶ, ଆଜ୍ଞା ।
Heterodox, *a.* ଶାସ୍ତ୍ରବିରୋଧୀ, ପ୍ରଚଳିତ ଧର୍ମମତର ବିରୁଦ୍ଧ ।
Heterodoxy, *n.* ବିରୁଦ୍ଧ ଧର୍ମମତ ।
Heterogeneous, *a.* ବିସଦୃଶ, ଭିନ୍ନଜାତୀୟ । [ କରିବା ।
Hew, *v.* ହାଣିବା, କାଟିବା, ଛେଦନ
Hewer, *n.* କାଟିବାବାଲା, ଛେଦନକାରୀ ।
Hexagon, *n.* ଷଡ଼୍‌ଭୁଜ କ୍ଷେତ୍ର ।
Hexagonal, *a.* ଷଡ଼୍‌ଭୁଜବିଶିଷ୍ଟ, ଷଟ୍‌କୋଣୀ । [ ବିଶିଷ୍ଟ ।
Hexangular, *a.* ଷଟ୍‌କୋଣ-
Hexapod, *n.* ଷଟ୍‌ପଦବିଶିଷ୍ଟ କୀଟ ।
Hey, *int.* ହାଃ ହାଃ, ହର୍ଷସୂଚକ ଧ୍ୱନି ।
Heyday, *n.* ପରାକାଷ୍ଠାର ସମୟ ।
Hiatus, *n.* ଛିଦ୍ର, ଫାଙ୍କ ।
Hibernal, *a.* ଶୀତକାଳୀନ ।
Hibernate, *v.* ଅଚୈତନ୍ୟ ଅବସ୍ଥାରେ ରହି ଶୀତକାଳ ଯାପନ କରିବା ।

Hiccup, Hiccough, *n.* ହିକ୍‌କା, ହାକୁଟି । [ ଲୁଚି ଯାଇଥିବା ।
Hid, Hidden, *a.* ଲୁକ୍‌କାୟିତ,
Hide, *v.* ଲୁଚାଇବା, ଗୋପନରେ ରଖିବା; *n.* ପଶୁଚର୍ମ । [ ଖେଳ ।
Hide-and-seek, *n.* ଲୁଚକାଳି
Hideous, *a.* କଦାକାର, ଭୀଷଣ ।
Hideously, *ad.* ଭୟଙ୍କରଭାବରେ ।
Hideout, *n.* ଗୋପନ ସ୍ଥଳ ।
Hiding, *n.* ଗୋପନ, ଗୁପ୍ତ ସ୍ଥାନ ।
Hie, *v.* ଶୀଘ୍ର ଗମନ କରିବା ।
Hierarchy, Hierarchism, *n.* ଧର୍ମସମ୍ବନ୍ଧୀୟ ବିଧିବ୍ୟବସ୍ଥା, ପୁରୋହିତ ସମାଜ, ଧର୍ମଯାଜକ ସମ୍ପ୍ରଦାୟ, ପୁରୋହିତତନ୍ତ୍ର ଶାସନ ।
Hieroglyph, Hieroglyphic, *n.* ସଙ୍କେତ ବା ଚିତ୍ରଦ୍ୱାରା ଲିଖନ, ଚିତ୍ରଲିପି ।
Higgle, *v.* ଦର କଷାକଷି କରିବା ।
Higgler, *n.* ଯେ ଦର କଷାକଷି କରେ ।
High, *a.* ଉନ୍ନତ, ଉଚ୍ଚ, ପ୍ରଧାନ, ଧନୀ, *ad.* ଊର୍ଦ୍ଧ୍ୱରେ ।
High-born, *a.* କୁଳୀନ, ଅଭିଜାତ ।
High-bred, *a.* ଉଚ୍ଚସମାଜରେ ବର୍ଦ୍ଧିତ
High Court, *n.* ଉଚ୍ଚ ବିଚାରାଳୟ, ହାଇକୋର୍ଟ । [ ମହାଗର୍ବୀ ।
High-flown, *a.* ଶବ୍ଦାଡ଼ମ୍ବରପୂର୍ଣ୍ଣ,

High-handed, *a.* ଉତ୍ପୀଡ଼କ, ଯଥେଚ୍ଛାଚାରୀ, ଉଦ୍ଧତ । [ ଗୁର, ଜବରଦସ୍ତି ।
High-handedness, *n.* ଯଥେଚ୍ଛା-
Highland, *n.* ପାର୍ବତ୍ୟ ପ୍ରଦେଶ ।
Highlander, *n.* ପାର୍ବତ୍ୟ ପ୍ରଦେଶର ଅଧିବାସୀ ।
Highly, *ad.* ଅତ୍ୟନ୍ତ, ଅତୀବ, ପରମ ।
Highlight, *n.* ଚିତ୍ର କିମ୍ବା ପ୍ରତିଛବିର ସମୁଜ୍ଜ୍ୱଳ ସ୍ଥାନ ।
High-minded, *a.* ଉଦାରଚେତା, ଉଚ୍ଚମନା । [ ବିଶେଷ ।
Highness, *n.* ସମ୍ମାନସୂଚକ ଉପାଧି-
High-pressure, *n.* ଗୁରୁଚାପ ।
High-priced, *a.* ମହାର୍ଘ, ଦୁର୍ମୂଲ୍ୟ ।
High-priest, *n.* ପ୍ରଧାନାଚାର୍ଯ୍ୟ ।
High-road, *n.* ରାଜପଥ, ରାଜମାର୍ଗ ।
High-sea, *n.* ତରଙ୍ଗାକୁଳ ସମୁଦ୍ର ।
High-sounding, *a.* ଶବ୍ଦାଡ଼ମ୍ବରପୂର୍ଣ୍ଣ
High-time, *n.* ଯଥାର୍ଥ ସମୟ ।
High-water, *n.* ପୂର୍ଣ୍ଣ ଜୁଆର ।
Highway, *n.* ରାଜପଥ, ସଦର ରାସ୍ତା ।
Highwayman, *n.* ଡକାଏତ, ଦସ୍ୟୁ
High-wrought, *a.* ସୁଗଠିତ, ସୁନ୍ଦରରୂପେ ନିର୍ମିତ ।
Hilarious, *a.* ପ୍ରଫୁଲ୍ଲ, ଉଲ୍ଲସିତ, ହୃଷ୍ଟ ।
Hilarity, *n.* ଆନନ୍ଦ, ଉଲ୍ଲାସ, ହର୍ଷ ।
Hill, *n.* ପାହାଡ଼, ସ୍ତୂପ ।

Hillock, *n.* ଛୋଟ ପାହାଡ଼, କୁଦ ।
Hilly, *a.* ପାହାଡ଼ିଆ, ପ୍ରସ୍ତରମୟ ।
Hilt, *n.* ମୂଠା, ଖଣ୍ଡା, ଛୁରି ଆଦିର ବେଣ୍ଟ ।
Him, *pr.* ତାହାଙ୍କୁ (ପୁଂଲିଙ୍ଗରେ) ।
Himself, *pr.* ସେ ନିଜେ, ସେ ସ୍ୱୟଂ (ପୁଂଲିଙ୍ଗରେ) ।
Hind, *n.* ହରିଣୀ, ଗାଉଁଲି ଲୋକ ।
Hinder, *v.* ବାଧା ଦେବା; *a.* ଅଧିକତର ପଶ୍ଚାଦ୍‌ବର୍ତ୍ତୀ ।
Hindmost, Hindermost, *a.* ସର୍ବାପେକ୍ଷା ପଶ୍ଚାଦ୍‌ବର୍ତ୍ତୀ, ସର୍ବାପଛ ।
Hinderance, Hindrance, *n.* ପ୍ରତିବନ୍ଧକ, ବାଧା ।
Hinge, *n.* କବ୍‌ଜା; *v.* ନିର୍ଭର କରିବା ।
Hint, *n.* ସଙ୍କେତ, ସୂଚନା; *v.* ସୂଚନା ଦେବା । [ ଉପକୂଳବର୍ତ୍ତୀ ପ୍ରଦେଶ ।
Hinterland, *n.* ନଦୀ ବା ସମୁଦ୍ରର
Hip, *n.* ଅଣ୍ଟା, ପିଚ୍ଛ, ନିତମ୍ବ ।
Hippopotamus, *n.* ଜଳହସ୍ତୀ, ସିନ୍ଧୁଘୋଟକ । [ *n.* ଭଡ଼ା ।
Hire, *v.* ଭଡ଼ା କରିବା, ଭଡ଼ା ଦେବା;
Hireling, *n.* ଠିକା ଚାକର, ଭୃତ୍ୟ ।
His, *pr.* ତାଙ୍କର, ତାହାର (ପୁଂଲିଙ୍ଗରେ)
Hiss, *v.* ଫଁ ଫଁ ଶବ୍ଦ କରିବା; *n.* ସାପର ଫଁ ଫଁ ଶବ୍ଦ ।
Historian, *n.* ଇତିହାସବେତ୍ତା, ଇତିହାସଲେଖକ । [ ସତ୍ୟମୂଳକ ।
Historic, *a.* ଇତିହାସପ୍ରସିଦ୍ଧ,

**Historical**, *a.* ଐତିହାସିକ ।
**History**, *n.* ଇତିହାସ ।
**Histrionic**, *a.* ଅଭିନୟସମ୍ବନ୍ଧୀୟ, ଅଭିନେତୃବିଷୟକ । [ ସୌଭାଗ୍ୟ ।
**Hit**, *v.* ଆଘାତ କରିବା; *n.* ଆଘାତ,
**Hitch**, *n.* ପ୍ରତିବନ୍ଧକ, ଝିଙ୍କାଓଟରା, ବିରୋଧ; *v.* ଝିଙ୍କି ହୋଇଯିବା, ବାନ୍ଧିବା ।
**Hither**, *ad.* ଏଇଆଡ଼େ, ଏଠାକୁ ।
**Hither and thither**, *ad.* ଏଣେତେଣେ, ଇତସ୍ତତଃ । [ ଏପର୍ଯ୍ୟନ୍ତ ।
**Hitherto**, *ad.* ଏଯାବତ୍, ଅଦ୍ୟାବଧି,
**Hit on**, *v.* ଉପାୟ ବାହାର କରିବା, ହଠାତ୍ ମୁଣ୍ଡକୁ ଆସିବା । [ ମହୁଫେଣା ।
**Hive**, *n.* ମଧୁଚକ୍ର, ମଧୁକୋଷ,
**Ho**, *int.* ଆହେ, ହେ, ହୋ !
**Hoar**, *a.* ଧଳା, ଶୁଭ୍ର; *n.* ଶୁଭ୍ରତା ।
**Hoar-frost**, *n.* ତୁଷାର, ବରଫ ।
**Hoard**, *n.* ସଞ୍ଚୟ, ଭଣ୍ଡାର, ପୁଞ୍ଜି; *v.* ସଞ୍ଚିରଖିବା, ମହଜୁଦ ରଖିବା ।
**Hoarder**, *n.* ସଞ୍ଚୟକାରୀ, ମହଜୁଦକାରୀ
**Hoariness**, *n.* ଶୁକ୍ଳତା, ବାର୍ଦ୍ଧକ୍ୟ ।
**Hoarse**, *a.* ରୁକ୍ଷ, କର୍କଶ, କଟୁ ।
**Hoarsely**, *ad.* କର୍କଶ ସ୍ୱରରେ, ଭଗ୍ନସ୍ୱରରେ ।
**Hoarseness**, *n.* ରୁକ୍ଷତା, ସ୍ୱରଭଙ୍ଗ ।
**Hoary**, *a.* ପଳିତକେଶ, ଅତି ପ୍ରାଚୀନ
**Hoax**, *n.* ପ୍ରବଞ୍ଚନା, ଛଳ, କପଟ, ଫାଙ୍କି; *v.* ଠକିବା ।
**Hob**, *n.* ଚକର ଗୁମ୍ବ, ଚୁଲିପାଖ ଢକାଠିଆ, ଅଟଳି ଲୋକ । [ ଖୁଡ଼ିବା ।
**Hobble**, *v.* ଖୋଟେଇ ଖୋଟେଇ
**Hobby**, *n.* ପ୍ରିୟ ବ୍ୟସନ, ବିଳାସ, ଅଭିରୁଚି । [ ବେତାଳ, ଅପଦେବତା ।
**Hobgoblin**, *n.* ଭୂତ, ପିଶାଚ,
**Hobnob**, *v.* ମିଳିମିଶି ଗପକରିବା, ମଦ ପିଇବା । [ ଖେଳ ।
**Hockey**, *n.* କ୍ରୀଡ଼ାବିଶେଷ, ହକି
**Hodgepodge**, *n.* ନାନା ଶାକସବଜିର ମିଶ୍ରଣରେ ପ୍ରସ୍ତୁତ ଜାଉ, ଘାଣ୍ଟିଆ ।
**Hoe**, *n.* କୋଦାଳ; *v.* କୋଦାଳରେ ଖୋଳିବା ।
**Hog**, *n.* ଶୂକର, ଘୁଷୁରି ।
**Hoggish**, *a.* ଶୂକରତୁଲ୍ୟ, କୁତ୍ସିତ ।
**Hogherd**, *n.* ଶୂକରରକ୍ଷକ ।
**Hog-plumb**, *n.* ଆମ୍ବଡ଼ା ।
**Hogshead**, *n.* ୬୩ ଗ୍ୟାଲନର ପିପା ।
**Hoist**, *v.* ଉତ୍ତୋଳନ କରିବା; *n.* ପତାକାଉତ୍ତୋଳନ ।
**Hold**, *v.* ଧରିବା, ଅବଲମ୍ବନ କରିବା; *n.* ଧାରଣ, ଅବଲମ୍ବନ, କର୍ତ୍ତୃତ୍ୱ, ଜାହାଜରେ ମାଲ ରଖିବା ସ୍ଥାନ ।
**Hold-all**, *n.* ବ୍ୟବହାର୍ଯ୍ୟ ଲୁଗାପଟା ରଖିବାର ବଡ଼ ବ୍ୟାଗ୍ ।
**Hold back**, *v.* ନିବାରଣ କରିବା ।
**Holder**, *n.* ବେଣ୍ଟ, ଧାରଣକାରୀ, ଦଖଲକାର ।

Hold forth, *v.* ପ୍ରକାଶ୍ୟରେ କହିବା, ଦେଖାଇବା । [ ସଯତ କରିବା ।

Hold in, *v.* ପ୍ରତିହତ କରିବା,

Holding, *n.* ଘରବାଡ଼ି, ଜମିଜମା ।

Hold off, *v.* ଦୂରରେ ରହିବା ।

Hold on, *v.* ପ୍ରବୃତ୍ତ ରହିବା, ତ୍ୟାଗ ନ କରିବା ।

Hold over, *v.* ମୁଲତବି ରଖିବା, ଭବିଷ୍ୟତକୁ ପକାଇ ରଖିବା ।

Hold up, *v.* ଉତ୍ତୋଳନ କରିବା ।

Hole, *n.* ଗର୍ତ୍ତ, ବିବର, ଗହ୍ୱର ।

Holiday, *n.* ପୁଣ୍ୟଦିବସ, ପର୍ବ, ଉତ୍ସବ ଦିନ, ଛୁଟିଦିନ ।

Holiness, *n.* ପବିତ୍ରତା, ନିଷ୍ପାପତା, ଉପାଧିବିଶେଷ ।

Hollow, *a.* ଶୂନ୍ୟଗର୍ଭ, ଫମ୍ପା, ନିଃସାର; *n.* ଗର୍ତ୍ତ, ଗହ୍ୱର ।

Hollowness, *n.* ଶୂନ୍ୟଗର୍ଭତା, ଅସାରତା, ଶୂନ୍ୟତା । [ ପୂର୍ଣ୍ଣାହୁତି ।

Holocaust, *n.* ବିଧ୍ୱଂସ, ଧ୍ୱଂସଯଜ୍ଞରେ

Holy, *a.* ପବିତ୍ର, ଧାର୍ମିକ, ଶୁଦ୍ଧ, ଶୁଚିମନ୍ତ ।

Homage, *n.* ସମ୍ମାନ, ଗୌରବ, ପୂଜା, ଅର୍ଚ୍ଚନା, ପ୍ରଭୁଭକ୍ତି । [ ସ୍ୱଦେଶ ।

Home, *n.* ଗୃହ, ଘର, ବାସସ୍ଥାନ,

Home-bound, *a.* ଗୃହାଭିମୁଖୀ, ଗୃହଗାମୀ ।

Homeland, *n.* ମାତୃଭୂମି, ଜନ୍ମଭୂମି ।

Homeliness, *n.* ସାଧାସିଧା ଭାବ, ଆଡ଼ମ୍ବରହୀନତା ।

Homely, *a.* ନିରାଡ଼ମ୍ବର ।

Home rule, *n.* ସ୍ୱରାଜ୍ୟ, ସ୍ୱାୟତ୍ତଶାସନ

Homœopath, Homeopath, *n.* ହୋମିଓପାଥି ବା ସଦୃଶ ପ୍ରଣାଳୀର ଚିକିତ୍ସକ ।

Homœopathy, Homeopathy, *n.* ମହାତ୍ମା ହାନିମାନଙ୍କ ଆବିଷ୍କୃତ ସଦୃଶ ଚିକିତ୍ସା ପଦ୍ଧତି ।

Homesick, *a.* ସ୍ୱଦେଶକୁ ଫେରିବା ପାଇଁ ବ୍ୟାକୁଳ ।

Homestead, *n.* ଘରବାଡ଼ି, ବାସ୍ତୁଭୂମି । [ *a.* ଗୃହାଭିମୁଖୀନ ।

Homeward, *ad.* ଗୃହାଭିମୁଖରେ;

Homicide, *n.* ନରହତ୍ୟା, ନରହତ୍ୟାକାରୀ ବ୍ୟକ୍ତି । [ ବାଣୀ ।

Homily, *n.* ଧର୍ମୋପଦେଶ, ଉପଦେଶ

Homogeneity, *n.* ସାମ୍ୟ, ସାଦୃଶ୍ୟ, ସମାନ ପ୍ରକୃତି । [ ସମପ୍ରକୃତିକ ।

Homogeneous, *a.* ସମଜାତୀୟ,

Homologous, *a.* ସଦୃଶ ।

Homonym, *n.* ସମୋଚ୍ଚାରିତ ଭିନ୍ନାର୍ଥକ ଶବ୍ଦ ।

Homonymous, *a.* ଦ୍ୱ୍ୟର୍ଥବୋଧକ ।

Hone, *n.* ଶାଣପଥର; *v.* ପଥରରେ ଶାଣ ଦେବା, ତୀକ୍ଷ୍ଣ କରିବା ।

**Honest**, *a.* ସାଧୁ, ସତ୍ୟବାଦୀ, ସଚ୍ଚରିତ, ନିଷ୍କପଟ, ନିଷ୍କପଟ ।

**Honestly**, *ad.* ନ୍ୟାୟମାର୍ଗରେ, ସାଧୁଭାବରେ । [ ନ୍ୟାୟପରତା ।

**Honesty**, *n.* ସାଧୁତା, ସତ୍ୟବାଦିତା,

**Honey**, *n.* ମଧୁ, ମହୁ, ପୁଷ୍ପରସ ।

**Honeycomb**, *n.* ମଧୁଚକ୍ର, ମଧୁକୋଷ, ମହୁଫେଣା ।

**Honeyed, Honied**, *a.* ମଧୁର, ସୁଧାମୟ, ମଧୁଲିପ୍ତ ।

**Honeymoon**, *n.* ମଧୁଚନ୍ଦ୍ରମା, ବରକନ୍ୟାଙ୍କର ବିବାହର ପରବର୍ତ୍ତୀ ମାସ ।

**Honey-mouthed**, *a.* ମଧୁରଭାଷୀ

**Honorarium**, *n.* ପାରିତୋଷିକ, ଦକ୍ଷିଣା । [ ସୂଚକ ।

**Honorary**, *a.* ଅବୈତନିକ, ସମ୍ମାନ-

**Honour**, *n.* ସମ୍ମାନ, ପ୍ରତିଷ୍ଠା, ପଦମର୍ଯ୍ୟାଦା; *v.* ସମ୍ମାନ କରିବା, ପୂଜା କରିବା । [ ପୂଜନୀୟ ।

**Honourable**, *a.* ସମ୍ମାନନୀୟ,

**Honourably**, *ad.* ସସମ୍ମାନରେ, ପ୍ରଶଂସାପୂର୍ବକ ।

**Hood**, *n.* ମସ୍ତକାବରଣ, ସାପର ଫଣା, ଗାଡ଼ିର ଛାତ; *v.* ଆବୃତ କରିବା ।

**Hoodwink**, *v.* ଭୁଲେଇବା, ଠକିବା, ଅନ୍ଧପୁଟୁଳି ବାନ୍ଧିବା ।

**Hoof**, *n.* ଗବାଦି ପଶୁଙ୍କ ଖୁରା ( *pl.* Hoofs, Hooves ) ।

**Hoofed**, *a.* ଖୁରାବିଶିଷ୍ଟ ।

**Hook**, *n.* ଅଙ୍କୁଶୀ, ବନଶିକଣ୍ଟା; *v.* ବନଶିକଣ୍ଟାରେ ଧରିବା ।

**Hooked**, *a.* ବକ୍ର, କୁଟିଳ ।

**Hook-nosed**, *a.* ବକ୍ରନାସିକାବିଶିଷ୍ଟ ।

**Hook-worm**, *n.* ଅଙ୍କୁଶୀ କୃମି ରୋଗ । [ ଲୋକ ।

**Hooligan**, *n.* ଦୁର୍ବୃତ୍ତ ଦଳର

**Hooping Cough**, *n.* ଆକ୍ଷେପଯୁକ୍ତ କାଶରୋଗ ।

**Hoot**, *n.* ପେଚାର ରବ; *v.* ଚିତ୍କାର କରିବା, ଗାଳି ଦେଇ ତଡ଼ିଦେବା ।

**Hop**, *v.* ଡେଇଁ ଡେଇଁ ଯିବା, ଏକ ଗୋଡ଼ରେ ଡେଇଁବା ।

**Hope**, *v.* ଆଶା କରିବା, ଅଭିଳାଷ କରିବା; *n.* ଆଶା, ଅଭିଳାଷ, ଆକାଙ୍କ୍ଷା, ପ୍ରତୀକ୍ଷା ।

**Hopeful**, *a.* ଆଶାସ୍ପଦ, ଆଶାନ୍ୱିତ ।

**Hopefully**, *ad.* ଆଶାନ୍ୱିତଭାବରେ ।

**Hopeless**, *a.* ନିରାଶ, ଆଶାଶୂନ୍ୟ ।

**Hopelessly**, *ad.* ନୈରାଶ୍ୟରେ, ନିରାଶଭାବରେ । [ ଆଶାଶୂନ୍ୟତା ।

**Hopelessness**, *n.* ନୈରାଶ୍ୟ,

**Horde**, *n.* ଲୁଣ୍ଠନକାରୀ ଜାତି, ଭ୍ରମଣଶୀଳ ଜାତି । [ ଚକ୍ରବାଳ ।

**Horizon**, *n.* ଦିଗ୍‌ବଳୟ, ଦିଗନ୍ତ,

**Horizontal**, *a.* ଭୂମିସହ ସମାନ୍ତର ।

Horizontally, *ad.* ଭୂମିସହ ସମାନ୍ତରଭାବରେ ।
Horn, *n.* ଶୃଙ୍ଗ, ଶିଙ୍ଗ, ଶିଙ୍ଗାବାଦ୍ୟ ।
Horned, *a.* ଶୃଙ୍ଗବିଶିଷ୍ଟ ।
Hornet, *n.* ବିରୁଡ଼ି । [ ବାଦ୍ୟ ।
Hornpipe, *n.* ବଂଶୀବିଶେଷ, ଶିଙ୍ଗା-
Horny, *a.* ଶୃଙ୍ଗବିଶିଷ୍ଟ, ଶୃଙ୍ଗସଦୃଶ, କଠିନ ।
Horoscope, *n.* ଜାତକ, ଜନ୍ମପତ୍ରିକା
Horrible, *a.* ଭୀଷଣ, ଭୟାଳ, ଭୟାନକ ।
Horrid, *a.* ଭୟଙ୍କର, କୁତ୍ସିତ ।
Horrific, *a.* ଭୀଷଣ, ଭୟାବହ ।
Horrify, *v.* ଆତଙ୍କିତ କରିବା, ଭୟ ଜନ୍ମାଇବା ।
Horror, *n.* ଭୟ, ଆତଙ୍କ, ତ୍ରାସ ।
Horse, *n.* ଘୋଡ଼ା, ଅଶ୍ୱ, ଘୋଟକ ।
Horseman, *n.* ଅଶ୍ୱାରୋହୀ, ଅଶ୍ୱାରୋହୀ ସୈନିକ । [ କୌଶଳ ।
Horsemanship, *n.* ଅଶ୍ୱାରୋହଣ-
Horse-mill, *n.* ଅଶ୍ୱଚାଳିତ କଳ ।
Horse-power, *n.* ଅଶ୍ୱଶକ୍ତି, ୩୩୦୦୦ ପାଉଣ୍ଡ ଓଜନ ଦ୍ରବ୍ୟକୁ ଏକ ମିନିଟରେ ଏକ ଫୁଟ ଉଠାଇବା ପାଇଁ ଆବଶ୍ୟକ ଶକ୍ତି । [ ପ୍ରତିଯୋଗିତା ।
Horse-race, *n.* ଘୋଡ଼ାଦୌଡ଼ର
Horse-shoe, *n.* ଘୋଡ଼ାର ନାଲ୍ ।

Horticultural, *a.* ଉଦ୍ୟାନ-ବିଦ୍ୟାବିଷୟକ ।
Horticulture, *n.* ଉଦ୍ୟାନବିଦ୍ୟା ।
Horticulturist, *n.* ଉଦ୍ୟାନ-ବିଦ୍ୟାବିଶାରଦ ।
Hose, *n.* ପାଦର ଆବରଣ, ମୋଜା, ପାଣି ନେବାପାଇଁ ସଙ୍କୋଚନଶୀଳ ନଳ ।
Hosier, *n.* ମୋଜାବିକ୍ରେତା ।
Hosiery, *n.* ମୋଜା ଦୋକାନ, ମୋଜା କାରଖାନା ।
Hospitability, *n.* ଅତିଥିପରାୟଣତା
Hospitable, *a.* ଅତିଥିପରାୟଣ, ସତ୍କାରଶୀଳ ।
Hospitably, *ad.* ସାଦରରେ, ଆତିଥ୍ୟ ସହକାରେ । [ ପାତାଳ ।
Hospital, *n.* ଡାକ୍ତରଖାନା, ବାସ-
Hospitality, *n.* ଆତିଥ୍ୟ ।
Host, *n.* ଅତିଥିସେବକ, ସେନାଦଳ, ଜନସଙ୍ଘ ।
Hostage, *n.* ଶତ୍ରୁରବନ୍ଧକ, ସନ୍ଧିସର୍ତ୍ତ ପୂରଣ ନିମନ୍ତେ ଶତ୍ରୁ ନିକଟରେ ଆବଦ୍ଧ ବ୍ୟକ୍ତି
Hostel, *n.* ଛାତ୍ର ବା ଛାତ୍ରୀନିବାସ, ଅତିଥିଶାଳା ।
Hosteller, *n.* ଛାତ୍ର ବା ଛାତ୍ରୀନିବାସରେ ରହୁଥିବା ବାଳକ ବା ବାଳିକା ।
Hostess, *n.* ଗୃହିଣୀ, ଆତିଥ୍ୟକାରିଣୀ ।
Hostile, *a.* ଶତ୍ରୁଭାବାପନ୍ନ, ବିପକ୍ଷ, ପ୍ରତିକୂଳ ।

**Hostility**, *n.* ଶତ୍ରୁତା, ଯୁଦ୍ଧ ।
**Hostler**, *n.* ଅଶ୍ୱଶାଳାର ଅଶ୍ୱରକ୍ଷକ
**Hot**, *a.* ଗରମ,ଉତ୍ତପ୍ତ,ଉଷ୍ଣ, ପ୍ରଖର, ତୀବ୍ର ।
**Hot-bed**, *n.* କେନ୍ଦ୍ରସ୍ଥାନ, ସରଗରମ ଜାଗା ।
**Hot-blooded**, *a.* ଚଣ୍ଡପ୍ରକୃତିକ, ଶୀଘ୍ରକୋପୀ ।
**Hotchpotch**, *n.* ଖେଚେଡ଼ି, ଘାଣ୍ଟିଆ
**Hotel**, *n.* ଭୋଜନାଳୟ, ହୋଟେଲ ।
**Hot-headed**, *a.* କ୍ରୋଧାନ୍ୱିତ ।
**Hotly**, *ad.* ଉଷ୍ଣତାସହ, ଉଗ୍ରଭାବରେ ।
**Hotness**, *n.* ଉଷ୍ଣତା, ତାପ, ପ୍ରଖରତା ।
**Hot-tempered**, *a.* ଉଗ୍ରପ୍ରକୃତିକ, ବଦମିଜାଜୀ ।
**Hottentot**, *n.* ଦକ୍ଷିଣପଶ୍ଚିମ ଆଫ୍ରିକାର ଯାଯାବର ଜାତିବିଶେଷ ।
**Hound**, *n.* ଶିକାରୀ କୁକ୍କୁରବିଶେଷ; *v.* ଶିକାର କରିବା, କୁକ୍କୁର ଲଗାଇଦେବା
**Hour**, *n.* ସମୟ, ଘଣ୍ଟା, ଦିବସର ୨୪ ଭାଗରୁ ଏକ ଭାଗ ।
**Hour-hand**, *n.* ଘଡ଼ିରେ ଥିବା ଘଣ୍ଟା କଣ୍ଟା ।
**Hourly**, *a.* ଏକ ଘଣ୍ଟା ପରିମିତ, ପ୍ରତି ଘଣ୍ଟାରେ ଅନୁଷ୍ଠିତ; *ad.* ପ୍ରତି ଘଣ୍ଟାରେ ।
**House**, *n.* ବାସଗୃହ, ଘର; *v.* ଗୃହରେ ସ୍ଥାନ ଦେବା, ବାସ କରିବା ।
**House-breaking**, *n.* ସିନ୍ଧ ।
**Household**, *n.* ପରିବାର, କୁଟୁମ୍ବ; *a.* ପାରିବାରିକ, ଗାର୍ହସ୍ଥ୍ୟ ।
**Householder**, *n.* ଗୃହସ୍ଥ, କୁଟୁମ୍ବୀ, ସ୍ୱାମୀ । [ ଗୃହକର୍ମ ।
**Housekeeping**, *n.* ଘରକରଣା,
**Houseless**, *a.* ଗୃହହୀନ, ନିରାଶ୍ରୟ ।
**Housewife**, *n.* ଗୃହକର୍ତ୍ତ୍ରୀ, ଗୃହର ପରିଚାଳିକା ।
**Hovel**, *n.* କୁଡ଼ିଆଘର ।
**Hover**, *v.* ଉଡ଼ି ଚକ୍କର ଦେବା, ଏପାଖ ସେପାଖ ହେବା ।
**How**, *ad.* କିପରି, କେଉଁ ପ୍ରକାରେ ।
**Howbeit**, *ad.* ଯେପରି ହେଉ ।
**Howdah**, *n.* ହାଉଦା, ହାତୀପିଠିର ଗଦି ବା ଆସନ ।
**However**, *ad & con.* ଯାହା-ହେଉ, ତଥାପି, କୌଣସିମତେ ।
**Howl**, *v.* ଚିତ୍କାର କରିବା ।
**Howsoever**, *ad.* ଯଥାତଥା, ଯେନ-କେନ ପ୍ରକାରେଣ, ଯାହାହେଉ ପଛକେ ।
**Hub**, *n.* ଚକର ତୁମ୍ବ, ଲକ୍ଷ୍ୟ, କେନ୍ଦ୍ର ।
**Hubble-bubble**, *n.* ହୁକ୍କା, ଗୁଡ଼ଗୁଡ଼ି । [ କଳନାଦ ।
**Hubbub**, *n.* କୋଳାହଳ, ତୁମୁଳ
**Huckle**, *n.* ନିତମ୍ବ, କୁଜ ।
**Huddle**, *v.* ଗୁନ୍ଦାଗୁନ୍ଦି ହେବା; *n.* ଲୋକଗହଳି, ଗୋଳମାଳ ।

**Hue**, *n.* ବର୍ଣ୍ଣ, ରଙ୍ଗ, ଚକ୍ବାର ।

**Hue and cry**, *n.* କୋଲାହଳ, ପ୍ରବଳ ଜନରବ ।

**Hug**, *v.* ଆଲିଙ୍ଗନ କରିବା, କୁଣ୍ଢେଇବା; *n.* ଆଲିଙ୍ଗନ, ଆଶ୍ଳେଷ । [ ଅତିବୃହତ୍ ।

**Huge**, *a.* ବିରାଟ, ବିଶାଳ, ପ୍ରକାଣ୍ଡ,

**Hull**, *n.* ଚମ୍ପ, ଖୋସା, ପୋତର ସ୍ଥୂଳ-ଭାଗ; *v.* ଖୋସା ବାହାର କରିଦେବା ।

**Hum**, *v.* ଗୁଣୁଗୁଣୁ ହେବା, ଗୁଞ୍ଜନ କରିବା; *n.* ଭ୍ରମର ଆଦିର ଗୁଞ୍ଜନ ।

**Human**, *a.* ମାନବିକ, ମନୁଷ୍ୟସମ୍ବନ୍ଧୀୟ ।

**Humane**, *a.* ଦୟାପୂର୍ଣ୍ଣ, ସଦୟ ।

**Humanism**, *n.* ସାହିତ୍ୟିକ ସଂସ୍କୃତି, ମାନବ-ହିତପରତା ।

**Humanitarian**, *a.* ମାନବହିତୈଷୀ

**Humanity**, *n.* ମାନବିକତା, ମାନବ ଜାତି ।

**Human kind**, *n.* ମାନବ ଜାତି ।

**Humanly**, *ad.* ମନୁଷ୍ୟପକ୍ଷରେ ।

**Humble**, *a.* ବିନୀତ, ନମ୍ର; *v.* ଅବନତ କରିବା ।

**Humbleness**, *n.* ବିନୟ, ନମ୍ରତା ।

**Humbly**, *ad.* ନମ୍ରଭାବରେ ।

**Humbug**, *n.* ପ୍ରତାରଣା, ଠକାମି, ଫାଙ୍କି; *v.* ଠକିବା ।

**Humdrum**, *a.* ଅତିସାଧାରଣ, ବୈଚିତ୍ର୍ୟହୀନ, ବିରକ୍ତିକର; *n.* ବୈଚିତ୍ର୍ୟ-ହୀନତା, ବିରକ୍ତି ।

**Humid**, *a.* ଆର୍ଦ୍ର, ସାମାନ୍ୟ ଓଦା ।

**Humidity**, *n.* ଆର୍ଦ୍ରତା ।

**Humiliate**, *v.* ଅପମାନ ଦେବା, ଅପଦସ୍ଥ କରିବା ।

**Humiliating**, *a.* ଅପମାନଜନକ ।

**Humiliation**, *n.* ଅପମାନ, ଅବମାନନା ।

**Humility**, *n.* ବିନୟ, ନମ୍ରତା ।

**Humming**, *n.* ଗୁଣୁଗୁଣୁ ଶବ୍ଦ ।

**Humorist**, *n.* ବିଦୂଷକ, ହାସ୍ୟରସିକ ।

**Humorous**, *a.* କୌତୁକପ୍ରିୟ, ହାସ୍ୟରସପୂର୍ଣ୍ଣ, ହାସ୍ୟୋଦ୍ଦୀପକ ।

**Humour**, *n.* ହାସ୍ୟରସ, ଅଭିରୁଚି, ମିଜାଜ୍, ରସିକତା, ଶରୀରସ୍ଥ ବାତପିତ୍ତାଦି ରସ; *v.* ଅନ୍ୟର ମନକୁ ଜଗି କାମ କରିବା ।

**Hump**, *n.* କକୁଦ, ଚୂଳ, କୁଜ ।

**Humpbacked**, *a.* କକୁଦବିଶିଷ୍ଟ, କୁବ୍ଜପୃଷ୍ଠ, କୁଜା ।

**Hunch**, *n.* କୁବ୍ଜ, କୁଜ ।

**Hundred**, *a.* ଶତସଂଖ୍ୟକ, ଶତ-ପରିମିତ; *n.* ଏକ ଶତକ ।

**Hundredfold**, *a. & ad.* ଶତ-ଗୁଣ, ଶହେ ଥର ।

**Hundredth**, *a.* ଶତତମ ।

**Hundredweight (H. wt.)**, *n.* ହନ୍ଦର (୧୧୨ ପାଉଣ୍ଡ ଓଜନ) ।

**Hunger**, *n.* କ୍ଷୁଧା, ଭୋଜନେଚ୍ଛା, ଲିପ୍ସା, ଆକାଙ୍କ୍ଷା ।

**Hunger-strike**, *n.* ଅନଶନ ଧର୍ମଘଟ ।
**Hungry**, *a.* କ୍ଷୁଧାତୁର, କ୍ଷୁତ୍ପୀଡ଼ିତ, ଆକାଂକ୍ଷୀ ।
**Hunt**, *n.* ଶିକାର, ଅନୁସନ୍ଧାନ; *v.* ଶିକାର କରିବା, ଖୋଜିବା ।
**Hunt after**, *v.* ଅନୁସନ୍ଧାନ କରିବା ।
**Hunt down**, *v.* ଅତ୍ୟାଚାରରେ ଧ୍ୱଂସ କରିବା ।
**Hunter**, *n.* ଶିକାରୀ, ବ୍ୟାଧ ।
**Huntress**, *n.* ଶିକାର କରୁଥିବା ନାରୀ ।
**Huntsman**, *n.* ଶିକାରୀ ।
**Hurdle**, *n.* ନେବା ଆଣିବା ଯୋଗ୍ୟ ଜାଲିବାଡ଼ ପ୍ରତିବନ୍ଧକ; *v.* ଜାଲିବାଡ଼ ଦ୍ୱାରା ଆବଦ୍ଧ କରିବା ।
**Hurl**, *v.* ବେଗରେ ଫିଙ୍ଗିବା; *n.* ନିକ୍ଷେପ ।
**Hurrah, Hurray**, *int.* ସାବାସ୍, ବାଃ ବାଃ, ପ୍ରଶଂସା ଧ୍ୱନି ।
**Hurricane**, *n.* ତୋଫାନ, ପ୍ରବଳ ବାତ୍ୟା, ଘୂର୍ଣ୍ଣିବାୟୁ । [ ଅନୁଷ୍ଠିତ ।
**Hurried**, *a.* ତ୍ୱରିତ, ଅତି ବେଗରେ
**Hurry**, *n.* ତ୍ୱରା, ଶୀଘ୍ରତା, ଚଞ୍ଚଳତା; *v.* ଶୀଘ୍ର କାର୍ଯ୍ୟ କରିବା, ଚଞ୍ଚଳ ହେବା ।
**Hurt**, *v.* ଆଘାତ କରିବା, ପୀଡ଼ା ଦେବା; *n.* ଆଘାତ, କ୍ଷତ; *a.* ଆଘାତପ୍ରାପ୍ତ ।
**Hurtful**, *a.* କ୍ଷତିକାରକ, ବ୍ୟଥାଦାୟକ ।
**Hurtless**, *a.* ଅକ୍ଷତ, ଅନାହତ ।
**Husband**, *n.* ସ୍ୱାମି, ଭର୍ତ୍ତା, ପତି; *v.* ଜଗିରଖି ଖରଚ କରିବା ।
**Husbandman**, *n.* କୃଷକ, କୃଷୀ ।
**Husbandry**, *n.* କୃଷିକାର୍ଯ୍ୟ, ସ୍ୱଳ୍ପ ବ୍ୟୟରେ ଗୃହପରିଚାଳନା ।
**Hush**, *v.* ଚୁପ୍ କରିବା; *a.* ଶାନ୍ତ, ନୀରବ; *int.* ଚୁପ୍, ଚୁପ୍ ରହ ।
**Hush-money**, *n.* ଲାଞ୍ଚ, ଘୁଷ୍, ଉତ୍କୋଚ । [ ନୀରବ ରହିବା ।
**Hush up**, *v.* ଘଟନାକୁ ଲୁଚାଇ ରଖିବା,
**Husk**, *n.* ଚୋପା, ତଷୁ ।
**Husky**, *a.* କର୍କଶ, ଗ୍ରୁଡକଣ୍ଠ ।
**Hustle**, *v.* ଠେଲାଠେଲି ହେବା, ଗୋଳମାଳ କରି ଏକାଠି ହେବା ।
**Hut**, *n.* କୁଡ଼ିଆଘର ।
**Hyacinth**, *n.* ପୁଷ୍ପବିଶେଷ, ଏକ ପ୍ରକାର ମଣି । [ ଗଧିଆ ।
**Hyæna, Hyena**, *n.* ହେଟାବାଘ,
**Hybrid**, *n.* ଭିନ୍ନଜାତୀୟ ପ୍ରାଣୀର ମିଳନରୁ ଜାତ ପ୍ରାଣୀ ବା ଭିନ୍ନଜାତୀୟ ଉଦ୍ଭିଦର ମିଳନରୁ ଜାତ ଉଦ୍ଭିଦ, ସଙ୍କର, ଖଚର । [ ବହୁମସ୍ତକବିଶିଷ୍ଟ ।
**Hydraheaded**, *a.* ବହୁଶୀର୍ଷ,
**Hydrant**, *n.* ଜଳନିଃସାରଣକାରୀ ଯନ୍ତ୍ର । [ ଚାଳିତ ।
**Hydraulic**, *a.* ଜଳୀୟ ଶକ୍ତିଦ୍ୱାରା
**Hydraulics**, *n.* ଜଳଶକ୍ତିଯୋଗ ଶାସ୍ତ୍ର ।
**Hydrocele**, *n.* କୋଷବୃଦ୍ଧି ରୋଗ ।
**Hydrogen**, *n.* ଉଦଜାନ ଗ୍ୟାସ ।

Hydrology, *n.* ଜଳତତ୍ତ୍ୱ, ଜଳବିଜ୍ଞାନ ।
Hydropathy, *n.* ଜଳଚିକିତ୍ସା ।
Hydrophobia, *n.* ଜଳାତଙ୍କ ରୋଗ ।
Hydropsy, *n.* ଜଳୋଦର ରୋଗ ।
Hygiene, *n.* ସ୍ୱାସ୍ଥ୍ୟରକ୍ଷାବିଜ୍ଞାନ ।
Hygienic, *a.* ସ୍ୱାସ୍ଥ୍ୟରକ୍ଷାବିଜ୍ଞାନ-ବିଷୟକ, ସ୍ୱାସ୍ଥ୍ୟରକ୍ଷାବିଧିସମ୍ମତ ।
Hymn, *n.* ସ୍ତୋତ୍ର, ଉପାସନା, ଭଜନ ।
Hyperbole, *n.* ଅତିରଞ୍ଜନ, ଅତିଶୟୋକ୍ତି ।
Hyperbolic, *a.* ଅତିରଞ୍ଜିତ ।
Hyphen, *n.* ସଂଯୋଗଚିହ୍ନ (-) ।
Hypnosis, *n.* ସମ୍ମୋହନ ଅବସ୍ଥା ।
Hypnotise, *v.* ସମ୍ମୋହନ କରିବା ।
Hypnotism, *n.* ସମ୍ମୋହନ ବିଦ୍ୟା ।
Hypocrisy, *n.* କୁଟିଳତା, ଛଳନା, ଶଠତା ।
Hypocrite, *n.* ଭଣ୍ଡ, ପ୍ରତାରକ ।
Hypothesis, *n.* ଅନୁମାନ, ଯୁକ୍ତି-ଛଳରେ ସ୍ୱୀକୃତ ବିଷୟ ।
Hypothetic, Hypothetical, *a.* ଅନୁମାନସିଦ୍ଧ, ଯୁକ୍ତିଛଳରେ ସ୍ୱୀକୃତ ।
Hysteria, *n.* ଅପସ୍ମାର, ମୂର୍ଚ୍ଛାରୋଗ ।
Hysteric, *a.* ମୂର୍ଚ୍ଛା ରୋଗଗ୍ରସ୍ତ ।
Hysterics, *n.* ଅପସ୍ମାର, ବାରମ୍ବାର ମୂର୍ଚ୍ଛା ।





# I

I, *pr.* ଆମ୍ଭେ, ମୁଁ ।
Ibex, *n.* ପାର୍ବତୀୟ ଛାଗଳ ।
Ice, *n.* ବରଫ, ତୁଷାର, ହିମ ।
Iceberg, *n.* ହିମଗିରି, ଭାସୁଥିବା ତୁଷାରସ୍ତୂପ ।
Ice-cold, *a.* ତୁଷାରତୁଲ୍ୟ ଶୀତଳ ।
Ice-cream, *n.* କୁଲ୍‌ଫି ବରଫ ।
Ichor, *n.* କ୍ଲେଦ, ପୂଜ ।
Icicle, *n.* ହିମକଣା, ପତନୋନ୍ମୁଖ ତୁଷାରକଣା ।
Icon, *n.* ମୂର୍ତ୍ତି, ଦେବପ୍ରତିମା, ବିଗ୍ରହ ।
Iconoclasm, *n.* ଦେବପ୍ରତିମାର ଧ୍ୱଂସ
Iconoclast, *n.* ଦେବପ୍ରତିମା-ଧ୍ୱଂସକାରୀ । [ ମୂର୍ତ୍ତିନିର୍ମାଣ ।
Iconography, *n.* ପ୍ରତିମାଲିଖନ,
Iconolater, *n.* ପ୍ରତିମାପୂଜକ ।
Icononlatry, *n.* ମୂର୍ତ୍ତିପୂଜା, ପୌତ୍ତଳିକତା ।
Iconology, *n.* ପ୍ରତିମାନିର୍ମାଣ ବିଦ୍ୟା ।
Icy, *a.* ହୈମ, ତୁଷାରତୁଲ୍ୟ, ବରଫମୟ, ନିଃସ୍ପୃହ । [ ଅଭିପ୍ରାୟ ।
Idea, *n.* ଧାରଣା, ଭାବନା, ମତ,

**Ideal**, *a.* ଆଦର୍ଶସ୍ଥାନୀୟ, ମନଃକଳ୍ପିତ; *n.* ଆଦର୍ଶ, ମାନସ ସୃଷ୍ଟି ।

**Idealis(z)e**, *v.* ଆଦର୍ଶରୂପେ ଗ୍ରହଣ କରିବା, ଧାରଣା କରିବା ।

**Idealism**, *n.* ଆଦର୍ଶବାଦ ।

**Idealist**, *n.* ଆଦର୍ଶବାଦୀ, କଳ୍ପନା-ପ୍ରବଣ ବ୍ୟକ୍ତି ।

**Idealistic**, *a.* ଆଦର୍ଶବାଦର ସମର୍ଥକ ।

**Ideally**, *ad.* ଆଦର୍ଶଭାବରେ ।

**Identical**, *a.* ଅଭିନ୍ନ, ଅନନ୍ୟ ।

**Identification**, *n.* ଅଭିନ୍ନତା ପ୍ରଦର୍ଶନ, ଏକରୂପତା, ସାଯୁଜ୍ୟ । [କରିବା ।

**Identify**, *v.* ପରିଚୟ ଦେବା, ଚହ୍ନିତ

**Identity**, *n.* ଅଭିନ୍ନତା, ଅଭେଦ, ଐକ୍ୟ । [ ବିଚାରଧାରା ।

**Ideology**, *n.* ଚିନ୍ତାର ଆଦର୍ଶ,

**Idiocy, Idiotcy**, *n.* ବୋକାମି, ମୂର୍ଖତା, ନିର୍ବୋଧତା । [ ବିଶିଷ୍ଟ ରୀତି ।

**Idiom**, *n.* ଶିଷ୍ଟ ପ୍ରୟୋଗ, ଭାଷାର

**Idiomatic**, *a.* ରୂଢ଼, ଭାଷାର ରୀତି-ସମ୍ମତ ।

**Idiopathy**, *n.* ରୋଗର ମୂଳ କାରଣ ।

**Idiosyncracy**, *n.* ବ୍ୟକ୍ତିଗତ ବୈଶିଷ୍ଟ୍ୟ, ବିଶିଷ୍ଟ ପ୍ରକୃତି, ଖିଆଲ ।

**Idiosyncratic**, *a.* ଖିଆଲୀ, ବ୍ୟକ୍ତିଗତ ସ୍ୱାତନ୍ତ୍ର୍ୟବିଶିଷ୍ଟ । [ ବ୍ୟକ୍ତି ।

**Idiot**, *n.* ବୋକା, ଜଡ଼, ନିର୍ବୋଧ

**Idiotic, Idiotical**, *a.* ବୋକା, ନିର୍ବୋଧ । [ ନିରର୍ଥକ ।

**Idle**, *a.* ଅଳସ, କର୍ମକୁଣ୍ଠ, ନିଶ୍ଚେଷ୍ଟ,

**Idleness**, *n.* ଆଳସ୍ୟ, କର୍ମକୁଣ୍ଠତା, ନିରୁଦ୍ୟମ । [ ବ୍ୟକ୍ତି, ଅଳସୁଆ ଲୋକ ।

**Idler**, *n.* ବୃଥା କାଳକ୍ଷେପଣକାରୀ

**Idly**, *ad.* ଅଳସଭାବରେ ।

**Idol**, *n.* ମୂର୍ତ୍ତି, ପ୍ରତିମା, ଦେବବିଗ୍ରହ ।

**Idolater**, *n.* ପ୍ରତିମାପୂଜକ, ମୂର୍ତ୍ତିପୂଜକ ।

**Idolatrous**, *a.* ମୂର୍ତ୍ତିପୂଜାକାରୀ, ପୌତ୍ତଳିକ । [ ପୌତ୍ତଳିକତା ।

**Idolatry**, *n.* ପ୍ରତିମାପୂଜା,

**Idoli(s)ze**, *v.* ଦେବତାପରି ପୂଜା କରିବା ।

**Idolism**, *n.* ପିତୁଳାପୂଜା ।

**Idyl, Idyll**, *n.* ଗ୍ରାମ୍ୟଗୀତି, ଗାଥା ।

**If**, *con.* ଯେବେ, ଯଦି, ଯଦ୍ୟପି ।

**Igneous**, *a.* ଆଗ୍ନେୟ, ଅଗ୍ନିମୟ ।

**Igniferous**, *a.* ଅଗ୍ନ୍ୟୁତ୍ପାଦକ ।

**Ignite**, *v.* ଦହନ କରିବା, ଜାଳିବା, ଦୀପ୍ତ କରିବା, ନିଆଁ ଲଗାଇବା ।

**Ignition**, *n.* ଜ୍ୱଳନ, ଦହନ, ଦୀପନ ।

**Ignoble**, *a.* ଅନୁଦାର, ହୀନ, ନୀଚ, ଅଧମ, ଜଘନ୍ୟ, ଅନାର୍ଯ୍ୟ ।

**Ignominious**, *a.* ଲଜ୍ଜାଜନକ, କଳଙ୍କମୟ, ନିନ୍ଦନୀୟ । [ ଭାବରେ ।

**Ignominiously**, *ad.* ନିନ୍ଦନୀୟ

**Ignominy**, *n.* ଅପମାନ, କଳଙ୍କ ଅପଖ୍ୟାତ, ନିନ୍ଦା । [ ମୂର୍ଖତା, ମୋହ ।
**Ignorance**, *n.* ଅଜ୍ଞାନ, ଅଜ୍ଞତା,
**Ignorant**, *a.* ଅଜ୍ଞ, ମୂର୍ଖ, ଅଜ୍ଞାନ, ନିର୍ବୋଧ ।
**Ignorantly**, *ad.* ଅଜ୍ଞତାପୂର୍ବକ ।
**Ignore**, *v.* ଅବହେଳା କରିବା, ଅଗ୍ରାହ୍ୟ କରିବା, ସ୍ୱୀକାର ନ କରିବା ।
**Iliac**, *a.* ଆନ୍ତ୍ରିକ, ଅନ୍ତ୍ର ସମ୍ବନ୍ଧୀୟ ।
**Ill**, *a.* ପୀଡ଼ିତ, ମନ୍ଦ, ଅପକୃଷ୍ଟ, ଅଶୁଭ; *n.* ଦୁଃଖ, କ୍ଷତ, ଅନିଷ୍ଟ ।
**Illapse**, *n.* ହଠାତ୍ ପ୍ରବେଶ ।
**Illation**, *n.* ତର୍କ, ଅନୁମାନ ।
**Illative**, *a.* ଆନୁମାନିକ ।
**Ill-behaved**, *a.* ଅବିନୀତ, ଦୁଃଶୀଳ ।
**Ill-blood**, *a.* ବିରୋଧ, ବିଦ୍ୱେଷ, ଶତ୍ରୁତା ।
**Ill-bred**, *a.* ଅଶିଷ୍ଟ, ଅଭଦ୍ର ।
**Illegal**, *a.* ବେଆଇନ, ଆଇନବିରୁଦ୍ଧ ।
**Illegality**, *n.* ଅବୈଧତା ।
**Illegally**, *ad.* ବେଆଇନଭାବରେ, ଅନ୍ୟାୟଭାବରେ । [ ଅସ୍ପଷ୍ଟତା ।
**Illegibility**, *n.* ଦୁଷ୍ପାଠ୍ୟତା,
**Illegible**, *a.* ଦୁଷ୍ପାଠ୍ୟ, ଅସ୍ପଷ୍ଟ ।
**Illegitimacy**, *n.* ଅବୈଧତା, ଜାରଜନ୍ମ ।
**Illegitimate**, *a.* ଅବୈଧ, ଜାରଜ ।
**Illegitimately**, *ad.* ଅନ୍ୟାୟରୂପେ, ଅବୈଧଭାବରେ । [ ବଦନାମ ।
**Ill-fame**, *n.* ଅପଯଶ, ଅପକୀର୍ତ୍ତି,
**Ill-fated**, *a.* ହତଭାଗ୍ୟ, ଦୁର୍ଭାଗା ।
**Ill-feeling**, *n.* ଶତ୍ରୁତା, ବିଦ୍ୱେଷ ।
**Ill-gotten**, *a.* ଅନ୍ୟାୟାର୍ଜିତ ।
**Illiberal**, *a.* ଅନୁଦାର, ରକ୍ଷଣଶୀଳ, କୃପଣ, ନୀଚମନା । [ ଅନୁଦାରତା ।
**Illiberality**, *n.* ନୀଚତା,
**Illicit**, *a.* ଆଇନବିରୋଧୀ, ଅନୁଚିତ, ବେଆଇନ । [ ଅଶେଷ ।
**Illimitable**, *a.* ଅସୀମ, ଅନନ୍ତ,
**Illision**, *n.* ଆଘାତକରଣ ।
**Illiteracy**, *n.* ନିରକ୍ଷରତା, ମୂର୍ଖତା ।
**Illiterate**, *a.* ନିରକ୍ଷର, ଶିକ୍ଷାହୀନ ।
**Ill-looking**, *a.* କୁରୂପ, କଦାକାର, ଅସୁନ୍ଦର ।
**Ill-luck**, *n.* ଦୁର୍ଭାଗ୍ୟ, ଦୁର୍ଦ୍ଦୈବ ।
**Ill-mannered**, *a.* ଅଶିଷ୍ଟ, ଅଭଦ୍ର ।
**Ill-natured**, *a.* ମନ୍ଦପ୍ରକୃତିକ, ଦୁଃଶୀଳ ।
**Illness**, *n.* ରୋଗ, ବ୍ୟାଧି, ଅସ୍ୱାସ୍ଥ୍ୟ ।
**Illogical**, *a.* ଅଯୌକ୍ତିକ, ଯୁକ୍ତିବିରୁଦ୍ଧ ।
**Ill-omen**, *n.* ଅଶୁଭ ଶକୁନ ।
**Ill-shaped**, *a.* କଦାକାର ।
**Ill-tempered**, *a.* ରୁକ୍ଷପ୍ରକୃତିକ, ବଦମିଜାଜ ।

**Ill-treat**, *v.* ଦୁର୍ବ୍ୟବହାର କରିବା ।
**Ill-treatment**, *n.* ଦୁର୍ବ୍ୟବହାର, ଅତ୍ୟାଚାର ।
**Ill-turn**, *n.* ଅପକାର । [ ଜନ୍ମାଇବା ।
**Illude**, *v.* ପ୍ରତାରଣା କରିବା, ଭ୍ରମ
**Illuminate**, **Illumine**, *v.* ଆଲୋକିତ କରିବା, ଉଜ୍ଜ୍ୱଳ କରିବା, ଆଲୋକଦ୍ୱାରା ସଜ୍ଜିତ କରିବା ।
**Illumination**, *n.* ଆଲୋକସଜ୍ଜା ।
**Ill-used**, *a.* ଦୁର୍ବ୍ୟବହାରପ୍ରାପ୍ତ ।
**Illusion**, *n.* ମାୟା, ଭ୍ରାନ୍ତ ଧାରଣା ।
**Illusive,Illusory**,*a.* ଭ୍ରାନ୍ତିମୂଳକ, ମାୟାମୟ, ମିଥ୍ୟା ।
**Illustrate**, *v.* ବୁଝାଇବା, ଉଦାହରଣ ବା ଛବି ସାହାଯ୍ୟରେ ସ୍ପଷ୍ଟ କରିବା ।
**Illustration**, *n.* ବ୍ୟାଖ୍ୟାନ, ସ୍ପଷ୍ଟୀକରଣ, ଚିତ୍ରାଦିଦ୍ୱାରା ବର୍ଣ୍ଣନାକରଣ, ଦୃଷ୍ଟାନ୍ତ, ଚିତ୍ର ।
**Illustrative**, *a.* ବ୍ୟାଖ୍ୟାନମୂଳକ, ଦୃଷ୍ଟାନ୍ତ ସ୍ୱରୂପ । [ ପ୍ରକାଶକାରୀ ।
**Illustrator**, *n.* ବ୍ୟାଖ୍ୟାନକାର,
**Illustrious**, *a.* ପ୍ରସିଦ୍ଧ, ଖ୍ୟାତିସମ୍ପନ୍ନ, କୀର୍ତ୍ତିମାନ୍ । [ ଗୌରବ, ଯଶ ।
**Illustriousness**, *n.* ଖ୍ୟାତି,
**Ill-will**, *n.* ଶତ୍ରୁତା, ବିଦ୍ୱେଷ, ଅସୂୟା ।
**Image**, *n* ପ୍ରତିମୂର୍ତ୍ତି, ପ୍ରତିମା, ପ୍ରତିକୃତି; *v.* କଳ୍ପନା କରିବା ।
**Imagery**, *n.* ମନଃସୃଷ୍ଟି, ଦୃଷ୍ଟାନ୍ତ, ରୂପକ, କଳ୍ପିତ ବର୍ଣ୍ଣନା ।
**Imaginary**, *a.* କାଳ୍ପନିକ, କଳ୍ପନାପ୍ରସୂତ, ଅଳୀକ । [ କଳ୍ପନାଶକ୍ତି ।
**Imagination**, *n.* କଳ୍ପନା,
**Imaginative**, *a.* କଳ୍ପନାମୟ, କଳ୍ପନାଶୀଳ । [ ଅନୁମାନ କରିବା ।
**Imagine**, *v.* କଳ୍ପନା କରିବା,
**Imbank**, *v.* ବନ୍ଧଦ୍ୱାରା ଆବଦ୍ଧ କରିବା ।
**Imbecile**, *a.* ଦୁର୍ବଳ, ହୃତବୀର୍ଯ୍ୟ, ନିର୍ବୋଧ ।
**Imbecility**,*n.*ଦୌର୍ବଲ୍ୟ,ନିର୍ବୋଧତା ।
**Imbed**, *v.* ଭିତରେ ନିହିତ କରିବା, ଶାୟିତ କରିବା । [ ଉପଲବ୍ଧି କରିବା ।
**Imbibe**, *v.* ମନରେ ଗ୍ରହଣ କରିବା,
**Imbitter**, *v.* ତିକ୍ତ କରିବା ।
**Imbrue**, *v.* କଳଙ୍କିତ କରିବା, ସିକ୍ତ କରିବା । [ ଉପଦେଶ ଦେବା ।
**Imbue**, *v.* ଅନୁପ୍ରାଣିତ କରିବା,
**Imitable**, *a.* ଅନୁକରଣୀୟ ।
**Imitate**, *v.* ଅନୁକରଣ କରିବା, ନକଲ କରିବା । [ ଅନୁସରଣ ।
**Imitation**, *n.* ଅନୁକରଣ, ନକଲ,
**Imitative**, *a.* ଅନୁକରଣଶୀଳ, ଅନୁଗାମୀ, ଅନୁକରଣପ୍ରତିଷ୍ଠିତ ।
**Imitator**, *n.* ଅନୁକରଣକାରୀ ବ୍ୟକ୍ତି ।
**Immaculate**, *a.* ଶୁଦ୍ଧ, ପବିତ୍ର, ନିର୍ଦ୍ଦୋଷ ।

Immanence, *n.* ଅନ୍ତସ୍ଥିତି ।
Immanent, *a.* ଅନ୍ତରସ୍ଥ, ଅନ୍ତର୍ଭବ ।
Immaterial, *a.* ଅପାର୍ଥିବ, ଅନାବଶ୍ୟକ, ଅସମ୍ବଦ୍ଧ ।
Immaterialism, *n.* ନିରାକାରବାଦ
Immaterialist, *n.* ନିରାକାରବାଦୀ ।
Immature, *a.* ଅପକ୍ୱ, ଅପରିଣତ, ଅକାଳିକ ।
Immatureness, Immaturity, *n.* ଅପରିପକ୍ୱତା, ଅପରିଣାମ ।
Immeasurable, *a.* ଅପରିମେୟ, ଅମିତ, ମହାନ୍, ବିଶାଳ । [ ଶୀଘ୍ର, ସନ୍ନିହିତ
Immediate, *a.* ଅବ୍ୟବହିତ, ଅଚିର,
Immediately, *ad.* ତତ୍କ୍ଷଣାତ୍, ଶୀଘ୍ର, ଅଚିରାତ୍ । [ ଅନୁପଶମ୍ୟ ।
Immedicable, *a.* ଅଚିକିତ୍ସ୍ୟ,
Immemorable, *a.* ଅବିସ୍ମରଣୀୟ ।
Immemorial, *a.* ସ୍ମରଣାତୀତ, ଅତିପ୍ରାଚୀନ, ଅନାଦି । [ ଅନନ୍ତ ।
Immense, *a.* ବିଶାଳ, ବୃହତ୍, ଅସୀମ,
Immensely, *ad.* ଅତିମାତ୍ରାରେ, ଅତ୍ୟଧିକ ଭାବରେ ।
Immensity, *n.* ବିଶାଳତା, ଅସୀମତା, ମହତ୍ତ୍ୱ । [ ଅସୀମ ।
Immensurable, *a.* ଅପରିମେୟ,
Immerge, *v.* ନିମଜ୍ଜିତ କରିବା ।
Immeritorious, *a.* ଅଯୋଗ୍ୟ, ଅନୁପଯୁକ୍ତ ।
Immerse, *v.* ନିମଗ୍ନ କରିବା ବା ହେବା, ସ୍ନାନ କରିବା, ନିବିଷ୍ଟ ରହିବା ।
Immersed, *a.* ନିମଗ୍ନ, ଅଭିନିବିଷ୍ଟ, ବ୍ୟାପୃତ । [ ଅଭିନିବେଶ ।
Immersion, *n.* ନିମଜ୍ଜନ, ସ୍ନାନ,
Immethodical, *a.* ଅସମ୍ବନ୍ଧ, ଅବ୍ୟବସ୍ଥିତ । [ ଅଧିବାସୀ, ଔପନିବେଶିକ ।
Immigrant, *n.* ଦେଶାନ୍ତରରେ
Immigrate, *v.* ସ୍ୱଦେଶ ତ୍ୟାଗକରି ଦେଶାନ୍ତରରେ ବାସ କରିବା ।
Immigration, *n.* ସ୍ୱଦେଶ ତ୍ୟାଗପୂର୍ବକ ଦେଶାନ୍ତରରେ ନିବାସ ।
Imminence, *n.* ଆସନ୍ନତା, ନୈକଟ୍ୟ ।
Imminent, *a.* ଆସନ୍ନ, ସନ୍ନିହିତ, ଉପସ୍ଥିତ, ନିକଟବର୍ତ୍ତୀ ।
Immitigable, *a.* ଉପଶମର ଅଯୋଗ୍ୟ । [ ନିଶ୍ଚଳ ।
Immobile, *a.* ଚଳତ୍ଶକ୍ତିଶୂନ୍ୟ, ସ୍ଥିର,
Immoderate, *a.* ଅପରିମିତ, ଅତିରିକ୍ତ, ଅଯଥା । [ ଅତିରେକ ।
Immoderation, *n.* ଆତିଶଯ୍ୟ,
Immodest, *a.* ନିର୍ଲଜ୍ଜ, ଅବିନୀତ, ଧୃଷ୍ଟ । [ ନିର୍ଲଜ୍ଜଭାବରେ ।
Immodestly, *a.* ଉଦ୍ଧତଭାବରେ,
Immodesty, *n.* ନିର୍ଲଜ୍ଜତା, ଅବିନୟ, ଧୃଷ୍ଟତା । [ କରିବା ।
Immolate, *v.* ବଳି ଦେବା, ଉତ୍ସର୍ଗ

Immolation, *n.* ବଳିଦାନ, ଉତ୍ସର୍ଗାର୍ଥେ ବଧ । [ ଦୁରସ୍ଥ ।

Immoral, *a.* ନୀତିବିରୁଦ୍ଧ, ଦୁଷ୍ଟରିତ,

Immorality, *n.* ଅନୈତିକତା, ବ୍ୟସନ, ଅନ୍ୟାୟାଚରଣ ।

Immortal, *a.* ଅମର, ଅନଶ୍ୱର, ଅବିନାଶୀ, ନିତ୍ୟ, ସନାତନ ।

Immortality, *n.* ଅମରତ୍ୱ, ନିତ୍ୟତା, ଅବିନଶ୍ୱରତା ।

Immortaliz(s)e, *v.* ଅମର କରିବା, ଚିରସ୍ଥାୟୀ କରିବା । [ ସ୍ଥିର, ଅନମନୀୟ ।

Immovable, *a.* ସ୍ଥାବର, ଅଟଳ,

Immune, *a.* ବିମୁକ୍ତ, ରହିତ, ନିରାପଦ ।

Immunise, *v.* ମୁକ୍ତ କରିବା, ନିରାପଦ ରଖିବା ।

Immunity, *n.* ମୁକ୍ତି, ରାହିତ୍ୟ, ନିରାପଦ ଅବସ୍ଥା । [ ପରିବେଷ୍ଟନ କରିବା ।

Immure, *v.* ଅବରୋଧ କରିବା,

Immutability, *n.* ନିତ୍ୟତା, ବିକାରଶୂନ୍ୟତା, ଅପରିବର୍ତ୍ତନଶୀଳତା ।

Immutable, *a.* ନିତ୍ୟ, ଅବ୍ୟୟ, ନିର୍ବିକଳ୍ପ, ଅପରିବର୍ତ୍ତନୀୟ ।

Imp, *n.* ଭୂତ, ସଇତାନ, ପିଶାଚ, ଦୁଷ୍ଟପିଲା ।

Impacable, *a.* ଅଶମନୀୟ ।

Impact, *n.* ସଂସ୍ପର୍ଶ, ସମ୍ପର୍କ, ସଂଘର୍ଷ, ପ୍ରତିଘାତ; *v.* ସଂସ୍ପର୍ଶ କରିବା ।

Impair, *v.* କ୍ଷୟ କରିବା, ନାଶ କରିବା, କ୍ଷତି କରିବା ।

Impaired, *a.* କ୍ଷୟପ୍ରାପ୍ତ, କ୍ଷତିଗ୍ରସ୍ତ ।

Impale, *v.* ଶୂଳୀରେ ଚଢ଼ାଇବା ।

Impalpable, *a.* ସ୍ପର୍ଶାତୀତ, ଅବ୍ୟକ୍ତ, ଅବୋଧ୍ୟ, ଅତିସୂକ୍ଷ୍ମ । [ ପ୍ରଭେଦ ।

Imparity, *n.* ବୈଷମ୍ୟ, ଅସମତା,

Impart, *v.* ଅର୍ପଣ କରିବା, ଦେବା, ସଂଜ୍ଞାପିତ କରିବା । [ ସମଦର୍ଶୀ ।

Impartial, *a.* ନିରପେକ୍ଷ, ଅପକ୍ଷପାତୀ,

Impartiality, *n.* ନିରପେକ୍ଷତା, ଅପକ୍ଷପାତ । [ ସ୍ୱଭାବରେ, ନ୍ୟାୟତଃ ।

Impartially, *ad.* ନିରପେକ୍ଷ-

Impartible, *a.* ପ୍ରଦାନଯୋଗ୍ୟ, ଅବିଭାଜ୍ୟ । [ ଅଲଙ୍ଘ୍ୟ, ଦୁସ୍ତର ।

Impassable, *a.* ଅଭେଦ୍ୟ, ଅଗମ୍ୟ,

Impasse, *n.* ଘୋରସଙ୍କଟ, ଅଚଳ ଅବସ୍ଥା ।

Impassible, *a.* ଅଚେତନ, ଦୁଃଖାତୀତ

Impassionate, Impassioned, *a.* ଅନୁରକ୍ତ, ଆବେଗମୟ, ଉତ୍ତେଜନାପୂର୍ଣ୍ଣ । [ ଉଦାସୀନ ।

Impassive, *a.* ଅବିଚଳିତ,

Impatible, *a.* ଅସହ୍ୟ ।

Impatience, *n.* ଅଧୀରତା, ଧୈର୍ଯ୍ୟହୀନତା । [ ଅସ୍ଥିର ।

Impatient, *a.* ଅଧୀର, ଧୈର୍ଯ୍ୟଶୂନ୍ୟ,

Impeach, *v.* ଅଭିଯୁକ୍ତ କରିବା ।

Impeachment, *n.* ପାର୍ଲିଆମେଣ୍ଟରେ ଅଭିଯୋଗ ।

**Impeccable**, *a.* ଅଭ୍ରାନ୍ତ, ପ୍ରମାଦ-ଶୂନ୍ୟ, ନିଷ୍ପାପ ।
**Impecunious**, *a.* ଅର୍ଥହୀନ,ଦରିଦ୍ର ।
**Impede**, *v.* ବାଧା ଦେବା ।
**Impediment**, *n.* ବାଧା, ପ୍ରତିବନ୍ଧକ ।
**Impedition**, *n.* ଅବରୋଧ, ବାଧାଦାନ ।   [ ବାଧାଦାୟକ ।
**Impeditive**, *a.* ବ୍ୟାଘାତଜନକ,
**Impel**, *v.* ଉତ୍ତେଜିତ କରିବା, ଉତ୍ସାହ ଦେବା ।
**Impend**, *v.* ଘଟିବାକୁ ଉଦ୍ୟତ ହେବା, ଭୟ ପ୍ରଦର୍ଶନ କରିବା ।
**Impending**, *a.* ଆସନ୍ନ, ଆଗତପ୍ରାୟ, ସନ୍ନିକଟ ।   [ ପ୍ରବେଶ୍ୟତା, ଅଭେଦ୍ୟତା ।
**Impenetrability**, *n.* ଅ-
**Impenetrable**, *a.* ଅଭେଦ୍ୟ, ଅଗମ୍ୟ, ଅପ୍ରବେଶ୍ୟ, ନିବିଡ଼ ।
**Impenitence**, **Impenitency**; *n.* ହୃଦୟର କଠୋରତା ।
**Impenitent**, *a.* ଅନନୁତପ୍ତ, ଅନୁତାପଶୂନ୍ୟ ।   [ ଅତ୍ୟାବଶ୍ୟକ ।
**Imperative**, *a.* ଅବଶ୍ୟକର୍ତ୍ତବ୍ୟ,
**Imperatively**, *ad.* ଅବଶ୍ୟ-କର୍ତ୍ତବ୍ୟରୂପେ ।   [ ଅଗୋଚର ଅବସ୍ଥା ।
**Imperceptibility**, *n.* ଅସ୍ପଷ୍ଟତା,
**Imperceptible**, *a.* ଅସ୍ପଷ୍ଟ, ଅଗୋଚର, ଅବ୍ୟକ୍ତ, ଇନ୍ଦ୍ରିୟାତୀତ ।
**Imperceptibly**, *ad.* ଅଗୋ-ଚରରେ, ଅଲକ୍ଷିତ ଭାବରେ । [ଅଜ୍ଞାତସାର ।
**Imperceptive**, *a.* ଅଗୋଚର,
**Imperfect**, *a.* ଅସମାପ୍ତ, ଅସମ୍ପୂର୍ଣ୍ଣ, ଦୋଷଯୁକ୍ତ ।
**Imperfection**, **Imperfectness**, *n.* ଅପୂର୍ଣ୍ଣତା, ଦୋଷ, ଛିଦ୍ର ।
**Imperfectly**, *ad.* ଅସମ୍ପୂର୍ଣ୍ଣ ଭାବରେ, ଆଂଶିକଭାବରେ, ଅଂଶତଃ ।
**Imperforable**, *a.* ଅବେଧ, ଅଚ୍ଛେଦ୍ୟ
**Impereal**, *a.* ମହାରାଜକୀୟ, ସମ୍ରାଟ-ସମ୍ବନ୍ଧୀୟ ।
**Imperialism**, *n.* ସାମ୍ରାଜ୍ୟବାଦ ।
**Imperialist**, *n.* ସାମ୍ରାଜ୍ୟବାଦୀ ।
**Imperialistic**, *a.* ସାମ୍ରାଜ୍ୟବାଦ-ସଂକ୍ରାନ୍ତ, ସାମ୍ରାଜ୍ୟବାଦର ସମର୍ଥକ ।
**Imperil**, *v.* ବିପଦଗ୍ରସ୍ତ କରିବା, ବିପଦରେ ପକାଇବା ।
**Imperious**, *a.* ଧୃଷ୍ଟ, ଉଦ୍ଧତ, ଦୃପ୍ତ, ଦାମ୍ଭିକ, ପ୍ରଭୁତ୍ୱବ୍ୟଞ୍ଜକ ।
**Imperiousness**, *n.* ଧୃଷ୍ଟତା, ଦାମ୍ଭିକତା, ଔଦ୍ଧତ୍ୟ, ଗର୍ବ ।
**Imperishable**, *a.* ଅକ୍ଷୟ, ଅବି-ନଶ୍ୱର, ଅବିନାଶୀ ।   [ ସ୍ଥାୟିତ୍ୱହୀନ ।
**Impermanent**, *a.* ଅସ୍ଥାୟୀ,
**Impermeability**, *n.* ଅଭେଦ୍ୟତା, ଅପ୍ରବେଶ୍ୟତା ।   [ ଅପ୍ରବେଶ୍ୟ ।
**Impermeable**, *a.* ଅଭେଦ୍ୟ,

**Impermissible**, *a.* ଅନୁମତି-ଦାନର ଅଯୋଗ୍ୟ । [ ହୀନ ।
**Impersonal**, *a.* ଅକର୍ତ୍ତୃକ, ବ୍ୟକ୍ତିତ୍ୱ-
**Impersonate**, *v.* ନିଜକୁ ଅନ୍ୟ ବ୍ୟକ୍ତି ବୋଲି ପରିଚୟ ଦେବା, ବ୍ୟକ୍ତିତ୍ୱ ଆରୋପ କରିବା ।
**Impertinence**, *n.* ଅବିନୟ, ଧୃଷ୍ଟତା, ପ୍ରଗଲ୍‌ଭତା । [ ପ୍ରଗଲ୍‌ଭ ।
**Impertinent**, *a.* ଅବିନୀତ, ଧୃଷ୍ଟ,
**Impertinently**, *ad.* ଉଦ୍ଧତ ଭାବରେ, ଅଶିଷ୍ଟ ଭାବରେ । [ ଅବିଚଳିତ ।
**Imperturbable**, *a.* ନିର୍ବିକାର,
**Impervious**, *a.* ଅଭେଦ୍ୟ, ଦୁଷ୍ପ୍ରବେଶ୍ୟ, ଅଗମ୍ୟ, ନୀରନ୍ଧ୍ର ।
**Impetuous**, *a.* ତୀବ୍ର, ଉଗ୍ର, ପ୍ରବଳ, ବେଗବାନ୍ ।
**Impetuosity, Impetuousness**, *n.* ବେଗ, ଗତିଶକ୍ତି, ଉଗ୍ରତା, ପ୍ରେରଣା, ପ୍ରୋତ୍ସାହ । [ ଉଗ୍ରଭାବରେ ।
**Impetuously**, *ad.* ବେଗରେ,
**Impetus**, *n.* ବେଗ, ଶକ୍ତି, ପ୍ରେରଣା ।
**Impiety**, *n.* ଅଧର୍ମ, ଅସାଧୁତା, ପାପକର୍ମ । [ ଉପରେ ପଡ଼ିବା ।
**Impinge**, *v.* ଆଘାତ କରିବା,
**Impious**, *a.* ଅଧାର୍ମିକ, ପାପୀ, ଅସାଧୁ । [ ଅତୋଷଣୀୟ ।
**Implacable**, *a.* ଅଟଳ, ଅଶମନୀୟ,
**Implant**, *v.* ରୋପଣ କରିବା, ସ୍ଥାପନ କରିବା ।
**Implement**, *n.* ଉପକରଣ, ସାମଗ୍ରୀ, ସରଞ୍ଜାମ; *v.* କାର୍ଯ୍ୟରେ ପରିଣତ କରିବା ।
**Implementation**, *n.* କାର୍ଯ୍ୟରେ ପରିଣତକରଣ ।
**Implicate**, *v.* ଜଡ଼ିତ କରିବା, ଲିପ୍ତ କରିବା । [ ବ୍ୟଞ୍ଜନା, ସୂଚନା ।
**Implication**, *n.* ସମ୍ବନ୍ଧ, ଅନୁଷଙ୍ଗ,
**Implicit**, *a.* ନିଃସଂଶୟ, ନିର୍ବିବାଦ, ଅବିସ୍ତୃତ । [ ନିର୍ବିବାଦରେ ।
**Implicitly**, *ad.* ନିଃସନ୍ଦେହରେ,
**Implied**, *a.* ଉହ୍ୟ, ବ୍ୟଞ୍ଜିତ, ସୂଚିତ ।
**Implore**, *v.* ପ୍ରାର୍ଥନା କରିବା, ନିବେଦନ କରିବା ।
**Imply**, *v.* ସୂଚନା ଦେବା, ପ୍ରକାରାନ୍ତରେ ଜଣାଇବା, ବ୍ୟଞ୍ଜନାଦ୍ୱାରା ପ୍ରକାଶ କରିବା ।
**Impolite**, *a.* ଅଶିଷ୍ଟ, ଅଭଦ୍ର, ଦୁଃଶୀଳ ।
**Impoliteness**, *n.* ଅଶିଷ୍ଟତା, ଅସୌଜନ୍ୟ । [ ବିଚାରହୀନ, ଅବିବେଚକ ।
**Impolitic**, *a.* ନୀତିଜ୍ଞାନହୀନ,
**Import**, *v.* ଦେଶାନ୍ତରରୁ ଆଣିବା, ଆମଦାନି କରିବା, ଅର୍ଥ ବୁଝାଇବା; *n.* ଆମଦାନି, ଭାବ, ଅଭିପ୍ରାୟ ।
**Importable**, *a.* ଆମଦାନିଯୋଗ୍ୟ ।
**Importance**, *n.* ମହତ୍ତ୍ୱ, ଗୁରୁତ୍ୱ, ଉତ୍କର୍ଷ, ଗୌରବ ।

**Important,** *a.* ମହତ୍ତ୍ୱ, ଗୁରୁ, ପ୍ରଧାନ ।
**Importation,** *n.* ଦେଶାନ୍ତରରୁ ଆନୟନ, ଆମଦାନି, ଆମଦାନି ମାଲ୍ ।
**Importer,** *n.* ଆମଦାନିକାରୀ ।
**Importunate,** *a.* ଆଗ୍ରହୀ, ପ୍ରାର୍ଥନାକାରୀ । [ ପ୍ରାର୍ଥନା ସହକାରେ ।
**Importunately,** *ad.* ଆଗ୍ରହରେ,
**Importune,** *v.* ପ୍ରାର୍ଥନା କରିବା, ମିନତି କରିବା ।
**Importunity,** *n.* ବାରମ୍ବାର ପ୍ରାର୍ଥନା, ବିଶେଷ ଅନୁରୋଧ ।
**Impose,** *v.* ନ୍ୟସ୍ତ କରିବା, ନିହିତ କରିବା, ଭାର ଲଦିବା । [ କରିବା ।
**Impose upon,** *v.* ପ୍ରତାରଣା
**Imposing,** *a.* ଗମ୍ଭୀର, ଗାମ୍ଭୀର୍ଯ୍ୟ-ବ୍ୟଞ୍ଜକ । [ ଶୁଳ୍କ, ଛଳ ।
**Imposition,** *n.* ଭାର ଅର୍ପଣ, ନ୍ୟାସ,
**Impossibility,** *n.* ଅସାଧ୍ୟତା, ଅସମ୍ଭାବ୍ୟତା । [ ଅସାଧ୍ୟ ।
**Impossible,** *a.* ଅସମ୍ଭବ, ଦୁଷ୍କର,
**Impost,** *n.* କର, ଶୁଳ୍କ, ରାଜସ୍ୱ ।
**Impostor,** *n.* ଧୂର୍ତ୍ତ, ପ୍ରତାରକ, ଭଣ୍ଡ, ଠକ । [ କପଟ ।
**Imposture,** *n.* ପ୍ରତାରଣା, ବଞ୍ଚନା,
**Impotence, Impotency,** *n.* ନପୁଂସକତ୍ୱ, କ୍ଳୀବତ୍ୱ, ଦୌର୍ବଲ୍ୟ ।
**Impotent,** *a.* କ୍ଷୀଣବଳ, କ୍ଳୀବ, ନିର୍ବୀର୍ଯ୍ୟ, ପୌରୁଷହୀନ ।
**Impound,** *v.* ଗୋଠରେ ଆବଦ୍ଧ କରିବା, କାଞ୍ଜିଆହୋଦାରେ ପକାଇବା ।
**Impoverish,** *v.* ଦରିଦ୍ର କରିବା, ଧନକ୍ଷୟ କରିବା ।
**Impoverished,** *a.* ନିର୍ଦ୍ଧନ, କ୍ଷୀଣ-ବିଭବ, ଦରିଦ୍ରୀଭୂତ ।
**Impracticability,** *n.* ଅସାଧ୍ୟତା ।
**Impracticable,** *a.* ଅସାଧ୍ୟ, ଦୁଷ୍କର, ଅସମ୍ଭବ । [ ଦେବା ।
**Imprecate,** *v.* ଶାପ ଦେବା, ଗାଳି
**Imprecation,** *n.* ଅଭିଶାପ, ଗାଳି ।
**Impregnable,** *a.* ଅଭେଦ୍ୟ, ଅଲଙ୍ଘ୍ୟ, ଅଜେୟ, ଅଗମ୍ୟ । [ କରାଇବା ।
**Impregnate,** *v.* ଗର୍ଭଧାରଣ
**Impregnated,** *a.* ଗର୍ଭବତୀ, ଅନ୍ତଃସତ୍ତ୍ୱା । [ ନିକ୍ଷେପ ।
**Impregnation,** *n.* ଗର୍ଭାଧାନ,
**Impress,** *v.* ଧାରଣା ଜନ୍ମାଇବା, ମୁଦ୍ରାଙ୍କନ କରିବା; *n.* ଛାପ, ମୁଦ୍ରା, ଚିହ୍ନ ।
**Impression,** *n.* ଧାରଣା, ମୁଦ୍ରାଙ୍କନ, ଅବବୋଧ । [ ଚିତ୍ତାକର୍ଷକ, ମର୍ମସ୍ପର୍ଶୀ ।
**Impressive,** *a.* ହୃଦୟଗ୍ରାହୀ,
**Imprint,** *v.* ମୁଦ୍ରାଙ୍କନ କରିବା, ମନରେ ଗ୍ରହଣ କରିବା ।
**Imprison,** *v.* ବନ୍ଦୀ କରିବା, କାରା-ଗାରରେ ରଖିବା ।
**Imprisonment,** *n.* କାରାବାସ, କାରାଦଣ୍ଡ, ବନ୍ଦୀକରଣ ।

Improbability, *n.* ଅସମ୍ଭାବ୍ୟତା, ଅସଙ୍ଗତ । [ ଦୁର୍ଘଟ, ଅସମ୍ଭବ ।
Improbable, *a.* ଅସମ୍ଭାବନୀୟ,
Improbity, *n.* କପଟତା, ଅସାଧୁତା ।
Impromptu, *a.* ଆକସ୍ମିକ, ଅନନୁଭୂତପୂର୍ବ, ଅଚିନ୍ତିତପୂର୍ବ; *ad.* ପୂର୍ବରୁ ଚିନ୍ତା ନ କରି । [ ଅଯୁକ୍ତ ।
Improper, *a.* ଅନ୍ୟାୟ, ଅନୁଚିତ,
Improperly, *ad.* ଅନ୍ୟାୟଭାବରେ ।
Impropriety, *n.* ଅନ୍ୟାୟ ଆଚରଣ, ଅଶିଷ୍ଟତା, ଅନୌଚିତ୍ୟ ।
Improve, *v.* ଉନ୍ନତ କରିବା, ସମୃଦ୍ଧ ହେବା, ଉତ୍କର୍ଷ ଲାଭ କରିବା ।
Improvement, *n.* ଉନ୍ନତି, ବୃଦ୍ଧି, ଉତ୍କର୍ଷ, ଅଭ୍ୟୁଦୟ ।
Improvidence, *n.* ଅପରିଣାମଦର୍ଶିତା, ଅଦୂରଦର୍ଶିତା ।
Improvident, *a.* ଅଦୂରଦର୍ଶୀ, ଅସାବଧାନ, ଅବିବେକୀ ।
Improvise, *v.* ଉପସ୍ଥିତ କ୍ଷେତ୍ରରେ କାର୍ଯ୍ୟ ଚଳାଇନେବା, ପୂର୍ବରୁ ଚିନ୍ତା ନ କରି କାର୍ଯ୍ୟ କରିଯିବା, ରଚନା କରିବା ।
Imprudence, *n.* ଅଦୂରଦର୍ଶିତା, ଅବିମୃଷ୍ୟକାରିତା, ଅବିବେକିତା ।
Imprudent, *a.* ଅଦୂରଦର୍ଶୀ, ଅବିବେକୀ, ଅବିମୃଷ୍ୟକାରୀ ।
Impudence, *n.* ଧୃଷ୍ଟତା, ନିର୍ଲଜ୍ଜତା ।
Impudent, *a.* ଧୃଷ୍ଟ, ନିର୍ଲଜ୍ଜ, ଅବିନୀତ ।
Impudently, *ad.* ନିର୍ଲଜ୍ଜଭାବରେ ।
Impugn, *v.* ପ୍ରତ୍ୟାଖ୍ୟାନ କରିବା, ପ୍ରତ୍ୟାଦେଶ କରିବା । [ ପ୍ରବୃତ୍ତି, ପ୍ରଣୋଦନା ।
Impulse, *n.* ଆବେଗ, ପ୍ରେରଣା,
Impulsion, *n.* ଧକ୍କା, ଠେଲା ।
Impulsive, *a.* ଆବେଗଶୀଳ, ପ୍ରବୃତ୍ତି-ମୂଳକ, ପ୍ରବର୍ତ୍ତକ । [ ପ୍ରବୃତ୍ତିବଶତଃ ।
Impulsively, *ad.* ଆବେଗରେ,
Impunity, *n.* ଦଣ୍ଡରାହିତ୍ୟ, ଦଣ୍ଡାଭାବ, ଦଣ୍ଡ ବା କ୍ଷତିରୁ ଅବ୍ୟାହତି ।
Impure, *a.* ଅଶୁଦ୍ଧ, ଅଶୁଚି, ଅପବିତ୍ର ।
Impurity, *n.* ମଇଳା, ଅଶୁଦ୍ଧତା, ଅପବିତ୍ରତା । [ ଆରୋପଣୀୟ ।
Imputable, *a.* ଦୂଷଣୀୟ,
Imputation, *n.* ଆରୋପଣ, ଦୋଷାରୋପ, ଅପବାଦ, ଅଭିଯୋଗ ।
Impute, *v.* ଆରୋପ କରିବା, ଅପବାଦ ଦେବା, ଆକ୍ଷେପ କରିବା ।
In, *pre.* ଭିତରେ, ଠାରେ, ରେ, ମଧ୍ୟରେ । [ ଦୌର୍ବଲ୍ୟ ।
Inability, *n.* ଅସାମର୍ଥ୍ୟ, ଅକ୍ଷମତା,
Inabstinence, *n.* ଅସଂଯମ, ଅନିଗ୍ରହ । [ ଅଗମ୍ୟ, ଦୁରାରୋହ ।
Inaccessible, *a.* ଅପ୍ରବେଶ୍ୟ,
Inaccuracy, *n.* ଅଶୁଦ୍ଧି, ପ୍ରମାଦ, ଭ୍ରମ, ଭୁଲ ।

**Inaccurate**, *a.* ଅଯଥାର୍ଥ, ଅସତ୍ୟ, ଭ୍ରମଯୁକ୍ତ । [ ଭାବରେ, ଅଶୁଦ୍ଧ ଭାବରେ ।

**Inaccurately**, *ad.* ଅଯଥାର୍ଥ

**Inaction, Inactivity**, *n.* ନିଷ୍କ୍ରିୟତା, ଆଳସ୍ୟ, ଉଦ୍ୟମହୀନତା, ଔଦାସୀନ୍ୟ ।

**Inactive**, *a.* ଅଳସ, ନିରୁଦ୍ୟମ ।

**Inadequacy**, *n.* ଅପ୍ରଚୁରତା, ଅନୁପଯୁକ୍ତତା । [ ରୂପ, ଅଳ୍ପ ।

**Inadequate**, *a.* ଅପ୍ରଚୁର, ଅନନୁ-

**Inadequateness**, *n.* ଅପ୍ରାଚୁର୍ଯ୍ୟ, ଅଭାବ । [ ଅସ୍ୱୀକାର୍ଯ୍ୟ, ଅପ୍ରଯୋଜ୍ୟ ।

**Inadmissible**, *a.* ଅଗ୍ରହଣୀୟ,

**Inadvertence, Inadvertency**, *n.* ଅସାବଧାନତା, ଅବହେଳା, ପ୍ରମାଦ । [ ଅନବହିତ ।

**Inadvertent**, *a.* ଅସାବଧାନ,

**Inadvertently**, *ad.* ଅସାବଧାନତା ବଶତଃ ।

**Inalienable**, *a.* ଅବିଚ୍ଛେଦ୍ୟ, ଅନନ୍ୟହାର୍ଯ୍ୟ, ହସ୍ତାନ୍ତରର ଅଯୋଗ୍ୟ ।

**Inalterable**, *a.* ଅପରିବର୍ତ୍ତନୀୟ ।

**Inane**, *a.* ରିକ୍ତ, ଶୂନ୍ୟ, ଅସାର ।

**Inanimate**, *a.* ନିର୍ଜୀବ, ଜଡ଼, ଅଚେତନ ।

**Inanity**, *n.* ଶୂନ୍ୟତା, ନିଃସାରତା ।

**Inapplicability**, *n.* ଅ-ପ୍ରଯୋଜ୍ୟତା, ଅନୁପଯୋଗିତା ।

**Inapplicable**, *a.* ଅନୁପଯୋଗୀ, ଅପ୍ରଯୋଜ୍ୟ, ଅସଙ୍ଗତ, ଅନୁଚିତ ।

**Inapplication**, *n.* ଅମନୋଯୋଗ ।

**Inappropriate**, *a.* ଅନୁପଯୁକ୍ତ, ଅଯୋଗ୍ୟ, ବିରୁଦ୍ଧ ।

**Inapt**, *a.* ଅପାତ୍ର, ଅଯୋଗ୍ୟ ।

**Inaptitude**, *n.* ଅପାତ୍ରତା, ଅଯୋଗ୍ୟତା ।

**Inaptly**, *ad.* ଅସଙ୍ଗତଭାବରେ ।

**Inarticulate**, *a.* ଅବ୍ୟକ୍ତ, ଅସ୍ପଷ୍ଟ, ଅନୁଚ୍ଚାରିତ । [ ସ୍ୱରରେ, ଅସ୍ପଷ୍ଟଭାବରେ ।

**Inarticulately**, *ad.* ଅବ୍ୟକ୍ତ

**Inarticulation**, *n.* ଅସ୍ପଷ୍ଟ ଉଚ୍ଚାରଣ ।

**Inartificial**, *a.* ଅକୃତ୍ରିମ, ସରଳ ।

**Inasmuch as**, *ad.* ଯେହେତୁ, ଯେଣୁ । [ ଅସାବଧାନତା, ଉପେକ୍ଷା ।

**Inattention**, *n.* ଅମନୋଯୋଗ,

**Inattentive**, *a.* ଅମନୋଯୋଗୀ, ଅସାବଧାନ । [ ଭାବରେ ।

**Inattentively**, *ad.* ଅସାବଧାନ

**Inaudible**, *a.* ଦୁଃଶ୍ରାବ୍ୟ, ଯାହା ଶୁଣାଯାଏ ନାହିଁ । [ ଉଦ୍‌ଘାଟନମୂଳକ ।

**Inaugural**, *a.* ପ୍ରତିଷ୍ଠାପକାନ୍ତ,

Inaugurate, *v.* ପ୍ରତିଷ୍ଠା କରିବା, ଉଦ୍‌ଘାଟନ କରିବା ।

Inauguration, *n.* ପ୍ରତିଷ୍ଠାପନ, ଉପକ୍ରମ, ଉଦ୍‌ଘାଟନ, ଅଭିଷେକ ।

Inauspicious, *a.* ଅଶୁଭ, ଅମଙ୍ଗଳ ।

Inauspiciously, *ad.* ଅଶୁଭରେ ।

Inborn, Inbred, *a.* ସହଜାତ, ନୈସର୍ଗିକ, ସ୍ୱାଭାବିକ ।

Inbreed, *v.* ଉତ୍ପତ୍ତି କରିବା, ଉତ୍ପାଦନ କରାଇବା ।

Incage, *v.* ପିଞ୍ଜରାବଦ୍ଧ କରିବା ।

Incalculable, *a.* ଅପରିମେୟ, ଅଗଣ୍ୟ, ଅମିତ ।

Incandescence, *n.* ଆଭା, ଅତି ଉଜ୍ଜ୍ୱଳତା ।

Incandescent, *a.* ଅତ୍ୟୁଜ୍ଜ୍ୱଳ ।

Incantation, *n.* ମନ୍ତ୍ର, ଅଭିଚାର, ମନ୍ତ୍ରତନ୍ତ୍ର ପ୍ରୟୋଗ ।

Incapability, *n.* ଅସାମର୍ଥ୍ୟ, ଅକ୍ଷମତା ।

Incapable, *a.* ଅସମର୍ଥ, ଅଶକ୍ତ, ଅକ୍ଷମ, ଅଯୋଗ୍ୟ, ଅପାରଗ ।

Incapacious, *a.* ସଙ୍କୀର୍ଣ୍ଣ, ଅପ୍ରଶସ୍ତ, ଅବିପୁଳ ।

Incapacitate, *v.* ଅପାରଗ କରିବା, ଶକ୍ତିହୀନ କରିବା ।

Incapacity, *n.* ଅସାମର୍ଥ୍ୟ, ଅଯୋଗ୍ୟତା ।

Incarcerate, *v.* କାରାରୁଦ୍ଧ କରିବା, କଏଦ କରିବା ।

Incarceration, *n.* କାରାରୋଧ, କାରାବାସ ।

Incarnate, *a.* ଅବତୀର୍ଣ୍ଣ, ମୂର୍ତ୍ତିମାନ୍, ସଶରୀର ।

Incarnation, *n.* ଅବତାର, ଶରୀର-ପରିଗ୍ରହ ।

Incautious, *a.* ଅସାବଧାନ ।

Incendiarism, *n.* ଗୃହଦାହ, ଘରପୋଡ଼ି ।

Incendiary, *a. & n.* ଗୃହଦାହ-କାରୀ ।

Incense, *n.* ଧୂପ, ସୁଗନ୍ଧି ଧୂଆଁ; *v.* ଧୂପ ଦେବା, ଉତ୍ତେଜିତ କରିବା ।

Incensory, *n.* ଧୂପଦାନ, ଧୂପପାତ୍ର ।

Incentive, *n.* ପ୍ରେରଣା, ପ୍ରୋତ୍ସାହନା, ଉତ୍ତେଜନା; *a.* ପ୍ରୋତ୍ସାହକ ।

Inception, *n.* ପ୍ରାରମ୍ଭ, ଉପକ୍ରମ ।

Incertitude, *n.* ଅନିଶ୍ଚିତତା, ଆଶଙ୍କା, ବିକଳ୍ପ ।

Incessancy, *n.* ଧାରାବାହିକତା ।

Incessant, *a.* ଅବିରାମ, ସତତ, ଅବିଚ୍ଛିନ୍ନ, ଅବିଶ୍ରାନ୍ତ ।

Incessantly, *ad.* ଅନବରତ, ଅବିଶ୍ରାନ୍ତଭାବରେ ।

Incest, *n.* ବ୍ୟଭିଚାର, ଅଗମ୍ୟାଗମନ ।

Incestuous, *a.* ବ୍ୟଭିଚାରୀ ।

Inch, *n.* ଏକ ଫୁଟର ଦ୍ୱାଦଶାଂଶ ।

Inchastity, *n.* ବ୍ୟଭିଚାର, ଅସତୀତ୍ୱ ।

Incidence, *n.* ସଂଘଟନ, ଦୈବୀ ଘଟନା

Incident, *n.* ବୃତ୍ତାନ୍ତ, ଘଟନା, ପ୍ରସଙ୍ଗ ।

Incidental, *a.* ଆନୁସଙ୍ଗିକ, ପ୍ରାସଙ୍ଗିକ, ଆକସ୍ମିକ ।

Incidentally, *ad.* ପ୍ରସଙ୍ଗକ୍ରମେ, କଥାପ୍ରସଙ୍ଗରେ, ଦୈବାତ୍ ।

Incipiency, Incipience, *n.* ପ୍ରାରମ୍ଭ ।

Incipient, *a.* ପ୍ରାରମ୍ଭିକ ।

Incise, *v.* ଛେଦନ କରିବା, କର୍ତ୍ତନ କରିବା, କାଟିବା ।

Incision, *n.* ଛେଦନ, କର୍ତ୍ତନ, କ୍ଷତ ।

Incisor, *n.* ଛେଦନ ଯନ୍ତ୍ର, ସମ୍ମୁଖଦାନ୍ତ ।

Incite, *v.* ଉତ୍ତେଜିତ କରିବା, ଉତ୍ସାହ ଦେବା, ଉତ୍ସାହିତ କରିବା ।

Incitement, Incitation, *n.* ପ୍ରୋତ୍ସାହନ, ପ୍ରେରଣା, ଉତ୍ତେଜନା, ପ୍ରୋତ୍ସାହନ ।

Incivility, *n.* ଅଭଦ୍ରତା, ଅଶିଷ୍ଟତା ।

Inclemency, *n.* ନିର୍ଦ୍ଦୟତା, ଦାରୁଣତା, କଠୋରତା ।

Inclement, *a.* ନିର୍ଦ୍ଦୟ, କର୍କଶ, ପ୍ରଚଣ୍ଡ, ଦାରୁଣ । [ ଇଚ୍ଛା, ଆନତି ।

Inclination, *n.* ପ୍ରବୃତ୍ତି, ପ୍ରବଣତା,

Incline, *v.* ଆନତ ହେବା, ନତ କରିବା ।

Inclose, *v.* ଘେରିବା, ବେଢ଼ିବା ।

Include, *v.* ଅଙ୍ଗୀଭୂତ କରିବା, ଅନ୍ତର୍ଗତ କରିବା ।

Inclusion, *n.* ଅନ୍ତର୍ଗତକରଣ ।

Inclusive, *a.* ସମେତ, ସହିତ ।

Inclusively, *ad.* ସହିତରେ ।

Incognito, *a.* ପ୍ରଚ୍ଛନ୍ନ, ଛଦ୍ମବେଶୀ; *ad.* ପ୍ରଚ୍ଛନ୍ନ ବା ଅଲକ୍ଷିତଭାବରେ ।

Incognizable, *a.* ଅପରିଚେୟ, ଅଜ୍ଞେୟ । [ ଅସମ୍ବନ୍ଧ ।

Incoherence, *n.* ଅସଙ୍ଗତି,

Incoherent, *a.* ଅସଙ୍ଗତ, ଅସଲଗ୍ନ, ଅସମ୍ବନ୍ଧ । [ ଭାବରେ ।

Incoherently, *ad.* ଅସଲଗ୍ନ

Incombustible, *a.* ଅଦାହ୍ୟ, ଯାହା ସହଜରେ ଦଗ୍ଧ ହୁଏ ନାହିଁ ।

Income, *n.* ଆୟ, ଉପାର୍ଜ୍ଜନ, ଧନାଗମ ।

Incommensurable, *a.* ସାଧାରଣ ପରିମାପବିହୀନ ।

Incommensurate, *a.* ଅସମାନ, ଅସଦୃଶ, ଅପର୍ଯ୍ୟାପ୍ତ, ଅନନୁରୂପ ।

Incommodious, *a.* ଅସୁବିଧାଜନକ

Incommutable, *a.* ଅପରିବର୍ତ୍ତନୀୟ

Incomparable, *a.* ଅତୁଳନୀୟ, ଅନୁପମ, ଅପ୍ରତିମ । [ ନିର୍ଦ୍ଦୟ, ନିଷ୍ଠୁର ।

Incompassionate, *a.* କ୍ରୂର,

Incompatible, *a.* ଅସାମଞ୍ଜସ୍ୟ, ବିସଦୃଶ ।

Incompetence, Incompetency, *n.* ଅକ୍ଷମତା, ଅଯୋଗ୍ୟତା, ଅପାରଗତା । [ ଅପାରଗ ।

Incompetent, *a.* ଅକ୍ଷମ, ଅସମର୍ଥ,

Incomplete, *a.* ଅସମାପ୍ତ, ଅସମ୍ପୂର୍ଣ୍ଣ, ହୀନାଙ୍ଗ । [ ଅବସ୍ଥାରେ ।

Incompletely, *ad.* ଅସମାପ୍ତ

Incompleteness, *n.* ଅପୂର୍ଣ୍ଣତା, ଅସମାପ୍ତତା ।

Incomprehensible, Inconceivable, *a.* ଅବୋଧ୍ୟ, ଅଜ୍ଞେୟ, ଅଗମ୍ୟ, ଧାରଣାତୀତ, ଅଚିନ୍ତନୀୟ । [ଶୀଘ୍ର ।

Incompressible, *a.* ଅସଙ୍କୋଚ-

Inconclusive, *a.* ଅନିର୍ଣ୍ଣୀତ, ଅସମାପ୍ତ, ଅନିଶ୍ଚିତ ।

Inconclusively, *ad.* ଅନିର୍ଣ୍ଣୀତ ଅବସ୍ଥାରେ, ଅନିଶ୍ଚିତଭାବରେ ।

Incongenial, *a.* ଅରୁଚିକର ।

Incongruent, *a.* ଅସମଞ୍ଜସ, ଅନୁପଯୁକ୍ତ । [ଅସଙ୍ଗତି ।

Incongruity, *n.* ବିରୋଧ,

Incongruous, *a.* ଅସଙ୍ଗତ, ବିରୁଦ୍ଧ, ଅସମ୍ବଦ୍ଧ । [ଅତିସାମାନ୍ୟ ।

Inconsiderable, *a.* ନଗଣ୍ୟ, କ୍ଷୁଦ୍ର,

Inconsiderate, *a.* ଅବିବେଚକ, ଅସାବଧାନ, ବିଚାରଶୂନ୍ୟ ।

Inconsistence, Inconsistency, *n.* ଅସଙ୍ଗତି, ବିରୋଧ, ବୈପରୀତ୍ୟ ।

Inconsistent, *a.* ଅସଙ୍ଗତ, ବିପରୀତ, ପରସ୍ପରବିରୋଧୀ ।

Inconsolable, *n.* ଶୋକାକୁଳ ।

Inconsonant, *a.* ଐକ୍ୟରହିତ, ଅମେଳ । [ଅପ୍ରଧାନ, ଗୌଣ ।

Inconspicuous, *a.* ଅସ୍ପଷ୍ଟ,

Inconstance, Inconstancy, *n.* ଅସ୍ଥିରତା, ଚଳଚଞ୍ଚଳତା, ଚପଳତା ।

Inconstant, *a.* ଚଞ୍ଚଳ, ଅସ୍ଥିର, ଚଳଚଞ୍ଚଳ । [ଇନ୍ଦ୍ରିୟପରାୟଣତା ।

Incontinence, *n.* ଅସଂଯମ,

Incontinent, *a.* ଅସଂଯତ, ଅଜିତେନ୍ଦ୍ରିୟ ।

Inconvenience, *n.* ଅସୁବିଧା, ଦୁଃଖ, କ୍ଲେଶ; *v.* ଅସୁବିଧାରେ ପକାଇବା ।

Inconvenient, *a.* ଅସୁବିଧାଜନକ, କଷ୍ଟକର, ଦୁଃଖାବହ । [*a.* ସମ୍ମିଳିତ ।

Incorporate, *v.* ସମ୍ମିଳିତ କରିବା;

Incorporation, *n.* ସମ୍ମିଳନ, ମିଶ୍ରଣ, ସଂଯୋଗ । [ସ୍ୱପ୍ନ, ନିରାକାର ।

Incorporeal, *a.* ଅଶରୀରୀ, କାୟା-

Incorrect, *a.* ଅଶୁଦ୍ଧ, ପ୍ରମାଦଯୁକ୍ତ, ଅସତ୍ୟ । [ଅସତ୍ୟତା ।

Incorrectness, *n.* ଅଶୁଦ୍ଧି, ପ୍ରମାଦ,

Incorrigible, *a.* ଅସଂଶୋଧନୀୟ, ଅସାଧ୍ୟ, ଅଶୋଧ୍ୟ । [ଶୁଚିମନ୍ତ ।

Incorrupt, *a.* ପବିତ୍ର, ବିଶୁଦ୍ଧ,

Incorruptible, *a.* ଅଦୂଷଣୀୟ ।

Incorruptness, *n.* ବିଶୁଦ୍ଧତା, ଶୁଚିତା ।

Increase, *v.* ବର୍ଦ୍ଧିତ ହେବା ବା କରିବା; *n.* ବର୍ଦ୍ଧନ, ଉନ୍ନତି, ବୃଦ୍ଧି ।

Incredible, *a.* ଅବିଶ୍ୱାସ୍ୟ, ପ୍ରତ୍ୟୟାତୀତ

Incredulity, *n.* ଅବିଶ୍ୱାସ, ଅନାସ୍ଥା ।
Incredulous, *a.* ଅବିଶ୍ୱାସୀ, ଆସ୍ଥାହୀନ
Increment, *n.* ବୃଦ୍ଧି, ବସ୍ତୃତ ।
Incriminate, *v.* ଦୋଷାରୋପ କରିବା, ଅଭିଯୁକ୍ତ କରିବା ।
Incubate, *v.* ଡିମ୍ବ ଉଷୁମାଇବା ।
Incubation, *n.* ଡିମ୍ବ ଉଷୁମ ହେବା ଅବସ୍ଥା । [ ବାହାର କରିବା ଯନ୍ତ୍ର ।
Incubator, *n.* ଡିମ୍ବ ଉଷୁମାଇ ଛୁଆ
Incubus, *n.* ଦୁଃସ୍ୱପ୍ନ, ଗୁରୁଭାର ।
Inculcate, *v.* ଉପଦେଶ ଦେବା, ମନରେ ପ୍ରବେଶ କରାଇବା । [ ପ୍ରଦାନ ।
Inculcation, *n.* ଶିକ୍ଷା, ଉପଦେଶ-
Inculpable, *a.* ଦୋଷହୀନ, ଅନନ୍ଦ୍ୟ ।
Inculpate, *v.* ନିନ୍ଦା କରିବା, ଦୋଷ ଦେବା । [ କାର୍ଯ୍ୟକାଳ ।
Incumbency, *n.* ପଦରେ ଅବସ୍ଥାନ,
Incumbent, *a.* ଅବଶ୍ୟକର୍ତ୍ତବ୍ୟ, ନ୍ୟସ୍ତ, ଆଶ୍ରିତ; *n.* ପଦାଧିଷ୍ଠିତ ବ୍ୟକ୍ତି ।
Incur, *v.* ଉତ୍ପାଦନ କରିବା, ଅର୍ହ ହେବା, ବ୍ୟୟ କରିବା । [ ଅଶମନୀୟ ।
Incurable, *a.* ଅଚିକିତ୍ସ୍ୟ, ଅପ୍ରତିକାର୍ଯ୍ୟ,
Incursion, *n.* ଆକ୍ରମଣ, ଉପଦ୍ରବ ।
Incursive, *a.* ଆକ୍ରମଣାତ୍ମକ, ଉପଦ୍ରବକାରୀ ।
Indebted, *a.* ଋଣୀ, କୃତଜ୍ଞ, ଋଣଗ୍ରସ୍ତ ।
Indebtedness, *n.* ଋଣ, କୃତଜ୍ଞତା ।
Indecence, Indecency, *n.* ଅଶ୍ଳୀଳତା, ଅଶିଷ୍ଟାଚାର ।
Indecent, *a.* ଅଶ୍ଳୀଳ, ଅଶିଷ୍ଟ, ଅସଭ୍ୟ ।
Indecipherable, *a.* ଅର୍ଥବୋଧର ଅଗମ୍ୟ । [ ସନ୍ଦେହ ।
Indecision, *n.* ଦ୍ୱିଧା, ଅନିଶ୍ଚିତତା,
Indecisive, *a.* ଅନିଶ୍ଚିତ, ସନ୍ଦିଗ୍ଧ, ଦୋଳାୟମାନଚିତ୍ତ । [ ଅବ୍ୟୟ ।
Indeclinable, *a.* ଅପରିବର୍ତ୍ତନୀୟ,
Indecorous, *a.* ଅଭଦ୍ର, ଅଶିଷ୍ଟ ।
Indecorum, *n.* ଅଭଦ୍ରତା, ଅସଭ୍ୟତା, ଅଶିଷ୍ଟତା, ଅଭଦ୍ରାଚରଣ ।
Indeed, *ad.* ଯଥାର୍ଥରେ, ବସ୍ତୁତଃ ।
Indefatigable, *a.* ଅକ୍ଳାନ୍ତ, ଅଶ୍ରାନ୍ତ ।
Indefatigably, *ad.* ଅବିଶ୍ରାନ୍ତ ଭାବରେ, ଅଧ୍ୟବସାୟ ସହକାରେ ।
Indefeasible, *a.* ଅପରିହାର୍ଯ୍ୟ ।
Indefensible, *a.* ଅସମର୍ଥନୀୟ, ଅରକ୍ଷଣୀୟ । [ ଅନତିକ୍ରମଣୀୟ ।
Indefinable, *a.* ଅବର୍ଣ୍ଣନୀୟ,
Indefinite, *a.* ଅନିର୍ଦ୍ଦିଷ୍ଟ, ଅନିଶ୍ଚିତ ।
Indefinitely, *ad.* ଅନିର୍ଦ୍ଦିଷ୍ଟଭାବରେ ।
Indeliberate, *a.* ଅଚିନ୍ତିତପୂର୍ବ, ଅଜ୍ଞାନକୃତ । [ ଯାଇ ନପାରେ ।
Indelible, *a.* ଅଲୋପ୍ୟ, ଯାହା ଲିଭି
Indemnify, *v.* ପ୍ରତିବିଧାନ କରିବା, କ୍ଷତିପୂରଣ କରିବା ।

**Indemnity,** *n.* କ୍ଷତିପୂରଣ, ଖେସରତ୍ତ ।

**Indent,** *v.* ଦନ୍ତୁରିତ କରିବା, ଜିନିଷ ମଗାଇବା; *n.* ଚୁକ୍ତି, ଜିନିଷ ଯୋଗାଇବା ପାଇଁ ଆଦେଶ ।

**Indented,** *a.* ଦନ୍ତୁରିତ, ଚୁକ୍ତି ।

**Indenture,** *n.* ପ୍ରତିଜ୍ଞାପତ୍ର, ଚୁକ୍ତିପତ୍ର, ମୁଚୁଲିକା । [ ସ୍ୱାତନ୍ତ୍ର୍ୟ ।

**Independence,** *n.* ସ୍ୱାଧୀନତା,

**Independent,** *a.* ସ୍ୱାଧୀନ, ସ୍ୱତନ୍ତ୍ର, ଅନାଶ୍ରିତ; *n.* ସ୍ୱାଧୀନମତବାଦୀ ।

**Independently,** *ad.* ସ୍ୱାଧୀନ ଭାବରେ, ଅନ୍ୟଉପରେ ନିର୍ଭର ନ କରି ।

**Indescribable,** *a.* ଅବର୍ଣ୍ଣନୀୟ, ଅକଥ୍ୟ, ବର୍ଣ୍ଣନାତୀତ । [ ଅନଶ୍ୱର, ଅକ୍ଷୟ ।

**Indestructible,** *a.* ଅବିନାଶ୍ୟ,

**Indeterminable,** *a.* ଅପରିମେୟ, ଅନିର୍ଦ୍ଦେଶ୍ୟ । [ ଅନିର୍ଣ୍ଣୀତ ।

**Indeterminate,** *a.* ଅନିର୍ଦ୍ଦିଷ୍ଟ,

**Indetermination,** *n.* ସଂଶୟ, ଅନିଶ୍ଚିତତା ।

**Indetermined,** *a.* ଅନିଶ୍ଚିତ ।

**Index,** *n.* ସୂଚୀ, ନିଘଣ୍ଟୁ, ଜ୍ଞାପକ, ନିର୍ଦ୍ଦେଶକ (*pl.* Indices) ।

**Index finger,** *n.* ତର୍ଜ୍ଜନୀ ଅଙ୍ଗୁଳି ।

**Indicate,** *v.* ନିର୍ଦ୍ଦେଶ କରିବା, ସୂଚିତ କରିବା, ପ୍ରଦର୍ଶନ କରିବା ।

**Indication,** *n.* ସୂଚନା, ଲକ୍ଷଣ, ଚିହ୍ନ, ନିର୍ଦ୍ଦେଶ ।

**Indicative,** *a.* ସୂଚକ, ନିର୍ଦ୍ଦେଶକ, ବୋଧକ । [ ଦେବା ।

**Indict,** *v.* ଅଭିଯୁକ୍ତ କରିବା, ଅପବାଦ

**Indictee,** *n.* ଅଭିଯୁକ୍ତ ବ୍ୟକ୍ତି ।

**Indictment,** *n.* ଅଭିଯୋଗ, ଅଭିଯୋଗପତ୍ର ।

**Indifference,** *n.* ଉଦାସୀନତା, ବିରକ୍ତି, ଅଶ୍ରଦ୍ଧା, ଅନାଦର । [ ବିରକ୍ତ ।

**Indifferent,** *a.* ନିସ୍ପୃହ, ଉଦାସୀନ,

**Indigence, Indigency,** *n.* ଦାରିଦ୍ର୍ୟ, ନିଃସ୍ୱତା । [ ସ୍ୱଦେଶୀ ।

**Indigenous,** *a.* ସ୍ୱଦେଶଜାତ,

**Indigent,** *a.* ଦରିଦ୍ର, ନିର୍ଦ୍ଧନ, ନିଃସ୍ୱ ।

**Indigestible,** *a.* ଦୁଷ୍ପାଚ୍ୟ, ଯାହା ସହଜରେ ଜୀର୍ଣ୍ଣ ହୁଏ ନାହିଁ ।

**Indigestion,** *n.* ଅଜୀର୍ଣ୍ଣତା, ମନ୍ଦାଗ୍ନି ।

**Indignant,** *a.* କୁପିତ, ରୁଷ୍ଟ, ବିରକ୍ତ ।

**Indignation,** *n.* ବିରକ୍ତି, କୋପ, ରାଗ । [ ଅନାଦର ।

**Indignity,** *n.* ଅପମାନ, ଅବଜ୍ଞା,

**Indigo,** *n.* ନୀଳ ଗଛ, ନୀଳରଙ୍ଗ ।

**Indirect,** *a.* ପରୋକ୍ଷ, ବକ୍ର ।

**Indirectly,** *ad.* ପରୋକ୍ଷରେ, ପ୍ରକାରାନ୍ତରେ । [ ଅଲକ୍ଷ୍ୟ, ଅଦୃଶ୍ୟ ।

**Indiscernible,** *a.* ଅଜ୍ଞେୟ,

**Indiscipline,** *n.* ବିଶୃଙ୍ଖଳା ।

Indiscreet, *a.* ବିଶୃଙ୍ଖଳ, ଅବିବେଚକ, ଅସାବଧାନ । [ ପ୍ରମାଦ ।
Indiscretion, *n.* ଅବିବେଚନା,
Indiscriminate, *a.* ନିର୍ବିଶେଷ, ବିଶୃଙ୍ଖଳ, ଅବ୍ୟବସ୍ଥିତ ।
Indiscriminately, *ad.* ନିର୍ବିଶେଷରେ, ବିଶୃଙ୍ଖଳ ଭାବରେ ।
Indiscrimination, *n.* ଭେଦଶୂନ୍ୟତା । [ ଅଧିପ୍ରୟୋଜନୀୟ ।
Indispensable, *a.* ଅପରିହାର୍ଯ୍ୟ,
Indispose, *v.* ମନ ଖରାପ କରିବା, ପୀଡ଼ିତ ହେବା । [ ଦୁଃଖିତ ।
Indisposed, *a.* ଅସୁସ୍ଥ, ପୀଡ଼ିତ,
Indisposition, *n.* ପୀଡ଼ା, ଦୁଃଖ, ଅସ୍ୱାସ୍ଥ୍ୟ । [ ଅଖଣ୍ଡନୀୟ, ନିଶ୍ଚିତ ।
Indisputable, *a.* ନିର୍ବିବାଦ,
Indissoluble, *a.* ଅଦ୍ରବଣୀୟ, ଅଚ୍ଛେଦ୍ୟ, ଚିରସ୍ଥାୟୀ ।
Indistinct, *a.* ଅବ୍ୟକ୍ତ, ଅସ୍ପଷ୍ଟ ।
Indistinguishable, *a.* ଅବିଭେଦ୍ୟ, ଅପରିଚ୍ଛେଦ୍ୟ ।
Individual, *a.* ଏକ, ଜଣେ, ବ୍ୟକ୍ତିଗତ, ସ୍ୱତନ୍ତ୍ର; *n.* ବ୍ୟକ୍ତି, ଲୋକ ।
Individualism, *n.* ବ୍ୟକ୍ତିଗତ ସ୍ୱାତନ୍ତ୍ର୍ୟବାଦ ।
Individuality, *n.* ବ୍ୟକ୍ତିତ୍ୱ, ସ୍ୱାତନ୍ତ୍ର୍ୟ, ବ୍ୟକ୍ତିଗତ ବୈଶିଷ୍ଟ୍ୟ ।
Individually, *ad.* ବ୍ୟକ୍ତିଗତ ଭାବରେ, ପୃଥକ୍‌ରୂପେ, ଜଣେ ଜଣେ ।
Indivisible, *a.* ଅବିଭାଜ୍ୟ ।
Indocile, *a.* ଅନାୟତ୍ତ, ଦୁର୍ବିନୀତ ।
Indolence, *n.* ଆଳସ୍ୟ, ନିଶ୍ଚେଷ୍ଟତା, ଶ୍ରମବିମୁଖତା । [ ନିଶ୍ଚେଷ୍ଟ ।
Indolent, *a.* ଅଳସ, ଶ୍ରମକାତର,
Indomitable, *a.* ଅଦମ୍ୟ, ଅଜେୟ, ଅନାୟତ୍ତ, ଦୁର୍ଦ୍ଦାନ୍ତ ।
Indoor, *a.* ଗୃହମଧ୍ୟବର୍ତ୍ତୀ ।
Indoors, *ad.* ଗୃହମଧ୍ୟରେ ।
Indorse, *v.* ଦଲିଲର ପଛପଟେ ସ୍ୱାକ୍ଷର କରିବା, ମଞ୍ଜୁରି ଦେବା ( also Endorse ) ।
Indubious, *a.* ଅସନ୍ଦିଗ୍ଧ, ନିଶ୍ଚିତ ।
Indubitable, *a.* ନିଃସନ୍ଦେହ, ନିଃସଂଶୟ, ସୁନିଶ୍ଚିତ ।
Indubitably, *ad.* ନିଶ୍ଚିତରୂପେ ।
Induce, *v.* ପ୍ରବର୍ତ୍ତାଇବା, ପ୍ରଲୋଭିତ କରିବା । [ ପ୍ରଲୋଭନ ।
Inducement, *n.* ପ୍ରରୋଚନା,
Induct, *v.* ପ୍ରବେଶ କରାଇବା ।
Induction, *n.* ବିଶେଷ ବିଶେଷ ଦୃଷ୍ଟାନ୍ତରୁ ସାଧାରଣ ସତ୍ୟର ଉପସ୍ଥାପନ, ଆଗମନ ।
Inductive, *a.* ଯଦ୍ଦ୍ୱାରା ବିଶେଷ ବିଶେଷ ଦୃଷ୍ଟାନ୍ତରୁ ସାଧାରଣ ସତ୍ୟ ଉପସ୍ଥାପିତ ହୋଇଥାଏ ।

Indulge, *v.* ପ୍ରଶ୍ରୟ ଦେବା, ଆସକ୍ତ ହେବା । [ ଉପେକ୍ଷା ।
Indulgence, *n.* ପ୍ରଶ୍ରୟ, ଅନୁଗ୍ରହ,
Indulgent, *a.* ପ୍ରଶ୍ରୟଦାତା, ଅନୁଗ୍ରହଶୀଳ, ଅନୁକମ୍ପାକାରୀ ।
Indulgently, *a.* ଅନୁଗ୍ରହପୂର୍ବକ ।
Industrial, *a.* ଶିଳ୍ପବିଷୟକ ।
Industrialist, *n.* ଶିଳ୍ପବ୍ୟବସାୟୀ, ଶିଳ୍ପପତି । [ ଅଧ୍ୟବସାୟୀ ।
Industrious, *a.* ପରିଶ୍ରମୀ,
Industry, *n.* ଶିଳ୍ପ, ଅଧ୍ୟବସାୟ ।
Inedible, *a.* ଅଖାଦ୍ୟ ।
Ineffable, *a.* ଅବର୍ଣ୍ଣନୀୟ, ଅନିର୍ବଚନୀୟ । [ ଭାବରେ ।
Ineffably, *ad.* ଅନିର୍ବଚନୀୟ
Ineffective, *a.* ନିଷ୍ଫଳ, ବୃଥା ।
Ineffectual, *a.* ବିଫଳ, ନିରର୍ଥକ ।
Inefficacious, *a.* ଫଳ ଦେବାରେ ଅକ୍ଷମ, ଶକ୍ତିହୀନ, ଅସମର୍ଥ ।
Inefficacy, *n.* ଅକ୍ଷମତା, ଅସାମର୍ଥ୍ୟ ।
Inefficiency, *n.* ଅପାରଗତା, ଅଯୋଗ୍ୟତା । [ ଅକ୍ଷମ ।
Inefficient, *a.* ଅପାରଗ, ଅଯୋଗ୍ୟ,
Inelastic, *a.* ସ୍ଥିତିସ୍ଥାପକତ୍ୱହୀନ ।
Inelegance, *n.* ଅଶୋଭା, ସୌନ୍ଦର୍ଯ୍ୟହୀନତା । [ କଦର୍ଯ୍ୟ ।
Inelegant, *a.* ଅଶୋଭନ, ଅସୁନ୍ଦର,
Ineligible, *a.* ଅନୁପଯୁକ୍ତ, ଅଯୋଗ୍ୟ ।
Inept, *a.* ଅସଙ୍ଗତ, ଅନୁଚିତ, ମୂର୍ଖ ।
Inequality, *n.* ବୈଷମ୍ୟ, ବିଭେଦ, ଅସମତା । [ ଅନ୍ୟାଯ୍ୟ ।
Inequitable, *a.* ନ୍ୟାୟବିରୁଦ୍ଧ,
Inequity, *n.* ପକ୍ଷପାତିତା, ଅନ୍ୟାୟ ।
Inert, *a.* ନିଶ୍ଚେଷ୍ଟ, ଅଳସ, ଅଚେତନ ।
Inertia, *n.* ନିଷ୍କ୍ରିୟତା, ଜଡ଼ତା, ଆଳସ୍ୟ । [ ଅକଳନୀୟ, ଅତ୍ୟୁତ୍ତମ ।
Inestimable, *a.* ଅମୂଲ୍ୟ, ବହୁମୂଲ୍ୟ,
Inevitability, *n.* ଭବିତବ୍ୟତା, ଅପରିହାର୍ଯ୍ୟତା । [ ଅପରିହାର୍ଯ୍ୟ ।
Inevitable, *a.* ଅନିବାର୍ଯ୍ୟ,
Inevitably, *ad.* ଅବଶ୍ୟ, ଅବଶ୍ୟମ୍ଭାବୀରୂପେ, ଅନିବାର୍ଯ୍ୟରୂପେ ।
Inexact, *a.* ଅଠିକ୍, ଅଶୁଦ୍ଧ, ଅଯଥାର୍ଥ ।
Inexcusable, *a.* ଅକ୍ଷମଣୀୟ, ଅମାର୍ଜନୀୟ । [ ଅନନୁଷ୍ଠାନ ।
Inexecution, *n.* ଅନିର୍ବାହ,
Inexhaustible, *a.* ଅକ୍ଷୟ, ଅବିନାଶ୍ୟ, ଅପରିମିତ, ଅବିଧ୍ୱଂସୀ ।
Inexorable, *a.* ନିଷ୍ଠୁର, ନିର୍ଦ୍ଦୟ ।
Inexpedience, Inexpediency, *n.* ଅନୁପଯୋଗିତା, ଅସୁବିଧା ।
Inexpedient, *a.* ଅନୁଚିତ, ଅଯୁକ୍ତ, ଅବିବେଚିତ, ଅସୁବିଧାଜନକ ।
Inexpensive, *a.* ଶସ୍ତା, ଅଳ୍ପମୂଲ୍ୟ ।

Inexperience, *n.* ଅନନୁଭବତା, ଅନଭିଜ୍ଞତା, ଅନୁଭୂତିର ଅଭାବ ।
Inexperienced, *a.* ଅନଭିଜ୍ଞ ।
Inexpiable, *a.* ଅଶୋଧ୍ୟ, ପ୍ରାୟଶ୍ଚିତ୍ତ-ଅକ୍ଷମ । [ ଅଗମ୍ୟ, ବ୍ୟାଖ୍ୟାନର ଅତୀତ ।
Inexplicable, *a.* ଦୁର୍ବୋଧ୍ୟ,
Inexpressible, *a.* ଅପ୍ରକାଶ୍ୟ, ଅକଥ୍ୟ, ଅବର୍ଣ୍ଣନୀୟ । [ ଅକ୍ଷମ ।
Inexpressive, *a.* ଭାବପ୍ରକାଶରେ
Inextinguishable, *a.* ଅନିର୍ବାପ୍ୟ
Infallibility, *n.* ଭ୍ରମଶୂନ୍ୟତା ।
Infallible *a.* ଅଭ୍ରାନ୍ତ, ଅମୋଘ, ଅବ୍ୟର୍ଥ । [ ଅକୀର୍ତ୍ତିକର, ନିନ୍ଦନୀୟ ।
Infamous, *a.* ଅଯଶସ୍କର, ଗର୍ହଣୀୟ,
Infamy, *n.*: ଅପଯଶ, ଅପକୀର୍ତ୍ତି, କଳଙ୍କ, ଲୋକନିନ୍ଦା ।
Infancy, *n.* ଶୈଶବ, ବାଲ୍ୟାବସ୍ଥା ।
Infant, *n.* ଶିଶୁ, ପିଲା ।
Infanticide, *n.* ଶିଶୁହତ୍ୟା, ଶିଶୁବଧକାରୀ ।
Infantile, *a.* ଶିଶୁସୁଲଭ, ଶୈଶବୋଚିତ ।
Infantry, *n.* ପଦାତିକ ସୈନ୍ୟ ।
Infatuate, *v.* ବିମୁଗ୍ଧ କରିବା, ବୁଦ୍ଧିଭ୍ରଂଶ କରିବା । [ ଭ୍ରଷ୍ଟ ।
Infatuated, *a.* ବିମୋହିତ, ବୁଦ୍ଧି-
Infatuation, *n.* ମୋହ, ବୁଦ୍ଧିଭ୍ରଂଶ ।
Infeasible, *a.* ଅସାଧ୍ୟ, ଦୁଷ୍କର ।
Infect, *v.* ସଂକ୍ରମିତ ହେବା ।
Infection, *n.* ସଂକ୍ରମଣ । [ ଶୀଳ ।
Infectious, *a.* ସଂକ୍ରାମକ, ସଂକ୍ରମଣ-
Infectiousness, *n.* ସଂକ୍ରାମକତା ।
Infecund, *a.* ନିଷ୍ଫଳ, ବନ୍ଧ୍ୟ ।
Infelicity, *n.* ଦୁଃଖ, ଦୁର୍ଦ୍ଦଶା ।
Infer, *v.* ଅନୁମାନ କରିବା ।
Inferable, *a.* ଅନୁମେୟ । [ ଯୁକ୍ତି ।
Inference, *n.* ଅନୁମାନ, ଅନୁମିତ,
Inferential, *a.* ଆନୁମାନିକ, ଆନୁଷଙ୍ଗିକ, ଅନୁମାନସିଦ୍ଧ ।
Inferior, *a.* ନିମ୍ନତର, ହୀନ, ନ୍ୟୂନ, ଅଧସ୍ତନ; *n.* ଅଧସ୍ତନ ଲୋକ । [ଅପକର୍ଷ ।
Inferiority, *n.* ନ୍ୟୂନତା, ହୀନତା,
Infernal, *a.* ନାରକୀୟ, ଆସୁର ।
Infertile, *a.* ଅନୁର୍ବର, ବନ୍ଧ୍ୟ ।
Infest, *v.* ଉପଦ୍ରବ କରିବା ।
Infestation, *n.* ଉପଦ୍ରବ ।
Infidel, *n.* ନାସ୍ତିକ, ବିଧର୍ମୀ, ପାଷଣ୍ଡ ।
Infidelity, *n.* ନାସ୍ତିକତା, ଦେବନିନ୍ଦା, ଧର୍ମନିନ୍ଦା । [ ଚୁଉବାଟେ ପଶିବା ।
Infiltrate, *v.* ଅନୁପ୍ରବେଶ କରିବା,
Infiltration, *n.* ଅନୁପ୍ରବେଶ ।
Infinite, *a.* ଅନନ୍ତ, ଅପାର, ଅସୀମ, ଅଶେଷ, ଅପରିମିତ ।
Infinitely, *ad.* ଅସୀମ ଭାବରେ ।

Infiniteness, *n.* ଅସୀମତା, ଅନନ୍ତତ୍ବ ।
Infinitesimal, *a.* ଅତି ସୂକ୍ଷ୍ମ ।
Infinity, *n.* ଅସୀମତା, ଅପାରତ୍ବ ।
Infirm, *a.* ଜରାଗ୍ରସ୍ତ, ଆତୁର, ଦୁର୍ବଳ, ଅବସନ୍ନ । [ ଚଳତ୍ଶକ୍ତିରହିତ ।
Infirmary, *n.* ଆତୁରାଶ୍ରମ,
Infirmity, *n.* ଦୁର୍ବଳତା, ଦୋଷ, ଛିଦ୍ର, ବୈକଲ୍ୟ ।
Inflame, *v.* ଜାଳିବା, ଉଦ୍ଦୀପ୍ତ କରିବା, ଉତ୍ସାହ ଦେବା । [ ଶୀଳ ।
Inflammable, *a.* ଦାହ୍ୟ, ଜ୍ବଳନ-
Inflammation, *n.* ପ୍ରଜ୍ବଳନ, ଦାହନ, ପ୍ରଦାହ । [ ଜ୍ବାଳାଜନକ ।
Inflammatory, *a.* ଉତ୍ତେଜକ,
Inflate, *v.* ସ୍ଫୀତ କରିବା, ବାୟୁପୂର୍ଣ୍ଣ କରିବା, ଗର୍ବ କରିବା ।
Inflated, *a.* ସ୍ଫୀତ, ଉଦ୍ଧତ ।
Inflation, *n.* ସ୍ଫୀତି, ବାୟୁପୂରଣ, ମୁଦ୍ରାସ୍ଫୀତି ।
Inflationary, *a.* ମୁଦ୍ରାସ୍ଫୀତିଜନିତ ।
Inflection, *n.* ଶବ୍ଦସାଧନ ।
Inflexibility, *n.* ଦୃଢ଼ତା, କଠିନତା ।
Inflexible, *a.* କଠିନ, ଦୃଢ଼, ଅନମନୀୟ । [ ଦେବା ।
Inflict, *v.* ପ୍ରୟୋଗ କରିବା, ଶାସ୍ତି
Infliction, *n.* ପ୍ରୟୋଗ, ଦଣ୍ଡପ୍ରଦାନ ।
Influence, *n.* ପ୍ରଭାବ, ସାମର୍ଥ୍ୟ, ପ୍ରତିଷ୍ଠା, ଗୌରବ । [ ଲବ୍ଧପ୍ରତିଷ୍ଠ ।
Influential, *a.* ପ୍ରଭାବଶାଳୀ, ପ୍ରବଳ,
Influenza, *n.* ସର୍ଦ୍ଦିଜ୍ବର, ସଂକ୍ରାମକ ରୋଗବିଶେଷ ।
Influx, *n.* ଆଗମ, ଅନ୍ତଃପ୍ରବାହ ।
Infold, *v.* ଆବୃତ କରିବା, ଆଲିଙ୍ଗନ କରିବା, ବେଷ୍ଟନ କରିବା ।
Inform, *v.* ଜଣାଇବା, ସମ୍ବାଦ ଦେବା ।
Informal, *a.* ଘରୋଇ, ଯାହା ବିଧିବଦ୍ଧ ନୁହେ, ଅନନୁମିତ ।
Informant, *n.* ସମ୍ବାଦଦାତା, ନିବେଦକ । [ ବାର୍ତ୍ତା ।
Information, *n.* ସମ୍ବାଦ, ସମାଚାର,
Infrangible, *a.* ଅଖଣ୍ଡନୀୟ ।
Infrequent, *a.* ଅନିତ୍ୟ, ବିରଳ, ଅସଚରାଚର । [ କେବେକେବେ ।
Infrequently, *ad.* କଦାଚିତ୍,
Infringe, *v.* ବ୍ୟତିକ୍ରମ କରିବା, ଭଙ୍ଗ କରିବା । [ ଲଙ୍ଘନ, ଭଙ୍ଗ ।
Infringement, *n.* ବ୍ୟତିକ୍ରମ,
Infuriate, *v.* କ୍ରୋଧାନ୍ବିତ କରିବା; *a.* ରାଗାନ୍ବିତ । [ କରାଇବା ।
Infuse, *v.* ନିହିତ କରିବା, ପ୍ରବେଶ
Infusion, *n.* ଅନୁପ୍ରବେଶ ।
Ingenious, *a.* ଚତୁର, ଦକ୍ଷ, ପ୍ରବୀଣ, ଉଦ୍ଭାବନକୁଶଳ ।

**Ingeniously**, *ad.* କୌଶଳରେ, ଚତୁର ଭାବରେ ।

**Ingenuity**, *n.* କୌଶଳ, ଉପସ୍ଥିତ ବୁଦ୍ଧି, କଳ୍ପନା, ଚତୁରତା । [ ନିଷ୍କପଟ ।

**Ingenuous**, *a.* ସରଳ, ଅମାୟିକ,

**Ingenuously**, *ad.* ସରଳଭାବରେ ।

**Inglorious**, *a.* ଅଯଶସ୍କର, ଅକୀର୍ତ୍ତିକର ।

**Ingot**, *n.* ଧାତୁପିଣ୍ଡ । [ କରିବା ।

**Ingraft, Engraft**, *v.* କଲମ

**Ingrate**, *n.* କୃତଘ୍ନ ବ୍ୟକ୍ତି ।

**Ingratiate**, *v.* ଅନୁଗୃହୀତ ହେବା ।

**Ingratitude**, *n.* କୃତଘ୍ନତା ।

**Ingredient**, *n.* ଉପାଦାନ, ଉପକରଣ, ସାମଗ୍ରୀ ।

**Ingress**, *n.* ପ୍ରବେଶ, ପ୍ରବେଶମାର୍ଗ ।

**Inhabit**, *v.* ବାସ କରିବା ।

**Inhabitable**, *a.* ବାସଯୋଗ୍ୟ ।

**Inhabitant**, *n.* ଅଧିବାସୀ, ବାସିନ୍ଦା ।

**Inhalation**, *n.* ଶ୍ୱାସଗ୍ରହଣ ।

**Inhale**, *v.* ଶ୍ୱାସରେ ଗ୍ରହଣ କରିବା ।

**Inhaler**, *n.* ଶ୍ୱାସଗ୍ରହଣାର୍ଥ ବାଷ୍ପ ନିର୍ଗତ କରିବାର ଯନ୍ତ୍ର ।

**Inhere**, *v.* ଅନ୍ୟମଧ୍ୟରେ ସ୍ଥିତ ହେବା ।

**Inherence, Inherency**, *n.* ଅନ୍ୟବସ୍ତୁମଧ୍ୟରେ ଅବସ୍ଥିତି । [ସ୍ୱାଭାବିକ ।

**Inherent**, *a.* ଅନ୍ତର୍ନିହିତ, ସହଜାତ,

**Inherently**, *ad.* ସହଜାତ ଭାବରେ, ଅନ୍ତର୍ନିହିତରୂପେ । [ ପାଇବା ।

**Inherit**, *v.* ଉତ୍ତରାଧିକାରସୂତ୍ରେ

**Inheritance**, *n.* ପୈତୃକ ସମ୍ପତ୍ତି, ଉତ୍ତରାଧିକାର ।

**Inherited**, *a.* ପରମ୍ପରାଗତ, ପୈତୃକ, ଉତ୍ତରାଧିକାରସୂତ୍ରେ ପ୍ରାପ୍ତ ।

**Inheritor**, *n.* ଉତ୍ତରାଧିକାରୀ (*Fem.* Inheritrix) । [ କରିବା ।

**Inhibit**, *v.* ନିଷେଧ କରିବା, ନିବୃତ୍ତ

**Inhibition**, *n.* ନିଷେଧ, ନିବୃତ୍ତି, ବାରଣ, ସଂଯତକରଣ ।

**Inhibitory**, *a.* ନିଷେଧସୂଚକ ।

**Inhospitable**, *a.* ଅସତ୍କାରଶୀଳ, ଅନାତିଥେୟ । [ ଅନାତିଥେୟତା ।

**Inhospitality**, *n.* ଅସତ୍କାର,

**Inhuman**, *a.* ଅମାନୁଷିକ, ପାଶବିକ, କ୍ରୂର, ନୃଶଂସ । [ ପୋତିବା ।

**Inhume**, *v.* ସମାଧିସ୍ଥ କରିବା,

**Inimical**, *a.* ଶତ୍ରୁଭାବାପନ୍ନ, ବିରୋଧୀ ।

**Inimitable**, *a.* ଅନନୁକରଣୀୟ, ଅସାଧାରଣ । [ ଅନ୍ୟାୟୀ ।

**Iniquitous**, *a.* ଖଳ, ପାପିଷ୍ଠ,

**Iniquity**, *n.* ଅନ୍ୟାୟ, ଅଧର୍ମ, ଖଳତା ।

**Initial**, *a.* ପ୍ରାରମ୍ଭିକ, ପ୍ରାଥମିକ, ଆଦ୍ୟ ।

**Initiate**, *v.* ଆରମ୍ଭ କରିବା, ଦୀକ୍ଷା ଦେବା ।

**Initiation**, *n.* ଆରମ୍ଭ ଉପକ୍ରମ, ଦୀକ୍ଷାଦାନ । [ *a.* ଆରମ୍ଭସୂଚକ ।

**Initiative**, *n.* ଆରମ୍ଭ, ଉପକ୍ରମ;

**Inject**, *v.* ଶରୀର ମଧ୍ୟରେ ପ୍ରବେଶ କରାଇବା ।

**Injection**, *n.* ପ୍ରକ୍ଷେପ, ଶରୀର ମଧ୍ୟରେ ତରଳ ଔଷଧର ପ୍ରବେଶ ।

**Injudicious**, *a.* ବିଚାରରହିତ, ଅବିବେଚକ । [ ନିର୍ଦ୍ଦେଶ, ହୁକୁମ ।

**Injunction**, *n.* ନିଷେଧାଜ୍ଞା, ଶାସ୍ତ-

**Injure**, *v.* କ୍ଷତି କରିବା, ଆଘାତ କରିବା । [ ଅଦ୍ଭୁତକର ।

**Injurious**, *a.* କ୍ଷତିକାରକ,

**Injury**, *n.* ଆଘାତ, କ୍ଷତି, ଅପକାର ।

**Injustice**, *n.* ଅନ୍ୟାୟ, ଅନୀତି, ଅଧର୍ମ, ଦୁର୍ନୀତି ।

**Ink**, *n.* ମସୀ, କାଳି, ସ୍ୟାହ୍ଥ । [ ଇଙ୍ଗିତ ।

**Inkling**, *n.* କିଞ୍ଚିତ୍ ଜ୍ଞାନ, ସୂଚନା,

**Inkstand**, *n.* ମସୀପାତ୍ର, କାଳିଦାନ୍ତି, ଦୁଆତ । [ ଅନ୍ତର୍ବର୍ତ୍ତୀ ।

**Inland**, *a.* ଆଭ୍ୟନ୍ତରୀଣ, ଦେଶୀୟ.

**Inlay**, *v.* ଖଚିତ କରିବା ।

**Inlet**, *n.* ପ୍ରବେଶ ପଥ, ଉପସାଗରକୁ ପ୍ରବେଶ ପଥ । [ ପରିଜନ ।

**Inmate**, *n.* ନିବାସୀ, ଅଧିବାସୀ,

**In memoriam**, *ad.* ସ୍ମରଣାର୍ଥେ, ମୃତ ଉଦ୍ଦେଶ୍ୟରେ ।

**Inmost**, *a.* ଅନ୍ତରସ୍ଥ, ମନୋଗତ ।

**Inn**, *n.* ପଥିକାଶ୍ରମ, ପାନ୍ଥଶାଳା ।

**Innate**, *a.* ସହଜାତ, ସ୍ୱାଭାବିକ, ଅନ୍ତର୍ଜାତ ।

**Inner**, *a.* ଅନ୍ତର୍ଗତ, ଅନ୍ତରସ୍ଥ, ମଧ୍ୟସ୍ଥ ।

**Innermost**, *a.* ଅନ୍ତରତମ, ଗମ୍ଭୀରତମ । [ ବା ପରିଚାଳକ ।

**Inn-keeper**, *n.* ପାନ୍ଥଶାଳାର ରକ୍ଷକ

**Innocence, Innocency**, *n.* ନିରୀହତା, ନିର୍ଦ୍ଦୋଷତା, ସାଧୁତା ।

**Innocent**, *a.* ନିଷ୍ପାପ, ନିର୍ଦ୍ଦୋଷ, ନିରପରାଧ । [ ବିନା ଅପରାଧରେ ।

**Innocently**, *ad.* ନିର୍ଦ୍ଦୋଷରେ,

**Innocuous**, *a.* ଅନପକାରୀ, ନିରୀହ, ନିରାପଦ । [ ପରିବର୍ତ୍ତନ କରିବା ।

**Innovate**, *v.* ନୂତନ ରୀତି ଚଳାଇବା,

**Innovation**, *n.* ନୂତନ ରୀତିର ପ୍ରଚଳନ, ଦେଶାଚାରର ପରିବର୍ତ୍ତନ ।

**Innuendo**, *n.* ଇଙ୍ଗିତ, ସାମାନ୍ୟ ସୂଚନା । [ ଅଗଣନ, ସଂଖ୍ୟାତୀତ ।

**Innumerable**, *a.* ଅସଂଖ୍ୟ,

**Inobservant**, *a.* ଅନବହିତ, ଅମନୋଯୋଗୀ । [ କରିବା ।

**Inoculate**, *v.* ଟୀକା ଦେବା, ସଂମିଶ୍ରିତ

**Inoculation**, *n.* ଟୀକାଦାନ, ସଂକ୍ରାମଣ ।

**Inodorous**, *a.* ଗନ୍ଧହୀନ, ନିର୍ଗନ୍ଧ ।

Inoffensive, *a.* ନିରପରାଧ, ନିର୍ଦ୍ଦୋଷ, ଅହିଂସ ।
Inoperative, *a.* ଅପ୍ରଚଳିତ, ଅଚଳ ।
Inopportune, *a.* ଅପ୍ରାପ୍ତକାଳ, ଅସମୟ, ଆକାଳିକ । [ମିତ, ଅନିୟମିତ ।
Inordinate, *a.* ଅତିରିକ୍ତ, ଅପରି-
Inordinately, *a.* ଅତିମାତ୍ରାରେ ।
Inorganic, *a.* ନିର୍ଜୀବ, ଅପ୍ରାଣୀ, ଜଡ଼ ।
Inquest, *n.* ଅଦାଲତରେ ଅପମୃତ୍ୟୁର ଅନୁସନ୍ଧାନ ।
Inquietude, *n.* ଅଶାନ୍ତି, ଅସ୍ୱସ୍ତି, ଉଦ୍‌ବେଗ, ଆକୁଳତା, ମନସ୍ତାପ ।
Inquire, *v.* ପଚାରିବା, ଅନ୍ୱେଷଣ କରିବା, ସନ୍ଧାନ କରିବା ।
Inquirer, *n.* ଜିଜ୍ଞାସୁ, ପ୍ରଶ୍ନକାରୀ ।
Inquiring, *a.* ଅନୁସନ୍ଧିତ୍ସୁ ।
Inquiry, *n.* ପ୍ରଶ୍ନ, ଗବେଷଣା, ଜିଜ୍ଞାସା, ଅନୁସନ୍ଧାନ । [ଦୋଷାନୁସନ୍ଧାନ ।
Inquisition, *n.* ପରୀକ୍ଷା, ବିଚାର,
Inquisitive, *a.* କୌତୂହଳୀ, ଜିଜ୍ଞାସୁ, ଅନ୍ୱେଷଣଶୀଳ । [ଜିଜ୍ଞାସା ।
Inquisitiveness, *n.* କୌତୂହଳ,
Inroad, *n.* ହଠାତ୍ ଆକ୍ରମଣ, ଉପଦ୍ରବ ।
Insalubrious, *a.* ଅସ୍ୱାସ୍ଥ୍ୟକର ।
Insane, *a.* ପାଗଳ, ଉନ୍ମତ୍ତ, ବିକୃତମସ୍ତିଷ୍କ ।
Insanely, *ad.* ପାଗଳପରି ।
Insanitary, *a.* ଅସ୍ୱାସ୍ଥ୍ୟକର, ରୋଗଜନକ ।
Insanity, *n.* ଉନ୍ମାଦ, ପାଗଳାମି, ମସ୍ତିଷ୍କବିକୃତି ।
Insatiable, Insatiate, *a.* ଅତୋଷ୍ୟ, ଅତୃପ୍ତ, ଅତିଲୋଭୀ ।
Insatiety, *n.* ଅତୃପ୍ତି, ଅସନ୍ତୋଷ ।
Inscribe, *v.* ଧାତୁ-ପ୍ରସ୍ତର ଆଦି ଉପରେ ଲେଖିବା ।
Inscribed, *a.* ଅଭିଲିଖିତ ।
Inscription, *n.* ଅଭିଲେଖ, ଖୋଦିତ ଲିପି । [ଅଚିନ୍ତ୍ୟ ।
Inscrutable, *a.* ଅବୋଧ, ଦୁର୍ଜ୍ଞେୟ,
Insect, *n.* କୃମି, କୀଟ, ପୋକ, ପତଙ୍ଗ
Insecticide, *n.* କୀଟପତଙ୍ଗାଦି ବିନାଶକ ଔଷଧ ।
Insectivorous, *a.* କୀଟଭୋଜୀ ।
Insecure, *a.* ଭୟଯୁକ୍ତ, ଅରକ୍ଷିତ, ସଙ୍କଟାପନ୍ନ, ଆପଦ୍‌ଗ୍ରସ୍ତ ।
Insecurity, *n.* ଭୟ, ଶଙ୍କା, ଆପଦ
Insemination, *n.* କୃତ୍ରିମ ଉପାୟରେ ଗର୍ଭଉତ୍ପାଦନ ।
Insensate, *a.* ନିର୍ବୁଦ୍ଧି, ହତଜ୍ଞାନ, ଅଚେତନ । [ଜଡ଼ତା ।
Insensibility, *n.* ମୂର୍ଚ୍ଛା, ଅଚୈତନ୍ୟ,
Insensible, *a.* ଅଚେତନ, ଜଡ଼, ମୂର୍ଚ୍ଛିତ, ସଜ୍ଞାହୀନ ।
Insentient, *a.* ଚେତନାଶୂନ୍ୟ ।
Inseparable, *a.* ଅବିଚ୍ଛେଦ୍ୟ ।

Inseparably, *ad.* ଅବିଚ୍ଛେଦ୍ୟ ଭାବରେ ।

[ କରିବା ।

Insert, *v.* ନିବେଶ କରିବା, ଅନ୍ତର୍ଭୁକ୍ତ

Insertion, *n.* ନିବେଶନ, ପ୍ରବେଶ, ବିଜ୍ଞାପନ ।

[ ପ୍ରକ୍ଷେପ, ନିବେଶ ।

Inset, *a.* ପ୍ରକ୍ଷିପ୍ତ, ନିବେଶିତ; *n.*

Inshore, *ad.* ଉପକୂଳରେ ।

Inside, *n.* ଭିତର, ଗର୍ଭ, ଉଦର; *pre.* ଭିତରେ; *a.* ଆଭ୍ୟନ୍ତରିକ ।

Insidious, *a.* ପ୍ରତାରକ, କପଟୀ, ଶଠ ।

Insight, *n.* ଜ୍ଞାନ, ନିରୀକ୍ଷା, ଅନ୍ତର୍ଦୃଷ୍ଟି ।

Insignia, *n.* ଲକ୍ଷଣ, ପଦବୀର ଚିହ୍ନ ।

Insignificance, *n.* ଲଘବ, ଅଲ୍ପତା, ତୁଚ୍ଛତା ।

[ ଅକିଞ୍ଚିତ୍କର ।

Insignificant, *a.* ନଗଣ୍ୟ, ତୁଚ୍ଛ,

Insincere, *a.* କୁଟିଳ, କପଟୀ, ଆନ୍ତରିକତାଶୂନ୍ୟ ।

Insincerity, *n.* କୁଟିଳତା, କାପଟ୍ୟ ।

Insinuate, *v.* ଇଙ୍ଗିତଦ୍ୱାରା କହିବା, ଆକ୍ଷେପ କରିବା ।

[ ବିଦ୍ରୂପ, ବକ୍ରୋକ୍ତି ।

Insinuation, *n.* ଆକ୍ଷେପ, ସୂଚନା,

Insipid, *a.* ବିସ୍ୱାଦୁ, ନୀରସ, ଅଲଣା ।

Insipidity, Insipidness, *n.* ସ୍ୱାଦୁହୀନତା, ନୀରସତା ।

Insipience, *n.* ମୂର୍ଖତା, ଅଜ୍ଞତା ।

Insipient, *a.* ମୂର୍ଖ, ଅଜ୍ଞ । [ କରିବା ।

Insist, *v.* ନିର୍ବନ୍ଧକରି କହିବା, ଜିଦ୍

Insistence, *n.* ଜିଦ୍ । [ ବିରୋଧୀ ।

Insociable, *a.* ସାମାଜିକତା-

Insolence, *n.* ଔଦ୍ଧତ୍ୟ, ଅଶିଷ୍ଟତା, ଗର୍ବ, ଦାମ୍ଭିକତା ।

[ ଉଦ୍ଧତ ।

Insolent, *a.* ଗର୍ବୀ, ଦାମ୍ଭିକ, ଅଭଦ୍ର,

Insolently, *ad.* ଉଦ୍ଧତଭାବରେ, ନିର୍ଲଜ୍ଜଭାବରେ, ରୁକ୍ଷଭାବରେ ।

Insoluble, *a.* ଅଦ୍ରବଣୀୟ ।

Insolvable, *a.* ସମାଧାନର ଅତୀତ ।

Insolvency, *n.* ଦେବାଳିଆ ଅବସ୍ଥା, ଋଣପରିଶୋଧରେ ଅସାମର୍ଥ୍ୟ ।

Insolvent, *a.* ଦେବାଳିଆ, ଋଣ-ଶୁଝିବାକୁ ଅକ୍ଷମ ।

Insomnia, *n.* ଅନିଦ୍ରା, ନିଦ୍ରାହୀନତା ରୋଗ ।

[ ପରିଦର୍ଶନ କରିବା ।

Inspect, *v.* ତଦାରଖ କରିବା,

Inspection, *n.* ପରିଦର୍ଶନ, ପରୀକ୍ଷା, ତଦାରଖି ।

Inspector, *n.* ପରିଦର୍ଶକ କର୍ମଚାରୀ, ନିରୀକ୍ଷକ (*Fem.* Inspectress) ।

Inspiration, *n.* ଶ୍ୱାସଗ୍ରହଣ, ପ୍ରେରଣା, ଅଗାଧ୍ୟ ଜ୍ଞାନ ।

Inspire, *v.* ଉଦ୍ଦୀପିତ କରିବା, ପ୍ରେରଣା ଦେବା, ଶ୍ୱାସଗ୍ରହଣ କରିବା ।

Inspiring, *a.* ଉଦ୍ଦୀପନାମୟ ।

Instability, *n.* ଅଦୃଢ଼ତା, ଅସ୍ଥିରତା, ଚପଳତା ।

Instable, *a.* ଅସ୍ଥିର, ଅଦୃଢ଼ ।

**Instal, Install,** *v.* ପ୍ରତିଷ୍ଠା କରିବା, ପଦାଭିଷିକ୍ତ କରିବା ।

**Installation,** *n.* ଅଭିଷେକ, ପ୍ରତିଷ୍ଠାପନ ।

**Instalment,** *n.* ଭାଗ, ଅଂଶ, କିସ୍ତି ।

**Instance,** *n.* ଉଦାହରଣ, ଦୃଷ୍ଟାନ୍ତ, ଘଟଣା; *v.* ଦୃଷ୍ଟାନ୍ତ ଦେବା ।

**Instant,** *n.* ମୁହୂର୍ତ୍ତ, ତାରିଖ; *a.* ଅବିଳମ୍ବ, ତାତ୍କାଳିକ । [ କ୍ଷଣିକ ।

**Instantaneous,** *a.* ତାତ୍କାଳିକ,

**Instantly,** *ad.* ତତ୍‌କ୍ଷଣାତ୍‌, ଅବିଳମ୍ବେ, ଅଚିରାତ୍‌ ।

**Instate,** *v.* ସ୍ଥାପିତ କରିବା ।

**Instead,** *ad.* ପରିବର୍ତ୍ତରେ, ବଦଳରେ, ସ୍ଥାନରେ । [ କୁମନ୍ତ୍ରଣା ଦେବା ।

**Instigate,** *v.* କୁକର୍ମରେ ପ୍ରବର୍ତ୍ତାଇବା,

**Instigation,** *n.* କୁକର୍ମରେ ପ୍ରରୋଚନା, କୁମନ୍ତ୍ରଣା । [ କୁମନ୍ତ୍ରଣାଦାତା ।

**Instigator,** *n.* ପ୍ରବର୍ତ୍ତନାକାରୀ,

**Instil,** *v.* ବିନ୍ଦୁ ବିନ୍ଦୁ କରି ଢାଳିବା ।

**Instinct,** *n.* ପ୍ରବୃତ୍ତି, ସହଜାତ ବୃତ୍ତି ।

**Instinctive,** *a.* ସହଜାତ, ପ୍ରବୃତ୍ତିଗତ, ସ୍ୱାଭାବିକ । [ ପ୍ରବୃତ୍ତିବଶରୁ ।

**Instinctively,** *ad.* ସ୍ୱଭାବତଃ,

**Institute,** *n.* ଅନୁଷ୍ଠାନ, ବିଧିବିଧାନ; *v.* ସ୍ଥାପନ କରିବା, ନିୟମ ପ୍ରଣୟନ କରିବା ।

**Institution,** *n.* ଅନୁଷ୍ଠାନ, ପ୍ରତିଷ୍ଠାପନ, ପ୍ରତିଷ୍ଠିତ ବିଧି ।

**Instruct,** *v.* ଶିକ୍ଷା ଦେବା, ଉପଦେଶ ଦେବା ।

**Instruction,** *n.* ଶିକ୍ଷାଦାନ, ଉପଦେଶ । [ ଉପଦେଶାତ୍ମକ ।

**Instructive,** *a.* ଶିକ୍ଷାପ୍ରଦ,

**Instructor,** *n.* ଶିକ୍ଷାଦାତା, ଉପଦେଷ୍ଟା (*Fem.* Instructress) ।

**Instrument,** *n.* ଯନ୍ତ୍ରପାତି, ସାଧନ, ଉପାୟ, କାରଣ । [ ସାଧକ ।

**Instrumental,** *a.* ପ୍ରୟୋଜକ,

**Insubordinate,** *a.* ଅବାଧ୍ୟ, ଆଜ୍ଞାଅମାନ୍ୟକାରୀ ।

**Insubordination,** *n.* ଅବାଧ୍ୟତା ।

**Insufficiency,** *n.* ଅପ୍ରଚୁରତା ।

**Insufficient,** *a.* ଅପ୍ରଚୁର, ଅପର୍ଯ୍ୟାପ୍ତ ।

**Insular,** *a.* ଦ୍ୱୀପସମ୍ବନ୍ଧୀୟ, ଜଳବେଷ୍ଟିତ । [ ସମ୍ପର୍କ ଛିନ୍ନ କରିବା ।

**Insulate,** *v.* ପୃଥକ୍ ସ୍ଥାନରେ ରଖିବା,

**Insulator,** *n.* ସମ୍ପର୍କଛିନ୍ନକାରୀ, ବିଦ୍ୟୁତ୍-ଅପରିବାହକ ପଦାର୍ଥ ।

**Insult,** *v.* ଅପମାନ ଦେବା, ତିରସ୍କାର କରିବା; *n.* ଅବମାନନା, ତିରସ୍କାର ।

**Insulting,** *a.* ଅପମାନଜନକ ।

**Insuperable,** *a.* ଅଲଙ୍ଘ୍ୟ, ଦୁସ୍ତର, ଦୁରତିକ୍ରମ । [ ଦୁର୍ବହ, ଅସହ୍ୟ ।

**Insupportable,** *a.* ଦୁଃସହ,

**Insurance,** *n.* ଜୀବନବୀମା, ବୀମାକରଣ ।

Insure, *v.* ବୀମା କରିବା, କ୍ଷତି ନିବାରଣ କରିବା, ନିଶ୍ଚିତ କରିବା ।
Insurgency, *n.* ରାଜଦ୍ରୋହ, ବିପ୍ଳବ ।
Insurgent, *a.* ରାଜଦ୍ରୋହୀ, ବିପ୍ଳବୀ ।
Insurmountable, *a.* ଅଲଙ୍ଘ୍ୟ, ଦୁସ୍ତର । [ ରାଜବିଦ୍ରୋହ ।
Insurrection, *n.* ପ୍ରଜାବିପ୍ଳବ,
Insusceptible, *a.* ଅବିଚଳିତ, ଅଗ୍ରାହକ, ଗ୍ରହଣାକ୍ଷମ ।
Intact, *a.* ଅଖଣ୍ଡ, ଅବିକୃତ ।
Intangible, *a.* ଅସ୍ପର୍ଶବେଦ୍ୟ, ସ୍ପର୍ଶାତୀତ । [ ପୂର୍ଣ୍ଣାଙ୍କ ।
Integer, *n.* ଅଖଣ୍ଡରାଶି, ପୂର୍ଣ୍ଣସଂଖ୍ୟା,
Integral, *a.* ଅଖଣ୍ଡ, ପୂର୍ଣ୍ଣ, ଅଚ୍ଛେଦ୍ୟ ।
Integrate, *v.* ପୂର୍ଣ୍ଣାଙ୍ଗ କରିବା, ସଂହତ କରିବା । [ ସଂହତି ।
Integration, *n.* ପୂର୍ଣ୍ଣାଙ୍ଗକରଣ,
Integrity, *n.* ସାଧୁତା, ଅଖଣ୍ଡତା ।
Intellect, *n.* ବୁଦ୍ଧି, ପ୍ରଜ୍ଞା, ମାନସିକ ଶକ୍ତି । [ ମାନସିକ ।
Intellectual, *a.* ବୌଦ୍ଧିକ,
Intelligence, *n.* ବୁଦ୍ଧି, ଜ୍ଞାନ, ସମ୍ବାଦ । [ ଚତୁର ।
Intelligent, *a.* ବୁଦ୍ଧିମାନ୍, ବିଜ୍ଞ,
Intelligently, *ad.* ଚତୁର ଭାବରେ, ବୁଦ୍ଧି ସହକାରେ ।
Intelligentsia, Intelligentzia, *n.* ସ୍ୱାଧୀନ ଚିନ୍ତାଶୀଳ ଗୋଷ୍ଠୀ, ବୁଦ୍ଧିଜୀବୀ ସମ୍ପ୍ରଦାୟ । [ ସୁବୋଧ୍ୟ, ସ୍ପଷ୍ଟ ।
Intelligible, *a.* ବୋଧଗମ୍ୟ,
Intemperance, *n.* ଅମିତାଚାର, ପାନଭୋଜନାଦିରେ ଅସଂଯମ । [ ଅସଂଯତ ।
Intemperate, *a.* ଅମିତାଚାରୀ,
Intend, *v.* ଇଚ୍ଛା କରିବା, ମନଃସ୍ଥ କରିବା । [ ତୀବ୍ର ।
Intense, *a.* ଅତ୍ୟନ୍ତ, ଅତିଶୟ,
Intensely, *ad.* ତୀବ୍ରଭାବରେ, ଅତି ମାତ୍ରାରେ । [ ତୀବ୍ର କରିବା ।
Intensify, *v.* ବୃଦ୍ଧି କରିବା,
Intensity, *n.* ତୀବ୍ରତା, ଆତିଶଯ୍ୟ ।
Intensive, *a.* ବ୍ୟାପକ, ଗଭୀର ।
Intent, *a.* ଏକାଗ୍ର, ଏକନିଷ୍ଠ; *n.* ଉଦ୍ଦେଶ୍ୟ, ଅଭିଳାଷ । [ ମନୋଭାବ ।
Intention, *n.* ଅଭିପ୍ରାୟ, ଉଦ୍ଦେଶ୍ୟ,
Intentional, *a.* ଉଦ୍ଦେଶ୍ୟମୂଳକ, ସଜ୍ଞାନ, ଇଚ୍ଛାକୃତ । [ ଜାଣିଶୁଣି ।
Intentionally, *ad.* ଜ୍ଞାତସାରରେ,
Inter, *v.* ପୋତିବା, କବର ଦେବା, ସମାଧିସ୍ଥ କରିବା ।
Intercede, *v.* ମଧ୍ୟସ୍ଥତା କରିବା, ଅନ୍ୟପାଇଁ ପ୍ରାର୍ଥନା କରିବା ।
Intercept, *v.* ବାଟରୁ ରଖିନେବା, ଅଟକ ରଖିବା ।

**Intercession**, *n.* ମଧ୍ୟସ୍ଥତା, ଅନ୍ୟ-
ପାଇଁ ନିବେଦନ ।
**Interchange**, *v.* ବିନିମୟ କରିବା;
*n.* ବିନିମୟ, ଅଦଳବଦଳ । [ ପରିବର୍ତ୍ତନୀୟ ।
**Interchangeable**, *a.* ପରସ୍ପର
**Intercourse**, *n.* ଚଳପ୍ରଚଳ, ସଙ୍ଗମ,
ସାହଚର୍ଯ୍ୟ ।
**Interdependence**, *n.* ପରସ୍ପର
ନିର୍ଭରଶୀଳତା, ଅନ୍ୟୋନ୍ୟ ଆଶ୍ରୟ ।
**Interdict**, *v.* ନିଷେଧ କରିବା,
ବାରଣ କରିବା । [ ବାରଣ ।
**Interdiction**, *n.* ନିଷେଧ,
**Interest**, *n.* ସ୍ୱାର୍ଥ, ଅନୁରାଗ, ସୁଧ;
*v.* ଅନୁରକ୍ତ କରିବା । [ ସ୍ୱାର୍ଥଯୁକ୍ତ ।
**Interested**, *a.* ଅନୁରକ୍ତ, ପକ୍ଷପାତୀ,
**Interesting**, *a.* ହୃଦୟଗ୍ରାହୀ,
ମନୋହର, ସରସ । [ ପରଚର୍ଚ୍ଚା କରିବା ।
**Interfere**, *v.* ହସ୍ତକ୍ଷେପ କରିବା,
**Interference**, *n.* ହସ୍ତକ୍ଷେପ,
ପରଚର୍ଚ୍ଚା । [ ମଧ୍ୟବର୍ତ୍ତୀକାଳୀନ ।
**Interim**, *n.* ମଧ୍ୟବର୍ତ୍ତୀ ସମୟ; *a.*
**Interior**, *n.* ଅଭ୍ୟନ୍ତର, ଅନ୍ତର; *a.*
ଅନ୍ତରସ୍ଥ ।
**Interject**, *v.* ମଧ୍ୟରେ ସ୍ଥାପନ କରିବା ।
**Interjection**, *n.* ବିସ୍ମୟ, ସମ୍ବୋଧନ
ଆଦି ସୂଚକ ଅବ୍ୟୟ । [ ସମ୍ଭାଷଣ ।
**Interlocution**, *n.* ସଲାପ,

**Interlope**, *v.* ଅନଧିକାର ଚର୍ଚ୍ଚା
କରିବା । [ ମଧ୍ୟରେ ବିରତି ।
**Interlude**, *n.* ବିଷ୍କମ୍ଭକ, ଅଭିନୟ
**Intermarriage**, *n.* ପରସ୍ପର
ମଧ୍ୟରେ ବିବାହ । [ ମଧ୍ୟବର୍ତ୍ତୀ ।
**Intermediary**, *a.* & *n.* ମଧ୍ୟସ୍ଥ,
**Intermediate**, *a.* ମଧ୍ୟସ୍ଥିତ,
ମଧ୍ୟବର୍ତ୍ତୀ । [ ସମାଧି ।
**Interment**, *n.* କବରରେ ସ୍ଥାପନ,
**Interminable**, *a.* ଅନନ୍ତ,
ଅଶେଷ । [ କରିବା ।
**Intermingle**, *v.* ପରସ୍ପର ସମ୍ମିଳିତ
**Intermission**, *n.* ବିରତି, ବିଶ୍ରାମ ।
**Intermittent**, *a.* ସବିରାମ,
ସବିଚ୍ଛେଦ ।
**Intermix**, *v.* ପରସ୍ପର ମିଶାଇବା ।
**Internal**, *a.* ଆଭ୍ୟନ୍ତରୀଣ, ଦେଶୀୟ ।
**Internally**, *ad.* ଭିତରେ,
ଦେଶମଧ୍ୟରେ ।
**International**, *a.* ଆନ୍ତର୍ଜାତୀୟ ।
**Internecine**, *a.* ପରସ୍ପର
ବିନାଶକାରୀ । [ ପ୍ରଶ୍ନ ।
**Interpellation**, *n.* ବିଧାନସଭାର
**Interpolate**, *v.* କୃତ୍ରିମଭାବରେ
ସନ୍ନିବେଶ କରିବା ।
**Interpolation**, *n.* ପ୍ରକ୍ଷେପ, ଅନ୍ୟର
ରଚନାରେ କୃତ୍ରିମ ସନ୍ନିବେଶ ।

**Interpose**, *v.* ମଧ୍ୟସ୍ଥତା କରିବା ।
**Interpret**, *v.* ବ୍ୟାଖ୍ୟା କରିବା, ବୁଝାଇଦେବା । [ ଭାଷ୍ୟ, ଟିପ୍ପଣୀ ।
**Interpretation**, *n.* ବ୍ୟାଖ୍ୟା,
**Interpreter**, *n.* ବ୍ୟାଖ୍ୟାକାର, ଦ୍ୱିଭାଷୀ, ଅନୁବାଦକ ।
**Interrogate**, *v.* ପ୍ରଶ୍ନ କରିବା ।
**Interrogation**, *n.* ପ୍ରଶ୍ନ, ପୃଚ୍ଛା ।
**Interrogative**, *a.* ପ୍ରଶ୍ନାତ୍ମକ, ପ୍ରଶ୍ନସୂଚକ । [ ବାଧା ଦେବା ।
**Interrupt**, *v.* ପ୍ରତିବନ୍ଧକ ହେବା,
**Interruption**, *n.* ଅନ୍ତରାୟ, ବାଧା, ପ୍ରତିବନ୍ଧକ ।
**Intersect**, *v.* ପରସ୍ପର ଛେଦ କରିବା ।
**Intersection**, *n.* ପରସ୍ପର ଛେଦ ।
**Intersperse**, *v.* ଇତସ୍ତତଃ ନିକ୍ଷେପ କରିବା ।
**Interspersion**, *n.* ବିକ୍ଷେପ, ବିକିରଣ
**Interstellar**, *a.* ତାରାଗଣମଧ୍ୟବର୍ତ୍ତୀ ।
**Interstice**, *n.* ଛିଦ୍ର, ରନ୍ଧ୍ର, ସନ୍ଧି ।
**Interval**, *n.* ଅନ୍ତରାଳ, ଅବକାଶ, ବ୍ୟବଧାନ । [ ଉପସ୍ଥାପନ କରିବା ।
**Intervene**, *v.* ହସ୍ତକ୍ଷେପ କରିବା,
**Intervening**, *a.* ମଧ୍ୟବର୍ତ୍ତୀ, ବ୍ୟବହିତ
**Interview**, *n.* ସାକ୍ଷାତ୍କାର; *v.* ସାକ୍ଷାତ କରିବା ।
**Intestate**, *a.* ଉଇଲ ନ କରି ମୃତ ହୋଇଥିବା ।
**Intestine**, *a.* ଶରୀରାଭ୍ୟନ୍ତରସ୍ଥ ।
**Intestines**, *n. (pl.)* ଅନ୍ତ୍ର ।
**Intimacy**, *n.* ଆତ୍ମୀୟତା, ପ୍ରଣୟ ।
**Intimate**, *a.* ଅନ୍ତରଙ୍ଗ, ଦୃଢ଼, ସୁପରିଚିତ, ଆତ୍ମୀୟ । [ ପ୍ରଦାନ ।
**Intimation**, *n.* ଜ୍ଞାପନ, ସମ୍ବାଦ-
**Intimidate**, *v.* ଭୟ ଦେଖାଇବା ।
**Intimidation**, *n.* ଭୟପ୍ରଦର୍ଶନ, ତର୍ଜନା ।
**Into**, *pre.* ମଧ୍ୟକୁ, ଭିତରକୁ ।
**Intolerable**, *a.* ଅସହ୍ୟ, ଦୁଃସହ ।
**Intolerance**, *n.* ଅସହିଷ୍ଣୁତା ।
**Intolerant**, *a.* ଅସହିଷ୍ଣୁ, ଅମର୍ଷଣ, କ୍ଷମାହୀନ ।
**Intonation**, *n.* ଉଚ୍ଚାରଣର ଗତି ।
**Intoxicate**, *v.* ମତ୍ତ କରିବା, ମୁଗ୍ଧ ହେବା ।
**Intoxicated**, *a.* ଉନ୍ମତ୍ତ ।
**Intoxication**, *n.* ମାଦକତା, ଉନ୍ମାଦନା, ନିଶା । [ ଚିରସ୍ଥାୟୀ ।
**Intransient**, *a.* ଅଭଙ୍ଗୁର,
**Intransitive**, *a.* ଅକର୍ମକ (କ୍ରିୟାପଦ) ।
**Intrepid**, *a.* ନିର୍ଭୀକ, ସାହସୀ ।
**Intrepidity**, *n.* ନିର୍ଭୀକତା, ଶୌର୍ଯ୍ୟ, ବିକ୍ରମ । [ ଗୂଢ଼ତା, ଜଟିଳତା
**Intricacy, Intricateness**, *n.*

Intricate, *a.* ଜଟିଳ, ବିଷମ, ଦୁର୍ବୋଧ । [ *v.* କୁମନ୍ତ୍ରଣା କରିବା ।
Intrigue, *n.* ଚକ୍ରାନ୍ତ, କୁପରାମର୍ଶ;
Intriguer, *n.* ଚକ୍ରାନ୍ତକାରୀ ।
Intrinsic, Intrinsical, *a.* ଆଭ୍ୟନ୍ତରୀଣ, ସ୍ୱାଭାବିକ, ପ୍ରକୃତ ।
Intrinsically, *ad.* ବସ୍ତୁତଃ, ଯଥାର୍ଥରେ । [ ପରିଚୟ କରାଇବା ।
Introduce, *v.* ପ୍ରବେଶ କରାଇବା,
Introduction, *n.* ପ୍ରବେଶ, ପ୍ରାରମ୍ଭ, ଭୂମିକା, ପରିଚୟପ୍ରଦାନ ।
Introductory, Introductive, *a.* ପ୍ରାରମ୍ଭିକ, ପ୍ରାଥମିକ ।
Introspect, *v.* ଅଭ୍ୟନ୍ତରକୁ ଦେଖିବା
Introspection, *n.* ଅନ୍ତର୍ଦୃଷ୍ଟି ।
Intrude, *v.* ଅନାହୂତ ଭାବରେ ପ୍ରବେଶ କରିବା । [ ବ୍ୟକ୍ତି ।
Intruder, *n.* ଅନାହୂତ ପ୍ରବେଶକାରୀ
Intrusion, *n.* ବିନାନୁମତିରେ ପ୍ରବେଶ
Intuition, *n.* ସ୍ୱାଭାବିକ ଜ୍ଞାନ, ଅନ୍ତର୍ଜ୍ଞାନ । [ ସ୍ୱତଃସ୍ଫୂର୍ତ୍ତି ।
Intuitive, *a.* ସ୍ୱଭାବଲବ୍ଧ,
Inundate, *v.* ଜଳପ୍ଲାବିତ କରିବା ।
Inundated, *a.* ଜଳମଗ୍ନ, ଜଳମଗ୍ନ ।
Inundation, *n.* ଜଳପ୍ଲାବନ, ବନ୍ୟା, ପ୍ରଳୟ । [ କରିବା ।
Inure, *v.* ଅଭ୍ୟସ୍ତ କରିବା, ଦୃଢ଼
Inured, *a.* ଅଭ୍ୟସ୍ତ, ପରିଚିତ, ଅଭିଜ୍ଞ ।
Invade, *v.* ଆକ୍ରମଣ କରିବା ।
Invader, *n.* ଆକ୍ରମଣକାରୀ ।
Invalid, *a.* ରୋଗୀ, ଅସମର୍ଥ, ଅଚଳ, ବ୍ୟର୍ଥ । [ କରିବା ।
Invalidate, *v.* ଅଚଳ ବା ରଦ୍ଦ
Invalidity, *n.* ନିଷ୍ଫଳତା, ବ୍ୟର୍ଥତା ।
Invaluable, *a.* ଅମୂଲ୍ୟ, ବହୁମୂଲ୍ୟ, ଉତ୍କୃଷ୍ଟ । [ ନିତ୍ୟ, ଅଚଳ ।
Invariable, *a.* ଅପରିବର୍ତ୍ତନୀୟ,
Invariably, *ad.* ଅପରିବର୍ତ୍ତନୀୟ ଭାବରେ, ନିତ୍ୟତଃ ।
Invasion, *n.* ଆକ୍ରମଣ ।
Invective, *n.* ଆକ୍ଷେପ, ଭର୍ତ୍ସନା, ନିନ୍ଦା, ଅପବାଦ; *a.* ନିନ୍ଦକ, ନିନ୍ଦାତ୍ମକ ।
Inveigh, *v.* ଭର୍ତ୍ସନା କରିବା ।
Invent, *v.* ଉଦ୍ଭାବନ କରିବା, କଳ୍ପନା କରିବା, ଗଠନ କରିବା ।
Invention, *n.* ଉଦ୍ଭାବନ, କଳ୍ପନା ।
Inventive, *a.* ସୃଜନକ୍ଷମ, ଉଦ୍ଭାବନଶୀଳ ।
Inventor, *n.* ଉଦ୍ଭାବକ, ରଚକ ।
Inventory, *n.* (ଗୃହୋପକରଣାଦିର) ପରିସଂଖ୍ୟାନ, ସଂଖ୍ୟାପତ୍ର, ତାଲିକା ।
Inverse, *a.* ବିପର୍ଯ୍ୟସ୍ତ, ବିପରୀତ ।
Inversely, *ad.* ବିପରୀତଭାବରେ ।
Inversion, *n.* ବିପର୍ଯ୍ୟୟ, ବୈପରୀତ୍ୟ ।

**Invert**, *v.* ବିପର୍ଯ୍ୟସ୍ତ କରିବା ।
**Invertebral**, *a.* ମେରୁଦଣ୍ଡବିହୀନ ।
**Invertebrata**, *n.* (*pl.*) ଅମେରୁ-ଦଣ୍ଡୀ ପ୍ରାଣୀ ।
**Invertebrate**, *n.* ଅମେରୁଦଣ୍ଡୀ ପ୍ରାଣୀ
**Invest**, *v.* ଲାଭ ପାଇଁ ବିନିଯୋଗ କରିବା, ମଣ୍ଡନ କରିବା, ଅଧିକାର ଦେବା ।
**Investigable**, *a.* ଅନୁସନ୍ଧେୟ ।
**Investigate**, *v.* ଅନୁସନ୍ଧାନ କରିବା, ପରୀକ୍ଷା କରିବା । [ ଗବେଷଣା, ନିରୀକ୍ଷା ।
**Investigation**, *n.* ଅନୁସନ୍ଧାନ,
**Investigator**, *n.* ଅନୁସନ୍ଧାନକାରୀ, ଗବେଷକ । [ ସଂସ୍କାର ।
**Investiture**, *n.* ଅଭିଷେକ,
**Investment**, *n.* ଲାଭପାଇଁ ଅର୍ଥ ବିନିଯୋଗ । [ ପୁରାତନ ।
**Inveterate**, *a.* ଦୃଢ଼, ବଦ୍ଧମୂଳ,
**Invidious**, *a.* ଈର୍ଷାମୂଳକ, ହିଂସା-ପ୍ରଣୋଦିତ ।
**Invigorate**, *v.* ବଳବୃଦ୍ଧି କରିବା ।
**Invigorating**, *a.* ବଳବୃଦ୍ଧିକାରକ ।
**Invincible**, *a.* ଅପରାଜେୟ, ଅଦମ୍ୟ ।
**Invincibly**, *ad.* ଅଜେୟରୂପେ ।
**Inviolable**, *a.* ଅଲଙ୍ଘ୍ୟ, ଅନତି-କ୍ରମଣୀୟ । [ ସମ୍ପୂର୍ଣ୍ଣ ।
**Inviolate**, *a.* ଅଖଣ୍ଡ, ଅଭଗ୍ନ,
**Invisibility**, *n.* ଅଦୃଶ୍ୟତା ।
**Invisible**, *a.* ଅଦୃଶ୍ୟ, ଦୃଷ୍ଟିର ଅଗୋଚର
**Invitation**, *n.* ନିମନ୍ତ୍ରଣ, ଆହ୍ୱାନ ।
**Invite**, *v.* ନିମନ୍ତ୍ରଣ କରିବା ।
**Invitingly**, *ad.* ଆହ୍ୱାନପୂର୍ବକ ।
**Invocation**, *n.* ନିମନ୍ତ୍ରଣ, ଆବାହନ, ପ୍ରାର୍ଥନା । [ ବସ୍ତୁର ତାଲିକା ।
**Invoice**, *n.* ଜିନିଷର ତାଲିକା, ପଠାଯିବା
**Invoke**, *v.* ଆବାହନ କରିବା, ସମ୍ବୋ-ଧନ କରିବା । [ ସହକାରେ ।
**Involuntarily**, *ad* ଅନିଚ୍ଛା-
**Involuntary**, *a.* ଅନୈଚ୍ଛିକ, ଅଜ୍ଞାନପୂର୍ବ । [ କରିବା ।
**Involve**, *v.* ଜଡ଼ିତ କରିବା, ଲିପ୍ତ
**Involved**, *a.* ସଂଶ୍ଲିଷ୍ଟ, ଲିପ୍ତ, ଜଡ଼ିତ, ସମ୍ପୃକ୍ତ । [ ଅପ୍ରବେଶ୍ୟ ।
**Invulnerable**, *a.* ଅଭେଦ୍ୟ,
**Inward**, *a.* ଅନ୍ତଃସ୍ଥିତ, ଅନ୍ତର୍ବର୍ତ୍ତୀ; *ad.* ଭିତରକୁ । [ ମନେମନେ ।
**Inwardly**, *ad.* ଭିତରେଭିତରେ,
**Inwrought**, *a.* ଶିଳ୍ପକାର୍ଯ୍ୟଶୋଭିତ ।
**Iota**, *n.* ଅଣୁ, ଲବ, କଣିକା, ବିନ୍ଦୁମାତ୍ର ।
**Irate**, *a.* କ୍ରୁଦ୍ଧ, ରୁଷ୍ଟ, କୁପିତ ।
**Ire**, *n.* କ୍ରୋଧ, ରାଗ, ରୋଷ, କୋପ ।
**Ireful**, *a.* କ୍ରୁଦ୍ଧ, କୋପାବିଷ୍ଟ ।
**Iris**, *n.* ଚକ୍ଷୁର ତାରାମଣ୍ଡଳ ।
**Irk**, *v.* କଷ୍ଟ ଦେବା, ବିରକ୍ତ କରିବା ।
**Irksome**, *a.* ଦୁଃଖଜନକ, ବିରକ୍ତିକର ।
**Iron**, *n.* ଲୌହ, ଇସ୍ତିରିଯନ୍ତ୍ର; *v.* କପଡ଼ା ଇସ୍ତ୍ରି କରିବା ।

Ironical, *a.* ବ୍ୟଙ୍ଗପୂର୍ଣ୍ଣ । [ ବିକ୍ରେତା ।
Iron-monger, *n.* ଲୌହ ଜିନିଷର
Irony, *n.* ଶ୍ଳେଷ, ବ୍ୟଙ୍ଗ, ପରିହାସ,
ବ୍ୟାଜସ୍ତୁତି । [ କିରଣ ଦେବା ।
Irradiate, *v.* ଦୀପ୍ତି ପ୍ରକାଶ କରିବା,
Irradiation, *n.* ଦୀପ୍ତି ବିକିରଣ ।
Irrational, *a.* ବିଚାରହୀନ, ନିର୍ବୋଧ,
ଯୁକ୍ତିବିରୁଦ୍ଧ । [ ଅନୁଦ୍ଧରଣୀୟ ।
Irrecoverable, *a.* ପୁନରଲଭ୍ୟ,
Irreducible, *a.* ଯାହାକୁ ନ୍ୟୂନ
କରିଯାଇ ନ ପାରେ ।
Irrefutable, *a.* ଅକାଟ୍ୟ, ଅଲଙ୍ଘ୍ୟ ।
Irregular, *a.* ଅନିୟମିତ, ନିୟମବିରୁଦ୍ଧ ।
Irregularity, *n.* ନିୟମଲଙ୍ଘନ,
ବ୍ୟତିକ୍ରମ । [ ଭାବରେ ।
Irregularly, *ad.* ଅନିୟମିତ
Irrelative, *a.* ସମ୍ପର୍କଶୂନ୍ୟ, ଅସମ୍ପୃକ୍ତ ।
Irrelevancy, *n.* ଅସମ୍ବନ୍ଧ, ଅସଙ୍ଗତି
Irrelevant, *a.* ଅସମ୍ବଦ୍ଧ, ଅସଙ୍ଗତ,
ଅପ୍ରାସଙ୍ଗିକ । [ ଭାବରେ ।
Irrelevantly, *ad.* ଅସମ୍ବଦ୍ଧ-
Irreligion, *n.* ଅଧର୍ମ, ଅଭକ୍ତି,
ଦେବନିନ୍ଦା । [ ପାପୀ ।
Irreligious, *a.* ଅଧାର୍ମିକ, ପାଷଣ୍ଡ,
Irremediable, *a.* ଅପ୍ରତିକାର୍ଯ୍ୟ,
ଉପାୟରହିତ । [ ଅପ୍ରତିକାର୍ଯ୍ୟ ।
Irreparable, *a.* ଅପୂରଣୀୟ,
Irreproachable, *a.* ଅଦୂଷଣୀୟ,
ନିଷ୍କଳଙ୍କ, ଅନିନ୍ଦ୍ୟ ।
Irresistible, *a.* ଅପ୍ରତିହତ, ଦୁର୍ବାର ।
Irresolute, *a.* ଅସ୍ଥିରମନା, ଚଳଚିତ୍ତ ।
Irrespective, *a.* ନିର୍ବିଶେଷ,
ନିରପେକ୍ଷ ।
Irresponsible, *a.* ଦାୟିତ୍ୱହୀନ ।
Irretrievable, *a.* ଅପ୍ରତିକାର୍ଯ୍ୟ,
ଅଶୋଧନୀୟ ।
Irreverence, *n.* ଅବଜ୍ଞା, ଅଭକ୍ତି ।
Irreverent, *a.* ଅମାନ୍ୟକାରୀ,
ଅବଜ୍ଞାକାରୀ । [ ଅପରିବର୍ତ୍ତନୀୟ ।
Irrevocable, *a.* ଅଖଣ୍ଡନୀୟ,
Irrigate, *v.* ଜଳସେଚନ କରିବା ।
Irrigation, *n.* ଜଳସେଚନ ।
Irritability, *n.* କ୍ରୋଧଶୀଳତା,
କୋପନସ୍ୱଭାବ ।
Irritable, *a.* କ୍ରୋଧଶୀଳ, କୋପନ ।
Irritant, *n.* ଯାହା ହେତୁରୁ କ୍ରୋଧ
ଜନ୍ମାଏ । [ କରିବା ।
Irritate, *v.* କୁପିତ କରିବା, କ୍ରୁଦ୍ଧ
Irritation, *n.* ଉତ୍ତେଜନ, କ୍ରୋଧ-
ଉତ୍ପାଦନ । [ ଉତ୍ତେଜକ ।
Irritative, *a.* ବିରକ୍ତିଜନକ,
Irruption, *n.* ହଠାତ୍ ଆକ୍ରମଣ ।
Island, *n.* ଦ୍ୱୀପ, ଜଳବେଷ୍ଟିତ ଭୂଖଣ୍ଡ ।
Islet, *n.* କ୍ଷୁଦ୍ର ଦ୍ୱୀପ ।

**Isolate**, *v.* ପୃଥକ୍ କରିବା, ଦୂରରେ ରଖିବା ।
**Isosceles**, *a.* ସମଦ୍ୱିବାହୁ ।
**Issue**, *n.* ପ୍ରଶ୍ନ, ବିଷୟ, ପରିଣାମ, ସନ୍ତାନ; *v.* ନିଃସୃତ ହେବା, ଜାତ ହେବା ।
**Issueless**, *a.* ନିଃସନ୍ତାନ ।
**Isthmus**, *n.* ଯୋଜକ, ଦୁଇ ବୃହତ୍ ଭୂଭାଗର ସଂଯୋଜକ ଭୂଖଣ୍ଡ ।
**Itch**, *n.* କୁଣ୍ଡିଆ, କଣ୍ଡୁୟନ; *v.* ଗଲୁ କରିବା, କୁଣ୍ଡେଇ ହେବା ।
**Item**, *n.* ଦଫା, ବିଷୟ ।
**Itinerant**, *a.* ଯାଯାବର, ଭ୍ରମଣଶୀଳ
**Itinerary**, *n.* ଭ୍ରମଣବୃତ୍ତାନ୍ତ ।
**Ivory**, *n.* ହାତୀଦାନ୍ତ, ଗଜଦନ୍ତ ।
**Ivy**, *n.* ଲତାବିଶେଷ ।

# J

**Jabber**, *v.* ପ୍ରଳାପ କରିବା, ବାଚାଳପର କହିବା, ବକ୍‌ବକ୍ ହେବା ।
**Jabberer**, *n.* ବାବଦୂକ, ପ୍ରଳାପୀ ।
**Jabbering**, *n.* ପ୍ରଳାପ, ବାଚାଳତା ।
**Jacent**, *a.* ଲମ୍ବମାନ ।
**Jack**, *n.* ପଣସ, ନାବିକ, ଯନ୍ତ୍ରବିଶେଷ ।
**Jackal**, *n.* ଶୃଗାଳ, ବିଲୁଆ ।
**Jack-ass**, *n.* ଗର୍ଦ୍ଦଭ, ଗଧ ।
**Jackdaw**, *n.* ଦ୍ରୋଣକାକ, ଡାମରାକୁଆ ।
**Jacket**, *n.* ଛୋଟ ଅଙ୍ଗରଖା, ଫତେଇ, ଜାମା । [ ଆଲୁଅ ।
**Jack o'lantern**, *n.* ଚରଗୁଣୀ
**Jade**, *n.* ଅକର୍ମଣ୍ୟ ଘୋଡ଼ା ବା ଘୋଡ଼ୀ, କୁଳଟା ସ୍ତ୍ରୀ; *v.* କ୍ଳାନ୍ତ କରିବା, ବ୍ୟସ୍ତ କରିବା ।
**Jaded**, *a.* ଅବସନ୍ନ, କ୍ଳାନ୍ତ । [ ଘଷ ।
**Jag**, *v.* ଖୋପ କରିବା; *n.* ଖୋପ ବା
**Jaguar**, *n.* ବଡ଼ାଳଜାତୀୟ ହିଂସ୍ରଜନ୍ତୁ-ବିଶେଷ । [ ଜେଲଖାନା ।
**Jail**, *n.* କାରାଗାର, ବନ୍ଦଶାଳା,
**Jailer, Jailor**, *n.* ବନ୍ଦଶାଳାର ରକ୍ଷକ । [ ଜେଲ ଭର୍ତ୍ତି କରିବା ।
**Jam**, *n.* ମୋରବ୍ବାବିଶେଷ; *v.* ଖୁନ୍ଦିବା,
**Jangle**, *v.* କର୍କଶ ସ୍ୱର କରିବା, କଳି କରିବା ।
**Jangler**, *n.* ବିତର୍କକାରୀ, କଳହକାରୀ ।
**Janitor**, *n.* ଦ୍ୱାରପାଳ, ଦ୍ୱାରରକ୍ଷକ ।
**January**, *n.* ଇଂରାଜୀ ବର୍ଷର ପ୍ରଥମ ମାସ । [ କର୍କଶ ଶବ୍ଦ କରିବା ।
**Jar**, *n.* ମାଟି ବା କାଚର ପାତ୍ର; *v.*
**Jargon**, *n.* ପ୍ରଳାପ, ଅର୍ଥହୀନ ଶବ୍ଦ ।
**Jarring**, *a.* କର୍କଶ, ଶ୍ରୁତିକଟୁ ।
**Jasmine, Jessamine**, *n.* ଯୂଈ, ନବମଲ୍ଲିକା ପ୍ରଭୃତି ମଲ୍ଲୀଜାତୀୟ ଫୁଲ ।

**Jasper**, *n.* ସୂର୍ଯ୍ୟକାନ୍ତ ମଣି ।
**Jaundice**, *n.* କାମଳ, ପାଣ୍ଡୁରୋଗ ।
**Jaunt**, *n.* ପ୍ରମୋଦ ଭ୍ରମଣ; *v.* ଆନନ୍ଦରେ ଭ୍ରମଣ କରିବା ।
**Jauntily**, *ad.* ଚତୁରତାପୂର୍ବକ, ଫୂର୍ତ୍ତିରେ ।
**Jaunty, Janty**, *a.* ଫୁଲବାବୁପରି, ଲୋକଦେଖାଣିଆ ।
**Javelin**, *n.* ଶୂଳ, ବର୍ଚ୍ଛା, କୁନ୍ତ ।
**Jaw**, *n.* ହନୁ, ଗାଲପାଟି ।
**Jealous**, *a.* ଈର୍ଷାପରାୟଣ, ସନ୍ଦେହୀ, ପରଶ୍ରୀକାତର ।
**Jealously**, *ad.* ଈର୍ଷା ସହକାରେ, ସନ୍ଦେହପୂର୍ବକ ।
**Jealousy, Jealousness**, *n.* ଈର୍ଷା, ପରଶ୍ରୀକାତରତା ।
**Jeep**, *n.* ଏକ ପ୍ରକାର ମୋଟରଗାଡ଼ି ।
**Jeer**, *v.* ଉପହାସ କରିବା, ଅବଜ୍ଞା କରିବା ।
**Jelly**, *n.* ଅଠାଳିଆ ମୋରବ୍ବା ।
**Jeopardise, Jeopardize**, *v.* ବିପଦଗ୍ରସ୍ତ କରିବା ।
**Jeopardy**, *n.* ସଂଶୟ, ସଙ୍କଟ, ବିପଦ ।
**Jerk**, *n.* ଝିଙ୍କା, ଟଣା, ଓଟରା; *v.* ଝିଙ୍କିବା, ଟାଣିବା ।
**Jerkin, Jersey**, *n.* ଛୋଟ କୁରୁତା, ଫତେଇ ।
**Jest**, *n.* ଥଟ୍ଟା, ପରିହାସ, କୌତୁକ; *v.* ପରିହାସ କରିବା ।
**Jester**, *n.* ପରିହାସକାରୀ, ବିଦୂଷକ ।
**Jestful**, *a.* ପରିହାସଶୀଳ ।
**Jesting**, *n.* ଥଟ୍ଟା, ପରିହାସ ।
**Jesus**, *n.* ଖ୍ରୀଷ୍ଟଧର୍ମର ପ୍ରତିଷ୍ଠାତା ଯୀଶୁ ।
**Jet**, *n.* କୃଷ୍ଣପ୍ରସ୍ତରବିଶେଷ; *v.* ବହିର୍ଗତ ହେବା ।
**Jetty**, *a.* ଘନକୃଷ୍ଣ; *n.* ଜାହାଜର ମାଲ ଓହ୍ଲାଇବା ଓ ଲଦିବାର ଘାଟ ।
**Jew**, *n.* ଇହୁଦୀ ସମ୍ପ୍ରଦାୟର ଲୋକ ।
**Jewel**, *n.* ରତ୍ନ, ମଣିମାଣିକ୍ୟ, ଅଳଙ୍କାର ।
**Jewelled**, *a.* ରତ୍ନଖଚିତ ।
**Jeweller**, *n.* ରତ୍ନବ୍ୟବସାୟୀ, ଅଳଙ୍କାରବିକ୍ରେତା ।
**Jewellery**, *n.* ଅଳଙ୍କାର, ମଣିମୁକ୍ତା ପ୍ରଭୃତି ।
**Jewish**, *a.* ଇହୁଦୀୟ ।
**Jingle**, *n.* ଝଣ୍‌ଝଣ୍ ଶବ୍ଦ; *v.* ଝଣ୍‌ଝଣ୍ ଶବ୍ଦ କରିବା ।
**Job**, *n.* ଠିକା କାମ, ଛୋଟ ଛପାକାମ ।
**Jockey**, *n.* ଘୋଡ଼ଦୌଡ଼ରେ ଅଶ୍ୱାରୋହୀ, ଅଶ୍ୱବ୍ୟବସାୟୀ ।
**Jocose, Jocular**, *a.* ହାସ୍ୟକର, କୌତୁକପ୍ରିୟ, ପରିହାସଶୀଳ, ରସିକ ।
**Jocosely, Jocularly**, *ad.* ପରିହାସରେ, କୌତୁକରେ ।
**Jocularity**, *n.* ରସିକତା, ପରିହାସ ।
**Jocund**, *a.* ହୃଷ୍ଟ, ଉଲ୍ଲସିତ, ଆନନ୍ଦିତ ।
**Jooundity**, *n.* ଆନନ୍ଦ, ହର୍ଷ ।
**Jog**, *v.* ଠେଲିବା, ଧକ୍କା ଦେବା; *n.* ଧକ୍କା ।
**Joggle**, *v.* ଧକ୍କା ଦେବା ।
**Join**, *v.* ଯୋଗ କରିବା, ବନ୍ଧନ କରିବା, ଗ୍ରଥିତ କରିବା ।

Joiner, *n.* ବର୍ଦ୍ଧକୀ, ସୂତ୍ରଧର, ବଢ଼େଇ ।
Joint, *n.* ସନ୍ଧି, ଗଣ୍ଠି, ଅସ୍ଥିସନ୍ଧି; *a.* ସମ୍ମିଳିତ, ଅବିଭକ୍ତ ।
Jointly, *ad.* ସମ୍ମିଳିତଭାବରେ, ଏକତ୍ର ।
Joist, *n.* ଘରର କଡ଼ି । [ କରିବା ।
Joke, *n.* ଥଟ୍ଟା, ପରିହାସ; *v.* ଥଟ୍ଟା
Joker, *n.* ପରିହାସକାରୀ, ଭଣ୍ଡ, ତାସର ଗୋଲାମ ।
Jokingly, *ad.* ପରିହାସ ଛଳରେ ।
Jolly, *a.* ଆନନ୍ଦିତ, ହୃଷ୍ଟ, ଉଲ୍ଲସିତ ।
Jollyboat, *n.* କ୍ଷୁଦ୍ର ନୌକା, ଜାହାଜ-ସଂଲଗ୍ନ ନୌକା । [ ଆଘାତ କରିବା ।
Jostle, *v.* ଠେଲାଠେଲି ହେବା, ପରସ୍ପର
Jot, *n.* ଲବ, କଣା, ଅଣୁ; *v.* ଟିପିବା, ଲେଖିବା ।
Jotting, *n.* ସ୍ମରଣାର୍ଥେ ଲେଖା, ଟିପ୍ପଣୀ ।
Journal, *n.* ସମାଚାରପତ୍ର, ଖବର-କାଗଜ । [ ସମ୍ବାଦପତ୍ର ପରିଚାଳନା ।
Journalism, *n.* ସାମ୍ବାଦିକତା,
Journalist, *n.* ପତ୍ରିକା ପ୍ରକାଶକ, ପତ୍ରିକାଲେଖକ, ସାମ୍ବାଦିକ ।
Journey, *n.* ଯାତ୍ରା, ଭ୍ରମଣ, ଦେଶ-ପର୍ଯ୍ୟଟନ; *v.* ଭ୍ରମଣ କରିବା ।
Journeyman, *n.* ଠିକାମଜୁରିଆ ।
Jovial, *a.* ଆନନ୍ଦପୂର୍ଣ୍ଣ, ହୃଷ୍ଟ, ପରିହାସ-ରସିକ ।
Joy, *n.* ଆନନ୍ଦ, ହର୍ଷ, ଉଲ୍ଲାସ ।
Joyance, *n.* ମହୋତ୍ସବ ।
Joyful, *a.* ଆନନ୍ଦପୂର୍ଣ୍ଣ, ହୃଷ୍ଟ, ପ୍ରଫୁଲ୍ଲ ।
Joyfully, *ad.* ମହା ଆନନ୍ଦରେ ।
Joyless, *a.* ନିରାନନ୍ଦ । [ ହୃଷ୍ଟ ।
Joyous, *a.* ଆନନ୍ଦପୂର୍ଣ୍ଣ, ଆହ୍ଲାଦିତ,
Joyously, *ad.* ଆହ୍ଲାଦରେ ।
Jubilant, *a.* ଜୟଧ୍ୱନିକାରୀ, ଆନନ୍ଦିତ ।
Jubilation, *n.* ଆନନ୍ଦଧ୍ୱନି ପ୍ରକାଶ, ଜୟଧ୍ୱନି ।
Jubilee, *n.* ମହୋତ୍ସବ, ଉତ୍ସବକାଳ, ପଚାଶ ବର୍ଷ ବା ପଚିଶ ବର୍ଷ ପୂର୍ତ୍ତି ଉପଲକ୍ଷେ ଉତ୍ସବ, ଜୟନ୍ତୀ । [ ଜାତିସମ୍ବନ୍ଧୀୟ ।
Judaic, Judaical, *a.* ଇହୁଦୀ-
Judaism, *n.* ଇହୁଦୀମାନଙ୍କର ଧର୍ମ ।
Judge, *n.* ବିଚାରପତି, ଧର୍ମାଧିକାରୀ; *v.* ବିଚାର କରିବା, ନିର୍ଣ୍ଣୟ କରିବା ।
Judgeship, *n.* ବିଚାରପତିଙ୍କ ପଦ ବା ଅଧିକାର ।
Judgement, Judgment, *n.* ନିଷ୍ପତ୍ତି, ବିଚାରପତିଙ୍କ ଆଦେଶ, ବିବେଚନା, ବିଚାର ।
Judicable, *a.* ବିଚାରଯୋଗ୍ୟ ।
Judicature, *n.* ବିଚାରାଳୟ, ଅଧିକାର, ଆଇନସଙ୍ଗତ ବିଚାର କରିବାର କ୍ଷମତା । [ ଅଦାଲତସମ୍ବନ୍ଧୀୟ ।
Judicial, *a.* ବିଚାରାଳୟ ସମ୍ବନ୍ଧୀୟ,
Judicially, *ad.* ଆଇନ ଅନୁସାରେ ।
Judiciary, *n.* ବିଚାରକସମ୍ପ୍ରଦାୟ; *a.* ବିଚାରାଳୟ ସମ୍ବନ୍ଧୀୟ ।

Judicious, *a.* ସୁବିବେଚକ, ବିଜ୍ଞ ।
Judiciously, *ad.* ବିବେଚନା-ସହକାରେ, ଉଚିତ ଭାବରେ । [ ମାଠିଆ ।
Jug, *n.* ସଙ୍କୀର୍ଣ୍ଣ ମୁଖବିଶିଷ୍ଟ ପାତ୍ର, ସୁରେଇ,
Juggle, *v.* ଭେଳକିବିଦ୍ୟା ବା କୁହୁକ ଦେଖାଇବା ।
Juggler, *n.* ଐନ୍ଦ୍ରଜାଲିକ, ବାଜିକର ।
Jugglery, *n.* ଭେଳକିବାଜି, କୁହୁକ ବିଦ୍ୟା, ହାତସଫେଇ ।
Juice, *n.* ରସ, ନିର୍ଯ୍ୟାସ, ଝୋଳ ।
Juiceless, *a.* ରସହୀନ, ନୀରସ ।
Juiciness, *n.* ରସାଳତା, ସରସତା ।
Juicy, *a.* ରସାଳ, ରସବିଶିଷ୍ଟ ।
July, *n.* ଇଂରାଜୀ ବର୍ଷର ସପ୍ତମ ମାସ ।
Jumble, *v.* ମିଶ୍ରିତ କରିବା, ଗୋଳମାଳ କରିଦେବା । [ ଲମ୍ଫ ।
Jump, *v.* ଡେଇଁବା, ଲମ୍ଫ ଦେବା; *n.*
Junction, *n.* ସଙ୍ଗମସ୍ଥଳ, ମିଳନସ୍ଥାନ, ସମ୍ମିଳନ ।
Juncture, *n.* ସନ୍ଧିସ୍ଥଳ, ସଙ୍କଟ ସମୟ ।
June, *n.* ଇଂରାଜୀ ବର୍ଷର ଷଷ୍ଠ ମାସ ।
Jungle, *n.* ବଣ, ଜଙ୍ଗଲ ।
Junior, *a.* ଅଧସ୍ତନ, କନିଷ୍ଠାନ୍, ବୟସ-ପଦାଦିରେ କନିଷ୍ଠ; *n.* ଅନୁଜ ।
Juniority, *n.* କନିଷ୍ଠତ୍ୱ ।
Junta, Junto, *n.* ଗୁପ୍ତ ସମାଜ, କୁମନ୍ତ୍ରଣା ସଭା ।
Jupiter, *n.* ବୃହସ୍ପତି ଗ୍ରହ ।
Jurisdiction, *n.* ଇଲାକା, ଅଧିକାର, କ୍ଷମତାର ସୀମା ।
Jurisprudence, *n.* ବ୍ୟବସ୍ଥା ଶାସ୍ତ୍ର, ସ୍ମୃତି ଶାସ୍ତ୍ର, ବ୍ୟବସ୍ଥା ବିଧି, ଆଇନ ବିଧି ।
Jurist, *n.* ବିଚାରକ, ଆଇନଜ୍ଞ, ସ୍ମୃତିଜ୍ଞ ।
Juror, *n.* ବିଚାରପତିଙ୍କ ସାହାଯ୍ୟକାରୀ ।
Jury, *n.* ବିଚାରପତିଙ୍କ ସହାୟକବର୍ଗ ।
Just, *a.* ଯଥାର୍ଥ, ନ୍ୟାଯ୍ୟ, ନ୍ୟାୟପରାୟଣ, ଠିକ୍ । [ ବିଚାରପତି ।
Justice, *n.* ନ୍ୟାୟ, ନ୍ୟାୟବିଚାର,
Justifiable, *a.* କାରଣବିଶିଷ୍ଟ, ଯାଥାର୍ଥ୍ୟ ପ୍ରତିପାଦନଯୋଗ୍ୟ ।
Justification, *n.* ଯାଥାର୍ଥ୍ୟ, ପ୍ରମାଣଗତ ସମର୍ଥନ । [ କରିବା ।
Justify, *v.* ଯାଥାର୍ଥ୍ୟ ପ୍ରତିପାଦନ
Justly, *ad.* ନ୍ୟାୟତଃ, ନ୍ୟାଯ୍ୟ ଭାବରେ ।
Justness, *n.* ଯାଥାର୍ଥ୍ୟ, ଔଚିତ୍ୟ, ନ୍ୟାଯ୍ୟତା । [ ବାହାରି ପଡ଼ିଥିବା ଅଂଶ ।
Jut, *v.* ପଦାକୁ ବାହାରି ପଡ଼ିବା; *n.*
Jute, *n.* ଝୋଟ । [ ଯୁବକସୁଲଭ ।
Juvenile, *a.* ତରୁଣ, ଯୁବକ, କୌମାର,
Juvenility, *n.* ତାରୁଣ୍ୟ, ଯୌବନ ।
Juxtapose, *v.* ନିକଟରେ ସ୍ଥାପନ କରିବା । [ ସ୍ଥାପନ, ସାନ୍ନିଧ୍ୟ ।
Juxtaposition, *n.* ନିକଟରେ

# K

**Kaiser**, *n.* ଜର୍ମାନୀର ଭୂତପୂର୍ବ ସମ୍ରାଟ-ମାନଙ୍କ ଉପାଧି ।

**Kaleidoscope**, *n.* ବିବିଧ ରଙ୍ଗ-ପ୍ରଦର୍ଶକ ଏକ ପ୍ରକାର ଯନ୍ତ୍ର ।

**Kaolin**, *n.* ଚୀନାମାଟି ।

**Keel**, *n.* ନୌକା ବା ଜାହାଜର ନିମ୍ନଭାଗ ।

**Keelage**, *n.* ବନ୍ଦରରେ ଜାହାଜ ରଖିବା ପାଇଁ ଶୁଳ୍କ । [ କୁତୂହଳୀ ।

**Keen**, *a.* ତୀକ୍ଷ୍ଣ, ତୀବ୍ର, ପ୍ରଖର, ଉତ୍ସୁକ,

**Keenly**, *ad.* ପ୍ରଖର ଭାବରେ, ଆଗ୍ରହ ସହକାରେ । [ ଔତ୍ସୁକ୍ୟ, ତୀକ୍ଷ୍ଣତା ।

**Keenness**, *n.* ପ୍ରଖରତା, ତୀବ୍ରତା,

**Keep**, *v.* ରଖିବା, ସ୍ଥାପନ କରିବା, ପୋଷିବା; *n.* ରକ୍ଷଣାବେକ୍ଷଣ ।

**Keeper**, *n.* ରକ୍ଷକ, ପାଳକ ।

**Keeping**, *n.* ରକ୍ଷଣ, ପାଳନ, ଜିମ୍ମା ।

**Keepsake**, *n.* ସ୍ମୃତିଚିହ୍ନ, ସ୍ନେହାଭି-ଜ୍ଞାନ, ସ୍ମରଣାର୍ଥ ଦତ୍ତ ଦ୍ରବ୍ୟ ।

**Keg**, *n.* କ୍ଷୁଦ୍ର ପିମ୍ପା ।

**Ken**, *n.* ଦୃଷ୍ଟିପଥ, ବୁଦ୍ଧିବିଷୟ, ଗୋଚର; *v.* ଦୂରରୁ ଦେଖିବା । [ ଜଳପ୍ରଣାଳୀ ।

**Kennel**, *n.* କୁକ୍କୁର ରହିବା ଘର,

**Kerchief**, *n.* ଆବରକ ବସ୍ତ୍ର ।

**Kernel**, *n.* ଫଳର ଶସ, ରସ, ସାର ପଦାର୍ଥ ।

**Kerosene**, *n.* କିରାସିନ ।

**Kettle**, *n.* କଟାହ, କଡ଼େଇ, ନଳୀଯୁକ୍ତ ପାତ୍ର, କେଟଲ୍ ।

**Kettle-drum**, *n.* ବାଦ୍ୟଯନ୍ତ୍ରବିଶେଷ ।

**Key**, *n.* କୁଞ୍ଚି, ଚାବିକାଠି, ଟୀକାବହି ।

**Key-hole**, *n.* ଚାବିର ଛିଦ୍ର ।

**Keynote**, *n.* ପ୍ରଧାନ ସ୍ୱର ।

**Keystone**, *n.* ଖିଲାଣର ମଧ୍ୟସ୍ଥିତ ପ୍ରସ୍ତର ।

**Kick**, *v.* ପାଦରେ ଆଘାତ କରିବା, ନାତ ମାରିବା; *n.* ପଦାଘାତ ।

**Kid**, *n.* ଛାଗଶାବକ, ଛେଳିଛୁଆ ।

**Kidling**, *n.* କ୍ଷୁଦ୍ର ଛେଳିଛୁଆ ।

**Kiddy**, *n.* ଶିଶୁ, ପିଲା ।

**Kidnap**, *v.* (ଲୋକ) ଚୋରାଇନେବା, ଅପହରଣ କରିବା । [ ହରଣକାରୀ ।

**Kidnapper**, *n.* ମନୁଷ୍ୟ ଅପ-

**Kidney**, *n.* ବୃକ୍କ, ମୂତ୍ରାଶୟ ।

**Kill**, *v.* ବଧ କରିବା, ହତ୍ୟା କରିବା ।

**Killing**, *n.* ବଧ, ହତ୍ୟା ।

**Kiln**, *n.* ଇଟାଭାଟି ।

**Kilogram, Kilogramme**, *n.* ଏକ ହଜାର ଗ୍ରାମ୍ ଓଜନ ।

**Kilometer**, *n.* ଏକ ହଜାର ମିଟର ଦୈର୍ଘ୍ୟ, ପ୍ରାୟ ⅝ ମାଇଲ ଦୂରତ୍ୱ ।

**Kilowatt**, *n.* ଏକ ହଜାର ଓ୍ୱାଟ୍, ବୈଦ୍ୟୁତିକ ଶକ୍ତିର ପରିମାଣବିଶେଷ ।

Kimbo, *a.* ବକ୍ର, ଅବନତ ।
Kin, *n.* ବନ୍ଧୁବାନ୍ଧବ, କୁଟୁମ୍ବ, ଜ୍ଞାତି ।
Kind, *a.* ଦୟାଳୁ, ସଦୟ; *n.* ଜାତି, ପ୍ରକାର । [ ଦୟାଳୁ ।
Kind-hearted, *a.* ଦୟାର୍ଦ୍ର ହୃଦୟ,
Kindergarten, *n.* ଶିଶୂଦ୍ୟାନ, ଫ୍ରୋବେଲ ସାହେବଙ୍କ ପ୍ରବର୍ତ୍ତିତ ଶିଶୁ-ଶିକ୍ଷାଦାନ ପଦ୍ଧତି । [ କରିବା ।
Kindle, *v.* ଉଦ୍ଦୀପ୍ତ କରିବା, ଉତ୍ତେଜିତ
Kindliness, *n.* କୃପା, ଆନୁକୂଲ୍ୟ ।
Kindly, *ad.* ସଦୟଭାବରେ, ଅନୁଗ୍ରହ-ପୂର୍ବକ; *a.* ସଦୟ, ଅନୁକୂଳ, ପ୍ରସନ୍ନ ।
Kindness, *n.* ଦୟା, ଅନୁଗ୍ରହ, କୃପା ।
Kindred, *a.* ସମଜାତୀୟ, ସମାନ, ଅନୁରୂପ, ସଗୋତ୍ର; *n.* ବନ୍ଧୁତା, ବନ୍ଧୁବାନ୍ଧବ, ଜ୍ଞାତିତ୍ୱ ।
Kine, *n.* ଗୋଜାତି, ଗାଈଗୋରୁ ।
Kinetic, *a.* ଗତିଶୀଳ ।
Kinetics, *n.* ଗତିବିଜ୍ଞାନ ।
King, *n.* ରାଜା, ନୃପତି ।
Kingdom, *n.* ରାଜ୍ୟ ।
Kinglike, *a.* ରାଜଯୋଗ୍ୟ, ରାଜୋଚିତ ।
Kingship, *n.* ରାଜତ୍ୱ, ରାଜପଦ, ପ୍ରଭୁତ୍ୱ, ଆଧିପତ୍ୟ । [ ବାନ୍ଧବ, କୁଟୁମ୍ବ ।
Kinsfolk, *n.* ସ୍ୱଜାତୀୟ ଲୋକ, ବନ୍ଧୁ-
Kinsman, *n.* ବନ୍ଧୁବାନ୍ଧବ, ଜ୍ଞାତି, ସଗୋତ୍ର ।
Kirk, *n.* ଗୀର୍ଜା, ଭଜନାଳୟ ।
Kiss, *n.* ଚୁମ୍ବନ; *v.* ଚୁମ୍ବନ କରିବା ।
Kit, *n.* (ସୈନିକ, ନାବିକ ପ୍ରଭୃତିଙ୍କର) ଉପକରଣସମୂହ, ସମ୍ଭାର ।
Kitchen, *n.* ପାକଶାଳା, ରନ୍ଧନଗୃହ ।
Kite, *n.* ଚିଲ, ଗୁଡ଼ି ।
Kith, *n.* ବନ୍ଧୁବାନ୍ଧବ, ଜ୍ଞାତିବର୍ଗ ।
Kitten, *n.* ମାର୍ଜାରଶାବକ, ବିରାଡ଼ିଛୁଆ ।
Knack, *n.* କୌଶଳ, ସ୍ୱରୁପ, ପାଟବ, ଦକ୍ଷତା । [ ଥଳୀ ।
Knapsack, *n.* ଯାତ୍ରୀର ପାଥେୟମୁଣ୍ଡି
Knave, *n.* ଧୂର୍ତ୍ତ, ଶଠ, ପ୍ରତାରକ ବ୍ୟକ୍ତି, ଜୁଆଖେଳର ।
Knavery, Knavishness, *n.* ଶଠତା, ଧୂର୍ତ୍ତତା, ପ୍ରତାରଣା, ଛଳନା, ଜୁଆଖେଳ ।
Knavish, *a.* ଶଠ, ପ୍ରତାରଣାପୂର୍ଣ୍ଣ ।
Knead, *v.* ହାତରେ ଦଳିବା, ଚକଟିବା ।
Knee, *n.* ଜାନୁ, ଉରୁସନ୍ଧି, ଆଣ୍ଠୁ ।
Kneel, *v.* ଜାନୁପାତ କରିବା, ଆଣ୍ଠୁମାଡ଼ି ବସିବା ।
Knell, *n.* ମୃତ୍ୟୁସୂଚକ ଘଣ୍ଟାଧ୍ୱନି ।
Knick-Knack, *n.* ଖେଳନା, କ୍ରୀଡ଼ାଦ୍ରବ୍ୟ ।
Knife, *n.* ଛୁରି, କଟାରି ।
Knight, *n.* ଉଚ୍ଚ ଉପାଧିବିଶେଷ, ଅଶ୍ୱାରୋହୀ ବୀର; *v.* ନାଇଟ୍ ଉପାଧି ଦେବା ।
Knit, *v.* ଗୁନ୍ଥିବା, ସଂଯୋଗ କରିବା, ବୁଣିବା ।

Landed property, *n.* ଭୂସମ୍ପତ୍ତି, ସ୍ଥାବର ସମ୍ପତ୍ତି । [ ଭୂସ୍ୱାମୀ ।
Landholder, *n.* ଭୂମ୍ୟଧିକାରୀ,
Landing, *n.* ଘାଟ, ଅବତରଣ ସ୍ଥାନ ।
Landlady, *n.* ଘରବାଲୀ, ଗୃହସ୍ୱାମିନୀ, ଭୂସ୍ୱାମିନୀ, ପାନ୍ଥଶାଳାର କର୍ତ୍ତ୍ରୀ ।
Landless, *a.* ଭୂମିହୀନ । [ ଗୃହସ୍ୱାମୀ ।
Landlord, *n.* ଜମିଦାର, କ୍ଷେତ୍ରସ୍ୱାମୀ,
Landmark, *n.* ସୀମାଚିହ୍ନ, ପ୍ରସିଦ୍ଧ ଘଟନା । [ ଭୂପ୍ରଦେଶ, ଭୂଖଣ୍ଡର ଦୃଶ୍ୟ ।
Landscape, *n.* ନୟନଗୋଚରୀଭୂତ
Lane, *n.* ସଙ୍କୀର୍ଣ୍ଣ ପଥ, ଗଳି ।
Language, *n.* ଭାଷା, ବାଣୀ, କଥା ।
Languid, *a.* ମ୍ଳାନ, କ୍ଳାନ୍ତ, ଅବସନ୍ନ, ଶିଥିଳ ।
Languidly, *ad.* ଅବସନ୍ନଭାବରେ ।
Languish, *v.* ଅବସନ୍ନ ହେବା, କ୍ଷୀଣ ହେବା । [ କ୍ଳାନ୍ତ, ନିସ୍ତେଜତା ।
Languishment, *n.* ଅବସାଦ,
Languor, *n.* କ୍ଳାନ୍ତି, ଅବସନ୍ନତା ।
Lank, *a.* କ୍ଷୀଣ, ଶିଥିଳ ।
Lantern, *n.* ଲଣ୍ଠନ ।
Lap, *n.* କୋଡ଼, ପୋଷାକର ଝୁଲୁଥିବା ଅଂଶ; *v.* ଆବୃତ କରିବା ।
Lapse, *n.* ଅଧଃପାତ, ସମୟାତିକ୍ରମ; *v.* ବେମିଆଦ ହେବା, ସ୍ୱତ୍ୱଲୋପ ହେବା ।
Lapwing, *n.* ଟିଟ୍ଟିଭ ପକ୍ଷୀ ।
Larcener, *n.* ଚୋର ।
Larceny, *n.* ଚୌର୍ଯ୍ୟ, ଛୋଟ ଚୋରି ।
Lard, *n.* ଶୂକରର ଚର୍ବି ।
Large, *a.* ବିଶାଳ, ବୃହତ୍, ବିପୁଳ ।
Largeness, *n.* ବିଶାଳତା, ପ୍ରାଚୁର୍ଯ୍ୟ ।
Largess, Largesse, *n.* ଦାନ, ବିତରଣ, ଉପହାର ।
Lark, *n.* ଭରଦ୍ୱାଜ, ଭରଢିଆପକ୍ଷୀ ।
Larva, *n.* କୀଟବିଶେଷ ।
Larynx, *n.* କଣ୍ଠନାଳୀ, କୃକ ।
Lascivious, *a.* କାମୁକ, ଲମ୍ପଟ, ଭୋଗାସକ୍ତ । [ କରିବା; *n.* କଶାଘାତ ।
Lash, *v.* କଶାଘାତ କରିବା, ପ୍ରହାର
Lass, *n.* କନ୍ୟା, କୁମାରୀ, ତରୁଣୀ ।
Lassitude, *n.* ଖେଦ, କ୍ଳାନ୍ତି, ଅବସାଦ, ଶିଥିଳତା ।
Last, *a.* ଗତ, ଅତୀତ, ଶେଷ, ଅନ୍ତିମ; *v.* ଅବସ୍ଥାନ କରିବା, ରହିବା ।
Lasting, *a.* ସ୍ଥାୟୀ, ଅକ୍ଷୟ, ଶାଶ୍ୱତ ।
Lastly, *ad.* ପରିଶେଷରେ ।
Latch, *n.* କିଳଣୀ, ଅର୍ଗଳ ।
Latchet, *n.* ଜୋତାର ଫିତା, ପାଦୁକାବନ୍ଧନୀ । [ *ad.* ବିଳମ୍ବରେ ।
Late, *a.* ବିଳମ୍ବିତ, ଅତୀତ, ପୂର୍ବତନ;
Lately, *ad.* ଅଳ୍ପକାଳ ପୂର୍ବେ ।
Lateness, *n.* ବିଳମ୍ବ, କାଳାତିକ୍ରମ ।
Latent, *a.* ଅନ୍ତର୍ନିହିତ, ଅପ୍ରକଟ, ଲୁକ୍କାୟିତ ।

**Later**, *ad.* ପରବର୍ତ୍ତୀ କାଳରେ, ପଶ୍ଚାତ୍; *a.* ଉତ୍ତରକାଳୀନ ।
**Lateral**, *a.* ପାର୍ଶ୍ୱସ୍ଥ, ପାର୍ଶ୍ୱସମ୍ବନ୍ଧୀୟ ।
**Laterite**, *n.* ମାକଡ଼ାପଥର ।
**Lathe**, *n.* କୁନ୍ଦନ ଯନ୍ତ୍ର ।
**Lather**, *n.* ସାବୁନର ଫେଣ; *v.* ଫେଣ ବାହାରିବା । [ ସ୍ୱାତନ୍ତ୍ର୍ୟ ।
**Latitude**, *n.* ଅକ୍ଷାଂଶ, ବିସ୍ତାର,
**Latitudinarian**, *n.* ଧର୍ମବିଷୟରେ ଉଦାରପନ୍ଥୀ ।
**Latrine**, *n.* ପାଇଖାନା ।
**Latter**, *a.* ପରବର୍ତ୍ତୀ, ପରେ କଥିତ ।
**Lattice**, *n.* ଗବାକ୍ଷ, ଜାଲମାର୍ଗ ।
**Laud**, *n.* ପ୍ରଶଂସା, ସ୍ତୁତି; *v.* ପ୍ରଶଂସା କରିବା । [ ପ୍ରଶଂସାର୍ହ ।
**Laudable**, *a.* ପ୍ରଶଂସନୀୟ,
**Laudatory**, *a.* ପ୍ରଶଂସାଗର୍ଭିକ, ଶ୍ଳାଘାପୂର୍ଣ୍ଣ, ପ୍ରଶଂସାସୂଚକ ।
**Laugh**, *v.* ହସିବା; *n.* ହସ । [ ଜନକ ।
**Laughable**, *a.* ହାସ୍ୟାସ୍ପଦ, ହାସ୍ୟ-
**Laughter**, *n.* ହାସ୍ୟ, ଅଟ୍ଟହାସ ।
**Launch**, *v.* ଜଳରେ ଭସାଇବା, ପ୍ରବେଶ କରିବା ।
**Launderer**, *n.* ରଜକ, ଧୋବା ।
**Laundress**, *n.* ରଜକୀ, ଧୋବଣୀ ।
**Laundry**, *n.* ବସ୍ତ୍ରଧାପନଶାଳା, ରଜକଗୃହ ।

**Laureate**, *n.* ରାଜକବି ।
**Laurel**, *n.* ଲରେଲ ବୃକ୍ଷ, ଯଶ, ଖ୍ୟାତି ।
**Lava**, *n.* ଆଗ୍ନେୟଗିରିରୁ ଉଦ୍‌ଗତ ତରଳ ଦ୍ରବ୍ୟ । [ ସ୍ନାନାଗାର ।
**Lavatory**, *n.* ଶୌଚାଗାର,
**Lave**, *v.* ଧୌତ କରିବା ।
**Lavender**, *n.* ସୁଗନ୍ଧ ଗୁଳ୍ମବିଶେଷ ।
**Lavish**, *a.* ବ୍ୟୟଶୀଳ, ଅପରିମିତ; *v.* ବିତରଣ କରିବା । [ ମାଣରେ ।
**Lavishly**, *ad.* ଅତିରିକ୍ତ ପରି-
**Law**, *n.* ଆଇନ, ସ୍ମୃତି, ବିଧି, ବ୍ୟବହାର । [ ବିଧିସମ୍ମତ ।
**Lawful**, *a.* ଆଇନସଙ୍ଗତ, ନ୍ୟାଯ୍ୟ,
**Lawfully**, *ad.* ଆଇନ ଅନୁସାରେ ।
**Lawless**, *a.* ଆଇନବିରୁଦ୍ଧ, ଅବୈଧ, ବେଆଇନ, ଉଚ୍ଛୃଙ୍ଖଳ ।
**Lawn**, *n.* ମଇଦାନ, ପଡ଼ିଆ ।
**Lawsuit**, *n.* ନାଲିସ, ମୋକଦ୍ଦମା ।
**Lawyer**, *n.* ଓକିଲ, ବ୍ୟବହାରଜୀବୀ ।
**Lax**, *a.* ଶିଥିଳ, ଶ୍ଳଥ, କୋମଳ ।
**Laxative**, *a.* & *n.* ବିରେଚକ, ବିରେଚକ ଔଷଧ । [ ଇନ୍ଦ୍ରିୟାସଂଯମ ।
**Laxity**, *n.* ଶୈଥିଲ୍ୟ, ଅନାସ୍ଥା,
**Lay**, *v.* ସ୍ଥାପନ କରିବା, ଅଣ୍ଡା ଦେବା; *n.* ଗୀତ; *a.* ସାଧାରଣ ।
**Layer**, *n.* ସ୍ତର, ପ୍ରସ୍ଥ, ଥାକ ।
**Layman**, *n.* ସାଧାରଣ ଲୋକ, ଇତର ଜନ, ଗୃହସ୍ଥ ।

Knitting, *n.* ଗୀବନ, ବୟନ ।
Knob, *n.* ଆବୁ, ଗଣ୍ଠି, ପିଣ୍ଡ ।
Knobby, *a.* ଆବୁଆ, ଗ୍ରନ୍ଥିଳ ।
Knock, *v.* ଧକ୍କା ମାରିବା; *n.* ଧକ୍କା ।
Knoll, *v.* ଘଣ୍ଟା ବଜାଇବା; *n.* କ୍ଷୁଦ୍ର ପାହାଡ଼, ପର୍ବତଚୂଡ଼ା ।
Knot, *n.* ଗ୍ରନ୍ଥି, ଗଣ୍ଠି, ବନ୍ଧନ ।
Knotty, *a.* ଗ୍ରନ୍ଥିଳ, ବିଷମ, ଜଟିଳ ।
Know, *v.* ଜାଣିବା, ଅବଗତ ହେବା ।
Knowable, *a.* ଜ୍ଞାତବ୍ୟ ।
Knower, *n.* ଜ୍ଞାତା, ଯେ ଜାଣେ ।
Knowing, *a.* ବିଜ୍ଞ, ନିପୁଣ ।
Knowingly, *ad.* ଜ୍ଞାତସାରରେ, ଜ୍ଞାନପୂର୍ବକ । [ ଉପଲବ୍ଧି ]
Knowledge, *n.* ଜ୍ଞାନ, ବୋଧ,
Known, *a.* ଜ୍ଞାତ, ବିଦିତ, ଅବଗତ ।
Knuckle, *n.* ଅଙ୍ଗୁଳିର ଗ୍ରନ୍ଥି ।
Koran, *n.* ଇସଲାମ ଧର୍ମଗ୍ରନ୍ଥ ।

# L

Label, *n.* ପଦାର୍ଥର ପରିଚୟ ପତ୍ରିକା; *v.* ପରିଚୟ ପତ୍ରିକାକୁ ପଦାର୍ଥରେ ସଂଲଗ୍ନ କରିବା । [ ଓଷ୍ଠ୍ୟ ବର୍ଣ୍ଣ ।
Labial, *a.* ଓଷ୍ଠ୍ୟ, ଓଷ୍ଠ ସମ୍ବନ୍ଧୀୟ; *n.*
Labiodental, *a.* ଓଷ୍ଠ ଓ ଦନ୍ତ ସଂଯୋଗରେ ଉଚ୍ଚାରିତ, ଦନ୍ତ୍ୟୋଷ୍ଠ୍ୟ ।
Laboratory, *n.* ଗବେଷଣାଗାର, ରସାୟନିକ ପରୀକ୍ଷାଗାର ।
Laborious, *a.* ପରିଶ୍ରମୀ, ଶ୍ରମସାଧ୍ୟ ।
Laboriously, *ad.* ଆୟାସ ସହକାରେ । [ କରିବା, ଯତ୍ନ କରିବା ।
Labour, *n.* ଶ୍ରମ, ଆୟାସ; *v.* ଶ୍ରମ
Labourer, *n.* ଶ୍ରମିକ, କର୍ମକର, ଭୃତ୍ୟ ।
Laboured, *a.* ଶ୍ରମସିଦ୍ଧ ।
Labourite, *n.* ଶ୍ରମିକ ଦଳର ନିର୍ବାଚିତ ସଭ୍ୟ, ଶ୍ରମଜୀବୀମାନଙ୍କର ସମର୍ଥକ ।
Labyrinth, *n.* ଦୁସ୍ତର ପ୍ରଦେଶ, ଗୋଲକଧନ୍ଦା ।
Lac, *n.* ଲକ୍ଷ, ଲାଖ, ଅଳକ୍ତକ, ଜଉ ।
Lace, *n.* ତନ୍ତୁ, ଗୁଣ, ଫିତା, ଜରି; *v.* ସୂତାରେ ବୁଣିବା ବା ଛନ୍ଦିବା । [ କରିବା ।
Lacerate, *v.* ଛିନ୍ନଭିନ୍ନ କରିବା, ବିଦୀର୍ଣ୍ଣ
Laceration, *n.* ବିଦାରଣ ।
Lacerative, *a.* ବିଦାରଣଶୀଳ ।
Laches, *n.* କାଳାତିପାତ, ଉପେକ୍ଷା, ତ୍ରୁଟି । [ ହେବା, ବର୍ଜିତ ହେବା ।
Lack, *n.* ଅଭାବ, ଶୂନ୍ୟତା; *v.* ଶୂନ୍ୟ
Lack-a-day, *int.* ହାୟ, ଅହୋ !
Lackey, *n.* ଦାସ, ଭୃତ୍ୟ, ପାର୍ଶ୍ବଚର ।
Laconic, Laconical, *a.* ସଂକ୍ଷିପ୍ତ, ମିତଭାଷୀ, କ୍ଷୁଦ୍ର । [ ଅଳ୍ପ ଶବ୍ଦରେ ।
Laconically, *ad.* ସଂକ୍ଷେପରେ,

Laconism, Laconicism, *n.* ଲଘୁକ୍ତି ସଂକ୍ଷେପୋକ୍ତି, ମିତବାକ୍ୟ ।
Lacquer, Lacker, *n.* ଲକ୍ଷାନିର୍ମିତ ବାର୍ଣ୍ଣିସ୍; *v.* ବାର୍ଣ୍ଣିସ୍ କରିବା ।
Lactation, *n.* ସ୍ତନ୍ୟଦାନ, କ୍ଷୀରସ୍ରାବ ।
Lactic, *a.* ଦୁଗ୍ଧଜାତ, ଦୁଗ୍ଧସମ୍ବନ୍ଧୀୟ ।
Lactometer, *n.* ଦୁଗ୍ଧର ଗୁଣ ପରୀକ୍ଷାପାଇଁ ଯନ୍ତ୍ର ।
Lacuna, *n.* ଛିଦ୍ର, ଫାଙ୍କ, ଅବକାଶ ।
Lad, *n.* ବାଳକ, ଶିଶୁ, କୁମାର । [ପଥ ।
Ladder, *n.* ନିଶୁଣି, ପାହାଚ, ସୋପାନ-
Lade, *v.* ବୋଝାଇ କରିବା । [ ମାଲ ।
Lading, *n.* ପୋତସ୍ଥ ଦ୍ରବ୍ୟ, ବୋଝେଇ
Ladle, *n.* ଅଣକ, ଡଙ୍କା ।
Lady, *n.* ସମ୍ଭ୍ରାନ୍ତ ମହିଳା, ଆର୍ଯ୍ୟା, କୁଳବଧୂ, ଗୃହିଣୀ ।
Ladylove, *n.* ପ୍ରିୟା, ପ୍ରଣୟିନୀ ।
Lag, *v.* ବିଳମ୍ବ କରିବା, ପଛରେ ପଡ଼ିବା, ମନ୍ଦୀଭୂତ ହେବା ।
Laggard, *n.* ଦୀର୍ଘସୂତ୍ରୀ, ବିଳମ୍ବକାରୀ ।
Lagger, *n.* ବିଳମ୍ବକାରୀ ।
Lagoon, Lagune, *n.* ଅନୂପ, କଚ୍ଛ, ସମୁଦ୍ରନିକଟସ୍ଥ ଅଗଭୀର ହ୍ରଦ । [ଗର୍ତ୍ତ ।
Lair, *n.* ବନ୍ୟପଶୁର ବାସସ୍ଥାନ, ଗହ୍ୱର,
Laity, *n.* (ପୁରୋହିତଭିନ୍ନ) ଜନସାଧାରଣ ।
Lake, *n.* ହ୍ରଦ, ସରଃ, ଜଳାଶୟ ।
Lakh, *n.* ଲକ୍ଷ, ଏକ ଶତସହସ୍ର ।
Lamb, *n.* ମେଷଶାବକ ।
Lambkin, *n.* କ୍ଷୁଦ୍ର ମେଷଶାବକ ।
Lame, *a.* ଖଞ୍ଜ, ପଙ୍ଗୁ, ଛୋଟା ।
Lamely, *ad.* ଖଞ୍ଜରୂପେ, ଛୋଟାପଣ ।
Lameness, *n.* ଖଞ୍ଜତା, ପଙ୍ଗୁ ଅବସ୍ଥା, ଗତିବୈକଲ୍ୟ ।
Lament, *v.* ବିଳାପ କରିବା, କ୍ରନ୍ଦନ କରିବା, ଅନୁଶୋଚନା କରିବା ।
Lamentable, *a.* ଶୋଚନୀୟ, ଶୋକାବହ । [ ଶୋଚନୀୟଭାବରେ ।
Lamentably, *ad.* ବିଳାପପୂର୍ବକ,
Lamentation, *n.* ବିଳାପ, ଶୋକଧ୍ୱନି । [ ଛୋଟା ।
Lamish, *a.* ଈଷତ୍ ଖଞ୍ଜ, ସାମାନ୍ୟ
Lamp, *n.* ପ୍ରଦୀପ, ଦୀପ, ଆଲୋକ ।
Lamp-black, *n.* କଜ୍ଜଳ ।
Lampoon, *n.* ବ୍ୟଙ୍ଗ, ବିଦ୍ରୂପ; *v.* ବିଦ୍ରୂପ କରିବା । [ ରୁଖା ।
Lampstand, *n.* ଦୀପବୃକ୍ଷ, ଦୀପାଧାର,
Lance, *n.* ଶୂଳ, ଶଲ୍ୟ, କୁନ୍ତ, ବର୍ଚ୍ଛା ।
Lancer, *n.* ଶୂଳଧର, ବର୍ଚ୍ଛାଧାରୀ ବୀର ।
Lancet, *n.* ଅସ୍ତ୍ରୋପଚାରରେ ବ୍ୟବହୃତ ଛୁରି । [ ଛେଦ; *v.* ଅବତରଣ କରିବା ।
Land, *n.* ଦେଶ, ସ୍ଥଳ, ଭୂମି, ମୃତ୍ତିକା,
Landau, *n.* ଚାରିଚକିଆ ଗାଡ଼ି ।

Landed property, *n.* ଭୂସମ୍ପତ୍ତି, ସ୍ଥାବର ସମ୍ପତ୍ତି । [ ଭୂସ୍ୱାମୀ ।
Landholder, *n.* ଭୂମ୍ୟଧିକାରୀ,
Landing, *n.* ଘାଟ, ଅବତରଣ ସ୍ଥାନ ।
Landlady, *n.* ଘରବାଲି, ଗୃହସ୍ୱାମିନୀ, ଭୂସ୍ୱାମିନୀ, ପାନ୍ଥଶାଳାର କର୍ତ୍ତ୍ରୀ ।
Landless, *a.* ଭୂମିହୀନ । [ ଗୃହସ୍ୱାମୀ ।
Landlord, *n.* ଜମିଦାର, କ୍ଷେତ୍ରସ୍ୱାମୀ,
Landmark, *n.* ସୀମାଚିହ୍ନ, ପ୍ରସିଦ୍ଧ ଘଟନା । [ ଭୂପ୍ରଦେଶ, ଭୂଭାଗର ଦୃଶ୍ୟ ।
Landscape, *n.* ନୟନଗୋଚରୀଭୂତ
Lane, *n.* ସଙ୍କୀର୍ଣ୍ଣ ପଥ, ଗଳି ।
Language, *n.* ଭାଷା, ବାଣୀ, କଥା ।
Languid, *a.* ମ୍ଳାନ, କ୍ଳାନ୍ତ, ଅବସନ୍ନ, ଶିଥିଳ ।
Languidly, *ad.* ଅବସନ୍ନଭାବରେ ।
Languish, *v.* ଅବସନ୍ନ ହେବା, କ୍ଷୀଣ ହେବା । [ କ୍ଳାନ୍ତି, ନିସ୍ତେଜତା ।
Languishment, *n.* ଅବସାଦ,
Languor, *n.* କ୍ଳାନ୍ତି, ଅବସନ୍ନତା ।
Lank, *a.* କ୍ଷୀଣ, ଶିଥିଳ ।
Lantern, *n.* ଲଣ୍ଠନ ।
Lap, *n.* କୋଡ଼, ପୋଷାକର ଝୁଲୁଥିବା ଅଂଶ; *v.* ଆବୃତ କରିବା ।
Lapse, *n.* ଅଧଃପାତ, ସମୟାତିକ୍ରମ; *v.* ବେମିଆଦ ହେବା, ସ୍ୱତ୍ୱଲୋପ ହେବା ।
Lapwing, *n.* ଟିଟ୍ଟିଭ ପକ୍ଷୀ ।
Larcener, *n.* ଚୋର ।
Larceny, *n.* ଚୌର୍ଯ୍ୟ, ଷ୍ଟେଟ ସ୍ତେୟ ।
Lard, *n.* ଶୂକରର ଚର୍ବି ।
Large, *a.* ବିଶାଳ, ବୃହତ୍, ବିପୁଳ ।
Largeness, *n.* ବିଶାଳତା, ପ୍ରାଚୁର୍ଯ୍ୟ ।
Largess, Largesse, *n.* ଦାନ, ବିତରଣ, ଉପହାର ।
Lark, *n.* ଭରଦ୍ୱାଜ, ଭରଦ୍ୱାଜପକ୍ଷୀ ।
Larva, *n.* କୀଟବିଶେଷ ।
Larynx, *n.* କଣ୍ଠନାଳୀ, କୃକ ।
Lascivious, *a.* କାମୁକ, ଲମ୍ପଟ, ଭୋଗାସକ୍ତ । [ କରିବା; *n.* କଶାଘାତ ।
Lash, *v.* କଶାଘାତ କରିବା, ପ୍ରହାର
Lass, *n.* କନ୍ୟା, କୁମାରୀ, ତରୁଣୀ ।
Lassitude, *n.* ଖେଦ, କ୍ଳାନ୍ତି, ଅବସାଦ, ଶିଥିଳତା ।
Last, *a.* ଗତ, ଅତୀତ, ଶେଷ, ଅନ୍ତିମ; *v.* ଅବସ୍ଥାନ କରିବା, ରହିବା ।
Lasting, *a.* ସ୍ଥାୟୀ, ଅକ୍ଷୟ, ଶାଶ୍ୱତ ।
Lastly, *ad.* ପରିଶେଷରେ ।
Latch, *n.* କିଳଣି, ଅର୍ଗଳ ।
Latchet, *n.* ଜୋତାର ଫିତା, ପାଦୁକାବନ୍ଧନୀ । [ *ad.* ବିଳମ୍ବରେ ।
Late, *a.* ବିଳମ୍ବିତ, ଅତୀତ, ପୂର୍ବତନ;
Lately, *ad.* ଅଳ୍ପକାଳ ପୂର୍ବେ ।
Lateness, *n.* ବିଳମ୍ବ, କାଳାତିକ୍ରମ ।
Latent, *a.* ଅନ୍ତର୍ନିହିତ, ଅପ୍ରକଟ, ଲୁକ୍କାୟିତ ।

**Later**, *ad.* ପରବର୍ତ୍ତୀ କାଳରେ, ପଶ୍ଚାତ୍; *a.* ଉତ୍ତରକାଳୀନ ।
**Lateral**, *a.* ପାର୍ଶ୍ୱସ୍ଥ, ପାର୍ଶ୍ୱସମ୍ବନ୍ଧୀୟ ।
**Laterite**, *n.* ମାକଡ଼ାପଥର ।
**Lathe**, *n.* କୁନ୍ଦନ ଯନ୍ତ୍ର ।
**Lather**, *n.* ସାବୁନର ଫେଣ; *v.* ଫେଣ ବାହାରିବା । [ ସ୍ୱାତନ୍ତ୍ର୍ୟ ।
**Latitude**, *n.* ଅକ୍ଷାଂଶ, ବିସ୍ତାର,
**Latitudinarian**, *n.* ଧର୍ମବିଷୟରେ ଉଦାରପନ୍ଥୀ ।
**Latrine**, *n.* ପାଇଖାନା ।
**Latter**, *a.* ପରବର୍ତ୍ତୀ, ପରେ କଥିତ ।
**Lattice**, *n.* ଗବାକ୍ଷ, ଜାଲ୍‌ମାର୍ଗ ।
**Laud**, *n.* ପ୍ରଶଂସା, ସ୍ତୁତି; *v.* ପ୍ରଶଂସା କରିବା । [ ପ୍ରଶଂସାର୍ହ ।
**Laudable**, *a.* ପ୍ରଶଂସନୀୟ,
**Laudatory**, *a.* ପ୍ରଶଂସାଗର୍ଭିକ, ଶ୍ଳାଘାପୂର୍ଣ୍ଣ, ପ୍ରଶଂସାସୂଚକ ।
**Laugh**, *v.* ହସିବା; *n.* ହସ । [ ଜନକ ।
**Laughable**, *a.* ହାସ୍ୟାସ୍ପଦ, ହାସ୍ୟ-
**Laughter**, *n.* ହାସ୍ୟ, ଅଟ୍ଟହାସ ।
**Launch**, *v.* ଜଳରେ ଭସାଇବା, ପ୍ରବେଶ କରିବା ।
**Launderer**, *n.* ରଜକ, ଧୋବା ।
**Laundress**, *n.* ରଜକୀ, ଧୋବଣୀ ।
**Laundry**, *n.* ବସ୍ତ୍ରଧାପନଶାଳା, ରଜକଗୃହ ।
**Laureate**, *n.* ରାଜକବି ।
**Laurel**, *n.* ଲରେଲ ବୃକ୍ଷ, ଯଶ, ଖ୍ୟାତି ।
**Lava**, *n.* ଆଗ୍ନେୟଗିରିରୁ ଉଦ୍‌ଗତ ତରଳ ଦ୍ରବ୍ୟ । [ ସ୍ନାନାଗାର ।
**Lavatory**, *n.* ଶୌଚାଗାର,
**Lave**, *v.* ଧୌତ କରିବା ।
**Lavender**, *n.* ସୁଗନ୍ଧ ଗୁଳ୍ମବିଶେଷ ।
**Lavish**, *a.* ବ୍ୟୟଶୀଳ, ଅପରିମିତ; *v.* ବିତରଣ କରିବା । [ ମାଣରେ ।
**Lavishly**, *ad.* ଅତିରିକ୍ତ ପରି-
**Law**, *n.* ଆଇନ, ସ୍ମୃତି, ବିଧି, ବ୍ୟବହାର । [ ବିଧିସମ୍ମତ ।
**Lawful**, *a.* ଆଇନସଙ୍ଗତ, ନ୍ୟାଯ୍ୟ,
**Lawfully**, *ad.* ଆଇନ ଅନୁସାରେ ।
**Lawless**, *a.* ଆଇନବିରୁଦ୍ଧ, ଅବୈଧ, ବେଆଇନ, ଉଚ୍ଛୃଙ୍ଖଳ ।
**Lawn**, *n.* ମଇଦାନ, ପଡ଼ିଆ ।
**Lawsuit**, *n.* ନାଲିସ, ମୋକଦ୍ଦମା ।
**Lawyer**, *n.* ଓକିଲ, ବ୍ୟବହାରଜୀବୀ ।
**Lax**, *a.* ଶିଥିଳ, ଶ୍ଲଥ, କୋମଳ ।
**Laxative**, *a.* & *n.* ବିରେଚକ, ବିରେଚକ ଔଷଧ । [ ଇନ୍ଦ୍ରସ୍ୱାପସମ ।
**Laxity**, *n.* ଶୈଥିଲ୍ୟ, ଅନାଗ୍ରହ,
**Lay**, *v.* ସ୍ଥାପନ କରିବା, ଅଣ୍ଡା ଦେବା; *n.* ଗୀତ; *a.* ସାଧାରଣ ।
**Layer**, *n.* ସ୍ତର, ପ୍ରସ୍ତ, ଥାକ ।
**Layman**, *n.* ସାଧାରଣ ଲୋକ, ଇତର ଜନ, ଗୃହସ୍ଥ ।

Lazar, *n.* କୁଷ୍ଠରୋଗୀ । [ ଖବରେ ।
Lazily, *ad.* ଆଳସ୍ୟପୂର୍ବକ, ଅଳସ-
Laziness, *n.* ଆଳସ୍ୟ, କର୍ମକୁଣ୍ଠତା ।
Lazy, *a.* ଅଳସ, ମନ୍ଥର, ଶ୍ରମକାତର ।
Lea, Lee, Ley, *n.* ପଡ଼ିଆ, ପ୍ରାନ୍ତର, ତୃଣାଚ୍ଛନ୍ନ ଭୂମି ।
Lead, *v.* ପୁରୋବର୍ତ୍ତୀ ହେବା, ପ୍ରଲୁବ୍ଧ କରିବା; *n.* ସୀସା, ନେତୃତ୍ୱ, ପୁରଃସରଣ ।
Leaden, *a.* ସୀସକନିର୍ମିତ । [ ଅଗ୍ରଣୀ ।
Leader, *n.* ନେତା, ନାୟକ, ମୁଖ୍ୟ,
Leadership, *n.* ନେତୃତ୍ୱ, ଆଧିପତ୍ୟ ।
Leading, *a.* ମୁଖ୍ୟ, ପ୍ରଧାନ, ଅଗ୍ରଗାମୀ ।
Leaf, *n.* ଗଛର ପତ୍ର, (ପୁସ୍ତକର) ପତ୍ର (*pl.* Leaves) ।
Leafless, *a.* ପତ୍ରଶୂନ୍ୟ ।
Leaflet, *n.* ପତ୍ରିକା, ବିଜ୍ଞାପନ ।
Leafy, *a.* ପତ୍ରପରିପୂର୍ଣ୍ଣ ।
League, *n.* ତିନିମାଇଲ ଦୈର୍ଘ୍ୟ, ଗୋଷ୍ଠୀ, ସଙ୍ଘ; *v.* ସନ୍ଧିଦ୍ୱାରା ମିଳିତ ହେବା । [ ସ୍ରବିବା ।
Leak, *n.* ଛିଦ୍ର, ରନ୍ଧ୍ର; *v.* ଗଳିବା,
Leakage, *n.* ଛିଦ୍ର, ସ୍ରବଣ ।
Leaky, *a.* ଛିଦ୍ରବିଶିଷ୍ଟ । [ଆଉଜିବା ।
Lean, *a.* କ୍ଷୀଣ, କୃଶ, ଶୀର୍ଣ୍ଣ; *v.*
Leaning, *n.* ପ୍ରବଣତା, ପକ୍ଷପାତିତା; *a.* ନଇଁଥିବା ।
Leanness, *n.* କ୍ଷୀଣତା, ଶୀର୍ଣ୍ଣତା ।

Leap, *v.* ଡେଇଁବା, ଅତିକ୍ରମ କରିବା; *n.* ଲମ୍ଫ । [ ବର୍ଷକ ୩୬୬ ଦିନ ଥିବ) ।
Leap-year, *n.* ଅଧିବର୍ଷ (ଯେଉଁ
Learn, *v.* ଶିକ୍ଷା କରିବା, ଅଧ୍ୟୟନ କରିବା । [ ପଣ୍ଡିତ ।
Learned, *a.* ବିଦ୍ୱାନ୍, ପାଣ୍ଡିତ୍ୟପୂର୍ଣ୍ଣ,
Learner, *n.* ଛାତ୍ର, ଶିଷ୍ୟ, ଶିକ୍ଷାକାରୀ ।
Learning, *n.* ବିଦ୍ୟା, ପାଣ୍ଡିତ୍ୟ, ଜ୍ଞାନ ।
Lease, *v.* ପଟ୍ଟା ଦେବା; *n.* ପଟ୍ଟା ।
Least, *a.* ନ୍ୟୂନତମ, ଲଘିଷ୍ଠ, କ୍ଷୁଦ୍ରତମ, ଅତି ସାମାନ୍ୟ ।
Leather, *n.* ପରିଷ୍କୃତ ଚର୍ମ ।
Leathern, *a.* ଚର୍ମନିର୍ମିତ ।
Leathery, *a.* ଚମଡ଼ାସଦୃଶ ।
Leave, *v.* ଛାଡ଼ିବା, ତ୍ୟାଗ କରିବା; *n.* ଛୁଟି, ଅନୁମତି । [ ଅଇଁଠା ।
Leavings, *n.* ( *pl.* ) ଉଚ୍ଛିଷ୍ଟ,
Lecher, *n.* ଲମ୍ପଟ ବ୍ୟକ୍ତି ।
Lecherous, *a.* ଲମ୍ପଟ, କାମୁକ ।
Lechery, *n.* ଲାମ୍ପଟ୍ୟ, କାମାସକ୍ତି ।
Lecture, *n.* ବକ୍ତୃତା, ଭାଷଣ, ଶାସ୍ତ୍ରାଳାପ, ଉପଦେଶ; *v.* ଅଧ୍ୟାପନା କରିବା, ବକ୍ତୃତା ଦେବା ।
Lecturer, *n.* ବକ୍ତା, ଅଧ୍ୟାପକ ।
Lectureship, *n.* ଅଧ୍ୟାପକ ପଦ ।
Ledge, *n.* ଧାର, ବାହାରିଥିବା ଅଂଶ ।
Ledger, *n.* ରୋକଡ଼, ଖତିଆନ ।

Lee, Lea, Ley, *n.* ଘାସର, ପଡ଼ିଆ, ମଇଦାନ ।
Leech, *n.* ଜଳୌକା, ଜୋକ ।
Leer, *n.* କଟାକ୍ଷ, ବକ୍ରଦୃଷ୍ଟି; *v.* କଟାକ୍ଷପାତ କରିବା ।
Left, *a.* ବାମ, ଦକ୍ଷିଣେତର ।
Left-handed, *a.* ବାଉଁଆ, ଯେ ବାମହସ୍ତକୁ ସୁନ୍ଦରରୂପେ ଚଳାଇପାରେ ।
Leg, *n.* ଗୋଡ଼, ପଦ ।
Legacy, *n.* ଚରମପତ୍ରଦ୍ୱାରା ଦାନ ।
Legal, *a.* ଆଇନସମ୍ବନ୍ଧୀୟ, ଆଇନ-ସଙ୍ଗତ, ବୈଧାନିକ ।
Legalise, *v.* ଆଇନସିଦ୍ଧ କରିବା ।
Legality, *n.* ବୈଧତା ।
Legally, *ad.* ଆଇନ ଅନୁସାରେ ।
Legation, *n.* ଦୌତ୍ୟ, ଦୂତକର୍ମ, ଦୂତସଙ୍ଘ, ରାଜଦୂତସଦ ।
Legend, *n.* ପୁରାଣକଥା, ଉପାଖ୍ୟାନ ।
Legendary, *a.* ପୌରାଣିକ, ଉପାଖ୍ୟାନସମ୍ବନ୍ଧୀୟ ।
Legible, *a.* ସୁସ୍ପଷ୍ଟ, ସୁପାଠ୍ୟ ।
Legibly, *ad.* ସୁସ୍ପଷ୍ଟ ଭାବରେ, ସୁପାଠ୍ୟରୂପେ ।
Legion, *n.* ବାହିନୀ, ସେନା, ବହୁସଂଖ୍ୟା ।
Legislate, *v.* ବ୍ୟବସ୍ଥା କରିବା, ଆଇନ ପ୍ରଣୟନ କରିବା ।
Legislation, *n.* ଆଇନ ପ୍ରଣୟନ, ବ୍ୟବସ୍ଥାବିଧାନ ।
Legislative, *a.* ବ୍ୟବସ୍ଥାପକ ।
Legislator, *n.* ଆଇନପ୍ରଣେତା, ବ୍ୟବସ୍ଥାପକ ସଦସ୍ୟ ।
Legislature, *n.* ବିଧାନସଭା, ବ୍ୟବସ୍ଥା ପରିଷଦ୍ ।
Legitimacy, *n.* ବୈଧତା ।
Legitimate, *a.* ବୈଧ, ନ୍ୟାଯ୍ୟ, ଆଇନସଙ୍ଗତ, ଔରସଜାତ ।
Legitimately, *ad.* ଆଇନ ଅନୁସାରେ, ବିଧିପୂର୍ବକ ।
Leisure, *n.* ବିଶ୍ରାମ, ଅବସର, [ ଅବକାଶ ।
Leisurely, *a.* ଧୀରସ୍ଥିର, ମନ୍ଥର ।
Lemon, *n.* କମଳା, ଲେମ୍ବୁ । [ ପାନୀୟ ।
Lemonade, *n.* କମଳାରସମିଶ୍ରିତ
Lend, *v.* ଧାର ଦେବା, ଋଣ ଦେବା ।
Length, *n.* ଦୈର୍ଘ୍ୟ, ଦୀର୍ଘତା ।
Lengthen, *v.* ଦୀର୍ଘ କରିବା, ବିସ୍ତୃତ କରିବା ।
Lengthwise, *ad.* ଲମ୍ବଭାଗରେ ।
Lengthy, *a.* ଦୀର୍ଘ, ଲମ୍ବା ।
Lenience, Leniency, *n.* କୋମଳତା, ଦୟା ।
Lenient, *a.* କୋମଳ, ସଦୟ ।
Lenity, *n.* କୋମଳତା, ଦୟା ।
Lense, *n.* କାଚବିଶେଷ ।
Lentil, *n.* ମସୁର ।
Leo, *n.* ସିଂହରାଶି ।

**Leopard**, *n*. ଚିତ୍ରକ, ଚିତାବାଘ ।
**Leper**, *n*. କୁଷ୍ଠରୋଗୀ ।
**Lepid**, *a*. ମନୋହର, ପ୍ରଫୁଲ୍ଲମନା ।
**Leprosy**, *n*. କୁଷ୍ଠରୋଗ ।
**Leprous**, *a*. କୁଷ୍ଠରୋଗାକ୍ରାନ୍ତ, କୁଷ୍ଠରୋଗସମ୍ବନ୍ଧୀୟ ।
**Less**, *a*. ଊଣା, ନ୍ୟୂନତର, କମ୍ ।
**Lessee**, *n*. ପଟ୍ଟାଦାର, ଇଜାରଦାର ।
**Lessen**, *v*. ହ୍ରାସ କରିବା, ଊଣା କରିବା, କମାଇଦେବା ।
**Lesson**, *n*. ପାଠ, ଉପଦେଶ, ଶିକ୍ଷା ।
**Lessor**, *n*. ପଟ୍ଟାଦାତା ।
**Lest**, *con*. କାଳେ, ଦୈବାତ୍ ।
**Let**, *v*. ଅନୁମତି ଦେବା, ଅନୁମୋଦନ କରିବା, ଭଡ଼ା ଲଗାଇବା ।
**Lethal**, *a*. ମାରାତ୍ମକ, ସାଂଘାତିକ ।
**Lethargic, Lethargical**, *a*. ଅଳସ, କର୍ମକୁଣ୍ଠ, ତନ୍ଦ୍ରାଳୁ ।
**Lethargy**, *n*. ଆଳସ୍ୟ, ଜଡ଼ତା ।
**Letter**, *n*. ଅକ୍ଷର, ବର୍ଣ୍ଣ, ଚିଠି ।
**Letters**, *n*. (*pl*.) ସାହିତ୍ୟ, ବିଦ୍ୟା, ଜ୍ଞାନ ।
**Leucorrhœa**, *n*. ପ୍ରଦର ରୋଗ ।
**Level**, *n*. ତଳ, ସମଭୂମି; *a*. ସମତଳସ୍ଥିତ; *v*. ସମତଳ କରିବା ।
**Levelling**, *n*. ସମତଳକରଣ ।
**Levelness**, *n*. ସମତଳ ଅବସ୍ଥା ।
**Lever**, *n*. ଉତ୍ତୋଳକ ଦଣ୍ଡ ।
**Levigate**, *v*. ପାଲିସ କରିବା, ଚୂର୍ଣ୍ଣ କରିବା; *a*. ମସୃଣୀଭୂତ ।
**Levity**, *n*. ଲଘୁତା । [ ନିର୍ଦ୍ଧାରଣ ।
**Levy**, *v*. କରଧାର୍ଯ୍ୟ କରିବା; *n*. କର-
**Lewd**, *a*. କାମୁକ, ଲମ୍ପଟ ।
**Lewdly**, *ad*. ଲମ୍ପଟ୍ୟପୂର୍ବକ ।
**Lewdness**, *n*. କାମୁକତା, ଲମ୍ପଟ୍ୟ ।
**Lexical**, *a*. ଅଭିଧାନସମ୍ବନ୍ଧୀୟ ।
**Lexicographer**, *n*. କୋଷକାର, ଅଭିଧାନପ୍ରଣେତା ।
**Lexicographic, Lexicographical**, *a*. ଅଭିଧାନ ରଚନା-ବିଷୟକ ।
**Lexicon**, *n*. ଅଭିଧାନ, ଶବ୍ଦକୋଷ ।
**Liability**, *n*. ଦେଣା, ଦାୟିତ୍ୱ ।
**Liable**, *a*. ଯୋଗ୍ୟ, ଅର୍ହ, ବାଧ୍ୟ, ଦାୟୀ ।
**Liaison**, *n*. ସଂଯୋଜନ, ବନ୍ଧନ ।
**Liar**, *n*. ମିଥ୍ୟାବାଦୀ ବ୍ୟକ୍ତି ।
**Libation**, *n*. ତର୍ପଣ, ଦେବତାଙ୍କୁ ଅର୍ପଣ । [ ଲେଖା ।
**Libel**, *n*. କୁତ୍ସାରଟନା, ଅପବାଦମୂଳକ
**Libellous**, *a*. ମାନହାନିକର, ଅପବାଦମୂଳକ । [ ଦାନଶୀଳ, ମୁକ୍ତହସ୍ତ ।
**Liberal**, *a*. ଉଦାର, ବଦାନ୍ୟ,
**Liberalise**, *v*. ଉଦାର ବା ପ୍ରଶସ୍ତ କରିବା ।

Liberalism, *n.* ଉଦାର ମତବାଦ ।
Liberality, *n.* ଉଦାରତା, ବଦାନ୍ୟତା, ଦାନଶୀଳତା ।
Liberally, *ad.* ଉଦାରଭାବରେ, ମୁକ୍ତହସ୍ତରେ । [ ଦେବା ।
Liberate, *v.* ମୁକ୍ତକରିବା, ସ୍ୱାଧୀନତା
Liberation, *n.* ମୁକ୍ତି, ସ୍ୱାଧୀନତା, ପ୍ରାପ୍ତି । [ ମୁକ୍ତିଦାତା ।
Liberator, *n.* ଉଦ୍ଧାରକର୍ତ୍ତା,
Libertine, *a.* ବ୍ୟସନୀ, ସ୍ୱେଚ୍ଛାଚାରୀ, କାମାସକ୍ତ, ଭ୍ରଷ୍ଟଚରିତ୍ର ।
Liberty, *n.* ସ୍ୱାଧୀନତା, ସ୍ୱାତନ୍ତ୍ର୍ୟ ।
Libra, *n.* ତୁଳରାଶି । [ ରକ୍ଷକ ।
Librarian, *n.* ଗ୍ରନ୍ଥାଗାରର ପରି-
Library, *n.* ଗ୍ରନ୍ଥାଗାର, ପୁସ୍ତକାଳୟ ।
Licence, License, *n.* ସ୍ୱତନ୍ତ୍ର ଅନୁମତିପତ୍ର; *v.* ସ୍ୱତନ୍ତ୍ର ଅନୁମତିପତ୍ର ଦେବା ।
Licensee, *n.* ଅନୁମତିପତ୍ରପ୍ରାପ୍ତ ବ୍ୟକ୍ତି ।
Licentious, *a.* ସ୍ୱେଚ୍ଛାଚାରୀ, ଉଚ୍ଛୃଙ୍ଖଳ, କାମାସକ୍ତ । [ ଉଚ୍ଛୃଙ୍ଖଳତା ।
Licentiousness, *n.* ସ୍ୱେଚ୍ଛାଚାରିତା,
Lich, *n.* ମୃତ ଶରୀର ।
Lick, *v.* ଲେହନ କରିବା, ଚାଟିବା ।
Lid, *n.* ଢାଙ୍କୁଣୀ, ଆବରଣ, ଆଖିପତା ।
Lie, *v.* ମିଥ୍ୟା କହିବା, ପଡ଼ିରହିବା; *n.* ମିଥ୍ୟାକଥା ।

Liege, *n.* ପ୍ରଭୁ, ସ୍ୱାମୀ ।
Lieu, *n.* ସ୍ଥାନ, ପରିବର୍ତ୍ତି ।
Lieutenant, *n.* ସାମରିକ ପଦ-ବିଶେଷ, ପ୍ରତିନିଧି ।
Life, *n.* ଜୀବନ, ପ୍ରାଣ । [ ମୃତ ।
Lifeless, *a.* ନିର୍ଜୀବ, ପ୍ରାଣହୀନ,
Lifelike, *a.* ଜୀବନ୍ତସଦୃଶ ।
Lifelong, *a.* ଆଜୀବନ । [ କାରାଦଣ୍ଡ ।
Life sentence, *n.* ଆଜୀବନ
Lifetime, *n.* ଜୀବନକାଳ ।
Lift, *v.* ଉଠାଇବା, ଟେକିବା; *n.* ଉତ୍ତୋଳନ ଯନ୍ତ୍ର ।
Ligament, *n.* ବନ୍ଧନଗ୍ରନ୍ଥି ।
Ligature, *n.* ବନ୍ଧନରଜ୍ଜୁ ।
Light, *n.* ଆଲୋକ; *a.* ଲଘୁ, ହାଲୁକା; *v.* ଆଲୋକିତ କରିବା ।
Lighten, *v.* ଲଘୁ କରିବା ।
Light-hearted, *a.* ପ୍ରଫୁଲ୍ଲମନା ।
Lighthouse, *n.* ବତିଘର, ଆଲୋକସ୍ତମ୍ଭ ।
Lightly, *a.* ଲଘୁଭାବରେ, ସହଜରେ ।
Lightness, *n.* ଲଘୁତା, ଚଞ୍ଚଳତା ।
Lightning, *n.* ବିଜୁଳି, ତଡ଼ିତ୍ ।
Like, *a.* ସଦୃଶ, ତୁଲ୍ୟ; *v.* ଭଲପାଇବା ।
Likelihood, Likeliness, *n.* ସମ୍ଭାବନା ।
Likely, *a.* ସମ୍ଭବପର ।

Liken, *v.* ତୁଳନା କରିବା, ମିଳାଇବା ।
Likeness, *n.* ପ୍ରତିରୂପ, ସାଦୃଶ୍ୟ, ସଦୃଶ ବସ୍ତୁ ବା ବ୍ୟକ୍ତି ।
Likewise, *ad.* ତଦ୍ରୂପ, ମଧ୍ୟ ।
Liking, *n.* ଅଭିଳାଷ, ଆଗ୍ରହ, ଶ୍ରଦ୍ଧା ।
Lily, *n.* କଇଁ, ପଦ୍ମ ।
Limb, *n.* ଅଙ୍ଗପ୍ରତ୍ୟଙ୍ଗ, ଅବୟବ ।
Limbo, Limbus, *n.* ନରକ, ଅବରୋଧ ସ୍ଥାନ ।
Lime, *n.* ଚୂନ, କମଳାଲେମ୍ବୁବିଶେଷ ।
Limelight, *n.* ପ୍ରସିଦ୍ଧି, ଖ୍ୟାତି ।
Limestone, *n.* ଚୂନପଥର, ଗେଙ୍ଗୁଟି ।
Limit, *n.* ସୀମା; *v.* ସୀମିତ କରିବା ।
Limitable, *a.* ସୀମାନିର୍ଦ୍ଧାରଣ-ଯୋଗ୍ୟ, ସସୀମ । [ ତମାଦି ।
Limitation, *n.* ସୀମା, ପରିସର,
Limited, *a.* ସୀମାବଦ୍ଧ, ଅପ୍ରଶସ୍ତ ।
Limitless, *a.* ଅସୀମ, ଅନନ୍ତ ।
Limnous, *a.* ପଙ୍କିଳ, କର୍ଦ୍ଦମାକ୍ତ ।
Limp, *v.* ଖୋଟେଇ ଚାଲିବା; *a.* ନମନୀୟ ।
Limpid, *a.* ସ୍ୱଚ୍ଛ, ନିର୍ମଳ ।
Limpidness, *n.* ସ୍ୱଚ୍ଛତା, ପରିଷ୍କୃତତା, ନିର୍ମଳତା ।
Limping, *n.* ଖଞ୍ଜତୁଲ୍ୟ ଗମନ ।
Limpingly, *ad.* ଖୋଟେଇ ଖୋଟେଇ, ଖୋଟାଭଳି ।

Limy, *n.* ଚୂନପୂର୍ଣ୍ଣ, ଅଠାଳିଆ ।
Line, *n.* ରେଖା, ବଂଶ, ପଙ୍କ୍ତି; *v.* ରେଖାଙ୍କିତ କରିବା, ଅସ୍ତର ଦେବା ।
Lineage, *n.* ବଂଶାବଳୀ ।
Lineal, *a.* ରେଖାମୟ, ବଂଶୀୟ ।
Lineament, *n.* ଚେହେରା ।
Linear, *a.* ରୈଖିକ, ରେଖାସମ୍ବନ୍ଧୀୟ ।
Linen, *n.* (ଶଣପାଟନିର୍ମିତ) ବସ୍ତ୍ର, କନା ।
Linen-draper, *n.* ବସ୍ତ୍ରବ୍ୟବସାୟୀ
Liner, *n.* ଜାହାଜବିଶେଷ ।
Linger, *v.* ବୃଥା କାଳକ୍ଷେପ କରିବା, ବିଳମ୍ବ କରିବା । [ ଭାଷା ।
Lingua franca, *n.* ସାଧାରଣ
Lingual, *a.* ଜିହ୍ୱାସମ୍ବନ୍ଧୀୟ ।
Linguist, *n.* ଭାଷାବିଦ୍, ବହୁଭାଷାଭିଜ୍ଞ ବ୍ୟକ୍ତି । [ *n.* ଭାଷାତତ୍ତ୍ୱବିଦ୍ ।
Linguistic, *a.* ଭାଷାତତ୍ତ୍ୱବିଷୟକ;
Linguistics, *n.* (*pl.*) ଭାଷାତତ୍ତ୍ୱ ।
Liniment, *n.* ପ୍ରଲେପ, ମଲମ ।
Link, *n.* ସଂଯୋଜକ କଡ଼ା, ଏକ ଜରିବର ଶତାଂଶ; *v.* ସଂଯୁକ୍ତ କରିବା ।
Linseed, *n.* ଝଲ, ପେସି ।
Lint, *n.* ଘାଆଉପରେ ବାନ୍ଧିବାପାଇଁ କନାପଟି । [ କାଷ୍ଠାଦି ।
Lintel, *n.* ଚୌକାଠ ଉପରର
Lion, *n.* ସିଂହ, ପଶୁରାଜ ( *Fem.* Lioness) ।

**Lip**, *n.* ଓଷ୍ଠ, ଅଧର ।
**Liquefaction**, *n.* ଦ୍ରବକରଣ ।
**Liquefy**, *v.* ତରଳ କରିବା ।
**Liquid**, *a.* ଜଳୀୟ, ତରଳ; *n.* ତରଳ ପଦାର୍ଥ । [ ପରିଶୋଧ କରିବା ।
**Liquidate**, *v.* ବିଲୁପ୍ତ କରିବା, ଋଣ
**Liquidation**, *n.* ବିଲୋପସାଧନ, ଋଣ ପରିଶୋଧ ।
**Liquidator**, *n.* ଋଣଶୋଧକାରୀ, ଦେବାଳିଆ ବ୍ୟବସାୟର ହିସାବ ନିକାଶ ପାଇଁ ନିଯୁକ୍ତ କର୍ମଚାରୀ ।
**Liquidity**, *n.* ତରଳତା, ସୂକ୍ଷ୍ମତା ।
**Liquor**, *n.* ମଦ୍ୟ, ତରଳ ଦ୍ରବ୍ୟ ।
**Lisp**, *v.* ଅସ୍ପଷ୍ଟ ଉଚ୍ଚାରଣ କରିବା ।
**List**, *n.* ତାଲିକା, ସୂଚୀ; *v.* ତାଲିକାଭୁକ୍ତ କରିବା, ଶ୍ରବଣ କରିବା ।
**Listen**, *v.* ମନଦେଇ ଶୁଣିବା ।
**Listless**, *a.* ଅମନୋଯୋଗୀ, ଉଦାସୀନ
**Listlessly**, *ad.* ଉଦାସୀନଭାବରେ ।
**Listlessness**, *n.* ଅମନୋଯୋଗ, ଉଦାସୀନତା, ଆଳସ୍ୟ ।
**Literacy**, *n.* ସାକ୍ଷରତା ।
**Literal**, *a.* ଆକ୍ଷରିକ, ଅବିକଳ ।
**Literally**, *ad.* ଅକ୍ଷରେ ଅକ୍ଷରେ, ଅବିକଳ ଭାବରେ । [ ସମ୍ବନ୍ଧୀୟ ।
**Literary**, *a.* ସାହିତ୍ୟିକ, ସାହିତ୍ୟ
**Literate**, *a.* ସାକ୍ଷର, ବିଦ୍ୱାନ୍ ।
**Literature**, *n.* ସାହିତ୍ୟ, ଶାସ୍ତ୍ରବିଦ୍ୟା ।
**Lithe**, *a.* କୋମଳ, ନମନୀୟ ।
**Litigant**, *n.* ମାମଲାବାଜ, ଅଭିଯୋଗକାରୀ ।
**Litigation**, *n.* ମାଲିମକଦ୍ଦମା ।
**Litigious**, *a.* ମାମଲାଖୋର, ମକଦ୍ଦମାପ୍ରିୟ, ବିବାଦୀୟ ।
**Litre**, *n.* ତରଳ ଦ୍ରବ୍ୟର ମାପବିଶେଷ ।
**Litter**, *n.* ଶିବିକା, ଛୁଆପଲ; *v.* ଇତସ୍ତତଃ ଫିଙ୍ଗିବା ।
**Litterateur**, *n.* ସାହିତ୍ୟସେବକ ।
**Little**, *a.* ଅଳ୍ପ, ସାମାନ୍ୟ, ପ୍ରାୟ କିଛି ନୁହେଁ । [ *a.* ଜୀବନ୍ତ ।
**Live**, *v.* ବଞ୍ଚିବା, ପ୍ରାଣ ଧାରଣ କରିବା;
**Livelihood**, *n.* ଜୀବିକା, ବ୍ୟବସାୟ ।
**Liveliness**, *n.* ସ୍ଫୂର୍ତ୍ତି, ହର୍ଷ ।
**Livelong**, *a.* ଦୀର୍ଘକାଳସ୍ଥାୟୀ ।
**Lively**, *a.* ମନୋହର, ସ୍ଫୂର୍ତ୍ତିମନ୍ତ ।
**Liver**, *n.* ଯକୃତ୍ ।
**Livery**, *n.* ଭୃତ୍ୟର ପୋଷାକ ।
**Live-stock**, *n.* ଗୋମେଷାଦି, ଗୃହପାଳିତ ଜନ୍ତୁ ।
**Livid**, *a.* ବିବର୍ଣ୍ଣ, ପାଣ୍ଡୁର ।
**Living**, *a.* ଜୀବନ୍ତ; *n.* ଜୀବିକା ।
**Lizard**, *n.* ଝିଟିପିଟି । [ ଜୀବବିଶେଷ ।
**Llama**, *n.* ଆମେରିକାର ଉଷ୍ଟ୍ରଜାତୀୟ
**Load**, *n.* ଭାର, ବୋଝ; *v.* ବୋଝାଇ କରିବା, ଭାର ଲଦିବା ।

**Loadstar, Lodestar,** *n.* ଧ୍ରୁବତାରା । [ ଚୁମ୍ବକପଥର ।
**Loadstone, Lodestone,** *n.*
**Loaf,** *n.* ପାଉଁରୁଟି ।
**Loafer,** *n.* ବାଉବୁଲା ।
**Loam,** *n.* ଚକ୍‌କଣ ମୃତ୍ତିକା ।
**Loamy,** *a.* ଚକ୍‌କଣ ମୃତ୍ତିକାବିଶିଷ୍ଟ ।
**Loan,** *n.* ଋଣ, କରଜ, ଧାର; *v.* ଋଣ ଦେବା ।
**Loanee,** *n.* ଋଣକର୍ତ୍ତା, ଅଧମର୍ଣ୍ଣ ।
**Loath,** *a.* କୁଣ୍ଠିତ ।
**Loathe,** *v.* ଘୃଣାକରିବା ।
**Loathful,** *a.* ଘୃଣାଜନକ ।
**Loathsome,** *a.* ଘୃଣାର୍ହ, ଘୃଣ୍ୟ ।
**Lobby,** *n.* ବ୍ୟବସ୍ଥାପକଗୃହର ପାର୍ଶ୍ୱସ୍ଥ କକ୍ଷ ।
**Lobster,** *n.* ବଡ଼ ଚିଙ୍ଗୁଡ଼ି ମାଛ ।
**Local,** *a.* ସ୍ଥାନୀୟ ।
**Locality,** *n.* ସ୍ଥାନ, ଅବସ୍ଥିତି ।
**Locally,** *ad.* ସ୍ଥାନୀୟଭାବରେ ।
**Locate,** *v.* ସ୍ଥାନ ନିରୂପଣ କରିବା, ଅବସ୍ଥିତ କରିବା ।
**Location,** *n.* ଅବସ୍ଥିତି, ସ୍ଥାପନ ।
**Loch,** *n.* ହ୍ରଦ, ବୃହତ୍ ପୁଷ୍କରିଣୀ ।
**Lock,** *n.* ତାଲା,କେନାଲର ଉଠାକବାଟ, କେଶଗୁଚ୍ଛ; *v.* ତାଲା ବନ୍ଦକରିବା ।
**Lock-out,** *n.* କାରଖାନାର କାର୍ଯ୍ୟବନ୍ଦ ।
**Lock-up,** *n.* ହାଜତଖାନା ।
**Locomotive,** *n.* ଚଳନଶୀଳ ଯନ୍ତ୍ର, ଇଞ୍ଜିନ ଡବା; *a.* ଚଳନଶୀଳ, ଚଳିଷ୍ଣୁ ।
**Locust,** *n.* ପଙ୍ଗପାଳ, ଝିଣ୍ଟିକା ।
**Lodge,** *n.* ବସାଘର; *v.* ବାସ କରିବା ।
**Loft,** *n.* ଉପର ମହଲାର କୋଠରି, ଚନ୍ଦ୍ରଶାଳା ।
**Lofty,** *a.* ଉଚ୍ଚ, ଉନ୍ନତ, ତୁଙ୍ଗ ।
**Log,** *n.* କାଠଗଡ଼ ।
**Logic,** *n.* ଯୁକ୍ତି, ତର୍କଶାସ୍ତ୍ର, ନ୍ୟାୟଶାସ୍ତ୍ର ।
**Logical,** *a.* ଯୁକ୍ତିଯୁକ୍ତ,ତର୍କଶାସ୍ତ୍ରବିଷୟକ ।
**Logician,** *n.* ତାର୍କିକ, ନୈୟାୟିକ ।
**Loin,** *n.* ଅଣ୍ଟା, କଟି, କମର ।
**Loiter,** *v.* ଏପାଖ ସେପାଖ ହେବା, ଏଣେତେଣେ ବୁଲି କାଳକାଟିବା ।
**Lone, Lonely,** *a.* ନିର୍ଜନ, ଏକାକୀ ।
**Loneliness,** *n.* ନିର୍ଜନତା ।
**Long,** *a.* ଦୀର୍ଘ, ଲମ୍ବ, ବିସ୍ତୃତ ।
**Longevity,** *n.* ଦୀର୍ଘଜୀବନ ।
**Longing,** *n.* ଅଭିଳାଷ, ଆକାଙ୍‌କ୍ଷା ।
**Longitude,** *n.* ଦ୍ରାଘିମା । [ ଫଳ ।
**Long-run,** *n.* ଚରମ ପରିଣତି, ଶେଷ
**Long-sighted,** *a.* ଦୂରଦୃଷ୍ଟିସମ୍ପନ୍ନ ।
**Look,** *v.* ଦେଖିବା, ଚାହିଁବା, ଦୃଷ୍ଟି ପକାଇବା; *n.* ଦୃଷ୍ଟି, ଚେହେରା ।
**Looking-glass,** *n.* ଅଇନା, ଦର୍ପଣ ।
**Loom,** *v.* ଅସ୍ପଷ୍ଟଭାବରେ ଦେଖାଯିବା; *n.* ଲୁଗା ବୁଣିବାର ତନ୍ତ ।

Loop, *n.* ଫାଶ; *v.* ଫାଶରେ ବାନ୍ଧିବା ।
Loop-hole, *n.* ଛିଦ୍ର, ଫାଙ୍କ, ଖସିଯିବାର ବାଟ । [ ଦେବା ।
Loose, *a.* ଶିଥିଳ, ଢିଗୁଲା; *v.* ଖୋଲି
Loosely, *ad.* ଶିଥିଳଭାବରେ ।
Loosen, *v.* ଶିଥିଳ କରିବା, ଢିଗୁଲା କରିବା ।
Looseness, *n.* ଶୈଥିଲ୍ୟ, ଭ୍ରଷ୍ଟତା ।
Loot, *n.* ଲୁଣ୍ଠନ, ଲୁଣ୍ଠିତ ଦ୍ରବ୍ୟ; *v.* ଲୁଟି କରିବା ।
Lop, *v.* କର୍ତ୍ତନ କରିବା, ଛିଣ୍ଡିବା ।
Lopsided, *a.* ଏକପାର୍ଶ୍ୱରେ ଭାରାକ୍ରାନ୍ତ ।
Lord, *n.* ପ୍ରଭୁ, ସ୍ୱାମୀ, ଶାସନକର୍ତ୍ତା; *v.* ପ୍ରଭୁତ୍ୱ କରିବା ।
Lordly, *a.* ଉଦ୍ଧତ, ଆଡ଼ମ୍ବରପୂର୍ଣ୍ଣ ।
Lordship, *n.* ଧର୍ମାବତାର, ହଜୁର, ଆଧିପତ୍ୟ, ପ୍ରଭୁତ୍ୱ ।
Lore, *n.* ବିଦ୍ୟା, ଜ୍ଞାନ ।
Lorry, *n.* ମାଲବୁହା ଗାଡ଼ି ।
Lose, *v.* ହଜାଇବା, କ୍ଷତିଗ୍ରସ୍ତ ହେବା ।
Loss, *n.* କ୍ଷତି, ହାନି, ତ୍ରୁଟି ।
Lot, *n.* କେତେକ ବସ୍ତୁର ସମଷ୍ଟି, ଭାଗ୍ୟ ।
Loth, *a.* କୁଣ୍ଠିତ, ଅସମ୍ମତ । [ ଔଷଧ ।
Lotion, *n.* ବାହ୍ୟ ବ୍ୟବହାରପାଇଁ ତରଳ
Lottery, *n.* ଗୁଡ଼ିଖେଳ, ଧର୍ମଗୁଳା ।
Lotus, *n.* ପଦ୍ମ ।
Loud, *a.* ଉଚ୍ଚ ଶବ୍ଦବିଶିଷ୍ଟ ।
Loudly, *ad.* ଉଚ୍ଚ ସ୍ୱରରେ ।
Lounge, *v.* ଅଳସଭାବରେ ଚାଲବୁଲ କରିବା, ବିଶ୍ରାମ ନେବା; *n.* ବିଶ୍ରାମ ସ୍ଥାନ ।
Louse, *n.* ଉକୁଣି (*pl.* Lice) ।
Lovable, *a.* ଆଦରଣୀୟ, ସ୍ନେହର ଯୋଗ୍ୟ । [ କରିବା, ଭଲ ପାଇବା ।
Love, *n.* ସ୍ନେହ, ପ୍ରେମ, ପ୍ରୀତି; *v.* ସ୍ନେହ
Loveless, *a.* ସ୍ନେହଶୂନ୍ୟ ।
Loveliness, *n.* ସୌନ୍ଦର୍ଯ୍ୟ, ଲାବଣ୍ୟ ।
Lovely, *a.* ମନୋହର, କମନୀୟ ।
Lover, *n.* ପ୍ରେମିକ । [ ପୂର୍ଣ୍ଣ ।
Loving, *a.* ଅନୁରାଗୀ, ସ୍ନେହୀ, ପ୍ରେମ-
Low, *a.* ନୀଚ, ଅଧମ; *v.* ହମ୍ବାରଡ଼ି କରିବା ।
Lower, *v.* ନିମ୍ନକୁ ଆଣିବା; *a.* ନୀଚତର ।
Lowly, *a.* ବିନୀତ, ନିକୃଷ୍ଟ ।
Loyal, *a.* ରାଜଭକ୍ତ, ବିଶ୍ୱସ୍ତ, ଅନୁଗତ ।
Loyalty, *n.* ବିଶ୍ୱସ୍ତତା, ପ୍ରଭୁଭକ୍ତି ।
Lozenge, *n.* ଏକପ୍ରକାର ମିଠେଇ ।
Lubricant, *n.* ମସୃଣକାରକ ପଦାର୍ଥ ।
Lubricate, *v.* ତୈଳାଦି ଦ୍ୱାରା ମସୃଣ କରିବା ।
Lucent, *a.* ଉଜ୍ଜ୍ୱଳ, ଚକ୍‌ଚକ୍ ।
Lucid, *a.* ସ୍ପଷ୍ଟ, ସ୍ୱଚ୍ଛ ।
Lucidity, *n.* ସ୍ୱଚ୍ଛତା, ସ୍ପଷ୍ଟତା ।
Luck, *n.* ଭାଗ୍ୟ, ଅଦୃଷ୍ଟ ।
Lucky, *a.* ଭାଗ୍ୟବାନ୍, ସୌଭାଗ୍ୟଶାଳୀ ।

**Lucrative**, *a.* ଲାଭଜନକ ।

**Lucre**, *n.* ଆର୍ଥିକ ଲାଭ ।

**Ludicruous**, *a.* ହାସ୍ୟଜନକ ।

**Luggage**, *n.* ଗଣ୍ଠିଲି, ଜିନିଷପତ୍ର ।

**Lukewarm**, *a.* ଈଷଦୁଷ୍ଣ, ଉଦାସୀନ ।

**Lull**, *v.* ଶାନ୍ତ କରିବା; *n.* ଶାନ୍ତି, ନିବୃତ୍ତି । [ ଗୀତ ।

**Lullaby**, *n.* ପିଲାଙ୍କୁ ଶୁଆଇବା ପାଇଁ

**Lumbago**, *n.* କଟିବାତ । [ ଆଦି ।

**Lumber**, *n.* ଅବ୍ୟବହୃତ ଅସବାବ

**Luminary**, *n.* ଜ୍ୟୋତିଷ୍କ, ବିଶିଷ୍ଟ ଜ୍ଞାନୀ ବ୍ୟକ୍ତି । [ ସ୍ୱାନ୍ ।

**Luminous**, *a.* ଜ୍ୟୋତିଷ୍ମାନ୍, ତେଜ-

**Lump**, *n.* ପିଣ୍ଡ, ସମଷ୍ଟି ।

**Lunacy**, *n.* ବାତୁଳତା, ପାଗଳାମି ।

**Lunar**, *a.* ଚନ୍ଦ୍ର ସମ୍ବନ୍ଧୀୟ, ଚାନ୍ଦ୍ରମାନ ।

**Lunarian**, *n.* ଚନ୍ଦ୍ରଲୋକବାସୀ, ଚନ୍ଦ୍ର ସମ୍ବନ୍ଧରେ ବିଶେଷଜ୍ଞ ।

**Lunatic**, *a.* ବାତୁଳ; *n.* ପାଗଳ ଲୋକ । [ ଭୋଜନ, ଜଳଯୋଗ ।

**Lunch, Luncheon**, *n.* ପ୍ରଧାନ

**Lung**, *n.* ଫୁସ୍‌ଫୁସ୍ । [ ପ୍ରଲୋଭନ ।

**Lure**, *v.* ପ୍ରଲୋଭିତ କରିବା; *n.*

**Lurid**, *a.* ବିବର୍ଣ୍ଣ, ଗମ୍ଭୀର ।

**Lurk**, *v.* ଛକି ରହିବା, ଲୁଚିକରି ଜଗିବା ।

**Luscious**, *a.* ସରସ, ମଧୁର । [ମିଷ୍ଟତା ।

**Lusciousness**, *n.* ସରସତା,

**Lust**, *n.* ଲୋଭ, କାମପ୍ରବୃତ୍ତି ।

**Lustful**, *a.* ଲୋଭୀ, କାମୁକ ।

**Lustily**, *ad.* ସାହସପୂର୍ବକ, ଉତ୍ସାହ ସହକାରେ ।

**Lustre**, *n.* ଜ୍ୟୋତି, ଦୀପ୍ତି, ତେଜ ।

**Lustrous**, *a.* ଦୀପ୍ତିମାନ୍, ତେଜସ୍ୱାନ୍ ।

**Lusty**, *a.* ସତେଜ, ବଳବାନ୍ ।

**Lute**, *n.* ବୀଣା, ତାରଯୁକ୍ତ ବାଦ୍ୟଯନ୍ତ୍ର-ବିଶେଷ । [ ବୃଦ୍ଧି ।

**Luxuriance**, *n.* ପ୍ରାଚୁର୍ଯ୍ୟ, ସତେଜ

**Luxuriant**, *a.* ସତେଜଭାବରେ ବଢ଼ିଥିବା । [ ପୂର୍ଣ୍ଣ ।

**Luxurious**, *a.* ବିଳାସୀ, ଆଡ଼ମ୍ବର-

**Luxuriously**, *ad.* ବିଳାସରେ, ଆଡ଼ମ୍ବର ସହକାରେ । [ ବାହୁଲ୍ୟ ।

**Luxury**, *n.* ବିଳାସ, ଖାଦ୍ୟାଦିରେ

**Lying**, *n.* ମିଥ୍ୟାକଥନ ।

**Lymph**, *n.* ଜୀବଶରୀରସ୍ଥ ରସବିଶେଷ ।

**Lymphatic**, *a.* ରସନିଃସାରକ ।

**Lynch**, *v.* ବିନାବିଚାରରେ ଅପରାଧୀକୁ ଦଣ୍ଡ ଦେବା ବା ବଧ କରିବା ।

**Lyre**, *n.* ବୀଣା, ତାରଯୁକ୍ତ ବାଦ୍ୟଯନ୍ତ୍ର-ବିଶେଷ । [ ଗୀତିକବିତା ।

**Lyric**, *n.* ବୀଣାବାଦ୍ୟସହ ଗେୟ; *n.*

**Lyrical**, *a.* ବୀଣାବାଦ୍ୟସହ ଗେୟ ଗୀତିକବିତା ସମ୍ବନ୍ଧୀୟ ।

**Lyrist**, *n.* ବୀଣାବାଦକ ।

# M

**Macadamise**, *v.* ଭଙ୍ଗା ପଥର ବିଛାଇ ରାସ୍ତାକୁ ଦୃଢ଼ କରିବା । [ ବିଶେଷ ।
**Macaroni**, *a.* ସୁଜିରେ ପ୍ରସ୍ତୁତ ଖାଦ୍ୟ-
**Mace**, *n.* ଗଦା, ରାଜଦଣ୍ଡ, ପ୍ରଭୁତ୍ୱର ସଙ୍କେତ । [ ଯନ୍ତ୍ର ।
**Machination**, *n.* କୁମନ୍ତ୍ରଣା, ଷଡ଼୍-
**Machine**, *n.* କଳ, ଯନ୍ତ୍ର । [ ପାଠ ।
**Machinery**, *n.* କଳକବ୍ଜା, ଯନ୍ତ୍ର-
**Machinist**, *n.* କଳ ବା ଯନ୍ତ୍ରର ନିର୍ମାତା ।
**Mad**, *a.* ପାଗଳ, ଉନ୍ମତ୍ତ, ବାଉଳା ।
**Madam**, *n.* ମହାଶୟା, ସାଆନ୍ତାଣୀ ।
**Madcap**, *n.* ଅର୍ଦ୍ଧପାଗଳ, ଅବିବେକୀ ଲୋକ ।
**Madden**, *v.* ପାଗଳ କରିବା । [ କର ।
**Maddening**, *a.* ପାଗଳକାରୀ, ଉନ୍ମାଦ-
**Made**, *a.* କୃତ, ଗଠିତ, ପ୍ରସ୍ତୁତ ।
**Madhouse**, *n.* ପାଗଳାଗାରଦ, ବାଉଳାଶ୍ରମ । [ ଭାବରେ ।
**Madly**, *ad.* କ୍ରୋଧପୂର୍ବକ, ଉନ୍ମତ୍ତ-
**Madness**, *n.* ଉନ୍ମାଦ ରୋଗ, ପାଗଳାମି । [ ସାମୟିକ ପତ୍ରିକା ।
**Magazine**, *n.* ଅସ୍ତ୍ରାଗାର, ଗୋଦାମ,
**Maggot**, *n.* କୀଟ, କୃମି । [ ବିଦ୍ୟା ।
**Magic**, *n.* ଇନ୍ଦ୍ରଜାଲ, କୁହୁକ, ଭେଳ-
**Magical**, *a.* ଐନ୍ଦ୍ରଜାଲିକ । [ କର ।
**Magician**, *n.* ଇନ୍ଦ୍ରଜାଲିକାରୀ, ଯାଦୁ-
**Magic-lantern**, *n.* ଛାୟାଚିତ୍ର-ପ୍ରଦର୍ଶକ ଲଣ୍ଠନ ।
**Magistrate**, *n.* ଶାସନବିଭାଗୀୟ ଉଚ୍ଚ କର୍ମଚାରୀବିଶେଷ, ମାଜିଷ୍ଟ୍ରେଟ ।
**Magnanimity**, *n.* ଔଦାର୍ଯ୍ୟ, ମହତ୍ତ୍ୱ, ସଦାଶୟତା । [ ମହାନ୍, ମହାଶୟ ।
**Magnanimous**, *a.* ଉଦାର,
**Magnanimously**, *ad.* ଉଦାରଭାବରେ ।
**Magnate**, *n.* ଧନୀ ବା ପଦସ୍ଥ ବ୍ୟକ୍ତି ।
**Magnet**, *n.* ଚୁମ୍ବକ ଲୌହ, ଚୁମ୍ବକ ପଥର, ଅୟସ୍କାନ୍ତ ମଣି ।
**Magnetic**, *a.* ଚୁମ୍ବକଶକ୍ତିସମ୍ପନ୍ନ ।
**Magnetise**, *v.* ଚୁମ୍ବକଧର୍ମବିଶିଷ୍ଟ କରିବା । [ ଆକର୍ଷଣ ।
**Magnetism**, *n.* ଚୁମ୍ବକଶକ୍ତି,
**Magnificence**, *n.* ଐଶ୍ୱର୍ଯ୍ୟ, ଆଡ଼ମ୍ବର, ଜାକଜମକ । [ ବିଭବଶାଳୀ ।
**Magnificent**, *a.* ଆଡ଼ମ୍ବରପୂର୍ଣ୍ଣ,
**Magnificently**, *ad.* ଆଡ଼ମ୍ବର ସହକାରେ, ଜାକଜମକରେ ।
**Magnified**, *a.* ପରିବର୍ଦ୍ଧିତ ।
**Magnify**, *v.* ପରିବର୍ଦ୍ଧିତ କରିବା ।

**Magnitude**, *n*. ବିସ୍ତାର, ପରିମାଣ, ଗୁରୁତ୍ୱ । [ ଦାସୀ ।
**Maid**, *n*. କୁମାରୀ, ଅବିବାହିତା ବାଳିକା,
**Maiden**, *n*. କୁମାରୀ, ଅନୂଢ଼ା କନ୍ୟା, ଯୁବତୀ ।
**Maidenhood**, *n*. କୁମାରୀତ୍ୱ ।
**Maiden speech**, *n*. ପ୍ରଥମ ବକ୍ତୃତା ।
**Mail**, *n*. ବର୍ମ, କବଚ, ସାଞ୍ଜୁ, ଡାକମୁଣି; *v*. ଡାକରେ ପଠାଇବା । [ କରିବା ।
**Maim**, *v*. ବିକଳାଙ୍ଗ କରିବା, କ୍ଷତବିକ୍ଷତ
**Main**, *a*. ପ୍ରଧାନ, ଶ୍ରେଷ୍ଠ; *n*. ଶକ୍ତି, ବଳ ।
**Mainland**, *n*. ମହାଦେଶ ।
**Mainly**, *ad*. ପ୍ରଧାନତଃ ।
**Mainspring**, *n*. ଆଦିମ ଉତ୍ସ ।
**Maintain**, *v*. ପୋଷିବା, ପାଳିବା, ପ୍ରତିପାଦନ କରିବା । [ ପ୍ରତିପାଳନ ।
**Maintenance**, *n*. ଭରଣପୋଷଣ,
**Maize**, *n*. ମକା, ଭୁଟ୍ଟା, ଶସ୍ୟବିଶେଷ ।
**Majestic**, *a*. ରାଜକୀୟ, ଆଡ଼ମ୍ବରପୂର୍ଣ୍ଣ ।
**Majesty**, *n*. ଗୌରବ, ମହିମା, ଐଶ୍ୱର୍ଯ୍ୟ, ରାଜାଙ୍କର ଉପାଧି । [ ବୟସ୍କ ବ୍ୟକ୍ତି, ସାବାଳକ ।
**Major**, *a*. ପ୍ରଧାନ, ଅଧିକ; *n*. ପ୍ରାପ୍ତ-
**Majority**, *n*. ଅଧିକ ଭାଗ, ବୟଃପ୍ରାପ୍ତି ।
**Make**, *v*. ନିର୍ମାଣ କରିବା, ଗଢ଼ିବା; *n*. ଗଠନ ।
**Maker**, *n*. ନିର୍ମାତା, ସୃଷ୍ଟିକର୍ତ୍ତା ।
**Make-shift**, *n*. ଉପସ୍ଥିତ କ୍ଷେତ୍ରରେ ଉପାୟ ।
**Make-up**, *n*. ବେଶ, ସାଜସଜ୍ଜା ।
**Maladministration**, *n*. କୁଶାସନ, ମନ୍ଦ ପରିଚାଳନା ।
**Malady**, *n*. ରୋଗ, ପୀଡ଼ା, ବ୍ୟାଧି ।
**Malaria**, *n*. ମେଲେରିଆ ଜ୍ୱର ।
**Malcontent**, *a*. ଅସନ୍ତୁଷ୍ଟ ।
**Male**, *a*. ପୁରୁଷଜାତୀୟ; *n*. ପୁରୁଷ ।
**Malediction**, *n*. ଅଭିଶାପ ।
**Malefactor**, *n*. ଅପକାରୀ, କୁକର୍ମୀ ।
**Malevolence**, *n*. ଈର୍ଷା, ଦ୍ରୋହ, ଦ୍ୱେଷ । [ ହିଂସୁକ ।
**Malevolent**, *a*. ଈର୍ଷୁକ, ଦ୍ରୋହୀ,
**Malice**, *n*. ଈର୍ଷା, ଦ୍ୱେଷ, ହିଂସା ।
**Malicious**, *a*. ଈର୍ଷୁକ, ଦ୍ୱେଷୀ ।
**Maliciously**, *ad*. ଈର୍ଷାରେ, ଦ୍ୱେଷପୂର୍ବକ । [ *a*. ଅନିଷ୍ଟକର ।
**Malign**, *v*. ହିଂସା ବା ଈର୍ଷା କରିବା;
**Malignancy**, *n*. ଦ୍ୱେଷ, ଈର୍ଷା, ଖଳତା । [ ସାଙ୍ଘାତିକ ।
**Malignant**, *a*. ଈର୍ଷାପରାୟଣ, ଉତ୍କଟ;
**Malleable**, *a*. ଘାତସହ, ନମନୀୟ ।
**Mallet**, *n*. ମୁଦ୍‌ଗର, ପିଟଣା ।
**Malnutrition**, *n*. ପୁଷ୍ଟିର ଅଭାବ, ସୁଷମ ଖାଦ୍ୟର ଅଭାବ । [ କଦାଚାର ।
**Malpractice**, *n*. ଅସଦାଚରଣ,
**Maltreat**, *v*. ଦୁର୍ବ୍ୟବହାର କରିବା, କ୍ଲେଶ ଦେବା ।
**Maltreatment**, *n*. ଦୁର୍ବ୍ୟବହାର ।

**Mammal**, *n.* ସ୍ତନ୍ୟପାୟୀ ପ୍ରାଣୀ ।
**Mammon**, *n.* ଧନସମ୍ପତ୍ତି, କୁବେର ।
**Mammoth**, *a.* ବିରାଟକାୟ, ପ୍ରକାଣ୍ଡ; *n.* ପ୍ରାଚୀନ ଯୁଗର ଅତିକାୟ ଜୀବବିଶେଷ ।
**Man**, *n.* ମାନବ, ମନୁଷ୍ୟ ।
**Manacle**, *v.* ହାତକଡ଼ି ପକାଇବା ।
**Manacles**, *n.* ହାତକଡ଼ି, ବେଡ଼ି ।
**Manage**, *v.* ପରିଚାଳନା କରିବା ।
**Manageable**, *a.* ଚଳନୀୟ, ଶାସନୀୟ । [ ନିର୍ବାହକରଣ ।
**Management**, *n.* ପରିଚାଳନା,
**Manager**, *n.* ପରିଚାଳକ, ସମ୍ପାଦକ ।
**Mandamus**, *n.* ଉଚ୍ଚ ବିଚାରାଳୟରୁ ନିମ୍ନ ବିଚାରାଳୟ ପ୍ରତି ଆଦେଶପତ୍ର ।
**Mandate**, *n.* ଆଦେଶ, ଆଜ୍ଞା ।
**Mandatory**, *a.* ଆଦେଶମୂଳକ ।
**Mane**, *n.* ( ସିଂହ, ଘୋଟକାଦିର) ସ୍କନ୍ଧକେଶର, ଜଟା । [ ବ୍ୟାଘ୍ର ।
**Man-eater**, *n.* ମନୁଷ୍ୟଖାଦକ
**Manes**, *n.* ପୂର୍ବପୁରୁଷଗଣ, ପ୍ରେତ, ପିତୃଲୋକ । [ ପରିଚାଳିତ ।
**Manful**, *a.* ସାହସୀ, ଶକ୍ତିମାନ୍,
**Manfully**, *ad.* ସାହସରେ, ପୌରୁଷ ସହକାରେ ।
**Manganese**, *n.* ଧାତୁବିଶେଷ ।
**Manger**, *n.* ଗୋରୁ ଖାଇବା କୁଣ୍ଡ ।
**Mangle**, *v.* କ୍ଷତବିକ୍ଷତ କରିବା ।
**Mango**, *n.* ଆମ୍ରଫଳ, ଆମ୍ବ ।
**Mangrove**, *n.* ହନ୍ତାଳ ଗଛ ।
**Mangy**, *a.* କ୍ଷତଯୁକ୍ତ ।
**Manhole**, *n.* ଭୂମିତଳେ ଥିବା ପାଣିନାଳର ପ୍ରବେଶପଥ । [ଯୌବନାବସ୍ଥା ।
**Manhood**, *n.* ପୁରୁଷତ୍ୱ,
**Mania**, *n.* ଖିଆଲ, ଅତିଶକ୍ତ ଆସକ୍ତି, ବାତୁଳତା । [ କ୍ଷିପ୍ତ ।
**Maniac**, *n.* ଜିଦ୍‌ଖୋର, ପାଗଳ,
**Maniacal**, *a.* ପାଗଳ ।
**Manifest**, *a.* ସୁସ୍ପଷ୍ଟ, ବିଶଦ; *v.* ସ୍ପଷ୍ଟରୂପେ ପ୍ରକାଶ କରିବା ।
**Manifestation**, *n.* ମୂର୍ତ୍ତିଧାରଣ, ପ୍ରକଟନ, ସ୍ପଷ୍ଟ ପ୍ରକାଶ ।
**Manifestly**, *ad.* ସ୍ପଷ୍ଟରୂପେ ।
**Manifesto**, *n.* ସାଧାରଣ ଘୋଷଣାପତ୍ର । [ ପ୍ରକାର ।
**Manifold**, *a.* ବହୁବିଧ, ନାନା-
**Manikin**, *n.* ବାମନ, କ୍ଷୁଦ୍ରକାୟ ମନୁଷ୍ୟ ।
**Manipulate**, *v.* କୌଶଳରେ କାର୍ଯ୍ୟ ସାଧିବା, ହାତସଫେଇ କରିବା ।
**Manipulation**, *n.* ହସ୍ତକୃତ କର୍ମ, ହାତସଫେଇ ।
**Mankind**, *n.* ମାନବଜାତି ।
**Manlike**, *a.* ମନୁଷ୍ୟପରି, ମାନବୋଚିତ

Manliness, *n.* ପୌରୁଷ,ସାହସିକତା ।
Manly, *a.* ପୁରୁଷୋଚିତ, ସାହସିକ ।
Manner, *n.* ଧରଣ, ରୀତି, ପ୍ରଣାଳୀ ।
Mannerism, *n.* ରୀତିଗତ ବୈଶିଷ୍ଟ୍ୟ ।
Mannerly, *a.* ଶିଷ୍ଟ, ଭଦ୍ରୋଚିତ ।
Manners, *n.* (*pl.*) ଶିଷ୍ଟାଚାର, ଭଦ୍ରତା । [ ଜାହାଜ ।
Man-of-war, *n.* ରଣତରୀ, ଯୁଦ୍ଧ-
Manœuvre, *n.* କୌଶଳପୂର୍ଣ୍ଣ ସୈନ୍ୟଚାଳନା; *v.* କୌଶଳରେ ଉଦ୍ଦେଶ୍ୟ ସାଧନ କରିବା ।
Manslaughter, *n.* ନରହତ୍ୟା ।
Mantle, *n.* ଆବରଣ, ଢିଲା କୁର୍ତ୍ତା ।
Manual, *a.* ହସ୍ତକୃତ; *n.* ସହଜେ ବ୍ୟବହାର୍ଯ୍ୟ ପୁସ୍ତକ ।
Manufactory *n.* କାରଖାନା ।
Manufacture, *v.* ଉତ୍ପାଦନ କରିବା; *n.* ଉତ୍ପାଦନ, ଶିଳ୍ପ, ଶିଳ୍ପଦ୍ରବ୍ୟ ।
Manufacturer, *n.* ଉତ୍ପାଦନକାରୀ ।
Manure, *n.* ପିଡ଼ଆ, ଖତ, ସାର ।
Manurial, *a.* ସାରର ଗୁଣବିଶିଷ୍ଟ ।
Manuscript, *n.* ପାଣ୍ଡୁଲିପି, ହସ୍ତ-ଲିଖିତ ପୁସ୍ତକ ।
Many, *a.* ଅନେକ, ବହୁସଂଖ୍ୟକ ।
Map, *n.* ମାନଚିତ୍ର; *v.* ମାନଚିତ୍ର ପ୍ରସ୍ତୁତ କରିବା ।
Mar, *v.* ନଷ୍ଟ କରିବା ।
Marasmus, *n.* ଶୀର୍ଣ୍ଣତା ରୋଗ ।
Maraud, *v.* ଲୁଣ୍ଠନ କରିବା ।
Marauder, *n.* ଲୁଣ୍ଠନକାରୀ ।
Marble, *n.* ମାର୍ବଲ୍‌ପଥର, ପିଲାଙ୍କ ଖେଳରେ ବ୍ୟବହୃତ ଗୋଲି ।
March, *n.* ଖ୍ରୀଷ୍ଟୀୟ ବର୍ଷର ତୃତୀୟ ମାସ, ସୈନ୍ୟମାନଙ୍କ ଶୃଙ୍ଖଳାବଦ୍ଧ ଗମନ; *v.* ସୈନିକ ଭଳି ଶୃଙ୍ଖଳାରେ ଗତି କରିବା ।
Mare, *n.* ଘୋଟକୀ, ଘୋଡ଼ୀ ।
Margin, *n.* ଧାର, କନାର, ପୃଷ୍ଠାର ଧାରରେ ଛପା ବା ଲେଖା ନୋହିଥିବା ଅଂଶ । [ ପୃଷ୍ଠାର ପାର୍ଶ୍ୱସ୍ଥ ।
Marginal, *a.* ଧାରରେ ଥିବା,
Marigold *n.* ଗେଣ୍ଡୁ ଜାତୀୟ ଫୁଲ ।
Marine, *a.* ସାମୁଦ୍ରିକ, ଜାହାଜ ସମ୍ବନ୍ଧୀୟ । [ ନାବିକ ।
Mariner, *n.* ସମୁଦ୍ରଯାତ୍ରୀ, ଜାହାଜର
Marionette, *n.* ପିତୁଳାନାଚ ।
Marital, *a.* ଦାମ୍ପତ୍ୟ, ବୈବାହିକ ।
Maritime, *a.* ସାମୁଦ୍ରିକ, ନୌଯାତ୍ରା-ବିଷୟକ । [ ଚିହ୍ନିତ କରିବା ।
Mark, *n.* ଲକ୍ଷଣ, ଚିହ୍ନ, ଦାଗ; *v.*
Market, *n.* ବଜାର, ହାଟ; *v.* ବଜାରରେ ବିକାକିଣା କରିବା । [ ଯୋଗ୍ୟ ।
Marketable, *a.* କ୍ରୟବିକ୍ରୟ-
Marksman, *n.* ଲକ୍ଷ୍ୟଭେଦୀ ।

**Marmalade**, *n.* ଏକ ପ୍ରକାର ମୋରବ୍ବା । [ ଦେବା ।

**Maroon**, *v.* ନିର୍ଜନ ଦ୍ୱୀପରେ ଛାଡ଼ି

**Marquis**, *n.* ଇଂଲଣ୍ଡରେ କୁଳୀନ ବ୍ୟକ୍ତିଙ୍କୁ ପ୍ରଦତ୍ତ ଉପାଧିବିଶେଷ (*Fem.* Marchioness) ।

**Marriage**, *n.* ବିବାହ, ପରିଣୟ ।

**Marriageable**, *a.* ବିବାହଯୋଗ୍ୟ ।

**Marrow**, *n.* ମଜ୍ଜା, ହାଡ଼ମଧ୍ୟରେ ଥିବା ରସ । [ ଦେବା ।

**Marry**, *v.* ବିବାହ କରିବା, ବିବାହ

**Mars**, *n.* ରୋମାନ୍‌ମାନଙ୍କର ରଣଦେବତା, ମଙ୍ଗଳଗ୍ରହ ।

**Marsh**, *n.* ସନ୍ତସନ୍ତିଆ ଭୂମି ।

**Marshal**, *n.* ସୈନ୍ୟମାନଙ୍କର ନେତା; *v.* ସଜ୍ଜିତ କରିବା ।

**Marshy**, *a.* ସନ୍ତସନ୍ତିଆ ।

**Mart**, *n.* ବାଣିଜ୍ୟପେଣ୍ଡ, ବଜାର, ହାଟ । [ ଯୁଦ୍ଧପ୍ରିୟ ।

**Martial**, *a.* ସାମରିକ, ସାହସୀ,

**Martyr**, *n.* ସତ୍ୟ ବା ମତ ନିମନ୍ତେ ପ୍ରାଣ ଦେବା ବ୍ୟକ୍ତି, ସହୀଦ୍ ।

**Martyrdom**, *n.* ସତ୍ୟ ବା ମତ ନିମନ୍ତେ ପ୍ରାଣଦାନ । [ ବିସ୍ମିତ ହେବା ।

**Marvel**, *n.* ବିସ୍ମୟକର ବିଷୟ; *v.*

**Marvellous**, *a.* ବିସ୍ମୟକର, ଆଶ୍ଚର୍ଯ୍ୟଜନକ, ଅସମ୍ଭବ ।

**Marvellously**, *ad.* ଆଶ୍ଚର୍ଯ୍ୟରୂପେ ।

**Masculine**, *a.* ପୁରୁଷଜାତୀୟ, ପୌରୁଷବିଶିଷ୍ଟ । [ ଧରିବା, ମୁଖା ପିନ୍ଧିବା ।

**Mask**, *n.* ମୁଖା, ଛଦ୍ମବେଶ; *v.* ଛଦ୍ମବେଶ

**Mason**, *n.* ରାଜମିସ୍ତ୍ରି, ସ୍ଥପତି ।

**Masonry**, *n.* ରାଜମିସ୍ତ୍ରିର କର୍ମ, ସ୍ଥାପତ୍ୟ ।

**Masque**, *n.* ମୁଖା, ନାଟକବିଶେଷ ।

**Mass**, *n.* ସ୍ତୂପ, ରାଶି, ଗଦା ।

**Massacre**, *v.* ବହୁଲୋକଙ୍କୁ ହତ୍ୟା କରିବା; *n.* ବହୁ ନରହତ୍ୟା, ସଂହାର ।

**Massage**, *n.* ସମ୍ବାହନ, ମର୍ଦ୍ଦନ; *v.* ମର୍ଦ୍ଦନ କରିବା । [ ଭାରି ।

**Massive**, *a.* ବୃହତ୍, ବିରାଟ, ପୃଥୁ,

**Mast**, *n.* ଜାହାଜର ମାସ୍ତୁଲ ।

**Master**, *n.* ପ୍ରଭୁ, ସ୍ୱାମୀ, ଶିକ୍ଷକ; *v.* ଆୟତ୍ତ କରିବା ।

**Masterful**, *a.* ଅହଙ୍କାରୀ ।

**Masterless**, *a.* ପ୍ରଭୁଶୂନ୍ୟ ।

**Masterly**, *a.* ନୈପୁଣ୍ୟପୂର୍ଣ୍ଣ ।

**Mastery**, *n.* ପ୍ରଭୁତ୍ୱ, ପ୍ରାଧାନ୍ୟ, ଉତ୍କର୍ଷ ।

**Masticate**, *v.* ଚର୍ବଣ କରିବା ।

**Mastication**, *n.* ଚର୍ବଣ । [ ଇବା ।

**Mat**, *n.* ମସିଣା, ହେଁସ; *v.* ମସିଣା ବିଛା-

**Match**, *n.* ଦିଆସିଲି, ବିବାହ, ସମକକ୍ଷ; *v.* ସମତୁଲ୍ୟ ହେବା, ଉପଯୁକ୍ତ ହେବା ।

**Matchless**, *a.* ଅଦ୍ୱିତୀୟ, ଅତୁଳନୀୟ ।

**Mate**, *n.* ସଙ୍ଗୀ, ଜାହାଜର କର୍ମଚାରୀବିଶେଷ, ପତି ବା ପତ୍ନୀ ।

**Material**, *a.* ପାର୍ଥିବ, ଭୌତିକ, ଅତ୍ୟାବଶ୍ୟକ; *n.* ସରଞ୍ଜାମ, ଉପାଦାନ ।

**Materialise**, *v.* କାର୍ଯ୍ୟରେ ପରିଣତ ହେବା । [ ନାସ୍ତିକତା ।

**Materialism**, *n.* ଜଡ଼ବାଦ,

**Materialist**, *n.* ଜଡ଼ବାଦୀ, ନାସ୍ତିକ ।

**Materialistic**, *a.* ଜଡ଼ବାଦ ସମ୍ବନ୍ଧୀୟ । [ ରୂପେ ।

**Materially**, *ad.* ବସ୍ତୁତଃ, ବିଶେଷ-

**Materia Medica**, *n.* ଭେଷଜତତ୍ତ୍ୱ

**Maternal**, *a.* ମାତୃସମ୍ବନ୍ଧୀୟ ।

**Maternity**, *n.* ମାତୃତ୍ୱ, ସନ୍ତାନୋତ୍ପତ୍ତି ।

**Mathematical**, *a.* ଗାଣିତିକ, ଗଣିତବିଷୟକ । [ ଅନୁସାରେ ।

**Mathematically**, *ad.* ଅଙ୍କଶାସ୍ତ୍ର

**Mathematician**, *n.* ଗଣିତଜ୍ଞ, ଅଙ୍କଶାସ୍ତ୍ରବେତ୍ତା । [ ଅଙ୍କଶାସ୍ତ୍ର ।

**Mathematics**, *n.* ଗଣିତବିଦ୍ୟା,

**Matin**, *a.* ପ୍ରଭାତକାଳୀନ ।

**Matins**, *n.* (*pl.*) ପ୍ରାତଃକାଳୀନ ପ୍ରାର୍ଥନା । [ ଅଭିନୟାଦି ।

**Matinee**, *n.* ଦିନବେଳା ଅନୁଷ୍ଠିତ

**Matriarchy**, *n.* ମାତୃପ୍ରଧାନ ଶାସନ ।

**Matrice**, *n.* ଛାଞ୍ଚ, ଫର୍ମା । [ହତ୍ୟା ।

**Matricide**, *n.* ମାତୃହନ୍ତା, ମାତୃ-

**Matriculate**, *a.* ପ୍ରବେଶିକା ପରୀକ୍ଷୋତ୍ତୀର୍ଣ୍ଣ; *v.* ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବା ।

**Matrimonial**, *a.* ବୈବାହିକ, ଦାମ୍ପତ୍ୟ, ବିବାହସମ୍ବନ୍ଧୀୟ ।

**Matrimony**, *n.* ବିବାହ, ପରିଣୟ ।

**Matron**, *n.* ଗୃହିଣୀ, ଗୃହକର୍ତ୍ତ୍ରୀ ।

**Matted**, *a.* ଜଟାଯୁକ୍ତ । [ଶ୍ୟକ ହେବା ।

**Matter**, *n.* ପଦାର୍ଥ, ବିଷୟ; *v.* ଆବ-

**Mattress**, *n.* ଗଦି, ବିଛଣା ।

**Maturation**, *n.* ପରିପକ୍ୱ ଅବସ୍ଥା ।

**Mature**, *a.* ପରିପକ୍ୱ, ପୋଖତ, ପୂର୍ଣ୍ଣବିକଶିତ; *v.* ପକ୍ୱ ହେବା ।

**Maturity, Matureness**, *n.* ପରିପକ୍ୱତା, ବୃଦ୍ଧିର ପୂର୍ଣ୍ଣତା, ପରିଣତ ଅବସ୍ଥା ।

**Maudlin**, *a.* ନିର୍ବୋଧ, ମାତାଲ ।

**Maul**, *v.* ମୁଦ୍‌ଗରରେ ପ୍ରହାର କରିବା, ପିଟିବା । [ ମନ୍ଦିର ।

**Mausoleum**, *n.* ବୃହତ୍ ସମାଧି

**Maw**, *n.* ପାକାଶୟ, ଉଦର ।

**Maxim**, *n.* ସାଧାରଣ ନୀତି, ନୀତିବାକ୍ୟ ।

**Maximum**, *n.* ସର୍ବୋଚ୍ଚ ସୀମା; *a.* ସର୍ବୋଚ୍ଚ । [ *v.* ପାରିବା ।

**May**, *n.* ଖ୍ରୀଷ୍ଟିଆନ ବର୍ଷର ପଞ୍ଚମ ମାସ;

**Mayor**, *n.* ନଗରାଧ୍ୟକ୍ଷ, ପୌରକର୍ତ୍ତା ।

**Mayoralty**, *n.* ନଗରାଧ୍ୟକ୍ଷ ପଦ ।

**Maze**, *n.* ଗୋଲକଧନ୍ଦା, ଜଟିଳ ବିଷୟ ।

**Mead, Meadow**, *n.* ତୃଣମୟ ପ୍ରାନ୍ତର । [ ଅତ୍ୟଳ୍ପ, କ୍ଷୀଣ ।

**Meager, Meagre**, *a.* ସାମାନ୍ୟ,

**Meal**, *n.* ଖାଦ୍ୟ, ଭୋଜନ, ମଇଦା ପ୍ରଭୃତି

**Mean**, *a.* ନୀଚ, ଅଧମ; *v.* ଅର୍ଥ ବୁଝାଇବା, ଉଦ୍ଦେଶ୍ୟ ବ୍ୟକ୍ତ କରିବା ।
**Meander**, *v.* ବଙ୍କଗତିରେ ଯିବା; *n.* ବଙ୍କଗତି ।
**Meaning**, *n.* ଅର୍ଥ, ଅଭିପ୍ରାୟ ।
**Meaningless**, *a.* ଅର୍ଥହୀନ, ନିରର୍ଥକ ।
**Meanly**, *ad.* ନୀଚତାପୂର୍ବକ ।
**Meanness**, *n.* ନୀଚତା, ଅଧମତା ।
**Means**, *n.* ସମ୍ବଳ, ଉପାୟ ।
**Meantime**, *ad.* ଇତିମଧ୍ୟରେ ।
**Measles**, *n.* ମିଳିମିଳା ରୋଗ ।
**Measurable**, *a.* ପରିମେୟ ।
**Measure**, *n.* ପରିମାଣ, ମାପ; *v.* ମାପିବା ।
**Measurement**, *n.* ପରିମାପ, ପରିମାଣ ।
**Meat**, *n.* ମାଂସ, ଆହାର ।
**Mechanic**, *n.* କାରିଗର, ଯନ୍ତ୍ରଶିଳ୍ପୀ ।
**Mechanical**, *a.* ଯାନ୍ତ୍ରିକ, ଯନ୍ତ୍ରସମ୍ବନ୍ଧୀୟ, ଯନ୍ତ୍ରଚାଳିତ ।
**Mechanically**, *ad.* ଯନ୍ତ୍ରଚାଳିତବତ୍‌, ଯନ୍ତ୍ରଚାଳିତ ହୋଇ । [ ବିଦ୍ୟା ।
**Mechanics**, *n.* ଯନ୍ତ୍ରବିଜ୍ଞାନ, ଶିଳ୍ପ-
**Mechanism**, *n.* ଯନ୍ତ୍ରର କାର୍ଯ୍ୟପ୍ରଣାଳୀ, କାରିଗରି । [ କାରିଗର ।
**Mechanist**, *n.* ଯନ୍ତ୍ରବିଜ୍ଞାନୀ,
**Medal**, *n.* ପଦକ । [ ମୋହର ।
**Medallion**, *n.* ପ୍ରାଚୀନ ମୁଦ୍ରା ବା
**Meddle**, *v.* ବୃଥା ହସ୍ତକ୍ଷେପ କରିବା, ଅନଧିକାର ଚର୍ଚ୍ଚା କରିବା ।
**Meddlesome**, *a.* ଅନଧିକାରଚର୍ଚ୍ଚାକାରୀ । [ ରେଖା ।
**Median**, *a.* ମଧ୍ୟଭେଦୀ; *n.* ମଧ୍ୟଗାମୀ
**Mediate**, *v.* ମଧ୍ୟସ୍ଥତା କରିବା ।
**Mediation**. *n.* ମଧ୍ୟସ୍ଥତାକରଣ ।
**Mediator**, *n.* ମଧ୍ୟସ୍ଥ (*fem.* **Mediatrix**) ।
**Medicable**, *a.* ଚିକିତ୍ସାଦ୍ୱାରା ପ୍ରତିକାର୍ଯ୍ୟ, ଉପଶମନୀୟ ।
**Medical**, *a.* ଚିକିତ୍ସାବିଷୟକ ।
**Medicament**, *n.* ଔଷଧ, ଭେଷଜ ।
**Medicate**, *v.* ଔଷଧ ଦେବା, ଚିକିତ୍ସା କରିବା ।
**Medicinal**, *a.* ଔଷଧବିଷୟକ ।
**Medicine**, *n.* ଔଷଧ, ଚିକିତ୍ସାବିଦ୍ୟା ।
**Medieval**, *a.* ମଧ୍ୟଯୁଗୀୟ ।
**Mediocre**, *a.* ମଧ୍ୟମଶ୍ରେଣୀର ।
**Mediocrity**, *n.* ମଧ୍ୟମ ଅବସ୍ଥା ।
**Meditate**, *v.* ଧ୍ୟାନ କରିବା, ଚିନ୍ତା କରିବା ।
**Meditation**, *n.* ଧ୍ୟାନ, ଚିନ୍ତା ।
**Meditative**, *a.* ଧ୍ୟାନଯୁକ୍ତ, ଚିନ୍ତାଶୀଳ ।
**Mediterranean**, *a.* ଭୂମଧ୍ୟସ୍ଥ, ଭୂମଧ୍ୟସାଗରୀୟ; *n.* ସାଗରବିଶେଷ ।
**Medium**, *n.* ମାଧ୍ୟମ, ବାହନ, ମଧ୍ୟବର୍ତ୍ତୀ ବସ୍ତୁ ।

**Medley**, *n.* ମିଶ୍ରଣ, ବିବିଧ ଦ୍ରବ୍ୟର ସଂଗ୍ରହ; *a.* ମିଶ୍ରିତ ।
**Meed**, *n.* ପୁରସ୍କାର, ପ୍ରତିଦାନ ।
**Meek**, *a.* ଶାନ୍ତ, ସୁଶୀଳ, ନମ୍ର ।
**Meekly**, *ad.* ବିନୟପୂର୍ବକ, ନମ୍ରଭାବରେ । [ ବିନୟ ।
**Meekness**, *n.* ସୁଶୀଳତା, ନମ୍ରତା,
**Meet**, *v.* ସାକ୍ଷାତ କରିବା, ମିଳିତ ହେବା; *a.* ଉପଯୁକ୍ତ ।
**Meeting**, *n.* ସଭା, ସମିତି, ସାକ୍ଷାତ ।
**Meetly**, *ad.* ଉପଯୁକ୍ତରୂପେ ।
**Melancholy**, *n.* ବିଷାଦ, ଔଦାସୀନ୍ୟ; *a.* ବିଷଣ୍ଣ, ବିମର୍ଷ, ଉଦାସୀନ । [ କର ।
**Mellow**, *a.* ମୃଦୁ, ଶୀତଳ, ଆହ୍ଲାଦ-
**Melodious**, *a.* ଶ୍ରୁତିମଧୁର, ସୁଶ୍ରାବ୍ୟ ।
**Melody**, *n.* ସୁସ୍ୱର, ମଧୁର ସଙ୍ଗୀତ, ତାନଲୟ ।
**Melon**, *n.* ତରଭୁଜ, ଫୁଟି ।
**Melt**, *v.* ତରଳିବା, ତରଳାଇବା ।
**Member**, *n.* ସଭ୍ୟ, ସମାଜର ବ୍ୟକ୍ତି, ଅଙ୍ଗପ୍ରତ୍ୟଙ୍ଗ । [ ସଭ୍ୟର କର୍ମ ।
**Membership**, *n.* ସଭ୍ୟପଦ,
**Membrane**, *n.* ସୂକ୍ଷ୍ମ ପରଦା, ଝିଲ୍ଲି, ସ୍ନାୟୁ ।
**Memento**, *n.* ସ୍ମୃତିଚିହ୍ନ ।
**Memoir**, *n.* ସ୍ମୃତିଲିପି, ଜୀବନବୃତ୍ତାନ୍ତ
**Memorable**, *a.* ସ୍ମରଣୀୟ, ପ୍ରସିଦ୍ଧ ।
**Memorandum**, *n.* ସଂକ୍ଷିପ୍ତ ବିବରଣ, ସ୍ମାରକପତ୍ର (*pl.* Memoranda) ।
**Memorial**, *n.* ସ୍ମୃତିସ୍ତମ୍ଭ, ସ୍ମୃତି-ମନ୍ଦିର, ଆବେଦନପତ୍ର ।
**Memorialist**, *n.* ଆବେଦନକାରୀ ।
**Memorise, Memorize**, *v.* ମନେରଖିବାର ଚେଷ୍ଟା କରିବା, ଘୋଷିବା, କଣ୍ଠସ୍ଥ କରିବା ।
**Memory**, *n.* ସ୍ମୃତିଶକ୍ତି, ସ୍ମରଣ ।
**Menace**, *n.* ଉପଦ୍ରବ, ଭୟପ୍ରଦର୍ଶନ; *v.* ଭୟପ୍ରଦର୍ଶନ କରିବା ।
**Menagerie, Menagery**, *n.* ବନ୍ୟପଶୁଶାଳା । [ ମରାମତି କରିବା ।
**Mend**, *v.* ସଂଶୋଧନ କରିବା,
**Mendacious**, *a.* ମିଥ୍ୟା, ଅସତ୍ୟ ।
**Mendacity**, *n.* ମିଥ୍ୟାବାକ୍ୟ, ମିଥ୍ୟାବାଦିତା, ପ୍ରବଞ୍ଚନା ।
**Mendicancy**, *n.* ଭିକ୍ଷାବୃତ୍ତି ।
**Mendicant**, *n.* ଭିକ୍ଷୁକ, ଫକୀର ।
**Mendicity**, *n.* ଭିକ୍ଷୁବୃତ୍ତି, ଭିକ୍ଷୁକାବସ୍ଥା । [ *n.* ଭୃତ୍ୟ, ଚାକର ।
**Menial**, *a.* ନୀଚ, ଭୃତ୍ୟସ୍ଥାନୀୟ;
**Menses**, *n.* ମାସିକ ଋତୁ, ରଜଃସ୍ରାବ
**Menstrual**, *a.* ଆର୍ତ୍ତବ, ମାସିକ ଋତୁ ସମ୍ବନ୍ଧୀୟ ।
**Menstruation**, *n.* ରଜଃସ୍ରାବ ।

**Mensuration**, *n.* କ୍ଷେତ୍ରପରିମାଣ, ପରିମିତି ।
**Mental**, *a.* ମାନସିକ, ମନଃସମ୍ବନ୍ଧୀୟ ।
**Mentality**, *n.* ମନୋଭାବ, ଚିନ୍ତାଧାରା ।
**Mentally**, *ad.* ମନେମନେ ।
**Menthol**, *n.* କର୍ପୂରଜାତୀୟ ପଦାର୍ଥ-ବିଶେଷ । [ କରିବା ।
**Mention**, *n.* ଉଲ୍ଲେଖ; *v.* ଉଲ୍ଲେଖ
**Menu**, *n.* ଭୋଜ୍ୟବସ୍ତୁର ତାଲିକା ।
**Mercantile**, *a.* ବାଣିଜ୍ୟସମ୍ବନ୍ଧୀୟ ।
**Mercenary**, *a.* ଅର୍ଥଲୋଲୁପ, ଭଡ଼ାଟିଆ; *v.* ଠିକା ସୈନିକ ।
**Merchandise**, *n.* ବେପାର, ପଣ୍ୟଦ୍ରବ୍ୟ, ବିକ୍ରେୟ ପଦାର୍ଥ ।
**Merchant**, *n.* ବଣିକ, ସୌଦାଗର ।
**Merchantman**, *n.* ବାଣିଜ୍ୟପୋତ ।
**Merciful**, *a.* ଦୟାଳୁ, କାରୁଣିକ ।
**Mercifully**, *ad.* ଦୟାପୂର୍ବକ ।
**Merciless**, *a.* ନିର୍ଦ୍ଦୟ, ନିଷ୍ଠୁର ।
**Mercilessly**, *ad.* ନିର୍ଦ୍ଦୟଭାବରେ ।
**Mercury**, *n.* ପାରଦ, ବୁଧଗ୍ରହ ।
**Mercy**, *n.* କୃପା, ଦୟା, କରୁଣା ।
**Mere**, *a.* ମାତ୍ର, କେବଳ, ସାମାନ୍ୟ ।
**Merge**, *v.* ମିଶିବା, ଲୀନ ହେବା ।
**Merger**, *n.* ମିଶ୍ରଣ, ମିଳନ । [ ରେଖା ।
**Meridian**, *n.* ମଧ୍ୟାହ୍ନ, ମାଧ୍ୟାହ୍ନିକ
**Merit**, *n.* ଯୋଗ୍ୟତା, ଗୁଣ; *v.* ଯୋଗ୍ୟ ହେବା । [ ଗୁଣସମ୍ପନ୍ନ ।
**Meritorious**, *a.* ଯୋଗ୍ୟତାସମ୍ପନ୍ନ,
**Merrily**, *ad.* ଆନନ୍ଦରେ, ପ୍ରଫୁଲ୍ଲ-ହୋଇ । [ ଆମୋଦପ୍ରମୋଦ ।
**Merriment**, *n.* ଆନନ୍ଦ, କୌତୁକ,
**Merry**, *a.* ହୃଷ୍ଟ, ପ୍ରଫୁଲ୍ଲ ।
**Mesh**, *n.* ଜାଲର ଛିଦ୍ର ।
**Mesmerise**, *v.* ସମ୍ମୋହିତ କରିବା, ପ୍ରମତ୍ତ କରିବା । [ ପ୍ରମତ୍ତନ ।
**Mesmerism**, *n.* ସମ୍ମୋହନ ବିଦ୍ୟା,
**Mess**, *n.* ଏକତ୍ର ଭୋଜନ; *v.* ଏକତ୍ର ଖାଇବା । [ ସମାଚାର ।
**Message**, *n.* ସମ୍ବାଦ, ସନ୍ଦେଶ,
**Messenger**, *n.* ସମ୍ବାଦବାହକ, ଦୂତ, ବାର୍ତ୍ତାବହ । [ ମହୋଦୟଗଣ ।
**Messieurs** ( **Messrs.** ), *n.*
**Metal**, *n.* ଧାତୁ, ସ୍ୱର୍ଣ୍ଣରୌପ୍ୟାଦି ।
**Metallic**, *a.* ଧାତୁସମ୍ବନ୍ଧୀୟ, ଧାତବ, ଧାତୁନିର୍ମିତ ।
**Metallurgy**, *n.* ଧାତୁବିଦ୍ୟା ।
**Metamorphic**, *a.* ରୂପାନ୍ତରିତ ।
**Metamorphose**, *v.* ରୂପାନ୍ତରିତ କରିବା । [ ଗ୍ରହଣ ।
**Metamorphosis**, *n.* ରୂପାନ୍ତର-
**Metaphor**, *n.* ଉପମା, ରୂପକ, ତୁଳନା ।
**Metaphorical**, *a.* ଉପମାଗର୍ଭିକ

**Metaphysical**, *a.* ଅଧ୍ୟାତ୍ମବିଦ୍ୟା ସମ୍ବନ୍ଧୀୟ ।
**Metaphysics**, *n.* ଅଧ୍ୟାତ୍ମବିଦ୍ୟା ।
**Mete**, *v.* ମାପିବା, ପରିମାଣ କରିବା ।
**Meteor**, *n.* ଉଲ୍କା । [ ଉଲ୍କାବତ୍ ।
**Meteoric**, *a.* ଉଲ୍କା ସମ୍ବନ୍ଧୀୟ,
**Meteorite, Meteorolite**, *n.* ଉଲ୍କାପ୍ରସ୍ତର ।
**Meteorologic, Meteorological**, *a.* ଜଳବାୟୁବିଷୟକ ।
**Meteorology**, *n.* ଜଳବାୟୁବିଜ୍ଞାନ, ଶୀତାତପବିଷୟକ ବିଦ୍ୟା ।
**Meter**, *n.* ମାପଯନ୍ତ୍ର (Metre ଦେଖ) ।
**Methinks**, *v.* ମୋର ମନେ ହୁଏ ।
**Method**, *n.* ପ୍ରଣାଳୀ, ଧାରା, ରୀତି ।
**Methodical**, *a.* ପ୍ରଣାଳୀବଦ୍ଧ, ସୁଶୃଙ୍ଖଳ । [ ଭାବରେ ।
**Methodically**, *ad.* ସୁଶୃଙ୍ଖଳ
**Meticulous**, *a.* ଅତି ସାବଧାନ, ଭୀରୁ ।
**Meticulously**, *ad.* ଅତି ସାବଧାନରେ । [ (୩୯.୩୭ ଇଞ୍ଚ), ଛନ୍ଦ ।
**Metre**, *n.* ଦଶମିକ ପଦ୍ଧତିର ମାପବିଶେଷ
**Metric**, *a.* ଦଶମିକ ପଦ୍ଧତିସମ୍ବନ୍ଧୀୟ ।
**Metrical**, *a.* ଛନ୍ଦୋବଦ୍ଧ ।
**Metropolis**, *n.* ରାଜଧାନୀ, ଦେଶର ପ୍ରଧାନ ନଗର ।
**Mettle**, *n.* ସାହସ, ତେଜ । [ ହେବା ।
**Mew**, *v.* ବିରାଡ଼ିପରି ରଡ଼ିବା, ମିଆଉଁ ମିଆଉଁ

**Miasm, Miasma**, *n.* ପଚା ପଦାର୍ଥରୁ ନିର୍ଗତ ଦୁର୍ଗନ୍ଧ ବାଷ୍ପ ।
**Mica**, *n.* ଅଭ୍ର, ଖନିଜ ଦ୍ରବ୍ୟବିଶେଷ ।
**Microbe**, *n.* ଚକ୍ଷୁର ଅଦୃଶ୍ୟ ଜୀବାଣୁ ।
**Microchronometer**, *n.* ସୂକ୍ଷ୍ମାତିସୂକ୍ଷ୍ମ କାଳନିର୍ଣ୍ଣାୟକ ଯନ୍ତ୍ରବିଶେଷ ।
**Micrometer**, *n.* ସୂକ୍ଷ୍ମାତିସୂକ୍ଷ୍ମ ଦୂରତା ବା କୋଣ ମାପିବାର ଯନ୍ତ୍ରବିଶେଷ ।
**Microphone**, *n.* ଧ୍ୱନିବିବର୍ଦ୍ଧକ ଯନ୍ତ୍ର ।
**Microscope**, *n.* ଅଣୁବୀକ୍ଷଣ ଯନ୍ତ୍ର ।
**Microscopic**, *a.* ଅଣୁବୀକ୍ଷଣ ଯନ୍ତ୍ର ସମ୍ବନ୍ଧୀୟ, କ୍ଷୁଦ୍ରାତିକ୍ଷୁଦ୍ର ।
**Mid**, *a.* ମଧ୍ୟବର୍ତ୍ତୀ, ଅଭ୍ୟନ୍ତରସ୍ଥିତ ।
**Midday**, *n.* ଦିବା ଦ୍ୱିପ୍ରହର, ମଧ୍ୟାହ୍ନ ।
**Middle**, *a.* ମଧ୍ୟମ, ମଝିରେ ଥିବା; *n.* ମଧ୍ୟସ୍ଥଳ ।
**Middle-man**, *n.* ମଧ୍ୟସ୍ଥ ।
**Midnight**, *n.* ଅର୍ଦ୍ଧରାତ୍ର ।
**Midst**, *n.* ମଧ୍ୟ, ମଝି । [ ମଝିନଈ ।
**Midstream**, *n.* ସ୍ରୋତର ମଧ୍ୟଭାଗ,
**Midway**, *n.* ମଧ୍ୟପଥ, ବାଟମଝି ।
**Midwife**, *n.* ଧାତ୍ରୀ, ପ୍ରସବକାଳରେ ସାହାଯ୍ୟକାରିଣୀ ।
**Midwifery**, *n.* ଧାତ୍ରୀବିଦ୍ୟା ।
**Mien**, *n.* ଚେହେରା, ମୁଖଶ୍ରୀ ।
**Might**, *n.* ଶକ୍ତି, ସାମର୍ଥ୍ୟ, ବଳ ।
**Mightily**, *ad.* ସାମର୍ଥ୍ୟ ସହକାରେ, ବିଶେଷଭାବରେ ।

**Mightiness,** *n.* ଶକ୍ତି, ପରାକ୍ରମ ।
**Mighty,** *a.* ଶକ୍ତିମାନ୍, ପରାକ୍ରାନ୍ତ, ବଳଶାଳୀ । [ ଇତସ୍ତତଃ ଭ୍ରମଣକାରୀ ।
**Migrant,** *n.* & *a.* ଯାଯାବର,
**Migrate,** *v.* ଦେଶାନ୍ତରରେ ବାସ କରିବା, ସ୍ଥାନାନ୍ତରକୁ ଯିବା ।
**Migration,** *n.* ଦେଶାନ୍ତର ଗମନ ।
**Migratory,** *a.* ଇତସ୍ତତଃ ଭ୍ରମଣଶୀଳ ।
**Mikado,** *n.* ଜାପାନର ସମ୍ରାଟଙ୍କ ପଦବୀ ।
**Milch,** *a.* ଦୁଗ୍ଧବତୀ ।
**Mild,** *a.* ମୃଦୁ, କୋମଳ, ଧୀର ।
**Mildew,** *n.* ଉଦ୍ଭିଦର ରୋଗବିଶେଷ ।
**Mildly,** *ad.* ମୃଦୁଭାବରେ ।
**Mildness,** *n.* ମୃଦୁତା, କୋମଳତା ।
**Mile,** *n.* ମାଇଲ (୧୭୬୦ ଗଜ) ।
**Mileage,** *n.* ମାଇଲ ହିସାବରେ ଭଡ଼ା ପ୍ରଭୃତି, ମାଇଲ ହିସାବରେ ଦୈର୍ଘ୍ୟ ।
**Milestone,** *n.* ମାଇଲ ପଥର, ପ୍ରସିଦ୍ଧ ଘଟନା । [ ଶୀଳତା ।
**Militancy,** *n.* ଯୁଦ୍ଧପ୍ରିୟତା, ସଂଗ୍ରାମ-
**Militant,** *a.* ଯୁଦ୍ଧୋଦ୍ୟତ, ସଂଗ୍ରାମଶୀଳ ।
**Military,** *a.* ସାମରିକ ।
**Militate,** *v.* ବିରୋଧ କରିବା ।
**Militia,** *n.* ଦେଶରକ୍ଷୀ ସୈନ୍ୟଦଳ ।
**Milk,** *n.* କ୍ଷୀର, ଦୁଧ; *v.* ଦୁହିଁବା ।
**Milkmaid,** *n.* ଗଉଡ଼ୁଣୀ ।
**Milkman,** *n.* ଗଉଡ଼, ଗୋପାଳ ।
**Milkyway,** *n.* ଛାୟାପଥ । [ପେଷିବା ।
**Mill,** *n.* କାରଖାନା, ପେଷଣ ଯନ୍ତ୍ର; *v.*
**Millennium,** *n.* ସହସ୍ରବର୍ଷ । [କରେ ।
**Miller,** *n.* ଯେ ଗହମ ପ୍ରଭୃତି ପେଷି ଅଟା
**Millet,** *n.* ଜୋଆର, ଶସ୍ୟବିଶେଷ ।
**Million,** *n.* ନିୟୁତ, ଦଶଲକ୍ଷ ।
**Millionaire,** *n.* ଲକ୍ଷପତି ।
**Mime,** *n.* ବିଦୂଷକ, ଅନୁକରଣକାରୀ ।
**Mimic,** *v.* ଅନୁକରଣ କରିବା; *a.* ଅନୁକରଣଶୀଳ । [ ବିଦ୍ରୂପ ।
**Mimicry,** *n.* ବିକୃତ ଅନୁକରଣ,
**Mimosa,** *n.* ଲଜକୁଳୀ ଲତା ।
**Mince,** *v.* ଖଣ୍ଡଖଣ୍ଡ କରିବା । [ ଦେବା ।
**Mind,** *n.* ମନ, ଚିତ୍ତ; *v.* ମନୋଯୋଗ
**Mindful,** *a.* ମନୋଯୋଗୀ, ସାବଧାନ ।
**Mindless,** *a.* ଅସାବଧାନ ।
**Mine,** *n.* ଖଣି; *v.* ଖଣି ଖୋଳି ଧାତୁପ୍ରସ୍ତର ବାହାର କରିବା; *pr.* ମଦୀୟ, ମୋହର ।
**Miner,** *n.* ଖନକ, ଖଣିର ଶ୍ରମିକ ।
**Mineral,** *n.* ଖନିଜ ଦ୍ରବ୍ୟ; *a.* ଖନିଜ ।
**Mineralogy,** *n.* ଖନିଜ ବିଦ୍ୟା, ଧାତୁ ନିରୂପଣ ବିଦ୍ୟା ।
**Minerva,** *n.* ଗ୍ରୀକ୍‌ମାନଙ୍କ ବିଦ୍ୟାର ଦେବତା, ସରସ୍ୱତୀ ।
**Mingle,** *v.* ମିଶିବା, ମିଳିତ ହେବା ବା କରିବା । [ *n.* କ୍ଷୁଦ୍ରାକାର ଛବି ।
**Miniature,** *a.* କ୍ଷୁଦ୍ରାକୃତି, ସ୍ୱଳ୍ପାକାର;

Minim, *n.* ବିନ୍ଦୁ, ତରଳ ଦ୍ରବ୍ୟର କ୍ଷୁଦ୍ର ମାପବିଶେଷ ।
Minimise, Minimize, *v.* ହ୍ରସ୍ୱ କରିବା, ଲଘୁ କରିବା ।
Minimisation, *n.* ହ୍ରସ୍ୱକରଣ ।
Minimum, *a.* ନିମ୍ନତମ, ଅଳ୍ପତଃ; *n.* କ୍ଷୁଦ୍ର ଅଂଶ (*pl.* Minima) ।
Minister, *n.* ମନ୍ତ୍ରୀ, ଅମାତ୍ୟ ।
Ministerial, *a.* ମନ୍ତ୍ରୀ ସମ୍ବନ୍ଧୀୟ, କ୍ଷମତାପ୍ରାପ୍ତ କର୍ମକାରକ ।
Ministry, *n.* ମନ୍ତ୍ରୀପରିଷଦ ।
Minor, *a.* ସାମାନ୍ୟ, ଅପ୍ରାପ୍ତବୟସ୍କ, ସଂଖ୍ୟାଲଘୁ, ନାବାଳଗ । [ ନାବାଳଗି ।
Minority, *n.* ସଂଖ୍ୟାଲଘିଷ୍ଠତା,
Minster, *n.* ଭଜନାଳୟ, ଧର୍ମମନ୍ଦିର ।
Minstrel, *a.* ବୈତାଳିକ, ମାଗଧ, ଭାଟ ।
Minstrelsy, *n.* ବୈତାଳିକ ସମ୍ପ୍ରଦାୟ, ବାଦକବୃନ୍ଦ ।
Mint, *n.* ମୁଦ୍ରାଶାଳା, ଟଙ୍କଶାଳା ।
Minus, *a.* ବିଯୁକ୍ତ, ନ୍ୟୂନ; *n.* ବିୟୋଗ ।
Minute, *n.* ଏକ ଘଣ୍ଟାର $\frac{1}{60}$ ଅଂଶ; *a.* ଅତି ସୂକ୍ଷ୍ମ ।
Minutely, *ad.* ଅତି ସୂକ୍ଷ୍ମଭାବରେ ।
Minuteness, *n.* ସୂକ୍ଷ୍ମତା ।
Miracle, *n.* ଅଲୌକିକ ଘଟନା ।
Miraculous, *a.* ଅଦ୍ଭୁତ, ଅଲୌକିକ ।
Mirage, *n.* ମରୀଚିକା, ମୃଗତୃଷ୍ଣା ।
Mire, *n.* କର୍ଦ୍ଦମ, ପଙ୍କ ।
Mirror, *n.* ଦର୍ପଣ, ଅଇନା ।
Mirth, *n.* ଉଲ୍ଲାସ, ହର୍ଷ, ଆନନ୍ଦ ।
Mirthful, *a.* ଉଲ୍ଲସିତ, ଆନନ୍ଦିତ ।
Miry, *a.* କର୍ଦ୍ଦମମୟ, ପଙ୍କିଳ ।
Misappropriate, *v.* ଅନ୍ୟାୟଭାବରେ ଆତ୍ମସାତ୍ କରିବା, ଅପହରଣ କରିବା । [ ଭାବରେ ଅପହରଣ ।
Misappropriation, *n.* ଅନ୍ୟା-
Misbehave, *v.* ଅନ୍ୟାୟ ଆଚରଣ କରିବା । [ ଅନ୍ୟାୟ ବ୍ୟବହାର ।
Misbehaviour, *n.* ଅସଦାଚରଣ,
Miscalculate, *v.* ଗଣନାରେ ଭୁଲ କରିବା । [ ଭୁଲ ।
Miscalculation, *n.* ହିସାବରେ
Miscarriage, *n.* ବିଫଳତା, ଗର୍ଭସ୍ରାବ
Miscarry, *v.* ନିଷ୍ଫଳ କରିବା, ଗର୍ଭସ୍ରାବ କରିବା । [ ବିବିଧ ।
Miscellaneous, *a.* ନାନାଜାତୀୟ,
Miscellany, *n.* ବିବିଧ ଦ୍ରବ୍ୟର ସଂଗ୍ରହ, ମିଶ୍ରଣ । [ ଅନର୍ଥ ।
Mischief, *n.* ଅପକାର, ଅନିଷ୍ଟ,
Mischievous, *a.* ଅପକାରୀ, ଦୁଷ୍ଟ ।
Misconceive, *v.* ଓଲଟା ବୁଝିବା ।
Misconception, *n.* ଭ୍ରମ, ଭ୍ରାନ୍ତ ଧାରଣା, ଭୁଲ ବୁଝାମଣା ।
Misconduct, *n.* ଅସତ୍ ସ୍ୱଭାବ ।

**Miscreance, Miscreancy,** *n.* ଖଳତା, ଅବିଶ୍ୱାସ । [ ଦୁର୍ବୃତ୍ତ ।
**Miscreant,** *n.* ଖଳ, ଦୁରାତ୍ମା,
**Misdeed,** *n.* ଅପକର୍ମ, ଦୁଷ୍କୃତ ।
**Misdemean,** *v.* ମନ୍ଦ ଆଚରଣ କରିବା
**Misdemeanour,** *n.* ଅସଦାଚାର, ଦୁର୍ବ୍ୟବହାର ।
**Misdirect,** *v.* ଅସ୍ଥାନ ବା ଅପାତ୍ର ନିକଟକୁ ପ୍ରେରଣ କରିବା ।
**Miser,** *n.* କୃପଣ ବ୍ୟକ୍ତି । [ ବିପନ୍ନ ।
**Miserable,** *a.* ଶୋଚନୀୟ, ଦୁଃଖିତ,
**Miserably,** *ad.* ଶୋଚନୀୟ ଭାବରେ ।
**Miserly,** *a.* କୃପଣ, ଅର୍ଥଲୋଭୀ ।
**Misery,** *n.* ଦୁଃଖ, ବିପଦ, ଦୁର୍ଗତି, ଦାରିଦ୍ର୍ୟ । [ ଦୁର୍ଦ୍ଦୈବ ।
**Misfortune,** *n.* ଦୁର୍ଭାଗ୍ୟ,
**Misgiving,** *n.* ସଂଶୟ, ଆଶଙ୍କା, ଅବିଶ୍ୱାସ, ସନ୍ଦେହ ।
**Misgovern,** *v.* ଅନ୍ୟାୟରେ ଶାସନ କରିବା । [ ବିଶୃଙ୍ଖଳା ।
**Misgovernment,** *n.* କୁଶାସନ,
**Misguide,** *v.* କୁଶିକ୍ଷା ଦେବା, ବିପଥଗାମୀ କରିବା ।
**Misguided,** *a.* ବିପଥଗାମୀ ।
**Mishap,** *n.* ଦୁର୍ଘଟଣା, ଦୁର୍ଭାଗ୍ୟ ।
**Mislead,** *v.* ବିପଥରେ ନେବା, ପ୍ରତାରଣା କରିବା ।
**Misleading,** *a.* ଭ୍ରାନ୍ତିଜନକ ।
**Mismanage,** *v.* କୁପରିଚାଳନା କରିବା, ବିଶୃଙ୍ଖଳ କରିବା ।
**Mismanagement,** *n.* ବିଶୃଙ୍ଖଳା ।
**Misnomer,** *n.* ଅସଙ୍ଗତ ନାମ, ମିଥ୍ୟା ନାମ, ନିରର୍ଥକ କଥା ।
**Misplace,** *v.* ଅସ୍ଥାନରେ ରଖିବା ।
**Misprint,** *n.* ମୁଦ୍ରାକର ପ୍ରମାଦ, ଛପାରେ ଭୁଲ । [ ଅସତ୍ୟ ପ୍ରକାଶ କରିବା ।
**Misrepresent,** *v.* ମିଥ୍ୟା କହିବା,
**Misrepresentation,** *n.* ଭ୍ରାନ୍ତ ବର୍ଣ୍ଣନା । [ ଶାସନ ।
**Misrule,** *n.* ଅରାଜକତା, ଅନ୍ୟାୟ
**Miss,** *n.* କୁମାରୀ; *v.* ହରାଇବା, ଅଭାବ ବୋଧ କରିବା । [ କଦାକାର, ବିରୂପ ।
**Misshaped, Misshapen,** *a.*
**Missile,** *n.* କ୍ଷେପଣାସ୍ତ୍ର । [ ଅପହୃତ ।
**Missing,** *a.* ପଳାୟିତ, ସ୍ଥାନଚ୍ୟୁତ,
**Mission,** *n.* ଦୌତ୍ୟ, ନିଯୋଗୀବର୍ଗ, ପ୍ରଚାରକସମୂହ, ଜୀବନର କର୍ତ୍ତବ୍ୟ ।
**Missionary,** *n.* ଧର୍ମପ୍ରଚାରାର୍ଥ ପ୍ରେରିତ ବ୍ୟକ୍ତିବର୍ଗ, ପାଦ୍ରି; *a.* ଧର୍ମପ୍ରଚାରକ ।
**Misspell,** *v.* ଭୁଲ ବନାନ କରିବା ।
**Misspend,** *v.* ଅପବ୍ୟୟ କରିବା ।
**Mist,** *n.* କୁହେଳି, କୁଜ୍ଝଟିକା, କୁହୁଡ଼ି ।
**Mistake,** *n.* ଭ୍ରମ, ପ୍ରମାଦ, ଭୁଲ; *v.* ଭ୍ରମ କରିବା, ଭୁଲ ବୁଝିବା । [ ଅଶୁଦ୍ଧ ।
**Mistaken,** *a.* ଭ୍ରାନ୍ତ, ଭ୍ରାନ୍ତିଯୁକ୍ତ,
**Mister,** *n.* ମହାଶୟ, ଶ୍ରୀମାନ୍ ।

Mistletoe, *n.* ମଲଙ୍ଗ, ନମୁଲି ।
Mistress, *n.* ଗୃହିଣୀ, ଶିକ୍ଷୟିତ୍ରୀ, ଉପପତ୍ନୀ । [ ସନ୍ଦେହ ।
Mistrust, *v.* ଅବିଶ୍ୱାସ କରିବା; *n.*
Misty, *a.* ଅସ୍ପଷ୍ଟ, କୁଜ୍‌ଝଟିକାମୟ ।
Misunderstand, *v.* ଭୁଲ ବୁଝିବା ।
Misunderstanding, *n.* ଭ୍ରମ, ମନୋମାଳିନ୍ୟ, ଭୁଲ ବୁଝାମଣା ।
Misuse, *v.* ଅପବ୍ୟବହାର କରିବା; *n.* ଅପବ୍ୟବହାର ।
Mite, *n.* ଲେଶ, କଣିକା, ଯଡ଼ୁକଷ୍ଟ ।
Mitigable, *a.* ଉପଶମନୀୟ ।
Mitigate, *v.* ଉପଶମ କରିବା, ଲଘୁ କରିବା । [ ହ୍ରାସ ।
Mitigation, *n.* ଉପଶମନ, କ୍ଲେଶର
Mix, *v.* ମିଶାଇବା, ଏକତ୍ର କରିବା ।
Mixture, *n.* ମିଶ୍ରଣ, ସଙ୍କର, ମିଶ୍ରିତ ଦ୍ରବ୍ୟ ।
Moan, *v.* ବିଳାପ କରିବା, ବାହୁନିବା ।
Moat, *n.* ପରିଖା, ଗଡ଼ଖାଇ ।
Mob, *n.* ଜନତା, ଜନସମୂହ; *v.* ଗହଳ କରିବା । [ ଭ୍ରାମ୍ୟମାଣ ।
Mobile, *a.* ଚଳନ୍ତା, ଗତିଶୀଳ,
Mobility, *n.* ଗତିଶୀଳତା, ଚଳନଶକ୍ତି ।
Mock, *n.* ବିଦ୍ରୂପ, ଉପହାସ; *v.* ଥଟ୍ଟା କରିବା; *a.* କୃତ୍ରିମ ।
Mockery, *n.* ପରିହାସ, ବିଦ୍ରୂପ, ଥଟ୍ଟା ।
Mode, *n.* ପ୍ରକାର, ଧରଣ, ରୀତି ।
Model, *n.* ଆଦର୍ଶ, ନମୁନା ।
Moderate, *a.* ମିତାଚାରୀ, ମଧ୍ୟମ; *v.* କୋହଳ କରିବା ।
Moderately, *ad.* ପରିମିତ ଭାବରେ ।
Moderation, *n.* ମିତାଚାର ।
Modern, *a.* ଆଧୁନିକ, ନବ୍ୟ ।
Modernise, *v.* ପ୍ରାଚୀନ ବିଷୟକୁ ଆଧୁନିକ ଯୁଗୋପଯୋଗୀ କରିବା ।
Modernity, *n.* ଆଧୁନିକତା, ନବ୍ୟତା ।
Modest, *a.* ସାମାନ୍ୟ, ଲଜ୍ଜାଶୀଳ, ବିନୀତ, ଅଳ୍ପପରିମିତ ।
Modestly, *ad.* ବିନୟପୂର୍ବକ ।
Modesty, *n.* ଲଜ୍ଜା, ବିନୟ ।
Modification, *n.* ପରିବର୍ତ୍ତନ, ଅଦଳବଦଳ । [ କରିବା ।
Modify, *v.* ସୁଧାରିବା, ପରିବର୍ତ୍ତନ
Modus, *n.* ପ୍ରଣାଳୀ, ରୀତି ।
Modus operandi, *n.* କର୍ମପନ୍ଥା, କାର୍ଯ୍ୟପ୍ରଣାଳୀ ।
Moist, *a.* ଆର୍ଦ୍ର, ଓଦା । [ ଆର୍ଦ୍ରତା ।
Moistness, Moisture, *n.*
Molar, *a.* ପେଷଣକାରୀ । [ କଳଦାନ୍ତ ।
Molar teeth, *n.* ପେଷଣଦନ୍ତ,
Molasses, *n.* ଗୁଡ଼ ।
Mole, *n.* କଳାଜାଇ, ଜଳଚକ୍ର, ଚୂଚୁନ୍ଦ୍ରା ।
Molecular, *a.* ଅଣୁ ସମ୍ବନ୍ଧୀୟ ।
Molecule, *n.* କଣା, ଅଣୁ ।

Molest, *v.* ବ୍ୟତିବ୍ୟସ୍ତ କରିବା, କ୍ଳେଶ ଦେବା ।
Molestation, *n.* ଉପଦ୍ରବ, ଉତ୍ପାତ ।
Molten, *a.* ତରଳ, ତରଳୀକୃତ ।
Moment, *n.* କ୍ଷଣ, ମୂହୂର୍ତ୍ତ, ଗୁରୁତ୍ୱ ।
Momentarily, *ad.* କ୍ଷଣସ୍ଥାୟୀ ଭାବରେ ।
Momentary, *a.* କ୍ଷଣିକ, କ୍ଷଣସ୍ଥାୟୀ ।
Momentous, *a.* ଗୁରୁତ୍ୱପୂର୍ଣ୍ଣ, ଅତ୍ୟାବଶ୍ୟକ ।
Momentum, *n.* ଗତି, ବେଗ, ଜବ ।
Monarch, *n.* ଅଧିପତି, ରାଜା, ସମ୍ରାଟ୍ ।
Monarchical, *a.* ରାଜକୀୟ, ରାଜଶାସିତ, ରାଜତନ୍ତ୍ରଶାସିତ ।
Monarchy, *n.* ରାଜତନ୍ତ୍ର, ରାଜାଧିପତ୍ୟ ।
Monastery, *n.* ମଠ, ବିହାର, ଆଶ୍ରମ ।
Monastic, Monastical, *a.* ମଠ ସମ୍ବନ୍ଧୀୟ, ସନ୍ନ୍ୟାସୀବିଷୟକ ।
Monday, *n.* ସୋମବାର ।
Monetary, *a.* ଆର୍ଥିକ, ଧନସମ୍ବନ୍ଧୀୟ ।
Money, *n.* ଧନ, ଅର୍ଥ, ଟଙ୍କାପଇସା ।
Moneyed, *a.* ଧନୀ, ଧନାଢ୍ୟ ।
Monger, *n.* ବ୍ୟବସାୟୀ ।
Mongoose, Mungoose, *n.* ନକୁଳ, ନେଉଳ । [ କାଉଁସ୍ୱ, ଦୋମିଶା ।
Mongrel, *n.* ବର୍ଣ୍ଣସଙ୍କର; *a.* ସଙ୍କର-
Monism, *n.* ଅଦ୍ୱୈତବାଦ ।
Monist, *n.* ଅଦ୍ୱୈତବାଦୀ ।
Monistic, Monistical, *a.* ଅଦ୍ୱୈତବାଦ ସମ୍ବନ୍ଧୀୟ । [ ବଡ଼ଗୁଡ଼ି ।
Monitor, *n.* ଶିକ୍ଷକ, ଉପଦେଷ୍ଟା,
Monk, *n.* ସନ୍ନ୍ୟାସୀ, ଯୋଗୀ ।
Monkey, *n.* ବାନର, କପି, ମର୍କଟ ।
Monogamist, *n.* ଏକପତ୍ନୀକ ମତର ସମର୍ଥକ । [ ଏକ ସ୍ତ୍ରୀ ବିବାହ ।
Monogamy, *n.* ଏକପତ୍ନୀତ୍ୱ,
Monologue, *n.* ସ୍ୱଗତ ଉକ୍ତି ।
Monopolise, *v.* ଏକଚାଟିଆ କରିବା, ଏକାକୀ ଅଧିକାରରେ ରଖିବା ।
Monopoly, *n.* ଏକଚାଟିଆ ଅଧିକାର ।
Monotheism, *n.* ଏକେଶ୍ୱରବାଦ ।
Monotheist, *n.* ଏକେଶ୍ୱରବାଦୀ ।
Monotonous, *a.* ଏକପ୍ରକାର, ଅଭିନ୍ନ ସ୍ୱରବିଶିଷ୍ଟ । [ ସମସ୍ୱରତା ।
Monotony, *n.* ଏକରୂପତା,
Monsoon, *n.* ମୌସୁମୀବାୟୁ, ବର୍ଷାଋତୁ ।
Monster, *n.* ରାକ୍ଷସ, ଅସୁର ।
Monstrosity, *n.* ବିକଟାକୃତି, ଭୀଷଣତା । [ ବିକଟାକାର ।
Monstrous, *a.* ଆସୁରିକ, ରାକ୍ଷସତୁଲ୍ୟ,
Month, *n.* ମାସ ।
Monthly, *a.* ମାସିକ; *n.* ମାସିକ ପତ୍ର ।
Monument, *n.* କୀର୍ତ୍ତିସ୍ତମ୍ଭ, ସ୍ମାରକଚିହ୍ନ ।
Monumental, *a.* ସ୍ମୃତି ଉଦ୍‌ବୋଧକ, ସ୍ମରଣୀୟ, ସ୍ମୃତିସ୍ତମ୍ଭର ଉପଯୁକ୍ତ ।
Mood, *n.* ମିଜାଜ୍, ଭାବ, ଚିତ୍ତବୃତ୍ତି ।

**Moody**, *a*. ଉଦାସୀନ, ବିଷଣ୍ଣ ।
**Moon**, *n*. ଚନ୍ଦ୍ର । [ ବିହୀନ ।
**Moonless**, *a*. ଜ୍ୟୋତ୍ସ୍ନାଶୂନ୍ୟ, ଚନ୍ଦ୍ର-
**Moonlight**, *n*. ଚନ୍ଦ୍ରିକା, ଚନ୍ଦ୍ରକିରଣ ।
**Moor**, *n*. କଚ୍ଛ, ଅନୂପ ଭୂମି; *v*. ଦଉଡ଼ିରେ ବାନ୍ଧିବା, ଲଙ୍ଗର ପକାଇବା ।
**Moorland**, *n*. ଜଳାଭୂମି । [କରିବା ।
**Moot**, *v*. ବିଚାର କରିବା, ବିତର୍କ
**Mop**, *n*. ସମ୍ମାର୍ଜନୀ, ଝାଡ଼ୁ; *v*. ଝାଡ଼ିବା, ଓଲେଇବା । [ ନୀତିଶିକ୍ଷା ।
**Moral**, *a*. ନୈତିକ, ଧାର୍ମିକ; *n*.
**Morale**, *n*. ନୈତିକ ବଳ ।
**Morality**, *n*. ନୈତିକତା, ନୀତିଶାସ୍ତ୍ର ।
**Morally**, *ad*. ନୀତି ଅନୁସାରେ, ଧର୍ମତଃ ।
**Morbid**, *a*. ଦୂଷିତ, ବିକୃତ ।
**Morbidness, Morbidity**, *n*. ଅସୁସ୍ଥତା, ବିକୃତି ।
**Mordant**, *a*. ଉଗ୍ର, ନିନ୍ଦନୀୟ ।
**More**, *a*. ଅଧିକତର, ଅତିରିକ୍ତ ।
**Moreover**, *ad*. ଅଧିକନ୍ତୁ, ଆହୁରମଧ୍ୟ ।
**Moribund**, *a*. ମୁମୂର୍ଷୁ, ମୃତକଳ୍ପ ।
**Morn, Morning**, *n*. ପ୍ରାତଃ, ଉଷା, ସକାଳ ।
**Morning-star**, *n*. ଶୁକ୍ରତାରା ।
**Morose**, *a*. ବିଷଣ୍ଣ, ଉଦାସୀନ, ଅବସନ୍ନ ।
**Moroseness**, *n*. ଅବସନ୍ନତା, ଉଦାସୀନତା ।
**Morphia**, *n*. ଅହିଫେନର ନିର୍ଯ୍ୟାସ ।
**Morrow**, *n*. ପରଦିନ । [ ଏକ କଳ ।
**Morsel**, *n*. କବଳ, ଗ୍ରାସ, ପାଟିରେ
**Mortal**, *a*. ମରଣଶୀଳ, ନଶ୍ୱର; *n*. ମନୁଷ୍ୟ । [ ମରଣଶୀଳତା ।
**Mortality**, *n*. ନଶ୍ୱରତା, ମୃତ୍ୟୁ;
**Mortally**, *ad*. ମାରାତ୍ମକରୂପେ ।
**Mortar**, *n*. ଗାନ୍ଥିବା ମସଲା, ଚୂନ ବାଲି ଆଦିର ମିଶ୍ରଣ । [ ବନ୍ଧକ ।
**Mortgage**, *v*. ବନ୍ଧକ ଦେବା; *n*.
**Mortgagee**, *n*. ବନ୍ଧକଗ୍ରହୀତା, ମହାଜନ । [ ଖାତକ ।
**Mortgager**, *n*. ବନ୍ଧକଦାତା,
**Mortification**, *n*. ଅପମାନ, କ୍ଷୋଭ । [ କ୍ଷୁବ୍ଧ କରିବା ।
**Mortify**, *v*. ଅପମାନିତ କରିବା,
**Mortuary**, *n*. ଶ୍ମଶାନ, ସମାଧି ।
**Mosaic**, *a*. ନାନାବର୍ଣ୍ଣର ପ୍ରସ୍ତରଖଚିତ ।
**Mosque**, *n*. ମସଜିଦ, ପ୍ରାର୍ଥନାମନ୍ଦିର ।
**Mosquito**, *n*. ମଶକ, ମଶା ।
**Mosquito-net**, *n*. ମଶାରି ।
**Moss**, *n*. ଶୈବାଳ, ଶିଉଳି ।
**Mossy**, *a*. ଶୈବାଳାଚ୍ଛାଦିତ ।
**Most**, *a*. ଅଧିକତମ, ସର୍ବାଧିକ ।
**Mostly**, *ad*. ପ୍ରାୟଶଃ, ସାଧାରଣତଃ ।
**Moth**, *n*. ପତଙ୍ଗ, କୀଟ ।
**Moth-eaten**, *a*. କୀଟଦଷ୍ଟ ।
**Mother**, *n*. ମାତା, ଜନନୀ ।
**Motherhood**, *n*. ମାତୃତ୍ୱ ।

Mother-in-law, *n.* ଶ୍ୱଶ୍ରୂ, ଶାଶୂ ।
Motherly, *a.* ମାତୃତୁଲ୍ୟ, ମାତୃସୁଲଭ ।
Motion, *n.* ଗତି, ପ୍ରସ୍ତାବ । [ ଗତିସ୍ୱାନ ।
Motionless, *a.* ନିଶ୍ଚଳ, ସ୍ଥିର,
Motion-picture, *n.* ଚଳଚ୍ଚିତ୍ର ।
Motive, *n.* ଉଦ୍ଦେଶ୍ୟ, ଅଭିପ୍ରାୟ ।
Motivity, *n.* ଚଳତ୍‌ଶକ୍ତି ।
Motley, *a.* ଚିତ୍ରବିଚିତ୍ର, ବିବିଧ-ରଙ୍ଗବିଶିଷ୍ଟ । [ ଯନ୍ତ୍ରବିଶେଷ ।
Motor, *n.* ମୋଟରଗାଡ଼ି, ବୈଦ୍ୟୁତିକ
Motto, *n.* ନୀତିବାକ୍ୟ ।
Mould, *n.* ଛାଞ୍ଚ; *v.* ଛାଞ୍ଚରେ ଢାଳିବା, ଗଠନ କରିବା ।
Mound, *n.* ମୃତ୍ତିକାସ୍ତୂପ, ବନ୍ଧ ।
Mount, *v.* ଆରୋହଣ କରିବା; *n.* ଉଚ୍ଚ ପର୍ବତ ।
Mountain, *n.* ପର୍ବତ ।
Mountaineer, *n.* ପର୍ବତନିବାସୀ, ପାହାଡ଼ିଆ ଲୋକ, ପର୍ବତ ଆରୋହଣକାରୀ ।
Mountainous, *a.* ପାର୍ବତ୍ୟ, ପର୍ବତମୟ ।
Mourn, *v.* ଶୋକ କରିବା ।
Mourner, *n.* ଶୋକ ପ୍ରକାଶକାରୀ ।
Mournful, *a.* ଶୋକାକୁଳ, ଶୋକଜନକ, ବିଳାପପୂର୍ଣ୍ଣ ।
Mournfully, *ad.* ଶୋକପୂର୍ବକ ।
Mourning, *n.* ଶୋକପ୍ରକାଶ ।
Mouse, *n.* ମୂଷିକ, ମୂଷା ।
Moustache, Mustache, *n.* ମୁଛ, ଦାଢ଼ି । [ ମୁହାଣ ।
Mouth, *n.* ମୁଖ, ମୁଖଗହ୍ୱର, (ନଦୀର)
Mouthful, *n.* ଏକକଳ, ଗ୍ରାସ, କବଳ ।
Moveable, Movable, *a.* ଅସ୍ଥାବର, ଚଳନ୍ତ, ଚଳନଶୀଳ । [ ଚଳିବା ।
Move, *v.* ଆଗତ କରିବା, ଘୁଞ୍ଚିବା,
Mover, *n.* ପ୍ରସ୍ତାବକ, ଚାଳକ ।
Movement, *n.* ଗତି, ଚଳନ, ଆନ୍ଦୋଳନ ।
Mow, *v.* ଶସ୍ୟ କାଟିବା ।
Much, *a.* ଯଥେଷ୍ଟ, ପ୍ରଚୁର, ବହୁଳ ।
Mucous, *a.* ଶ୍ଳେଷ୍ମାଯୁକ୍ତ, ଅଠାଳିଆ ।
Mucus, *n.* ଶ୍ଳେଷ୍ମା, କ୍ଳେଦ, ଆମ ।
Mud, *n.* କାଦୁଅ, ପଙ୍କ । [ ଗୋଳେଇବା ।
Muddle, *v.* ଗୋଳମାଳ କରିବା,
Muddy, *a.* କର୍ଦ୍ଦମାକ୍ତ, ପଙ୍କିଳ ।
Muffle, *v.* ଆବୃତ କରିବା ।
Muffler, *n.* ମୁଖାବରଣ, ଅବଗୁଣ୍ଠନ ।
Mug, *n.* ପାନପାତ୍ର, ଜଳପାତ୍ର ।
Mulberry, *n.* ତୁତ ଗଛ ।
Mule, *n.* ଖଚର, ଅଶ୍ୱତର । [ ପ୍ରକାର ।
Multifarious, *a.* ବିବିଧ, ବହୁ-
Multilateral, *a.* ବହୁପାର୍ଶ୍ୱବିଶିଷ୍ଟ ।
Multiped, *n.* ବହୁପଦ ପ୍ରାଣୀ ।
Multiple, *n.* ଗୁଣିତକ ।
Multiplicand, *n.* ଗୁଣ୍ୟ ସଂଖ୍ୟା ।
Multiplication, *n.* ଗୁଣନ, ବୃଦ୍ଧି ।

Quail, *n.* ପକ୍ଷୀବିଶେଷ; *v.* ଭଗ୍ନୋତ୍ସାହ ହେବା । [ ବିସ୍ମୟଜନକ ।

Quaint, *a.* ଅସାଧାରଣ, ଅଦ୍ଭୁତ,

Quaintly, *ad.* ଅଦ୍ଭୁତଭାବରେ ।

Quake, *v.* କମ୍ପିବା, ଥରିବା; *n.* କମ୍ପନ ।

Qualification, *n.* ଯୋଗ୍ୟତା ।

Qualify, *v.* ବିଶେଷିତ କରିବା, ଯୋଗ୍ୟ ହେବା । [ ସମ୍ବନ୍ଧୀୟ ।

Qualitative, *a.* ଗୁଣାତ୍ମକ, ଗୁଣ-

Quality, *n.* ଗୁଣ, ପ୍ରକୃତି, ସ୍ୱଭାବ ।

Qualm, *n.* ବମନେଚ୍ଛା, ବିବେକର ଦଂଶନ, ମନସ୍ତାପ ।

Quandary, *n.* ସଙ୍କଟ, ଦ୍ୱନ୍ଦ୍ୱ, ଦ୍ୱିଧା ।

Quantitative, *a.* ପରିମାଣାତ୍ମକ, ପରିମାଣସମ୍ବନ୍ଧୀୟ ।

Quantity, *n.* ପରିମାଣ, ସଂଖ୍ୟା ।

Quantum, *n.* ଅଂଶ, ଭାଗ, ମାତ୍ରା, ଆବଶ୍ୟକ ପରିମାଣ ।

Quarantine, *n.* ସଂକ୍ରାମକ ରୋଗ ବ୍ୟାପିଥିବା ଦେଶର ଯାତ୍ରୀମାନଙ୍କୁ ଘାଟ ବା ବନ୍ଦରରେ ପ୍ରବେଶ କରିବାକୁ ନିଷେଧାଦେଶ; *v.* ସଂକ୍ରାମକ ରୋଗ ଆଶଙ୍କାରେ ଜାହାଜକୁ ପ୍ରବେଶ-ନିଷେଧ କରିବା । [ ବିବାଦ ।

Quarrel, *v.* କଳହ କରିବା; *n.* କଳହ,

Quarrelsome, *a.* କଳହପ୍ରିୟ ।

Quarry, *v.* ପଥରଖଣି; *v.* ଖଣିରୁ ପଥର ଆଦି ବାହାର କରିବା ।

Quart, *n.* ଏକ ଗ୍ୟାଲନର ଚତୁର୍ଥାଂଶ ।

Quarter, *n.* ଚତୁର୍ଥାଂଶ, ଏକ ହନ୍ଦରର ଚତୁର୍ଥାଂଶ (୨୮ ପାଉଣ୍ଡ), ଦିଗ, ବାସଗୃହ; *v.* ଚାରିଭାଗ କରିବା, ଅବସ୍ଥାପିତ କରିବା ।

Quarterly, *a.* ତ୍ରୈମାସିକ; *n.* ତ୍ରୈମାସିକ ପତ୍ରିକା ।

Quarters, *n.* (*pl.*) ବାସଗୃହ ।

Quarto, *n.* ଅର୍ଦ୍ଧକ ଚାରି ପତ୍ରରେ ଭଙ୍ଗା ହୋଇଥିବା ବହି ।

Quartz, *n.* ସ୍ଫଟିକବିଶେଷ । [ କରିବା ।

Quash, *v.* ରଦ୍ଦ କରିବା, ଦମନ

Quatrain, *n.* ଚତୁଷ୍ପଦ ଶ୍ଳୋକ, ଚଉପଦୀ । [ ଗାଇବା; *n.* କମ୍ପିତସ୍ୱର ।

Quaver, *v.* କମ୍ପିତ ସ୍ୱରରେ କହିବା ବା

Quay, *n.* ଜାହାଜର ମାଲ ନେବା ଆଣିବା ଘାଟ, ଜେଟି ।

Queen, *n.* ରାଣୀ, ରାଜମହିଷୀ ।

Queenly, *a.* ରାଣୀତୁଲ୍ୟ, ରାଣୀଙ୍କ ଉପଯୁକ୍ତ । [ ଅସାଧାରଣ ।

Queer, *a.* ଅଦ୍ଭୁତ, ବିଚିତ୍ର, ଅପରୂପ,

Queerly, *ad.* ବିଚିତ୍ରଭାବରେ ।

Quell, *v.* ଦମନ କରିବା, ଉଚ୍ଛେଦ କରିବା । [ ଲିଭାଇବା ।

Quench, *v.* ନିବାରଣ କରିବା,

Query, *n.* ପ୍ରଶ୍ନ, ଜିଜ୍ଞାସ୍ୟ ବିଷୟ; *v.* ପଚାରିବା, ପ୍ରଶ୍ନ କରିବା ।

Quest, *n.* ଅନୁସନ୍ଧାନ, ଅନ୍ୱେଷଣ ।

Question, *n.* ପ୍ରଶ୍ନ, ଜିଜ୍ଞାସ୍ୟ ବିଷୟ; *v.* ପ୍ରଶ୍ନ କରିବା, ବାଦାନୁବାଦ କରିବା ।

Questionable, *a.* ସନ୍ଦେହଜନକ, ଅନଶ୍ଚିତ, ବିବାଦମାନ ।
Questioner, *n.* ପ୍ରଶ୍ନକର୍ତ୍ତା ।
Questionnaire, *n.* ପ୍ରଶ୍ନାବଳୀ ।
Queue, *n.* ପଛକୁ ପଛ ଧାଡ଼ିରେ ଥିବା ଲୋକେ; *v.* ପଛକୁ ପଛ ଧାଡ଼ିବାନ୍ଧିବା ।
Quibble, *n.* ଛଳୋକ୍ତି, ଶ୍ଳେଷବାକ୍ୟ ।
Quick, *a.* କ୍ଷିପ୍ର, ବେଗବାନ୍ ।
Quicken, *v.* ବେଗାନ୍ୱିତ କରିବା ।
Quicklime, *n.* କଳିଚୂନ ।
Quickly, *ad.* ଶୀଘ୍ର, ଚଞ୍ଚଳ, ବେଗରେ ।
Quickness, *n.* କ୍ଷିପ୍ରତା, ତ୍ୱରା ।
Quicksand, *n.* ଚୋରାବାଲି ।
Quicksilver, *n.* ପାରଦ, ପାରା ।
Quiescence, *n.* ବିରାମ, ଶାନ୍ତି ।
Quiescent, *a.* ଶାନ୍ତ, ସ୍ଥିର ।
Quiet, *a.* ନୀରବ, ଶାନ୍ତ; *v.* ଶାନ୍ତ କରିବା ।
Quietly, *ad.* ଧୀରସ୍ୱରରେ, ନୀରବରେ । [ ସ୍ଥିରତା ।
Quietness, *n* ନୀରବତା, ଶାନ୍ତି,
Quietude, *n.* ଶାନ୍ତି, ନିରୁଦ୍‌ବେଗ ।
Quietus, *n.* ବିଶ୍ରାମ, ବିରାମ, ଚରଣାନ୍ତ ।
Quill, *n.* ପକ୍ଷୀର ପର, ପରକଲମ ।
Quilt, *n.* ରେଜେଇ, ଗଦି । [ କ୍ଷେତ୍ର ।
Quindecagon, *n.* ପଞ୍ଚଦଶଭୁଜ
Quinine, *n.* ଜ୍ୱରନିବାରକ ଔଷଧ-ବିଶେଷ, କୁଇନାଇନ ।
Quinquennial, *a.* ପଞ୍ଚବାର୍ଷିକ ।
Quintal, *n.* ଏକଶହ କିଲୋଗ୍ରାମ ।
Quintessence, *n.* ସାର, ମର୍ମ, ସାରତତ୍ତ୍ୱ । [ କରିବା ।
Quip, *n.* ଥଟ୍ଟା, ପରିହାସ; *v.* ପରିହାସ
Quire, *n.* (କାଗଜର) ଦସ୍ତା, ୨୪ ଫର୍ଦ୍ଦ ।
Quit, *v.* ଛାଡ଼ିଯିବା, ପରିତ୍ୟାଗ କରିବା ।
Quite, *ad.* ସର୍ବଥା, ସମ୍ପୂର୍ଣ୍ଣରୂପେ ।
Quits, *ad.* ସମାନ ସମାନ, ବାକିରେ ସମାନ ହେବା । [ ପରିଶୋଧ ।
Quittance, *n.* ଋଣମୁକ୍ତି, ଫାରଖତି,
Quiver, *n.* ତୂଣୀର, ଶରମୂଣା; *v.* କମ୍ପିବା, ଥରିବା ।
Quixotic, *a.* ଅଦ୍ଭୁତ, ବିଚିତ୍ର ।
Quiz, *n.* ସମସ୍ୟା, ପ୍ରହେଳିକା, ମୌଖିକ ପରୀକ୍ଷା; *v.* ହତବୁଦ୍ଧି କରିବା, ଉପହାସ କରିବା । [ ନ୍ୟୂନତମ ସଭ୍ୟସଂଖ୍ୟା ।
Quorum, *n.* ଅଧିବେଶନ ନିମନ୍ତେ
Quota, *n.* ଅଂଶ, ଭାଗ, ନିର୍ଦ୍ଦିଷ୍ଟ ପରିମାଣ, ଆନୁପାତିକ ଅଂଶ ।
Quotation, *n.* ଉଦ୍ଧୃତ, ଦରତାଲିକା
Quotation mark, *n.* ଉଦ୍ଧୃତ ଚିହ୍ନ ( " " ) ।
Quote, *v.* ଅନ୍ୟର ଲେଖାରୁ ଉଦ୍ଧାର କରିବା, ଦର ଜଣାଇବା ।
Quotient, *n.* ଭାଗଫଳ ।

# R

Rabbit, *n.* ଶଶକ, ଠେକୁଆ ।
Rabble, *n.* ଇତର ଲୋକଗଣ, ନୀଚ ସମାଜ, ଲୋକଗହଳ ।
Rabid, *a.* ପାଗଳ, ଉନ୍ମତ୍ତ, କ୍ରୋଧାନ୍ଧ ।
Rabidity, *n.* ପାଗଳାମି, କ୍ଷିପ୍ତତା ।
Rabidly, *ad.* କ୍ଷିପ୍ତପ୍ରାୟ, ପାଗଳପରି
Rabidness, Rabies, *n.* କୁକୁରର କ୍ଷିପ୍ତତା, ଜଳାତଙ୍କ ରୋଗ ।
Race, *n.* ଜାତି, କୁଳ, ବଂଶ, ଦୌଡ଼ ପ୍ରତିଯୋଗିତା; *v.* ଦୌଡ଼ିବା, ଦୌଡ଼ାଇବା । [ ପାଇଁ ପଡ଼ିଆ ।
Race course, *n.* ଘୋଡ଼ାଦୌଡ଼
Race-hatred, *n.* ଜାତିଗତ ବିଦ୍ୱେଷ
Race-horse, *n.* ଦୌଡ଼ ପ୍ରତିଯୋଗିତା ପାଇଁ ଶିକ୍ଷିତ ଘୋଡ଼ା ।
Racial, *a.* ଜାତୀୟ, ଜାତିଗତ ।
Racialism, *n.* ଜାତିଗତ ଭେଦଭାବ ।
Raciness, *n.* ରସାଳତା, ସୁସ୍ୱାଦ ।
Rack, *n.* ତୀବ୍ର ଯନ୍ତ୍ରଣା, ଜିନିଷ ରଖିବାର ଆଲ୍ନା; *v.* ଯନ୍ତ୍ରଣା ଦେବା ।
Racket, *n.* କୋଳାହଳ, ଗୋଳମାଳ ।
Racket, Raquet, *n.* ଟେନିସ୍ ଖେଳରେ ବ୍ୟବହୃତ ର୍‍ୟାକେଟ ।
Racy, *a.* ସରସ, ସୁସ୍ୱାଦୁ, ମନୋହର ।
Radiance, *n.* ଦୀପ୍ତି, ଉଜ୍ଜ୍ୱଳତା, ପ୍ରଭା ।
Radiant, *a.* ଦୀପ୍ତିମାନ୍, ଉଜ୍ଜ୍ୱଳ, ଆଲୋକମୟ, କିରଣବିକୀର୍ଣ୍ଣକାରୀ ।
Radiate, *v.* ରଶ୍ମି ବିକୀର୍ଣ୍ଣ କରିବା, ଏକ ବିନ୍ଦୁରୁ ଆଲୋକ ବା ତାପ ବିକୀର୍ଣ୍ଣ କରିବା । [ ବିକିରଣ ।
Radiation, *n.* ଆଲୋକ ବା ତାପର
Radiator, *n.* ତାପ ଓ ଆଲୋକ ବିକୀର୍ଣ୍ଣକାରୀ ପଦାର୍ଥ ।
Radical, *a.* ଆମୂଳ, ମୌଳିକ ।
Radically, *ad.* ମୂଳରୁ, ଆମୂଳ ।
Radio, *n.* ବେତାର ଯନ୍ତ୍ର; *v.* ବେତାର ଯନ୍ତ୍ର ଦ୍ୱାରା ଶବ୍ଦ ପ୍ରେରଣ କରିବା ।
Radioactive, *a.* ତେଜସ୍କ୍ରିୟ ।
Radioactivity, *n.* ରେଡ଼ିଅମ ପ୍ରଭୃତିରେ ଥିବା ଅସ୍ୱଚ୍ଛପଦାର୍ଥ-ଭେଦକାରୀ ରଶ୍ମି ବିକିରଣ କରିବା ଶକ୍ତି, ତେଜସ୍କ୍ରିୟତା ।
Radiography, *n.* ଏକ୍ସ-ରେ ଦ୍ୱାରା ଛବି ଗ୍ରହଣ । [ ପ୍ରେରିତ ସମ୍ବାଦ ।
Radiogram, *n.* ରେଡ଼ିଓଦ୍ୱାରା
Radiology, *n.* ରେଡ଼ିଅମ ପ୍ରଭୃତିରେ ଥିବା ରଶ୍ମିବିକିରଣକାରୀ ଶକ୍ତିବିଷୟକ ବିଜ୍ଞାନ ।
Radio-telegraph, *n.* ବେତାର ସାହାଯ୍ୟରେ ସାଙ୍କେତିକ ଚିହ୍ନ ଆକାରରେ ସମ୍ବାଦ ପ୍ରେରଣ କରିବାର ଯନ୍ତ୍ର ।

**Radio-telephone**, *n.* ବେତାର ସାହାଯ୍ୟରେ ଶବ୍ଦ ଆକାରରେ ସମ୍ବାଦ ପ୍ରେରଣ କରିବାର ଯନ୍ତ୍ର ।
**Radiotherapy**, *n.* ଏକ୍ସ-ରେ ସାହାଯ୍ୟରେ ରୋଗର ଚିକିତ୍ସା ।
**Radish**, *n.* ମୂଳକ, ମୂଳା ।
**Radium**, *n.* ତେଜଷ୍କ୍ରିୟ ଧାତୁବିଶେଷ ।
**Radius**, *n.* ବୃତ୍ତର ବ୍ୟାସାର୍ଦ୍ଧ (*pl.* Radii), ବାହୁର ହାଡ଼ ।
**Radix**, *n.* ମୂଳ (*pl.* Radices) ।
**Raffle**, *n.* ଲଟେରି, ସୂର୍ତ୍ତି ।
**Raft**, *n.* ଭେଲା; *v.* ଭେଲାରେ ଜିନିଷ ପଠାଇବା, ଭେଲାରେ ପାର ହେବା ।
**Rafter**, *n.* ଘରର ଶେଣୀ, ବରଗା ।
**Rag**, *n.* ଛିଣ୍ଡାକନା; *v.* ପୀଡ଼ା ଦେବା ।
**Rage**, *n.* କ୍ରୋଧ, କୋପ, ରାଗ; *v.* ରାଗ କରିବା, କ୍ରୋଧାନ୍ୱିତ ହେବା ।
**Ragged**, *a.* ଛିନ୍ନବସ୍ତ୍ର-ପରିହିତ ।
**Raid**, *n.* ସହସା ଆକ୍ରମଣ, ଲୁଣ୍ଠନ; *v.* ସହସା ଆକ୍ରମଣ କରିବା, ଲୁଟି କରିବା ।
**Rail**, *n.* ଲୌହବର୍ତ୍ତ୍ମ, ଲୁହାଧାରଣା, ରେଲ; *v.* ଗାଳିଦେବା ।
**Raillery**, *n.* ଥଟ୍ଟାର ବାକ୍ୟ, ଗାଳି, ଉପହାସ, ପରିହାସ କଥା ।
**Railway**, *n.* ରେଲପଥ, ଲୌହବର୍ତ୍ତ୍ମ ।
**Raiment**, *n.* ପରିଚ୍ଛଦ, ପୋଷାକ ।
**Rain**, *n.* ବୃଷ୍ଟି, ବର୍ଷା; *v.* ବର୍ଷିବା ।
**Rainbow**, *n.* ଇନ୍ଦ୍ରଧନୁ ।
**Rainfall**, *n.* ବୃଷ୍ଟିପାତ । [ଯନ୍ତ୍ର ।
**Rain-gauge**, *n.* ବୃଷ୍ଟିପରିମାପକ
**Rainless**, *a.* ବୃଷ୍ଟିହୀନ, ବର୍ଷାଶୂନ୍ୟ ।
**Raise**, *v.* ଉଠାଇବା, ଟେକିବା ।
**Raisin**, *n.* କିସ୍‌ମିସ୍, ଶୁଖିଲା ଅଙ୍ଗୁର ।
**Rake**, *n.* ବିଦା, ମାଟି ସମାନ କରିବା ଯନ୍ତ୍ର, ସ୍ୱାନଚରିତ୍ର ଲୋକ ।
**Rakish**, *a.* କାମୁକ, ଭ୍ରଷ୍ଟଚରିତ୍ର ।
**Rally**, *n.* ସମ୍ମେଳନ, ପୁନର୍ମିଳନ; *v.* ଏକତ୍ର ହେବା, ପୁନର୍ମିଳିତ ହେବା ।
**Ram**, *n.* ମେଷ, ମେଣ୍ଢା; *v.* ଧୂର୍ମୁଷରେ ପିଟିବା, ବଳପୂର୍ବକ ଠେଲିବା ।
**Ramble**, *a.* ନିରୁଦ୍ଦେଶ୍ୟଭାବରେ ଭ୍ରମଣ କରିବା; *n.* ନିରୁଦ୍ଦେଶ୍ୟଭ୍ରମଣ ।
**Rambler**, *n.* ପର୍ଯ୍ୟଟକ, ଭ୍ରମଣକାରୀ ।
**Rambling**, *a.* ଇତସ୍ତତଃ, ନିରୁଦ୍ଦିଷ୍ଟ, ଭ୍ରମଣଶୀଳ । [ରୂପେ ବିସ୍ତାର ।
**Ramification**, *n.* ଶାଖାପ୍ରଶାଖା-
**Ramify**, *v.* ଶାଖାରୂପେ ବାହାରିବା ।
**Rammer**, *n.* ଧୂର୍ମୁଷ, ମୁଗୁର ।
**Rampant**, *a.* ଅନିୟନ୍ତ୍ରିତ, ବର୍ଦ୍ଧନଶୀଳ । [ପ୍ରାକାର ।
**Rampart**, *n.* ଦୁର୍ଗପ୍ରାଚୀର,
**Ramshackle**, *a.* ଭୂପତିତ, ବେମରାମତ; *v.* ଲୁଟି କରିବା ।
**Ramshackled**, *a.* ପତନୋନ୍ମୁଖ ।

**Ranch**, *n.* ପଶ୍ଚିମ-ଅମେରିକାର ବସ୍ତୀର୍ଣ୍ଣ ପଶୁଚରଣ ଭୂମି; *v.* ପଶୁଚରଣ କ୍ଷେତ୍ରରେ କାର୍ଯ୍ୟ କରିବା ।

**Rancid**, *a.* ଅମ୍ଳ, ଅରୁଚିକର ।

**Rancorous**, *a.* ଈର୍ଷାପରାୟଣ, କଟୁ ।

**Rancour**, *n.* ବିଦ୍ୱେଷ, ଈର୍ଷା, ଶତ୍ରୁତା । [ *n.* ଆକସ୍ମିକତା ।

**Random**, *a.* ଆକସ୍ମିକ, ଅନିୟନ୍ତ୍ରିତ;

**Range**, *n.* ଶ୍ରେଣୀ, ପଙ୍କ୍ତି, ସୀମା ।

**Ranger**, *n.* ଭ୍ରମଣକାରୀ, ବନପାଳ ।

**Rank**, *n.* ଶ୍ରେଣୀ, ବର୍ଗ, ପ୍ରତିଷ୍ଠା, ଗୌରବ; *v.* ଶ୍ରେଣୀବଦ୍ଧ କରିବା; *a.* ଦୁର୍ଗନ୍ଧ, ପଚା । [ କ୍ରୁଦ୍ଧ ହେବା ।

**Rankle**, *v.* ଉତ୍ତେଜିତ ହେବା,

**Rankness**, *n.* ତୀବ୍ରତା, ଉତ୍କଟତା, ଦୁର୍ଗନ୍ଧ । [ ଅନୁସନ୍ଧାନ କରିବା ।

**Ransack**, *v.* ଲୁଣ୍ଠନ କରିବା,

**Ransom**, *n.* ନିଷ୍କ୍ରୟ, ମୁକ୍ତି ନିମନ୍ତେ ଦତ୍ତ ଧନ; *v.* ଧନ ଦେଇ ମୁକ୍ତ କରିବା ।

**Rant**, *v.* ପ୍ରଳାପ କରିବା; *n.* ନିରର୍ଥକ ଗଳ୍ପ, ପ୍ରଳାପ ।

**Rap**, *n.* ଆଘାତ; *v.* ଆଘାତ କରିବା ।

**Rapacious**, *a.* ଅତିଲୋଭୀ, ଲୁଣ୍ଠନକାରୀ

**Rapaciousness, Rapacity**, *n.* ଅତିଲୋଭ, ଅପହରଣପ୍ରବୃତ୍ତି ।

**Rape**, *v.* ବଳାତ୍କାରରେ ନାରୀହରଣ କରିବା; *n.* ବଳପୂର୍ବକ ନାରୀହରଣ ।

**Rapid**, *a.* ଶୀଘ୍ର, ଦ୍ରୁତ, କ୍ଷିପ୍ର ।

**Rapidity**, *n.* ତ୍ୱରା, ବେଗ, କ୍ଷିପ୍ରତା ।

**Rapidly**, *ad.* ସତ୍ୱର, ବେଗରେ, କ୍ଷିପ୍ରଭାବରେ, ଅଳ୍ପକାଳ ମଧ୍ୟରେ ।

**Rapier**, *n.* ଛୁରୀ, କଟାରି ।

**Rapine**, *n.* ଲୁଣ୍ଠନ, ଲୁଟତରାଜ ।

**Rapt**, *a.* ଅତ୍ୟାନନ୍ଦିତ, ଅତି ହୃଷ୍ଟ ।

**Rapture**, *n.* ପ୍ରହର୍ଷ, ଅତି ଆନନ୍ଦ, ଉଲ୍ଲାସ । | ଆନନ୍ଦପୂର୍ଣ୍ଣ ।

**Rapturous**, *a.* ହର୍ଷୋତ୍ଫୁଲ୍ଲ,

**Rapturously**, *ad.* ପରମ ଆନନ୍ଦରେ, ଆହ୍ଲାଦରେ ।

**Rare**, *a.* ଦୁର୍ଲଭ, ଅପୂର୍ବ, ବିରଳ ।

**Rarefy**, *v.* ପତଳା କରିବା ବା ହେବା ।

**Rarely**, *ad.* କ୍ୱଚିତ୍, ପ୍ରାୟ ନୁହେଁ ।

**Rarity**, *n.* ବିରଳତା, ଦୁର୍ଲଭ ବସ୍ତୁ ।

**Rascal**, *n.* ଦୁଷ୍ଟ ଲୋକ, ଦୁର୍ବୃତ୍ତ ବ୍ୟକ୍ତି ।

**Rascality**, *n.* ଦୁଷ୍ଟପଣ, ଦୁର୍ବୃତ୍ତ ।

**Rash**, *a.* ଅବିମୃଷ୍ୟକାରୀ, ଅବିବେକୀ, ତରତରିଆ; *n.* ଘିମିରି ।

**Rashly**, *ad.* ବିଚାରଶୂନ୍ୟଭାବରେ ।

**Rashness**, *n.* ଅବିମୃଷ୍ୟକାରିତା, ଅବିବେକିତା, ଦୁଃସାହସ ।

**Rat**, *n.* ମୂଷା, ଇନ୍ଦୁର ।

**Ratan, Rattan**, *n.* ବେଣ, ବେତ

**Rate**, *n.* ମୂଲ୍ୟ, ହାର, ଟିକସ, ଦର; *v.* ମୂଲ୍ୟ କରିବା, ଗାଳି ଦେବା ।

**Ratepayer**, *n.* କରଦାତା ।

**Rather**, *ad.* ବରଂ, ଅଧିକନ୍ତୁ ।

**Ratification**, *n.* ଦୃଢ଼ୀକରଣ, ସମ୍ମତପ୍ରଦାନ, ମଞ୍ଜୁର ।
**Ratify**, *v.* ଦୃଢ଼ କରିବା, ସ୍ୱୀକୃତ ଦେବା, ମଞ୍ଜୁର କରିବା ।
**Ratio**, *n.* ହାର, ଅନୁପାତ, ସମ୍ବନ୍ଧ ।
**Ration**, *n.* ନିରୂପିତ ଭୋଜ୍ୟବସ୍ତୁ ।
**Rational**, *a.* ବିବେକଶୀଳ, ନ୍ୟାଯ୍ୟ, ଯୁକ୍ତିଯୁକ୍ତ । [ ଯୁକ୍ତିପରମ୍ପରା ।
**Rationale**, *n.* ନୀତିଗତ ବ୍ୟାଖ୍ୟା,
**Rationalisation**, *n.* ଯୁକ୍ତିଗତ ବ୍ୟାଖ୍ୟାକରଣ ।
**Rationalise**, *v.* ନୀତିରେ ପ୍ରତିଷ୍ଠିତ କରିବା, ଯୁକ୍ତିସିଦ୍ଧ ବ୍ୟାଖ୍ୟା କରିବା ।
**Rationalism**, *n.* ହେତୁବାଦ ।
**Rationalist**, *n.* ହେତୁବାଦୀ ।
**Rationality**, *n.* ବିଚାରଶକ୍ତି, ବିବେକ ।
**Rationally**, *ad.* ବିଚାର ସହକାରେ ।
**Rattle**, *v.* ଖଡ଼୍‌ଖଡ଼୍ ଶବ୍ଦ କରିବା ।
**Ravage**, *v.* ଉପଦ୍ରବ କରିବା, ବିନାଶ କରିବା; *n.* ଉପଦ୍ରବ, ଧ୍ୱଂସ । [ କାରୀ ।
**Ravager**, *n.* ଉପଦ୍ରବକାରୀ, ଧ୍ୱଂସ-
**Rave**, *v.* ପ୍ରଳାପ କରିବା, ଉନ୍ମତ୍ତ ହେବା, ପାଗଳାମି କରିବା ।
**Ravel**, *v.* ଜଡ଼ିତ କରିବା, ଛନ୍ଦିବା ।
**Raven**, *n.* ଡାମରାକାଉ, ଦ୍ରୋଣକାକ ।
**Ravenous**, *a.* ଅତିକ୍ଷୁଧାର୍ତ୍ତ, ଔଦରିକ, ପେଟୁ ।
**Ravine**, *n.* କନ୍ଦର, ଦରି, ଗହ୍ୱର ।
**Raving**, *a.* ଉନ୍ମତ୍ତ, ପ୍ରଳାପୀ ।
**Ravish**, *v.* ବଳାତ୍କାରରେ ଉପଭୋଗ କରିବା, ମୋହିତ କରିବା ।
**Ravishing**, *a.* ମୋହକାରୀ; *n.* ଧର୍ଷଣ ।
**Ravishment**, *n.* ବଳାତ୍କାରରେ ଉପଭୋଗ, ସମ୍ମୋହନ ।
**Raw**, *a.* ଅପକ୍ୱ, ଅସିଦ୍ଧ, କଞ୍ଚା ।
**Rawness**, *n.* ଅପକ୍ୱତା, କଞ୍ଚା ଅବସ୍ଥା ।
**Ray**, *n.* କିରଣ, ରଶ୍ମି ।
**Raze**, *v.* ନିପାତ କରିବା, ଧ୍ୱଂସ କରିବା, ଭୂମିସାତ୍ କରିବା ।
**Razor**, *n.* କ୍ଷୁର । [ *n.* ସୀମା ।
**Reach**, *v.* ପହଞ୍ଚିବା, ପାଇବା;
**React**, *v.* ପ୍ରତିକ୍ରିୟା କରିବା, ପ୍ରତିଘାତ କରିବା ।
**Reaction**, *n.* ପ୍ରତିକ୍ରିୟା, ପ୍ରତିଘାତ ।
**Reactionary**, *a.* ପ୍ରତିକ୍ରିୟାଶୀଳ ।
**Read**, *v.* ଅଧ୍ୟୟନ କରିବା, ପଢ଼ିବା ।
**Readable**, *a.* ସୁପାଠ୍ୟ, ସରସ ।
**Reader**, *n.* ପାଠକ, ପଠନକାରୀ, ପାଠ୍ୟପୁସ୍ତକ । [ ପୂର୍ବକ, ଶୀଘ୍ର ।
**Readily**, *ad.* ସହଜରେ, ଇଚ୍ଛା-
**Readiness**, *n.* ଔତ୍ସୁକ୍ୟ, ଉତ୍ସାହ, ଇଚ୍ଛା, ଅବିଳମ୍ବ, ତତ୍ପରତା ।
**Readmission**, *n.* ପୁନଃପ୍ରବେଶ ।
**Readmit**, *v.* ପୁନଃପ୍ରବେଶ କରାଇବା ।
**Ready**, *a.* ପ୍ରସ୍ତୁତ, ସଜ୍ଜୀକୃତ, ନିଷ୍ପନ୍ନ ।
**Ready-made**, *a.* ପୂର୍ଣ୍ଣରୂପେ ପ୍ରସ୍ତୁତ ।

**Ready-wit**, *n.* ପ୍ରତ୍ୟୁତ୍ପନ୍ନମତିତ୍ୱ ।
**Real**, *a.* ବାସ୍ତବିକ, ପ୍ରକୃତ, ଅକୃତ୍ରିମ ।
**Realisation**, *n.* ସାଧନ, ସିଦ୍ଧି, ସମ୍ପାଦନ, ଆଦାୟ ।
**Realise, Realize**, *v.* ସାଧନ କରିବା, ପୂରଣ କରିବା, ଆଦାୟ କରିବା ।
**Realism**, *n.* ବାସ୍ତବବାଦ ।
**Realist**, *n.* ବାସ୍ତବବାଦୀ ।
**Realistic**, *a.* ବାସ୍ତବବାଦମୂଳକ ।
**Realistically**, *ad.* ବାସ୍ତବବାଦୀଭାବରେ । [ ତତ୍ତ୍ୱ ।
**Reality**, *n.* ସତ୍ୟତା, ଯାଥାର୍ଥ୍ୟ,
**Really**, *ad.* ବସ୍ତୁତଃ, ପ୍ରକୃତରେ, ଯଥାର୍ଥରେ ।
**Realm**, *n.* ବିଷୟ, ରାଜ୍ୟ, ପ୍ରଦେଶ ।
**Ream**, *n.* ୨୦ ଦସ୍ତା ପରିମାଣ ।
**Reanimate**, *v.* ପୁନର୍ଜୀବିତ କରିବା ।
**Reap**, *v.* ଫସଲ କାଟିବା, ଫଳ ପାଇବା ।
**Reaper**, *n.* ଶସ୍ୟକର୍ତ୍ତନକାରୀ ।
**Reappear**, *v.* ପୁଣି ଦେଖାଦେବା, ପୁନରାୟ ଦୃଷ୍ଟିଗୋଚର ହେବା ।
**Reappearance**, *n.* ପୁନରାବିର୍ଭାବ ।
**Reappoint**, *v.* ପୁନର୍ନିଯୁକ୍ତ କରିବା ।
**Reappointment**, *n.* ପୁନର୍ନିଯୁକ୍ତି ।
**Reappropriate**, *v.* ପୁନରାୟ ବିନିଯୋଗ କରିବା । [ ବିନିଯୋଗ ।
**Reappropriation**, *n.* ପୁନ-
**Rear**, *n.* ପୃଷ୍ଠ, ପୃଷ୍ଠଭାଗ; *v.* ଉତ୍ଥିତ କରିବା, ଲାଳନପାଳନ କରିବା ।
**Rear-guard**, *n.* ପୃଷ୍ଠରକ୍ଷୀ ସୈନ୍ୟ ।
**Reason**, *n.* କାରଣ, ବିବେକ, ତର୍କଶକ୍ତି; *v.* ତର୍କ କରିବା । [ ବିଚାରବନ୍ତ, ଉଚିତ ।
**Reasonable**, *a.* ଯୁକ୍ତିଯୁକ୍ତ,
**Reasonableness**, *n.* ଯୁକ୍ତିଯୁକ୍ତତା, ଔଚିତ୍ୟ, ଯୁକ୍ତି । [ ଯଥୋଚିତଭାବରେ ।
**Reasonably**, *ad.* ନ୍ୟାୟତଃ,
**Reasoning**, *n.* ବିଚାର, ବିତର୍କ, ନ୍ୟାୟ । [ ହେବା ।
**Reassemble**, *v.* ପୁନର୍ବାର ଏକତ୍ର
**Reassert**, *v.* ପୁନର୍ବାର ଦୃଢ଼ଭାବରେ କହିବା । [ ଦେବା ।
**Reassure**, *v.* ପୁଣି ଦୃଢ଼ ଜବାବ
**Rebate**, *n.* କମିଶନ, ଛାଡ଼; *v.* ଛାଡ଼ ଦେବା, ଅନ୍ତର କରିବା ।
**Rebel**, *n.* ରାଜଦ୍ରୋହୀ, ବିଦ୍ରୋହୀ; *v.* ରାଜଦ୍ରୋହୀ ହେବା, ବିଦ୍ରୋହ କରିବା ।
**Rebellion**, *n.* ବିଦ୍ରୋହ, ରାଜଦ୍ରୋହ ।
**Rebellious**, *a.* ରାଜବିଦ୍ରୋହୀ ।
**Rebirth**, *n.* ପୁନର୍ଜନ୍ମ ।
**Rebound**, *v.* ଉତ୍ପତିତ ହେବା , ପଡ଼ି ଉପରକୁ ଉଠିବା ।
**Rebuff**, *v.* ପରାଭୂତ କରିବା, ପ୍ରତିହତ କରିବା; *n.* ପ୍ରତିଘାତ, ପରାଭବ ।
**Rebuild**, *v.* ପୁନର୍ଗଠନ କରିବା ।

**Rebuke**, *v.* ନିନ୍ଦା କରିବା, ଗାଳି ଦେବା; *n.* ଗାଳି, ଭର୍ତ୍ସନା, ନିନ୍ଦା ।

**Rebut**, *v.* ଖଣ୍ଡନ କରିବା ।

**Recall**, *v.* ପ୍ରତ୍ୟାନୟନ କରିବା, ଫେରାଇ ଆଣିବା, ସ୍ମରଣ କରିବା; *n.* ପ୍ରତ୍ୟାନୟନ, ପ୍ରତ୍ୟାହାର ।

**Recant**, *v.* ପ୍ରତ୍ୟାଖ୍ୟାନ କରିବା, ଖଣ୍ଡନ କରିବା, ଫେରିଯିବା ।

**Recantation**, *n.* ପ୍ରତ୍ୟାଖ୍ୟାନ, ଖଣ୍ଡନ, ଲୋପ । [ ବର୍ଣ୍ଣନା କରିବା ।

**Recapitulate**, *v.* ସଂକ୍ଷେପରେ

**Recapitulation**, *n.* ସଂକ୍ଷିପ୍ତ ବର୍ଣ୍ଣନ ।

**Recapture**, *v.* ପୁନର୍ଗ୍ରହଣ କରିବା; *n.* ପୁନରବରୋଧ ।

**Recast**, *v.* ନୂଆ ଛାଞ୍ଚରେ ପକାଇବା ।

**Recede**, *v.* ଅପସୃତ ହେବା, ପଛକୁ ହଟିଯିବା । [ ସ୍ୱୀକାର ପତ୍ର, ରସିଦ ।

**Receipt**, *n.* ପ୍ରାପ୍ତି, ଗ୍ରହଣ, ପ୍ରାପ୍ତି-

**Receivable**, *a.* ଗ୍ରାହ୍ୟ, ପ୍ରାପ୍ୟ, ସ୍ୱୀକାର୍ଯ୍ୟ । [ ଗ୍ରହଣ କରିବା ।

**Receive**, *v.* ପ୍ରାପ୍ତ ହେବା, ପାଇବା,

**Receiver**, *n.* ଗ୍ରହୀତା, ଯେ ପାଏ ବା ଗ୍ରହଣ କରେ ।

**Recency**, *n.* ଆଧୁନିକତା, ନୂତନତା ।

**Recent**, *a.* ନୂତନ, ଅପ୍ରାଚୀନ, ସାମ୍ପ୍ରତିକ । [ ନିକଟରେ, ଅଧୁନା ।

**Recently**, *ad.* ଅଳ୍ପକାଳ ପୂର୍ବେ,

**Recentness**, *n.* ଆଧୁନିକତା ।

**Receptacle**, *n.* ଆଧାର, ପାତ୍ର ।

**Reception**, *n.* ଗ୍ରହଣ, ସତ୍କାର, ଅଭ୍ୟର୍ଥନା, ସମ୍ମାନ, ଆଦର । [ କ୍ଷମ ।

**Receptive**, *a.* ଗ୍ରହଣଶୀଳ, ଗ୍ରହଣ-

**Recess**, *n.* ନିଭୃତ ସ୍ଥାନ, ବିଶ୍ରାମସ୍ଥଳ, ବିରାମ, ବିଶ୍ରାମକାଳ । [ପତନ, ପଶ୍ଚାଦ୍‌ଗତି ।

**Recession**, *n.* ପ୍ରତ୍ୟାବର୍ତ୍ତନ, ଅପ-

**Rechristen**, *v.* ନୂଆ ନାମ ଦେବା ।

**Recipe**, *n.* ଔଷଧ-ବ୍ୟବସ୍ଥାପତ୍ର ।

**Recipience, Recipiency**, *n.* ପ୍ରାପ୍ତି, ଗ୍ରହଣକାରିତା ।

**Recipient**, *n.* ପ୍ରତିଗ୍ରାହୀ, ଗ୍ରହୀତା ।

**Reciprocal**, *a.* ଅନ୍ୟୋନ୍ୟ, ପାରସ୍ପରିକ । [ ମଧ୍ୟରେ ।

**Reciprocally**, *ad.* ପରସ୍ପର

**Reciprocate**, *v.* ପରସ୍ପର ବିନିମୟ ସୂତ୍ରରେ କାର୍ଯ୍ୟ କରିବା । [ କାର୍ଯ୍ୟ ।

**Reciprocation**, *n.* ପରସ୍ପରକୃତ

**Reciprocity**, *n.* ବିନିମୟ, ପରସ୍ପର ବାଧ୍ୟତା, ପରସ୍ପର ଆଦାନପ୍ରଦାନ ।

**Recital**, *n.* ଆବୃତ୍ତି, ଆବୃତ୍ତ ବିଷୟ ।

**Recitation**, *n.* ଆବୃତ୍ତି ।

**Recite**, *v.* ଆବୃତ୍ତି କରିବା । [କରିବା ।

**Reck**, *v.* ମନୋଯୋଗ ଦେବା, ଖାତିର

**Reckless**, *a.* ଅସାବଧାନ, ଦୁଃସାହସୀ, ବିବେଚନାହୀନ, ଅବମୃଶ୍ୟକାରୀ ।

Recklessly, *ad.* ଅସାବଧାନ ଭାବରେ, ଅବିମୃଷ୍ୟରେ ।

Recklessness, *n.* ପ୍ରମାଦ, ଅସାବଧାନତା, ଦୁଃସାହସ ।

Reckon, *v.* ଗଣନା କରିବା, କଳନା କରିବା, ଅନୁମାନ କରିବା ।

Reckoner, *n.* ଗଣନାକାରୀ ।

Reckoning, *n.* ଗଣନା, ହିସାବ ।

Reclamation, *n.* ସତ୍ପଥକୁ ଆନୟନ, ଆବାଦ ।

Reclaim, *v.* ସତ୍ପଥକୁ ଆଣିବା, ପଡ଼ିଆ ଜମିକୁ ଆବାଦ କରିବା ।

Recline, *v.* ଆଉଜିବା, ବିଶ୍ରାମ ନେବା ।

Recluse, *n.* ସନ୍ନ୍ୟାସୀ, ଋଷି, ପରିବ୍ରାଜକ; *a.* ଏକାକୀ, ନିର୍ଜନ ।

Reclusion, *n.* ବାନପ୍ରସ୍ଥ ଗମନ, ସନ୍ନ୍ୟାସୀ ଜୀବନ । [ ଯୋଗ୍ୟ ।

Recognisable, *a.* ପରିଚୟର

Recognisance, *n.* ଅଙ୍ଗୀକାରପତ୍ର, ମୁଚଲିକା । [ କରିବା ।

Recognise, *v.* ଚିହ୍ନିବା, ସ୍ୱୀକାର

Recognition, *n.* ପରିଚୟ, ସ୍ମରଣ, ସ୍ୱୀକାର । [ ହଟିଯିବା ।

Recoil, *v.* ପଶ୍ଚାତ୍‌ପଦ ହେବା, ପଛକୁ

Recollect, *v.* ଅନୁଚିନ୍ତା କରିବା, ସ୍ମରଣ କରିବା, ପ୍ରକୃତିସ୍ଥ କରିବା ।

Recollection, *n.* ସ୍ମରଣ, ଅନୁଚିନ୍ତନ, ସ୍ମୃତି । [ କରିବା ।

Recommence, *v.* ପୁନରାରମ୍ଭ

Recommend, *v.* ସୁପାରିସ କରିବା ।

Recommendation, *n.* ସୁପାରିସ, ପ୍ରଶଂସାପତ୍ର । [ ସୂଚକ ।

Recommendatory, *a.* ପ୍ରଶଂସା-

Recompense, *n.* ପରିଶୋଧ, ପ୍ରତିଦାନ, କ୍ଷତିପୂରଣ, ପାରିତୋଷିକ; *v.* ପରିଶୋଧ କରିବା, କ୍ଷତିପୂରଣ ଦେବା ।

Reconcile, *v.* ସାନ୍ତ୍ୱନା ଦେବା, ସନ୍ତୁଷ୍ଟ କରିବା, ପୁନର୍ମିଳନ ଘଟାଇବା ।

Reconciliation, *n.* ପୁନର୍ମିଳନ, ବିରୋଧର ସମାଧାନ । [ ରହସ୍ୟମୟ ।

Recondite, *a.* ଗହନ, ଦୁର୍ବୋଧ,

Reconnaissance, *n.* ଯୁଦ୍ଧ ଉଦ୍ଦେଶ୍ୟରେ ଦେଶର ଅନୁସନ୍ଧାନ ।

Reconnoitre, *v.* ସୂକ୍ଷ୍ମ ପରୀକ୍ଷା କରିବା, ଯୁଦ୍ଧାର୍ଥ ଦେଶର ଅନୁସନ୍ଧାନ କରିବା ।

Reconsider, *v.* ପୁନର୍ବିଚାର କରିବା ।

Reconsideration, *n.* ପୁନର୍ବିଚାର, ପୁନର୍ବିବେଚନା । [ କରିବା ।

Reconsolidate, *v.* ପୁଣି ଦୃଢ଼

Reconsolidation, *n.* ପୁନଃ ଦୃଢ଼ୀକରଣ ବା ଏକତ୍ରୀକରଣ ।

Record, *n.* ନଥି, ବିବରଣ; *v.* ନଥିଭୁକ୍ତ କରିବା, ଲିପିବଦ୍ଧ କରିବା ।

**Recorder,** *n.* ଲେଖକ, ଲିପିକାର, ଶିରସ୍ତାଦାର ।

[ ନିବେଦନ କରିବା ।

**Recount,** *v.* ବର୍ଣ୍ଣନା କରିବା,

**Recoup,** *v.* ପୂରଣ କରିବା, ପୁନର୍ଲାଭ କରିବା, ପ୍ରତିବିଧାନ କରିବା ।

**Recoupment,** *n.* ପରିପୂରଣ ।

**Recourse,** *n.* ଅବଲମ୍ବନ, ଆଶ୍ରୟ ।

**Recover,** *v.* ଆରୋଗ୍ୟଲାଭ କରିବା, ପ୍ରକୃତିସ୍ଥ ହେବା, ଫେରି ପାଇବା ।

**Recoverable,** *a.* ଆଦାୟ କରିବାର ବା ଫେରି ପାଇବାର ଯୋଗ୍ୟ ।

**Recovery,** *n.* ପୁନର୍ଲାଭ, ଆରୋଗ୍ୟ, ରୋଗମୁକ୍ତ ।

[ ପୁନର୍ଗଠନ କରିବା ।

**Recreate,** *v.* ବିଶ୍ରାମ କରିବା,

**Recreation,** *n.* ବିରାମ, ବିଶ୍ରାମ, ଚିତ୍ତବିନୋଦନ ।

[ ରଞ୍ଜକ, ଶ୍ରାନ୍ତିହାରକ ।

**Recreative,** *a.* ସୁଖକର, ମନୋ-

**Recruit,** *v.* ନୂତନ ସୈନ୍ୟ ସଂଗ୍ରହ କରିବା; *n.* ଦଳଭୁକ୍ତ ନୂତନ ସୈନିକ ।

**Recruitment,** *n.* ନୂତନ କର୍ମଚାରୀ ବା ସୈନିକରୂପେ ନିଯୁକ୍ତ ।

**Rectangle,** *n.* ଆୟତ କ୍ଷେତ୍ର, ସମକୋଣୀ କ୍ଷେତ୍ର ।

[ ସମକୋଣବିଶିଷ୍ଟ ।

**Rectangular,** *a.* ଆୟତାକାର,

**Rectification,** *n.* ସଂଶୋଧନ, ଶୁଦ୍ଧିକରଣ ।

**Rectify,** *v.* ସଂଶୋଧନ କରିବା ।

**Rectilineal, Rectilinear,** *a.* ସରଳରେଖାଦ୍ୱାରା ଆବଦ୍ଧ ।

**Rectitude,** *n.* ସରଳତା, ନ୍ୟାୟପରତା, ସନ୍ମାର୍ଗ ।

[ ମଳଦ୍ୱାର ।

**Rectum,** *n.* କ୍ଷୁଦ୍ରାନ୍ତ୍ରର ଶେଷଭାଗ,

**Recuperate,** *v.* ପୁନର୍ଲାଭ କରିବା ।

**Recuperation,** *n.* ପୁନଃପ୍ରାପ୍ତି ।

**Recuperative,** *a.* ଆରୋଗ୍ୟଶୀଳ ।

**Recur,** *v.* ପୁନର୍ବାର ଘଟିବା ।

**Recurrence,** *n.* ପୁନଃସଂଘଟନ, ପୁନରାବୃତ୍ତି ।

[ ସଂଘଟିତ ।

**Recurrent,** *a.* ପୁନରାବୃତ୍ତ, ପୁନଃ-

**Recurring,** *a.* ପୌନଃପୁନିକ, ବାରମ୍ବାର ସଂଘଟିତ ।

[ *n.* ଲାଲ ରଙ୍ଗ ।

**Red,** *a.* ରକ୍ତ, ଲୋହିତ, ଲାଲ;

**Redden,** *v.* ରକ୍ତିମ ହେବା ।

**Reddish,** *a.* ଆରକ୍ତ, ରକ୍ତାଭ, ରକ୍ତିମ ।

**Redeem,** *v.* ଧନ ଦେଇ ମୁକ୍ତ କରିବା, ଉଦ୍ଧାର କରିବା, ପ୍ରତିକାର କରିବା ।

**Redeemer,** *n.* ଉଦ୍ଧାରକର୍ତ୍ତା, ତ୍ରାଣକର୍ତ୍ତା ।

[ ମୁକ୍ତ ।

**Redemption,** *n.* ନିସ୍ତାର, ଉଦ୍ଧାର,

**Red-hot,** *a.* ଅଗ୍ନି ଭଳି ଉତ୍ତପ୍ତ ।

**Redistribution,** *n.* ପୁନର୍ବଣ୍ଟନ, ପୁନର୍ଗଠନ ।

**Redness,** *n.* ରକ୍ତିମା, ଅରୁଣିମା ।

**Redolence, Redolency,** *n.* ସୁଗନ୍ଧ, ସୌରଭ, ସୁବାସ ।

Redolent, *a.* ସୁଗନ୍ଧ, ସୁରଭିତ, ସୁବାସିତ । [ ବହୁଗୁଣିତ କରିବା ।
Redouble, *v.* ଦ୍ୱିଗୁଣିତ କରିବା,
Redoubled, *a.* ଦ୍ୱିଗୁଣିତ ।
Redoubtable, *a.* ମହାପରାକ୍ରାନ୍ତ, ପ୍ରତାପଶାଳୀ, ଦୁର୍ଜ୍ଜୟ । [ ବାହୁଲ୍ୟ ହେବା ।
Redound, *v.* ଅତିରିକ୍ତ ହେବା,
Redress, *v.* ଦୁଃଖମୋଚନ କରିବା, ପ୍ରତିକାର କରିବା; *n.* ପ୍ରତିକାର, କ୍ଷତିପୂରଣ, ଉଦ୍ଧାର ।
Red-tape, *n.* ସରକାରୀ ନଥିର ଲାଲ ଫିତା, ସରକାରୀ ଅଫିସର କାଇଦା-କଟକଣା । [ ଗତାନୁଗତିକ ପଦ୍ଧତି ।
Red-tapism, *n.* ସରକାରୀ ଅଫିସର
Reduce, *v.* ହ୍ରାସ କରିବା, ଲଘୁ କରିବା, ପରାଜିତ କରିବା, ପରିଣତ କରିବା ।
Reducible, *a.* ପରିଣତ ହେବା ଯୋଗ୍ୟ, ନ୍ୟୂନକରଣୀୟ । [ ଲଘୂକରଣ ।
Reduction, *n.* ପରାଜୟ, ବଶୀକରଣ,
Redundance, *n.* ବାହୁଲ୍ୟ, ଯଥେଷ୍ଟତା, ଅତ୍ୟୁକ୍ତି । [ ଅତ୍ୟଧିକ ।
Redundant, *a.* ଅତିରିକ୍ତ, ବହୁଳ,
Redundantly, *ad.* ବାହୁଲ୍ୟପୂର୍ବକ ।
Reed, *n.* ତୃଣଜାତୀୟ ବୃକ୍ଷବିଶେଷ, ନଳ ।
Reedy, *a.* ନଳବଣରେ ପୂର୍ଣ୍ଣ, ନଳସଦୃଶ
Reef, *n.* ସମୁଦ୍ରସ୍ଥିତ ଶୈଳମାଳା ।
Reek, *v.* ବାଷ୍ପୋଦ୍ଗାର କରିବା; *n.* ବାଷ୍ପ, ଧୂମ ।
Reeking, *a.* ବାଷ୍ପୋଦ୍ଗାରୀ, ଧୂମଯୁକ୍ତ ।
Reeky, *a.* ବାଷ୍ପମୟ, ଧୂମମୟ ।
Reel, *n.* ସୂତା ଗୁଡ଼ାଇବା ନଟେଇ; *v.* ନଟେଇରେ ସୂତା ଗୁଡ଼ାଇବା, ମୁଣ୍ଡ ବୁଲେଇବା ।
Re-elect, *v.* ପୁନଃ ନିର୍ବାଚନ କରିବା ।
Re-election, *n.* ପୁନଃନିର୍ବାଚନ ।
Re-embark, *v.* ଜାହାଜରେ ପୁନଃ ଆରୋହଣ କରିବା ।
Re-enforce, *v.* ସୈନ୍ୟାଦିଦ୍ୱାରା ପୁନରାୟ ଦୃଢ଼ୀଭୂତ କରିବା ।
Re-enforcement, *n.* ସୈନ୍ୟାଦି ସାହାଯ୍ୟରେ ପୁନଃ ଦୃଢ଼ୀକରଣ ।
Re-enter, *v.* ପୁନଃପ୍ରବେଶ କରିବା ।
Re-establish, *v.* ପୁନଃ ପ୍ରତିଷ୍ଠା କରିବା । [ ପରୀକ୍ଷା ।
Re-examination, *n.* ଦ୍ୱିତୀୟବାର
Re-examine, *v.* ପୁନରାୟ ପରୀକ୍ଷା କରିବା । [ ରଖିବା ।
Refer, *v.* ପରାମର୍ଶ ମାଗିବା, ସମ୍ବନ୍ଧ
Referee, *n.* ମଧ୍ୟସ୍ଥ, ବିଚାରକ ।
Reference, *n.* ସମ୍ବନ୍ଧ, ସମ୍ପର୍କ, ପରାମର୍ଶ, ଉଲ୍ଲେଖ, ମଧ୍ୟସ୍ଥତା ।
Referendum, *n.* ବିଧାନସଭାର କୌଣସି ମତଗତ ପ୍ରଶ୍ନ ବିଷୟରେ ସମସ୍ତ ଭୋଟଦାତାମଣ୍ଡଳୀର ମତଗ୍ରହଣ । [ କରିବା ।
Refine, *v.* ବିଶୋଧନ କରିବା, ସଂସ୍କୃତ

**Refined**, *a.* ବିଶୋଧିତ, ମାର୍ଜିତ, ଶିଷ୍ଟ, ସୌଜନ୍ୟଶାଳୀ ।

**Refinement**, *n.* ବିଶୋଧନ, ଶୁଦ୍ଧୀକରଣ, ବିଶୁଦ୍ଧ, ସୌଜନ୍ୟ, ଶିଷ୍ଟତା, ଶିଷ୍ଟାଚାର ।

**Refinery**, *n.* ବିଶୋଧନାଗାର ।

**Reflect**, *v.* ଚିନ୍ତା କରିବା, ପର୍ଯ୍ୟାଲୋଚନା କରିବା, ପ୍ରତିବିମ୍ବିତ ହେବା ।

**Reflection, Reflexion**, *n.* ଚିନ୍ତା, ପ୍ରତିଫଳନ, ପର୍ଯ୍ୟାଲୋଚନା, ପ୍ରତିବିମ୍ବ । [ ପ୍ରତିଫଳିତ ।

**Reflected**, *a.* ପ୍ରତିବିମ୍ବିତ,

**Reflective**, *a.* ଚିନ୍ତାଶୀଳ, ପ୍ରତିଫଳକ

**Reflex**, *n.* ପ୍ରତିଫଳନ; *a.* ଅନୈଚ୍ଛିକ ।

**Reform**, *v.* ସଂସ୍କାର କରିବା, ପୁନର୍ଗଠନ କରିବା, ପ୍ରତିକାର କରିବା ।

**Reformation**, *n.* ସଂସ୍କାର, ପୁନର୍ଗଠନ, ଦୋଷଦୂରୀକରଣ ।

**Reformative**, *a.* ସଂସ୍କାରମୂଳକ ।

**Reformatory**, *n.* ସଂଶୋଧନାଳୟ, ଅଳ୍ପବୟସ୍କ ବନ୍ଦୀମାନଙ୍କ ପାଇଁ ବିଦ୍ୟାଳୟ; *a.* ସଂଶୋଧନମୂଳକ ।

**Reformed**, *a.* ପୁନର୍ଗଠିତ ।

**Reformer**, *n.* ସଂସ୍କାରକ, ସଂଶୋଧକ ।

**Refound**, *v.* ପୁନଃପ୍ରତିଷ୍ଠା କରିବା ।

**Refract**, *v.* ପଥଭ୍ରଷ୍ଟ ହେବା, ବକ୍ରଗତ କରିବା, ଅଧିକ ପଥରେ ଯିବା ।

**Refraction**, *n.* ବକ୍ରୀକରଣ, ବକ୍ରଗତି

**Refractor**, *n.* ଏକ ପ୍ରକାର ଦୂରଦର୍ଶକ ଯନ୍ତ୍ର । [ ଅବିନେୟ, ଅବାଧ୍ୟ ।

**Refractory**, *a.* ନିୟମଭଙ୍ଗକାରୀ,

**Refrain**, *v.* ନିବୃତ୍ତ ହେବା, ବିରତ ହେବା; *n.* ଗୀତର ଘୋଷା, ଧୂଆ ।

**Refresh**, *v.* ବିଶ୍ରାମ କରିବା, ଆରାମ ଦେବା । [ ସୁଖକର ।

**Refreshing**, *a.* ଆରାମଦାୟକ,

**Refreshment**, *n.* ଜଳଖିଆ, ଆରାମ, ବିଶ୍ରାମ, ନବଶକ୍ତିଲାଭ ।

**Refrigerant**, *a.* ଶୀତଳକର ।

**Refrigerate**, *v.* ଶୀତଳ କରିବା ।

**Refrigeration**, *n.* ଶୀତଳୀକରଣ ।

**Refrigerator**, *n.* ଶୀତଳକାରକ ଯନ୍ତ୍ର, ନିମ୍ନତାପରେ ଦ୍ରବ୍ୟ ରଖିବାର ଯନ୍ତ୍ର ।

**Refrigeratory**, *n.* ଶୀତଳ କରିବାର ପାତ୍ର; *a.* ଶୀତଳକାରକ ।

**Refuge**, *n.* ଆଶ୍ରୟ, ଶରଣ, ଆଶ୍ରୟସ୍ଥଳ ।

**Refugee**, *n.* ଶରଣାଗତ, ଆଶ୍ରୟପ୍ରାର୍ଥୀ

**Refulgence, Refulgency**, *n.* ତେଜ, ଦୀପ୍ତି, ଔଜ୍ଜ୍ୱଲ୍ୟ, ପ୍ରଭା ।

**Refulgent**, *a.* ଦେଦୀପ୍ୟମାନ, ଉଜ୍ଜ୍ୱଳ, ଦୀପ୍ତିମନ୍ତ । [ ଫେରାଇଦେବା

**Refund**, *v.* ପ୍ରତ୍ୟର୍ପଣ କରିବା,

**Refundable**, *a.* ପ୍ରତ୍ୟର୍ପଣାର୍ହ, ଫେରାଇବା ଯୋଗ୍ୟ ।

**Refusal**, *n.* ପ୍ରତ୍ୟାଖ୍ୟାନ, ଅସମ୍ମତ ।
**Refuse**, *v.* ପ୍ରତ୍ୟାଖ୍ୟାନ କରିବା, ଅସ୍ୱୀକାର କରିବା; *n.* ମଇଳା, ଆବର୍ଜନା ।
**Refutable**, *a.* ଖଣ୍ଡନୀୟ ।
**Refutation**, *n.* ଖଣ୍ଡନ, ନିରାକରଣ ।
**Refute**, *v.* ଖଣ୍ଡନ କରିବା ।
**Regain**, *v.* ପୁନର୍ଲାଭ କରିବା ।
**Regal**, *a.* ରାଜୋଚିତ, ରାଜକୀୟ ।
**Regale**, *v.* ତୃପ୍ତ କରିବା । [ପ୍ରମୋଦ ।
**Regalement**, *n.* ଭୋଜ, ଆମୋଦ-
**Regalia**, *n.* ରାଜଚିହ୍ନ, ରାଜଭୂଷା ।
**Regality**, *n.* ରାଜାଡ଼ମ୍ବର, ରାଜପଣ ।
**Regard**, *n.* ଶ୍ରଦ୍ଧା, ସମ୍ମାନ, ମନୋଯୋଗ; *v.* ସମ୍ମାନ କରିବା, ମନେ କରିବା । [ସାବଧାନ ।
**Regardful**, *a.* ମନୋଯୋଗୀ,
**Regarding**, *pre.* ସମ୍ବନ୍ଧରେ, ବିଷୟରେ । [ଉଦାସୀନ, ନିରପେକ୍ଷ ।
**Regardless**, *a.* ଅମନୋଯୋଗୀ,
**Regency**, *n.* ରାଜପ୍ରତିନିଧି ଶାସନ ।
**Regenerate**, *v.* ପୁନର୍ଜନ୍ମ ଦେବା; *a.* ନବଜନ୍ମପ୍ରାପ୍ତ ।
**Regenerated**, *a.* ପୁନର୍ଜନ୍ମପ୍ରାପ୍ତ ।
**Regeneration**, *n.* ପୁନର୍ଜନ୍ମ, ନବଜୀବନଲାଭ ।
**Regent**, *n.* ରାଜପ୍ରତିନିଧି, ଶାସନକର୍ତ୍ତା ।
**Regentship**, *n.* ରାଜପ୍ରତିନିଧିତ୍ୱ, ରାଜପ୍ରତିନିଧି ପଦ ବା କର୍ମ ।
**Regicide**, *n.* ରାଜହତ୍ୟା, ରାଜହତ୍ୟାକାରୀ, ରାଜହନ୍ତା ।
**Regime**, *n.* ରାଜତ୍ୱ, ଶାସନ ।
**Regimen**, *n.* ରୋଗୀର ପଥ୍ୟ, ପଥ୍ୟାପଥ୍ୟ ବିଧି ।
**Regiment**, *n.* ସୈନ୍ୟଦଳ, ପଲ୍ଟନ ।
**Regimental**, *a.* ସୈନ୍ୟଦଳ ସମ୍ବନ୍ଧୀୟ । [ନିର୍ଦ୍ଦିଷ୍ଟ ପୋଷାକ ।
**Regimentals**, *n.* ସୈନ୍ୟଦଳର
**Region**, *n.* ପ୍ରଦେଶ, ଅଞ୍ଚଳ ।
**Register**, *n.* ତାଲିକା, ଖାତା, ପଞ୍ଜିକା; *v.* ତାଲିକାଭୁକ୍ତ କରିବା ।
**Registered**, *a.* ସରକାରୀ ଖାତାରେ ଲିଖିତ, ତାଲିକାଭୁକ୍ତ ।
**Registrar**, *n.* ରେଜିଷ୍ଟ୍ରି ବିଭାଗର ମୁଖ୍ୟ କର୍ମଚାରୀ, ବିଶ୍ୱବିଦ୍ୟାଳୟର ମୁଖ୍ୟ କର୍ମଚାରୀ, ଶିରସ୍ତାଦାର ।
**Registration, Registry**, *n.* ସରକାରୀ ତାଲିକାଭୁକ୍ତକରଣ ।
**Regnancy**, *n.* ରାଜତ୍ୱ, ପ୍ରଭୁତ୍ୱ ।
**Regnant**, *a.* ରାଜକ୍ଷମତାପ୍ରାପ୍ତ ।
**Regress**, *n.* ପରାବର୍ତ୍ତନ, ପ୍ରତ୍ୟାଗମନ ।
**Regression**, *n.* ପ୍ରତ୍ୟାବର୍ତ୍ତନ, ପଶ୍ଚାଦ୍‌ଗମନ । [ଅବନତିଶୀଳ ।
**Regressive**, *a.* ପଶ୍ଚାଦ୍‌ଗାମୀ,
**Regret**, *n.* ଅନୁଶୋଚନା, ଅନୁତାପ; *v.* ଅନୁତାପ କରିବା ।

Regretful, *a.* ଶୋକପୂର୍ଣ୍ଣ, ଅନୁତପ୍ତ ।
Regretfully, *ad.* ଦୁଃଖସହକାରେ ।
Regrettable, *a.* ଅନୁଶୋଚନୀୟ, ଶୋଚ୍ୟ । [ ଆନୁପୂର୍ବିକ ।
Regular, *a.* ନିୟମିତ, ବିଧିବଦ୍ଧ,
Regularisation, *n.* ବିଧିବଦ୍ଧକରଣ
Regularise, *v.* ବିଧିବଦ୍ଧ କରିବା ।
Regularity, Regularness, *n.* ନିୟମ, ବିଧି, ବ୍ୟବସ୍ଥା, ନିୟମାନୁବର୍ତ୍ତିତା ।
Regularly, *ad.* ନିୟମିତରୂପେ, ଯଥାବିଧି, ବ୍ୟବସ୍ଥାନୁସାରେ ।
Regulate, *v.* ବ୍ୟବସ୍ଥା କରିବା, ନିୟନ୍ତ୍ରଣ କରିବା, ପରିଚାଳନା କରିବା ।
Regulation, *n.* ପରିଚାଳନା, ବ୍ୟବସ୍ଥା, ନିୟନ୍ତ୍ରଣ । [ ନିୟାମକ ।
Regulative, *a.* ନିୟନ୍ତ୍ରଣଶୀଳ,
Regulator, *n.* ପରିଚାଳକ ଯନ୍ତ୍ର, ଗତିନିୟନ୍ତ୍ରଣକାରୀ ଯନ୍ତ୍ର ।
Regulatory, *a.* ଗତିନିୟାମକ ।
Rehabilitate, *v.* ଅଭିଯାନ କରିବା, ପୁନର୍ବସତି ଦେବା ।
Rehabilitation, *n.* ପୁନର୍ବାସନ ।
Rehearsal, *n.* ପ୍ରକାଶ୍ୟ ଅଭିନୟ ପୂର୍ବରୁ ଆବୃତ୍ତି, ପୂର୍ବବର୍ତ୍ତୀ ଅଭ୍ୟାସ, ପୁନରାବୃତ୍ତି ।
Rehearse, *v.* ପ୍ରକାଶ୍ୟ ଅଭିନୟ ପୂର୍ବରୁ ଆବୃତ୍ତି କରିବା, ବର୍ଣ୍ଣନା କରିବା ।
Reign, *n.* ରାଜତ୍ୱ, ରାଜତ୍ୱକାଳ; *v.* ରାଜପଣ କରିବା । [ ଫେରାଇଦେବା ।
Reimburse, *v.* କ୍ଷତିପୂରଣ କରିବା,
Reimbursement, *n.* କ୍ଷତିପୂରଣ, ପରିଶୋଧ । [ ଯଦତ କରିବା ।
Rein, *n.* ଲଗାମ; *v.* ଲଗାମଦ୍ୱାରା
Reincarnate, *v.* ନୂତନ ଅବତାର ଗ୍ରହଣ କରିବା । [ ଅବତାରଧାରଣ ।
Reincarnation, *n.* ନୂତନ
Reindeer, *n.* ବଲ୍ଗାହରିଣ ।
Reinforce, *v.* ନୂତନ ସୈନ୍ୟାଦିଦ୍ୱାରା ବଳବୃଦ୍ଧି କରିବା, ବଳିଷ୍ଠାନ୍ କରିବା ।
Reinforcement, *n.* ଶକ୍ତି ଆହରଣ, ଅଧିକା ସୈନ୍ୟାଦିଦ୍ୱାରା ବଳବୃଦ୍ଧି ।
Reinless, *a.* ଲଗାମହୀନ, ଉଚ୍ଛୃଙ୍ଖଳ ।
Reinstate, *n.* ନିଜ ପଦ ବା ଅଧିକାରରେ ପୁନଃପ୍ରତିଷ୍ଠା କରିବା ।
Reinstatement, *n.* ନିଜ ପଦରେ ପୁନଃପ୍ରତିଷ୍ଠା । [ ପୁନରର୍ପଣ କରିବା ।
Reinvest, *v.* ପୁନର୍ବିନିଯୁକ୍ତ କରିବା,
Reinvestment, *n.* ପୁନର୍ବିନିଯୋଗ, ପୁନରର୍ପଣ, ପୂର୍ବ ପଦରେ ଅବସ୍ଥାପନ ।
Reiterate, *v.* ବାରମ୍ବାର କହିବା ।
Reiteration, *n.* ପୁନଃପୁନଃ କଥନ ।
Reject, *v.* ପ୍ରତ୍ୟାଖ୍ୟାନ କରିବା, ତ୍ୟାଗ କରିବା । [ ପରିତ୍ୟକ୍ତ ।
Rejected, *a.* ପ୍ରତ୍ୟାଖ୍ୟାତ,
Rejection, *n.* ପ୍ରତ୍ୟାଖ୍ୟାନ, ପରିତ୍ୟାଗ ।

Rejoice, *v.* ବିଶେଷ ଆନନ୍ଦିତ ହେବା ।
Rejoicing, *n.* ଆହ୍ଲାଦ, ପରମାନନ୍ଦ ।
Rejoin, *v.* ଉତ୍ତର ଦେବା, ପୁନର୍ବାର କାର୍ଯ୍ୟରେ ଯୋଗ ଦେବା । [ ଉତ୍ତର ।
Rejoinder, *n.* ପ୍ରତିବାଦ, ଅତିରିକ୍ତ
Rejuvenate, *v.* ପୁନର୍ଯୌବନ ଦେବା । [ ପ୍ରାପ୍ତି ।
Rejuvenation, *n.* ପୁନର୍ଯୌବନ-
Rekindle, *v.* ପୁନରୁଦ୍ଦୀପିତ ହେବା ବା କରିବା । [ ପୂର୍ବାବସ୍ଥାପ୍ରାପ୍ତି ।
Relapse, *v.* ପୁନର୍ବାର ଗତ ହେବା; *n.*
Relate, *v.* ବର୍ଣ୍ଣନା କରିବା, ସମ୍ବନ୍ଧାନ୍ବିତ ହେବା ।
Related, *a.* ସମ୍ବନ୍ଧାନ୍ବିତ, ସମ୍ପର୍କିତ ।
Relation, *n.* ବର୍ଣ୍ଣନ, ସମ୍ବନ୍ଧ, ସମ୍ପର୍କ, ଆତ୍ମୀୟ । [ ବନ୍ଧୁତା ।
Relationship, *n.* ସମ୍ପର୍କ, ସମ୍ବନ୍ଧ,
Relative, *a.* ସମ୍ପର୍କିତ, ଆପେକ୍ଷିକ ।
Relatively, *ad.* ଅପେକ୍ଷାକୃତ ।
Relativity, *n.* ଆପେକ୍ଷିକ ତତ୍ତ୍ୱ ।
Relax, *v.* ଶିଥିଳ କରିବା, ଲଘୁ କରିବା ।
Relaxation, *n.* ଶୈଥିଲ୍ୟ, ଲଘୂକରଣ, ବିରାମ ।
Relay, *n.* ଡାକ ବଦଳ ପାଇଁ ଘୋଡ଼ା ଯୋଗାଣ; *v.* ପୁନର୍ବାର ସ୍ଥାପନ କରିବା ।
Release, *v.* ମୁକ୍ତ କରିବା; *n.* ମୁକ୍ତି, ଉଦ୍ଧାର । [ ନିର୍ବାସନ କରିବା ।
Relegate, *v.* ଭାର ଅର୍ପଣ କରିବା,
Relegation, *n.* ଭାରଅର୍ପଣ, ନିର୍ବାସନ ।
Relent, *v.* କରୁଣାର୍ଦ୍ର ହେବା, ଅନୁକମ୍ପା କରିବା, କୋମଳ ହେବା ।
Relentless, *a.* ନିର୍ଦ୍ଦୟ, କଠୋର ।
Relevance, Relevancy, *n.* ପ୍ରକରଣୌଚିତ୍ୟ, ପ୍ରାସଙ୍ଗିକତା, ସମ୍ବନ୍ଧ ।
Relevant, *a.* ପ୍ରାସଙ୍ଗିକ, ପ୍ରସଙ୍ଗୋଚିତ ।
Reliability, *n.* ବିଶ୍ୱସ୍ତତା, ନିର୍ଭର-ଶୀଳତା, ବିଶ୍ୱାସଯୋଗ୍ୟତା ।
Reliable, *a.* ବିଶ୍ୱସ୍ତ, ନିର୍ଭରଯୋଗ୍ୟ ।
Reliance, *n.* ବିଶ୍ୱାସ, ନିର୍ଭର, ପ୍ରତ୍ୟୟ, ଆଶ୍ରୟ ।
Reliant, *a.* ବିଶ୍ୱାସୀ, ନିର୍ଭରଶୀଳ ।
Relic, *n.* ଅବଶେଷ, ପବିତ୍ର ଦେହାବଶେଷ ।
Relict, *n.* ବିଧବା, ସ୍ୱାମିହୀନା ରମଣୀ ।
Relief, *n.* ଉପଶମ, ନିଶ୍ଚିନ୍ତ୍ୟ, ସାହାଯ୍ୟ, ଭୂମିର ଉଚ୍ଚାବଚ ଅବସ୍ଥା ।
Relieve, *v.* ସାହାଯ୍ୟ ଦେବା, ଉଦ୍ଧାର କରିବା, ଦାୟିତ୍ୱରୁ ମୁକ୍ତ କରିବା ।
Religion, *n.* ଧର୍ମ, ଈଶ୍ୱରନିଷ୍ଠା ।
Religiosity, *n.* ଧାର୍ମିକତା ।
Religious, *a.* ଧାର୍ମିକ, ଧର୍ମନିଷ୍ଠ, ଧର୍ମସମ୍ବନ୍ଧୀୟ, ଈଶ୍ୱରଭକ୍ତ ।
Religiously, *ad.* ଧର୍ମନିଷ୍ଠଭାବରେ ।
Relinquish, *v.* ତ୍ୟାଗ କରିବା, ବିସର୍ଜନ କରିବା । [ ବିସର୍ଜନ ।
Relinquishment, *n.* ପରିତ୍ୟାଗ,
Reliquary, *n.* ପବିତ୍ର ବସ୍ତୁର ଆଧାର ।

**Relish**, *n.* ସ୍ୱାଦ, ରୁଚି; *v.* ଆସ୍ୱାଦନ କରିବା, ଭଲ ଲାଗିବା । [ ବିମୁଖତା ।
**Reluctance**, *n.* ଅନିଚ୍ଛା, ଅସନ୍ତୋଷ,
**Reluctant**, *a.* ଅନିଚ୍ଛୁକ, ଅସନ୍ତୁଷ୍ଟ, ବିମୁଖ । [ ସନ୍ଦେହକାରେ ।
**Reluctantly**, *ad.* ଅନିଚ୍ଛା
**Rely**, *v.* ଅବଲମ୍ବନ କରିବା, ବିଶ୍ୱାସ କରିବା, ନିର୍ଭର କରିବା ।
**Remain**, *v.* ଅବସ୍ଥାନ କରିବା, ରହିବା, ବଳିପଡ଼ିବା । [ ଅଂଶ ।
**Remainder**, *n.* ଭାଗଶେଷ, ବଳକା
**Remaining**, *a.* ଅବଶିଷ୍ଟ, ବଳକା ।
**Remains**, *n.* (*pl.*) ଶବ, ମୃତଦେହ, ଧ୍ୱଂସାବଶେଷ ।
**Remand**, *v.* ପୁନଃପ୍ରେରଣ କରିବା ।
**Remark**, *n.* ମନ୍ତବ୍ୟ, ଟିପ୍ପଣୀ; *v.* ମନ୍ତବ୍ୟ ପ୍ରକାଶ କରିବା ।
**Remarkable**, *a.* ଅପୂର୍ବ, ଆଶ୍ଚର୍ଯ୍ୟ-ଜନକ, ଉତ୍କୃଷ୍ଟ, ବିଶିଷ୍ଟ ।
**Remarkably**, *ad.* ବିଶେଷ-ଭାବରେ, ଅଦ୍ଭୁତରୂପେ ।
**Remarriage**, *n.* ପୁନର୍ବିବାହ ।
**Remediable**, *a.* ପ୍ରତିକାର୍ଯ୍ୟ, ଉପାୟଯୋଗ୍ୟ ।
**Remedial**, *a.* ପ୍ରତିକାରମୂଳକ ।
**Remedy**, *n.* ଚିକିତ୍ସା, ପ୍ରତିକାର, ଔଷଧ; *v.* ପ୍ରତିକାର କରିବା ।

**Remember**, *v.* ସ୍ମରଣ କରିବା, ଅନୁଚିନ୍ତା କରିବା । [ ସ୍ମୃତି ।
**Remembrance**, *n.* ସ୍ମରଣ,
**Remembrancer**, *n.* ସ୍ମାରକ, ଯେ ବା ଯାହା ସ୍ମରଣ କରାଏ ।
**Remind**, *v.* ସ୍ମରଣ କରାଇବା, ମନେ ପକାଇବା ।
**Reminder**, *n.* ସ୍ମାରକଲିପି ।
**Reminiscence**, *n.* ଅନୁସ୍ମୃତି, ସ୍ମରଣ, ପୂର୍ବ ସ୍ମୃତି ।
**Reminiscent**, *a.* ଅନୁସ୍ମରଣଶୀଳ ।
**Remiss**, *a.* ଅସାବଧାନ, ଶିଥିଳ, ଅମନୋଯୋଗୀ, ଦାୟିତ୍ୱଶୂନ୍ୟ ।
**Remissible**, *a.* କ୍ଷମଣୀୟ, କ୍ଷମାର୍ହ ।
**Remission**, *n.* କ୍ଷମା, ଲାଘବ, ଛାଡ଼ ।
**Remissly**, *ad.* ଶିଥିଳଭାବରେ, ଅସାବଧାନ ଭାବରେ । [ ଅନବଧାନତା ।
**Remissness**, *n.* ଶୈଥିଲ୍ୟ,
**Remit**, *v.* କ୍ଷମା କରିବା, ଛାଡ଼ ଦେବା, ଅର୍ଥ ପ୍ରେରଣ କରିବା । [ ପ୍ରେରିତ ଅର୍ଥ ।
**Remittance**, *n.* ଅର୍ଥପ୍ରେରଣ,
**Remittent**, *a.* ସାମୟିକ, ସବିରାମ ।
**Remitter**, *n.* ଅର୍ଥର ପ୍ରେରକ ।
**Remnant**, *n.* ଉଦ୍‌ବୃତ୍ତ ଅଂଶ; *a.* ଉଦ୍‌ବୃତ୍ତ, ବଳକା ।
**Remodel**, *v.* ପୁନଃନିର୍ମାଣ କରିବା ।
**Remonstrance**, *n.* ପ୍ରତିବାଦ, ଭର୍ତ୍ସନା, ବାଦାନୁବାଦ ।

**Remonstrate**, *v.* ପ୍ରତିବାଦ କରିବା, ତିରସ୍କାର କରିବା । [ ପ୍ରତିବାଦ, ଭର୍ତ୍ସନା ।

**Remonstration**, *n.* ଆପତ୍ତି,

**Remonstrative**, *a.* ପ୍ରତିବାଦ-ମୂଳକ, ଭର୍ତ୍ସନାସୂଚକ । [ ଅନୁଶୋଚନା ।

**Remorse**, *n.* ଅନୁତାପ,

**Remorseful**, *a.* ଅନୁତପ୍ତ ।

**Remorseless**, *a.* ନିର୍ଦ୍ଦୟ, କଠୋର ।

**Remorselessly**, *ad.* କଠୋର-ଭାବରେ ।

**Remote**, *a.* ଦୂରବର୍ତ୍ତୀ, ଦୂରସ୍ଥ ।

**Remotely**, *ad.* ଦୂରତଃ, ସୁଦୂରରେ ।

**Remoteness**, *n.* ଦୂରତା, ସୁଦୂର ଅବସ୍ଥାନ । [ ନୂଆ ଛାଞ୍ଚରେ ପକାଇବା ।

**Remould**, *v.* ନୂତନରୂପେ ଗଢ଼ିବା,

**Removable**, *a.* ଅପନେୟ, ସ୍ଥାନାନ୍ତରକରଣୀୟ । [ କରିବା ।

**Remove**, *v.* ଦୂର କରିବା, ସ୍ଥାନାନ୍ତର

**Remunerate**, *v.* ମୂଲ୍ୟ ବା ବେତନ ଦେବା । [ ବେତନ, ପାରିଶ୍ରମିକ ।

**Remuneration**, *n.* ମୂଲ୍ୟ,

**Remunerative**, *a.* ଲାଭଜନକ ।

**Renaissance, Renascence**, *n.* ପୁନରଭ୍ୟୁଦୟ, ପୁନରୁତ୍ଥାନ ।

**Renal**, *a.* ମୂତ୍ରାଶୟସମ୍ବନ୍ଧୀୟ ।

**Renascent**, *a.* ପୁନରୁତ୍ଥିତ ।

**Rend**, *v.* ବିଦୀର୍ଣ୍ଣ କରିବା, ଚିରିବା ।

**Render**, *v.* ସମର୍ପଣ କରିବା, ଭାଷାନ୍ତର କରିବା, ଫେରାଇ ଦେବା ।

**Rendering**, *n.* ଅନୁବାଦ, ପ୍ରତ୍ୟର୍ପଣ ।

**Rendezvous**, *n.* ଗୁପ୍ତ ମିଳନ-ସ୍ଥାନ, ଅଡ୍ଡା । [ ଧର୍ମଭ୍ରଷ୍ଟ, ପତିତ ।

**Renegade**, *n.* ସ୍ୱଧର୍ମତ୍ୟାଗୀ,

**Renew**, *v.* ପୁନର୍ବାର ଆରମ୍ଭ କରିବା ।

**Renewal**, *n.* ନବୀକରଣ, ପରିବର୍ତ୍ତନ ।

**Renounce**, *v.* ପରିତ୍ୟାଗ କରିବା, ବର୍ଜନ କରିବା, ଅସ୍ୱୀକାର କରିବା ।

**Renovate**, *v.* ନୂତନ କରିବା ।

**Renovation**, *n.* ନୂତନକରଣ ।

**Renown**, *n.* କୀର୍ତ୍ତି, ଖ୍ୟାତି, ସୁନାମ ।

**Renowned**, *a.* ବିଖ୍ୟାତ, କୀର୍ତ୍ତିମାନ୍, ଯଶସ୍ୱୀ, ପ୍ରସିଦ୍ଧ ।

**Rent**, *n.* ଖଜଣା, କର, ଭଡ଼ା; *v.* ଭଡ଼ା ନେବା; *a.* ବିଦୀର୍ଣ୍ଣ, ଫଟା ।

**Rental**, *n.* ଭଡ଼ା ବା ଖଜଣାର ହିସାବ ।

**Rent-free**, *a.* ନିଷ୍କର, ବାଜେଇଲ, ଲାଖରାଜ, ଯହିଁରେ ଖଜଣା ନଥାଏ ।

**Rent-roll**, *n.* ଖଜଣା ତାଲିକା, ଜିହା ।

**Renunciation**, *n.* ପରିତ୍ୟାଗ, ବର୍ଜନ, ସନ୍ନ୍ୟାସ, ସ୍ୱତ୍ୱତ୍ୟାଗ ।

**Reopen**, *v.* ପୁନରୁତ୍ଥାପନ କରିବା ।

**Reorganisation, Reorganization**, *n.* ପୁନର୍ଗଠନ ।

**Reorganise, Reorganize**, *v.* ପୁନର୍ଗଠନ କରିବା ।

**Repair,** *v.* ମରାମତି କରିବା, ଜୀର୍ଣ୍ଣସଂସ୍କାର କରିବା, ଗମନ କରିବା; *n.* ମରାମତି, ଜୀର୍ଣ୍ଣସଂସ୍କାର ।
**Reparable,** *a.* ମରାମତିଯୋଗ୍ୟ ।
**Reparation,** *n.* କ୍ଷତିପୂରଣ, ପରିଶୋଧ, ପ୍ରତିକାର । [ ଉତ୍ତର ।
**Repartee,** *n.* ଆଶୁ ଉତ୍ତର, ତାତ୍କାଳିକ
**Repass,** *v.* ପୁନର୍ଗମନ କରିବା, ଫେରିଯିବା ।
**Repast,** *n.* ଭୋଜନ, ଖାଦ୍ୟଦ୍ରବ୍ୟ ।
**Repatriate,** *v.* ନିଜ ଦେଶକୁ ଫେରାଇ ଦେବା, ସ୍ୱଦେଶକୁ ଫେରିବା ।
**Repatriation,** *n.* ସ୍ୱଦେଶକୁ ପ୍ରତ୍ୟର୍ପଣ ବା ପ୍ରତ୍ୟାବର୍ତ୍ତନ ।
**Repay,** *v.* ପରିଶୋଧ କରିବା ।
**Repayable,** *a.* ପରିଶୋଧଯୋଗ୍ୟ ।
**Repayment,** *n.* ପରିଶୋଧକରଣ ।
**Repeal,** *v.* ରଦ କରିବା, ବାତିଲ କରିବା । [ ପୁନରାବୃତ୍ତି କରିବା ।
**Repeat,** *v.* ପୁନରାସ୍ଥ କରିବା,
**Repeated,** *a.* ପୁନରାବୃତ୍ତ, ବାରମ୍ବାର ଅନୁଷ୍ଠିତ । [ ପୁନଃପୁନଃ ।
**Repeatedly,** *ad.* ବାରମ୍ବାର,
**Repel,** *v.* ବାରଣ କରିବା, ପ୍ରତିଘାତ କରିବା, ପଛକୁ ଠେଲିବା । [ କାରୀ ।
**Repellent,** *a.* ପ୍ରତିରୋଧକ, ପ୍ରତିଘାତ-
**Repent,** *v.* ଅନୁତାପ କରିବା, ଖେଦ ପ୍ରକାଶ କରିବା ।

**Repentance,** *n.* ଅନୁତାପ, ଅନୁଶୋଚନା । [ ଅନୁଶୋଚନାକାରୀ ।
**Repentant,** *a.* ଅନୁତପ୍ତ,
**Repentantly,** *a.* ଅନୁଶୋଚନାପୂର୍ବକ । [ କ୍ଷେପଣ ।
**Repercussion,** *n.* ପ୍ରତିଘାତ, ପ୍ରତି-
**Repertory,** *n.* ସାରସଂଗ୍ରହ, ଭଣ୍ଡାର ।
**Repetition,** *n.* ପୁନରୁକ୍ତି, ପୁନରାବୃତ୍ତି
**Repine,** *v.* ବିରକ୍ତ ହେବା, ଅସନ୍ତୁଷ୍ଟ ହେବା, ହିଂସା କରିବା ।
**Replace,** *v.* ପୁନଃସ୍ଥାପନ କରିବା, ଏକ ବସ୍ତୁ ପରିବର୍ତ୍ତେ ଅନ୍ୟ ବସ୍ତୁ ଦେବା ।
**Replacement,** *n.* ପୁନଃସଂସ୍ଥାପନ, ଏକ ବସ୍ତୁର ବିନିମୟରେ ଅନ୍ୟ ବସ୍ତୁ ପ୍ରଦାନ ।
**Replenish,** *v.* ପରିପୂର୍ଣ୍ଣ କରିବା, ଭରିବା, ପୁଣି ଭର୍ତ୍ତି କରିବା ।
**Replete,** *a.* ପରିପୂର୍ଣ୍ଣ, ଭରପୂର ।
**Repletion,** *n.* ପରିପୂର୍ଣ୍ଣତା, ଅତିବାହୁଲ୍ୟ । [ ପ୍ରତିକୃତି ।
**Replica,** *n.* ଚିତ୍ର ବା ମୂର୍ତ୍ତିର ଅସଲ
**Reply,** *n.* ଉତ୍ତର, ପ୍ରତିବଚନ; *v.* ଉତ୍ତର ଦେବା ।
**Report,** *n.* ସମ୍ବାଦ, ଜନରବ, ବିବରଣ, ଉଚ୍ଚ ଶବ୍ଦ; *v.* ସମ୍ବାଦ ଦେବା ।
**Reporter,** *n.* ସମ୍ବାଦଦାତା ।
**Reposal,** *n.* ସ୍ଥାପନ ।
**Repose,** *n.* ବିଶ୍ରାମ, ବିରାମ, ନିଦ୍ରା; *v.* ବିଶ୍ରାମ କରିବା, ସ୍ଥାପନ କରିବା ।

**Repository**, *n.* ଭଣ୍ଡାର, ଅମାର, ସଗ୍ରହାଳୟ । [ ଧମକ ଦେବା ।
**Reprehend**, *v.* ଭର୍ତ୍ସନା କରିବା,
**Reprehensible**, *a.* ଦୂଷଣୀୟ, ତିରସ୍କାରାର୍ହ । [ ତିରସ୍କାର ।
**Reprehension**, *n.* ଭର୍ତ୍ସନା,
**Represent**, *v.* ଆବେଦନ କରିବା, ପ୍ରତିନିଧିତ୍ୱ କରିବା, ବର୍ଣ୍ଣନା କରିବା ।
**Representation**, *n.* ପ୍ରତିନିଧିତ୍ୱ, ଆବେଦନ, ପ୍ରତିକୃତି ।
**Representative**, *n.* ପ୍ରତିନିଧି; *a.* ପ୍ରତିନିଧିମୂଳକ, ପ୍ରତିନିଧିସ୍ଥାନୀୟ ।
**Repress**, *v.* ଦମନ କରିବା ।
**Repression**, *n.* ଦମନ, ଅତ୍ୟାଚାର ।
**Repressive**, *a.* ଦମନମୂଳକ, ଅତ୍ୟାଚାରପୂର୍ଣ୍ଣ ।
**Reprieve**, *v.* ପ୍ରାଣଦଣ୍ଡରେ ଦଣ୍ଡିତ ବ୍ୟକ୍ତିର ଦଣ୍ଡବିଧାନ ସ୍ଥଗିତ ରଖିବା; *n.* ଦଣ୍ଡବିଧାନର ସ୍ଥଗିତକରଣ । [ଭର୍ତ୍ସନା ।
**Reprimand**, *v.* ଭର୍ତ୍ସନା କରିବା; *n.*
**Reprint**, *n.* ପୁନର୍ମୁଦ୍ରଣ, ପୁନର୍ମୁଦ୍ରିତ ପୁସ୍ତକ; *v.* ପୁନର୍ବାର ଛାପିବା ।
**Reprisal**, *n.* ପ୍ରତିଶୋଧସ୍ୱରୂପ ଶତ୍ରୁର ସମ୍ପତ୍ତି ଅଧିକାର, ପ୍ରତିହରଣ, ପ୍ରତିଶୋଧାର୍ଥ ଅଧିକୃତ ସମ୍ପତ୍ତି ।
**Reprise**, *v.* ପୁନରଧିକାର କରିବା ।
**Reprive**, *v.* ହରଣ କରିବା ।
**Reproach**, *n.* ତିରସ୍କାର, ନିନ୍ଦା, ଭର୍ତ୍ସନା; *v.* ତିରସ୍କାର କରିବା, ଭର୍ତ୍ସନା କରିବା ।
**Reproachable**, *a.* ନିନ୍ଦନୀୟ, ଘୃଣ୍ୟ ।
**Reproachful**, *a.* ତିରସ୍କାରପୂର୍ଣ୍ଣ, ନିନ୍ଦାଜନକ, ଅପମାନସୂଚକ ।
**Reprobate**, *v.* ଧିକ୍କାର କରିବା, ଦୋଷାରୋପ କରିବା; *a.* ଭ୍ରଷ୍ଟ, ଅଧମ, ଦୁରାଚାର, ପାପିଷ୍ଠ । [ ପରିହାର ।
**Reprobation**, *n.* ଧିକ୍କାର, ନିନ୍ଦା,
**Reproduce**, *v.* ପୁନରୁତ୍ପାଦନ କରିବା, ଜନ୍ମ ଦେବା । [ ନକଲ ।
**Reproduction**, *n.* ପୁନରୁତ୍ପତ୍ତି,
**Reproductive**, *a.* ପୁନରୁତ୍ପାଦନଶୀଳ । [ ତିରସ୍କାର ।
**Reproof**, *n.* ତାଡ଼ନା, ଭର୍ତ୍ସନା,
**Reprove**, *v.* ଭର୍ତ୍ସନା କରିବା, ଦୋଷ ଦେବା । [ ନିନ୍ଦାକାରୀ ।
**Reprover**, *n.* ଭର୍ତ୍ସନାକାରୀ,
**Reptile**, *n.* ଉରଗ, ସର୍ପଜାତୀୟ ଜୀବ; *a.* ସରୀସୃପ । [ ଲୋକତନ୍ତ୍ର ।
**Republic**, *n.* ଗଣତନ୍ତ୍ର, ପ୍ରଜାତନ୍ତ୍ର,
**Republican**, *a.* ଗଣତାନ୍ତ୍ରିକ, ପ୍ରଜାତନ୍ତ୍ରବିଷୟକ, ପ୍ରଜାତନ୍ତ୍ରର ସମର୍ଥକ ।
**Republication**, *n.* ପୁନଃପ୍ରକାଶନ ।
**Republish**, *v.* ପୁନଃପ୍ରକାଶ କରିବା ।
**Repudiate**, *v.* ତ୍ୟାଗ କରିବା, ଅସ୍ୱୀକାର କରିବା, ଅମାନ୍ୟ କରିବା ।

**Repudiation**, *n.* ତ୍ୟାଗ, ବର୍ଜନ, ଅସ୍ୱୀକାର, ଦାୟିତ୍ୱ ନେବାକୁ ଅସ୍ୱୀକାର ।

**Repugnance, Repugnancy**, *n.* ବିରୋଧ, ବିରାଗ, ପ୍ରତିକୂଳତା ।

**Repugnant**, *a.* ପ୍ରତିକୂଳ, ବିରାଗ-ଜନକ, ବିରକ୍ତିକର । [ ପ୍ରତିହତ କରିବା ।

**Repulse**, *v.* ପ୍ରତ୍ୟାଖ୍ୟାନ କରିବା,

**Repulsion**, *n.* ପ୍ରତିଘାତ, ପରାଜୟ, ବିତାଡ଼ନ । [ ଘୃଣ୍ୟ ।

**Repulsive**, *a.* ଅପ୍ରିୟ, ବୀଭତ୍ସ,

**Reputable**, *a.* ମାନନୀୟ, ପ୍ରତିଷ୍ଠିତ, ଖ୍ୟାତିସମ୍ପନ୍ନ । [ ପ୍ରତିଷ୍ଠା ।

**Reputation**, *n.* ଖ୍ୟାତି, ପ୍ରତିପତ୍ତି,

**Repute**, *n.* ଖ୍ୟାତି, ଯଶ, ସୁନାମ, ପ୍ରତିପତ୍ତି; *v.* ବିବେଚନା କରିବା ।

**Reputed**, *a.* ପ୍ରତିଷ୍ଠିତ, ପ୍ରସିଦ୍ଧ, ଖ୍ୟାତ ।

**Request**, *v.* ପ୍ରାର୍ଥନା କରିବା, ଆବେଦନ କରିବା, ଅନୁରୋଧ କରିବା; *n.* ପ୍ରାର୍ଥନା, ଅନୁରୋଧ, ଯାଚ୍ଞା । [ ଜନ୍ମନ୍ତେ ପ୍ରାର୍ଥନା ।

**Requiem**, *n.* ମୃତବ୍ୟକ୍ତିର ଆତ୍ମାର ଶାନ୍ତି

**Requiescence**, *n.* ଶାନ୍ତି, ବିଶ୍ରାମ ।

**Require**, *v.* ଚାହିଁବା, ଆବଶ୍ୟକ କରିବା ।

**Requirement**, *n.* ଆବଶ୍ୟକତା, ଚାହିଦା । [ *n.* ଆବଶ୍ୟକ ବସ୍ତୁ ।

**Requisite**, *a.* ଆବଶ୍ୟକ, ପ୍ରୟୋଜନୀୟ;

**Requisition**, *n.* ପ୍ରାର୍ଥନା, ଆକାଙ୍କ୍ଷା, ଯାଚ୍ଞା, ଚାହିଦା, ଦାବୀ ।

**Requital**, *n.* ପ୍ରତିଦାନ, ପାରିତୋଷିକ, ନିଷ୍କୃତି, ପୁରସ୍କାର, ପ୍ରତିଶୋଧ ।

**Requite**, *v.* ପ୍ରତିଦାନ ଦେବା, ପ୍ରତିଶୋଧ କରିବା, ପୁରସ୍କାର ଦେବା ।

**Rescind**, *v.* ଖଣ୍ଡନ କରିବା, ଲୋପ କରିବା, ରଦ୍ଦ କରିବା ।

**Rescue**, *v.* ମୁକ୍ତ କରିବା, ଉଦ୍ଧାର କରିବା; *n.* ଉଦ୍ଧାର, ପରିତ୍ରାଣ ।

**Rescuer**, *n.* ଉଦ୍ଧାରକର୍ତ୍ତା, ପରିତ୍ରାତା ।

**Research**, *n.* ଅନ୍ୱେଷଣ, ଅନୁସନ୍ଧାନ, ଗବେଷଣା । [ ତୁଲ୍ୟତା ।

**Resemblance**, *n.* ସାମ୍ୟ, ସାଦୃଶ୍ୟ,

**Resemble**, *v.* ଅନୁରୂପ ହେବା, ସଦୃଶ ହେବା । [ ହେବା ।

**Resent**, *v.* କ୍ରୋଧ କରିବା, କୁପିତ

**Resentful**, *a.* କୁପିତ, କ୍ରୁଦ୍ଧ, ରୁଷ୍ଟ ।

**Reservation**, *n.* ସଂରକ୍ଷଣ ।

**Reserve**, *v.* ସଂରକ୍ଷଣ କରିବା, ଜମା ରଖିବା । [ ସ୍ୱଳ୍ପଭାଷୀ ।

**Reserved**, *a.* ସଂରକ୍ଷିତ, ଗଚ୍ଛିତ,

**Reserve fund**, *n.* ଗଚ୍ଛିତ ପାଣ୍ଠି ।

**Reservoir**, *n.* ଜଳାଶୟ, ଆଧାର ।

**Reset**, *v.* ପୁନଃସ୍ଥାପିତ କରିବା ।

**Resettle**, *v.* ପୁନର୍ବାସନ କରାଇବା ।

**Resettlement**, *n.* ପୁନର୍ବସତି, ପୁନର୍ବାସନ, ନୂତନ ବନ୍ଦୋବସ୍ତ ।

**Reside**, *v.* ବାସ କରିବା ।

Residence, *n.* ବସତ, ବାସସ୍ଥାନ, ବାସଗୃହ । [ ବାସସ୍ଥାନ ।
Residency, *n.* ରାଜପ୍ରତନିଧିଙ୍କ
Resident, *n.* ଅଧିବାସୀ,ରାଜପ୍ରତନିଧି ।
Residential, *a.* ବାସଯୋଗ୍ୟ, ଆବାସିକ, ବାସସ୍ଥାନ ସମ୍ବନ୍ଧୀୟ ।
Residual, *a.* ଅବଶିଷ୍ଟ ।
Residuary, *a.* ଅବଶିଷ୍ଟାଂଶ ସମ୍ବନ୍ଧୀୟ ।
Residue, *n.* ଅବଶେଷ, ଅବଶିଷ୍ଟାଂଶ ।
Resign, *v.* କାର୍ଯ୍ୟତ୍ୟାଗ କରବା,ଇସ୍ତଫା ଦେବା । [ ଇସ୍ତଫା ।
Resignation, *n.* କାର୍ଯ୍ୟପରତ୍ୟାଗ,
Resilience, *n.* ପ୍ରତଘାତ ।
Resilient, *a.* ପ୍ରତଘାତକାରୀ ।
Resin, *n.* ଝୁଣା, ସର୍ଜରସ ।
Resinous, *a.* ଝୁଣାଯୁକ୍ତ, ଝୁଣାମୟ ।
Resiny, *a.* ଝୁଣାତୁଲ୍ୟ, ଝୁଣାଜାତୀୟ ।
Resist, *v.* ପ୍ରତରୋଧ କରବା, ବାଧା ଦେବା । [ ପ୍ରତରୋଧ ।
Resistance, *n.* ବାଧା, ବରୋଧ,
Resistant, *a.* ପ୍ରତରୋଧକାରକ ।
Resistibility, *n.* ପ୍ରତରୋଧ କରବା ଶକ୍ତ । [ ନବାରଣୀୟ ।
Resistible, *a.* ପ୍ରତରୋଧନୀୟ,
Resolute, *a.* ନଶ୍ଚିତ, ଦୃଢ଼,କୃତନଶ୍ଚୟ ।
Resolutely, *ad.* ଦୃଢ଼ଭାବରେ ।
Resoluteness, *n.* ନଶ୍ଚୟ, ଦୃଢ଼ତା, ସଙ୍କଳ୍ପ ।
Resolution, *n.* ସଙ୍କଳ୍ପ, ପ୍ରତଜ୍ଞା, ପ୍ରସ୍ତାବ । [ ମୀମାଂସାର୍ହ ।
Resolvable, *a.* ବଶ୍ଳେଷଣାର୍ହ,
Resolve, *v.* ପ୍ରସ୍ତାବ ଗ୍ରହଣ କରବା, ପ୍ରତଜ୍ଞା କରବା,ମୀମାଂସା କରବା; *n.* ସଙ୍କଳ୍ପ, ପ୍ରତଜ୍ଞା, ମୀମାଂସା ।
Resonance, *n.* ପ୍ରତଧ୍ୱନ, ପ୍ରତନାଦ ।
Resonant, *a.* ପ୍ରତଧ୍ୱନଶୀଳ, ଶବ୍ଦାୟ-ମାନ । [ନେବା; *n.* ଆଶ୍ରୟ, ଶରଣ, ଗତ ।
Resort, *v.* ଅବଲମ୍ବନ କରବା, ଆଶ୍ରୟ
Resound, *v.* ପ୍ରତଧ୍ୱନତ ହେବା ।
Resource, *n.* ଉପାୟ, ବତ୍ତ, ଅର୍ଥ, ସାମଗ୍ରୀ, ସଙ୍ଗତ, ଉପସ୍ଥିତବୁଦ୍ଧି ।
Resourceful, *a.* ଉପାୟବନ୍ତ ।
Respect, *v.* ସମ୍ମାନ କରବା, ଭକ୍ତ କରବା; *n.* ପୂଜା,ସମ୍ମାନ,ଆଦର,ସମ୍ଭାବନା ।
Respectability, *n.* ମର୍ଯ୍ୟାଦା, ଭଦ୍ରତା । [ ମାନନୀୟ, ସମ୍ମାନାର୍ହ ।
Respectable, *a.* ମର୍ଯ୍ୟାଦାବନ୍ତ, ଭଦ୍ର,
Respectably, *ad.* ସମ୍ମାନାର୍ହଭାବରେ
Respected, *a.* ସମ୍ମାନତ, ପୂଜତ ।
Respectful, *a.* ବନୀତ, ସମ୍ମାନପୂର୍ଣ୍ଣ ।
Respectfully, *ad.* ବନୟସହ-କାରେ, ସସମ୍ମାନେ । [ ବଷୟରେ ।
Respecting, *pre.* ସମ୍ବନ୍ଧରେ,
Respective, *a.* ଯଥାକ୍ରମ, ସ୍ୱସ୍ୱ, ଆପଣା ଆପଣା ।

Respectively, *ad.* ଯଥାକ୍ରମେ, ପର୍ଯ୍ୟାୟକ୍ରମେ । [ ଶ୍ୱାସକ୍ରିୟା ।

Respiration, *n.* ଶ୍ୱାସପ୍ରଶ୍ୱାସଗ୍ରହଣ,

Respirative, *a.* ଶ୍ୱାସପ୍ରଶ୍ୱାସକ୍ଷମ ।

Respiratory, *a.* ଶ୍ୱାସପ୍ରଶ୍ୱାସ ସମ୍ବନ୍ଧୀୟ ।

Respire, *v.* ଶ୍ୱାସପ୍ରଶ୍ୱାସ ଗ୍ରହଣ କରିବା ।

Respite, *n.* ବିରାମ, ବିରତି, ବିଳମ୍ବ, ବଧ ବ୍ୟାପାର ଦଣ୍ଡବିଧାନକୁ ସାମୟିକ ସ୍ଥଗିତକରଣ ।

Resplendence, Resplendency, *n.* ତେଜଃ, ଦୀପ୍ତି, ଆଭା, ଉଜ୍ଜ୍ୱଳତା ।

Resplendent, *a.* ଦେଦୀପ୍ୟମାନ, ଦୀପ୍ତ, ତେଜସ୍ୱାନ୍ । [ କରିବା ।

Respond, *v.* ଉତ୍ତରଦେବା, ପ୍ରତିକ୍ରିୟା

Respondence, Respondency, *n.* ଉତ୍ତରପ୍ରଦାନ । [ ଦାତା ।

Respondent, *n.* ପ୍ରତିବାଦୀ, ଉତ୍ତର-

Response, *n.* ଉତ୍ତର, ପ୍ରତିବଚନ ।

Responsibility, *n.* ଦାୟିତ୍ୱ, କାର୍ଯ୍ୟଭାର । [ ସମ୍ପନ୍ନ ।

Responsible, *a.* ଦାୟୀ, ଦାୟିତ୍ୱ-

Responsibly, *ad.* ଦାୟିତ୍ୱ ସହକାରେ ।

Responsive, *a.* ଉତ୍ତରକାରୀ ।

Rest, *v.* ବିଶ୍ରାମ କରିବା, ସ୍ଥିର ହେବା, ଆଶ୍ରୟ କରିବା; *n.* ବିଶ୍ରାମ, ନିଦ୍ରା, ଅବଶେଷ ।

Restaurant, *n.* ଭୋଜନାଳୟ ।

Restful, *a.* ଶାନ୍ତିମୟ, ବିଶ୍ରାମପୂର୍ଣ୍ଣ ।

Restitution, *n.* ପ୍ରତ୍ୟର୍ପଣ, ପ୍ରତ୍ୟାନୟନ, ପୁନଃପ୍ରତିଷ୍ଠା ।

Restive, *a.* ଦୁର୍ବୃତ୍ତ, ଉଦ୍ଧତ, ଅବାଧ୍ୟ ।

Restively, *ad.* ଅବାଧ୍ୟଭାବରେ ।

Restiveness, *n.* ଔଦ୍ଧତ୍ୟ, ଅବାଧ୍ୟତା ।

Restless, *a.* ବ୍ୟାକୁଳ, ଚଞ୍ଚଳ, ଅସ୍ଥିର, ଉଦ୍‌ବିଗ୍ନ, ଅଶାନ୍ତ, ଉତ୍ତେଜିତ ।

Restlessly, *ad.* ଅସ୍ଥିରଭାବରେ ।

Restlessness, *n.* ଅସ୍ଥିରତା, ବ୍ୟାକୁଳତା, ଉଦ୍‌ବେଗ, ଉତ୍ତେଜନା ।

Restoration, *n.* ପୁନର୍ଲବ୍ଧି, ପ୍ରତ୍ୟର୍ପଣ, ପୁନଃପ୍ରାପ୍ତି । [ ରୋଗନାଶକ ।

Restorative, *a.* ସ୍ୱାସ୍ଥ୍ୟକାରକ,

Restore, *v.* ପ୍ରତ୍ୟର୍ପଣ କରିବା, ସୁସ୍ଥ କରିବା । [ କରିବା, ସଂଯତ କରିବା ।

Restrain, *v.* ନିରୋଧ କରିବା, ଦମନ

Restraint, *n.* ନିଗ୍ରହ, ନିରୋଧ, ଦମନ, ସଂଯମ । [ ସୀମାବଦ୍ଧ କରିବା ।

Restrict, *v.* ନିରୋଧ କରିବା,

Restricted, *a.* ସୀମାବଦ୍ଧ, ସୀମିତ ।

Restriction, *n.* ନିରୋଧ, ସୀମା, ନିୟମାଧୀନତା । [ ବାଧାଦାୟକ ।

Restrictive, *a.* ନିରୋଧମୂଳକ,

Result, *n.* ଫଳ, ପରିଣତି; *v.* ଫଳିବା, ପରିଣତ ହେବା ।

Resultant, *n.* ସବୁତ ପରିଣାମ, ସମ୍ମିଳିତ ଶକ୍ତି; *a.* ସମ୍ମିଳନରୁ ଉତ୍ପନ୍ନ ।
Resumable, *a.* ପୁନର୍ଗ୍ରହଣୀୟ ।
Resume, *v.* ପୁନର୍ଗ୍ରହଣ କରିବା, ପୁଣି ଆରମ୍ଭ କରିବା । [ ପୁନର୍ଗ୍ରହଣ ।
Resumption, *n.* ପ୍ରତ୍ୟାଦାନ,
Resurge, *v.* ପୁନରୁତ୍ଥିତ ହେବା ।
Resurgence, *n.* ପୁନରୁତ୍ଥାନ ।
Resurgent, *a.* ପୁନରୁତ୍ଥାନଶୀଳ ।
Resurrect, *v.* ପୁନରୁଜ୍ଜୀବିତ ହେବା, ପୁନର୍ଜୀବନ ଲାଭ କରିବା ।
Resurrection, *n.* ପୁନର୍ଜୀବନଲାଭ, ମୃତ୍ୟୁପରେ ଉତ୍ଥାନ ।
Resusciate, *v.* ପୁନର୍ଜୀବିତ କରିବା ।
Resusciation, *n.* ପୁନର୍ଜୀବନ-ପ୍ରଦାନ । [ *n.* ଖୁଚୁରା ବିକ୍ରୟ ।
Retail, *v.* ଖୁଚୁରା ବିକ୍ରି କରିବା,
Retailer, *n.* ଖୁଚୁରା ବିକ୍ରେତା ।
Retain, *v.* ନିଜ ଅଧୀନରେ ରଖିବା, ନିଯୁକ୍ତ କରିବା । [ ରକ୍ଷଣୀୟ ।
Retainable, *a.* ନିଜ ଅଧିକାରରେ
Retainer, *n.* ଅନୁଚର, ଭୃତ୍ୟ, ସେବକ, ପରିଚାରକ ।
Retake, *v.* ପୁନରଧିକାର କରିବା ।
Retaliate, *v.* ପ୍ରତିଶୋଧ ନେବା, ପ୍ରତିଫଳ ଦେବା । [ ପ୍ରତିଫଳ ।
Retaliation, *n.* ପ୍ରତିଶୋଧ,
Retaliative, Retaliatory, *a.* ପ୍ରତିଶୋଧମୂଳକ, ଯେସାକୁ ତେସା ।
Retard, *v.* ବାଧା ଦେବା, ରୋଧ କରିବା, ବିଳମ୍ବ କରିବା । [ ପ୍ରତିବନ୍ଧ ।
Retardation, *n.* ରୋଧ, ବାଧା,
Retention, *n.* ଧାରଣ, ଗ୍ରହଣ, ଅଟକ, ରକ୍ଷଣ ।
Retentive, *a.* ଧାରଣକ୍ଷମ ।
Reticence, Reticency, *n.* ମୌନଭାବ, ମୂକତା, ବାକ୍‌ସଂଯମ ।
Reticent, *a.* ବାକ୍‌ସଂଯତ, ମୌନାବଲମ୍ବୀ । [ ପରି ବୁଣା ଥଳି ।
Reticle, Reticule, *n.* ଜାଲ୍-
Reticular, *a.* ଜାଲସଦୃଶ, ଛନ୍ଦାଛନ୍ଦି ।
Reticulate, Reticulated, *a.* ଜାଲପରି ପ୍ରସ୍ତୁତ; ଜାଲପରି ଛନ୍ଦାଛନ୍ଦି ହୋଇଥିବା ।
Retina, *n.* ଚକ୍ଷୁରେ ଥିବା ସୂକ୍ଷ୍ମ ତ୍ୱକ୍-ବିଶେଷ (*pl.* Retinæ) ।
Retinue, *n.* ପରିଜନ, ଭୃତ୍ୟବର୍ଗ, ପରିଚାରକ, ଅନୁଚରଗଣ ।
Retire, *v.* ଅବସର ଗ୍ରହଣ କରିବା, କର୍ମତ୍ୟାଗ କରିବା, ପ୍ରସ୍ଥାନ କରିବା ।
Retired, *a.* ଅବସରପ୍ରାପ୍ତ, ନିଭୃତ ।
Retirement, *n.* ଅବସରଗ୍ରହଣ, ନିଭୃତ ସ୍ଥାନ, ଅପସରଣ ।
Retort, *v.* ପ୍ରତ୍ୟୁତ୍ତର ଦେବା, ଓଲଟ ଜବାବ ଦେବା; *n.* ପ୍ରତ୍ୟୁତ୍ତର, ବକଯନ୍ତ୍ର ।

Retouch, *v.* ପୁନର୍ବାର ଚିତ୍ର କରିବା ବା ଲେଖିବା, ସଂଶୋଧନ କରିବା ।
Retrace, *v.* ପ୍ରତ୍ୟାବୃତ୍ତ ହେବା, ଅନୁସନ୍ଧାନ କରିବା, ଫେରାଇନେବା ।
Retract, *v.* ପ୍ରତ୍ୟାଖ୍ୟାନ କରିବା, ନିଜ କଥାକୁ ଅସ୍ୱୀକାର କରିବା, ଫେରାଇ ନେବା । [ *a.* ପ୍ରତ୍ୟାଖ୍ୟାନଯୋଗ୍ୟ ।
Retractable, Retractible,
Retraction, *n.* ପ୍ରତ୍ୟାଖ୍ୟାନ, ଅନ୍ୟଥାକରଣ । [ ପ୍ରତ୍ୟାଖ୍ୟାନମୂଳକ ।
Retractive, *a.* ଅନ୍ୟଥାକାରକ,
Retractor, *n.* ଯେ ନିଜ କଥାକୁ ପ୍ରତ୍ୟାହାର କରେ ।
Retreat, *v.* ପ୍ରତ୍ୟାବର୍ତ୍ତନ କରିବା, ହଟିଯିବା; *n.* ପ୍ରତ୍ୟାବର୍ତ୍ତନ, ପଳାୟନ, ନିଭୃତ ସ୍ଥାନ । [ ଛଟେଇ କରିବା ।
Retrench, *v.* ନ୍ୟୂନ ବା ହ୍ରାସ କରିବା,
Retrenchment, *n.* ଛଟେଇ, ବ୍ୟୟସଙ୍କୋଚ । [ ପରୀକ୍ଷା ।
Retrial, *n.* ପୁନର୍ବିଚାର, ପୁନର୍ବାର
Retribute, *v.* ପରିଶୋଧ କରିବା, ପ୍ରତିଫଳ ଦେବା । [ ପ୍ରତିଶୋଧ, ପ୍ରତିଦାନ ।
Retribution, *n.* ପ୍ରତିଫଳ,
Retributive, Retributory, *a.* ପ୍ରତିଶୋଧମୂଳକ, କାର୍ଯ୍ୟାନୁରୂପ ପୁରସ୍କାର ବା ଦଣ୍ଡମୂଳକ ।
Retrievable, *a.* ପୁନରୁଦ୍ଧରଣୀୟ ।
Retrieval, *n.* ପୁନରୁଦ୍ଧାର, ପୂରଣ ।
Retrieve, *v.* ପୁନଃପ୍ରାପ୍ତ ହେବା, ପୁନରୁଦ୍ଧାର କରିବା, ପୂରଣ କରିବା ।
Retrograde, *a.* ବିପରୀତଗାମୀ, ଅବନତିପ୍ରାପ୍ତ; *v.* ପଶ୍ଚାଦ୍‌ଗାମୀ ହେବା, ପଛକୁ ହଟିବା । [ ପଶ୍ଚାଦ୍‌ଗତି, ଅବନତି ।
Retrogression, *n.* ବିପରୀତ ଗତି,
Retrogressive, *a.* ପଶ୍ଚାଦ୍‌ଗତିଶୀଳ, ଅବନତିଗାମୀ । [ ଗତିପୂର୍ବକ ।
Retrogressively, *ad.* ପଶ୍ଚାଦ୍-
Retrospect, *n.* ଅତୀତର ପର୍ଯ୍ୟାଲୋଚନା, ପଶ୍ଚାଦ୍ଦୃଷ୍ଟି । [ ନିକ୍ଷେପ ।
Retrospection, *n.* ପଶ୍ଚାଦ୍ଦୃଷ୍ଟି-
Retrospective, *a.* ଅତୀତବିଷୟ-ଦର୍ଶୀ, ଅତୀତର ପର୍ଯ୍ୟାଲୋଚକ, ଅତୀତରୁ କାର୍ଯ୍ୟକାରୀ । [ କାର୍ଯ୍ୟକାରୀଭାବରେ ।
Retrospectively, *ad.* ଅତୀତରୁ
Return, *v.* ଫେରିବା, ପ୍ରତ୍ୟାବର୍ତ୍ତନ କରିବା; *n.* ପ୍ରତ୍ୟାଗମନ, ପ୍ରତ୍ୟର୍ପଣ ।
Returns, *n.* (*pl.*) ହିସାବ ଫର୍ଦ୍ଦ, ବିବରଣୀ, ଲାଭ ।
Reunion, *n.* ପୁନର୍ମିଳନ ।
Reunite, *v.* ପୁନର୍ମିଳନ କରିବା ।
Reunited, *a.* ପୁନର୍ମିଳିତ ।
Reveal, *v.* ପ୍ରକାଶ କରିବା, ପ୍ରକଟ କରିବା, ଜଣାଇଦେବା ।
Revel, *n.* ମଦ୍ୟପାନସହ ଆମୋଦ; *v.* ମଦ୍ୟପାନସହ ଆମୋଦ କରିବା ।

Revelation, *n.* ପ୍ରକଟନ, ପ୍ରକାଶନ, ଅପୌରୁଷେୟ ଶାସ୍ତ୍ର । [ କାରୀ ।
Reveller, *n.* ମଦ୍ୟପାନସହ ଆମୋଦ-
Revelry, *n.* ପାନୋତ୍ସବ, ମଦ୍ୟପାନ-ସହ ନୃତ୍ୟଗୀତାଦି ।
Revenge, *n.* ପ୍ରତିହିଂସା,ବୈରସାଧନ; *v.* ପ୍ରତିହିଂସା କରିବା, ପ୍ରତିଶୋଧ ନେବା ।
Revengeful, *a.* ପ୍ରତିହିଂସାପରାୟଣ, ପ୍ରତିଶୋଧଶୀଳ । [ ପ୍ରତିଶୋଧକାରୀ ।
Revenger, *n.* ପ୍ରତିହିଂସକ,
Revenue, *n.* କର, ଆୟ, ରାଜସ୍ୱ ।
Reverberant, *a.* ପ୍ରତିଧ୍ୱନିକାରୀ ।
Reverberate, *v.* ପ୍ରତିଧ୍ୱନି କରିବା ।
Reverberation, *n.* ପ୍ରତିଧ୍ୱନି, ପ୍ରତିଶବ୍ଦ, ପ୍ରତିକ୍ଷେପ । [ ଉପାସନା କରିବା ।
Revere, *v.* ଭକ୍ତି କରିବା, ପୂଜା କରିବା,
Reverence, *n.* ଭକ୍ତି, ଅର୍ଚ୍ଚନା, ପୂଜା, ସତ୍କାର; *v.* ଭକ୍ତି କରିବା, ପୂଜା କରିବା ।
Reverend, *a.* ପୂଜ୍ୟ,ଅର୍ଚ୍ଚନୀୟ, ଉପାସ୍ୟ, ମାନନୀୟ ।
Reverent, Reverential, *a.* ଭକ୍ତିମାନ୍, ସସମ୍ଭ୍ରମ, ଭକ୍ତିପୂର୍ଣ୍ଣ ।
Reverently, Reverentially, *ad.* ଭକ୍ତି ସହକାରେ ।
Reverie, *n.* ଚିନ୍ତା, ଧ୍ୟାନ, ଭାବନା ।
Reversal, *n.* ପରିବୃତ୍ତି, ବିପର୍ଯ୍ୟୟ ।
Reverse, *n.* ପୃଷ୍ଠଭାଗ, ଦୁର୍ବିପାକ, ବିପର୍ଯ୍ୟୟ; *v.* ଓଲଟାଇଦେବା ।
Reversed, *a.* ବିପର୍ଯ୍ୟସ୍ତ, ବିଲୋମ ।
Reversely, *ad.* ବିପର୍ଯ୍ୟସ୍ତଭାବରେ, ବିଲୋମପୂର୍ବକ, ଓଲଟା ବାଗରେ ।
Reversible, *a.* ଯାହାର ବିପରୀତ କରାଯାଇପାରେ, ଯାହାର ବିପର୍ଯ୍ୟୟ ସମ୍ଭବପର ।
Reversion, *a.* ପୁନରାଗମନ, ଉତ୍ତରାଧିକାର । [ ସମ୍ବନ୍ଧୀୟ ।
Reversional, *a.* ଉତ୍ତରାଧିକାର
Reversionary, *a.* ଉତ୍ତରାଧିକାର-ସମ୍ବନ୍ଧୀୟ । [ ଫେରିବା ।
Revert, *v.* ପ୍ରତ୍ୟାବର୍ତ୍ତନ କରିବା,
Review, *n.* ସମୀକ୍ଷା, ଆଲୋଚନା; *v.* ଦୋଷଗୁଣ ବିଚାର କରିବା,ସମାଲୋଚନା କରିବା ।
Reviewer, *n.* ସମାଲୋଚକ,ସମୀକ୍ଷକ ।
Revile, *v.* ଭର୍ତ୍ସନା କରିବା, ନିନ୍ଦା କରିବା, ଗାଳିଦେବା ।
Reviler, *n.* ଭର୍ତ୍ସନାକାରୀ, ନିନ୍ଦୁକ ।
Revise, *v.* ସଂଶୋଧନ କରିବା, ପୁନଃ ପରୀକ୍ଷା କରିବା ।
Revised, *a.* ସଂଶୋଧିତ, ପୁନଃପରୀକ୍ଷିତ ।
Revision, *n.* ସଂଶୋଧନ, ପୁନଃପରୀକ୍ଷା ।
Revisional, Revisionary, *a.* ସଂଶୋଧନମୂଳକ, ପୁନଃପରୀକ୍ଷାମୂଳକ ।
Reviser, Revisor, *n.* ସଂଶୋଧକ, ପୁନଃପରୀକ୍ଷାକାରୀ । [ ପୁନରୁତ୍ଥାନ ।
Revival, *n.* ପୁନର୍ଜୀବନଲାଭ, ସଂଜ୍ଞାପ୍ରାପ୍ତି,
Revive, *v.* ପୁନର୍ଜୀବନ ଦେବା ।

**Revocable**, *a.* ଖଣ୍ଡନୀୟ, ଅନ୍ୟଥା-କରଣୀୟ । [ଅନ୍ୟଥାକରଣ,ରଦ୍ଦକରଣ ।
**Revocation**,*n.* ଖଣ୍ଡନ, ପ୍ରତ୍ୟାଦେଶ,
**Revoke**, *v.* ଅନ୍ୟଥା କରିବା, ରଦ୍ଦ କରିବା, ରଦ୍ଦ କରିବା ।
**Revolt**, *v.* ବିଦ୍ରୋହ କରିବା, ବିପ୍ଳବ କରିବା; *n.* ରାଜଦ୍ରୋହ, ବିପ୍ଳବ । [ ଜଘନ୍ୟ ।
**Revolting**, *a.* ବୀଭତ୍ସ, ଗର୍ହଣୀୟ,
**Revolution**, *n.* ଆବର୍ତ୍ତନ, ଘୂର୍ଣ୍ଣନ, ଭ୍ରମଣ,ବିଦ୍ରୋହ,ବିପ୍ଳବ । [ବିଦ୍ରୋହମୂଳକ ।
**Revolutionary**, *a.* ବିଦ୍ରୋହୀ,
**Revolutionist**,*n.*ବିଦ୍ରୋହୀ,ବିପ୍ଳବୀ ।
**Revolutionize**, *v.* ବିପ୍ଳବ ସୃଷ୍ଟି କରିବା, ଆମୂଳ ପରିବର୍ତ୍ତନ କରିବା ।
**Revolve**, *v.*ପରିକ୍ରମଣ କରିବା,ଘୂରିବା ।
**Revolver**, *n.* କ୍ଷୁଦ୍ର ବନ୍ଧୁକବିଶେଷ ।
**Revolving**, *a.* ଘୂର୍ଣ୍ଣନଶୀଳ, ଘୂର୍ଣ୍ଣାୟମାନ, ଘୂରୁଥିବା ।
**Revulsion**, *n.* ବିରାଗ, ବିରକ୍ତି ।
**Revulsive**,*a.*ବିରକ୍ତିକର,ଘୃଣାଜନକ ।
**Reward**, *n.* ପୁରସ୍କାର, ପାରିତୋଷିକ; *v.* ପୁରସ୍କାର ଦେବା । [ ବାଗାଡ଼ମ୍ବର ।
**Rhapsody**, *n.* ଅସମ୍ବଦ୍ଧ କବିତା,
**Rhetoric**, *n.* କାବ୍ୟାଳଙ୍କାର, ବାକ୍-ପଟୁତା । [ ଅଳଙ୍କାରବିଷୟକ ।
**Rhetorical**, *a.* ଆଳଙ୍କାରିକ,
**Rhetorician**, *n.* ଅଳଙ୍କାରଶାସ୍ତ୍ରଜ୍ଞ, ବାଗ୍ମୀ, ବାକ୍‌ପଟୁ ।
**Rhetorics**, *n.* ଅଳଙ୍କାର ଶାସ୍ତ୍ର ।
**Rheum**, *n.* କଫ, ଶ୍ଳେଷ୍ମା, କ୍ଳେଦ ।
**Rheumatic**, *a.* ବାତରୋଗଗ୍ରସ୍ତ ।
**Rheumatism**, *n.* ବାତରୋଗ, ଗଣ୍ଠିବାତ ।
**Rhinoceros**, *n.* ଗଣ୍ଡାର, ଗଣ୍ଡା ।
**Rhombus**, *n.* ବିଷମକୋଣୀ ସମ-ଚତୁର୍ଭୁଜ, ରମ୍ବସ ।
**Rhyme**, *n.* ମିତାକ୍ଷର; *v.* କବିତାର ପଙ୍‌କ୍ତିମାନଙ୍କର ପ୍ରାନ୍ତ ବର୍ଣ୍ଣ ମିଳିବା ।
**Rhythm**, *n.* ତାଳ, ଲୟ ।
**Rhythmic, Rhythmical**, *a.* ତାଳବଦ୍ଧ, ତାଳଲୟ ଅନୁଗତ ।
**Rib**, *n.* ପଞ୍ଜରାସ୍ଥି, ପାର୍ଶ୍ୱାସ୍ଥି । [ ବ୍ୟଙ୍ଗ ।
**Ribald**, *a.*ଅଶ୍ଳୀଳ, ଲଜ୍ଜାକର; *n.* ଅଭଦ୍ର
**Rebaldry**, *n.* ଅଶ୍ଳୀଳତା, ଭଣ୍ଡାମି ।
**Ribbon**, *n.* ଫିତା, ବନ୍ଧନୀ ।
**Rice**, *n.* ଚାଉଳ, ଧାନ । [ ଉର୍ବର ।
**Rich**, *a.* ଧନୀ, ବିଭବଶାଳୀ, ବହୁମୂଲ୍ୟ,
**Richly**, *ad.*ଅତିଶୟଭାବରେ,ଧନୀପରି ।
**Richness**, *n.* ବିଭବ, ଧନବତ୍ତା, ଉର୍ବରତା । [ ଅସ୍ଥିବିକୃତି ରୋଗ ।
**Rickets**, *n.* (*pl.*) ଶିଶୁମାନଙ୍କର
**Rickety**, *a.* ଅସ୍ଥିବିକୃତିରୋଗଗ୍ରସ୍ତ, ଦୁର୍ବଳ ।
**Rickshaw**,*n.* ରିକ୍‌ସା, ଯାନବିଶେଷ ।
**Rid**, *v.* ମୁକ୍ତ କରିବା, ଉଦ୍ଧାର କରିବା, ତ୍ୟାଗ କରିବା ।

**Riddance,** *n.* ମୁକ୍ତି, ଉଦ୍ଧାର ।
**Riddle,** *n.* ପ୍ରହେଳିକା, କୂଟପ୍ରଶ୍ନ ।
**Ride,** *v.* ଅଶ୍ୱାରୋହଣରେ ଯିବା, ଆରୋହଣ କରିବା; *n.* ଆରୋହଣ, ଅଶ୍ୱାରୋହଣ ।
**Rider,** *n.* ଅଶ୍ୱାରୋହୀ, ଆରୋହଣକାରୀ ।
**Ridge,** *n.* ଗିରିଶିଖର, ଗିରିଶ୍ରେଣୀ, ମଥାନ, ହିଡ଼ ।
**Ridicule,** *n.* ଉପହାସ, ଥଟ୍ଟା; *v.* ଉପହାସ କରିବା ।
**Ridiculous,** *a.* ଉପହାସଜନକ, ହାସ୍ୟାସ୍ପଦ ।
**Riding,** *n.* ଅଶ୍ୱାରୋହଣ; *a.* ଆରୋହଣ କରିଥିବା ।
**Rife,** *a.* ସର୍ବତ୍ର ପ୍ରଚଳିତ, ପରିପୂର୍ଣ୍ଣ ।
**Riffraff,** *n.* ଇତର ଲୋକ, ନୀଚ ସମାଜ ।
**Rifle,** *n.* ଆଗ୍ନେୟାସ୍ତ୍ରବିଶେଷ, ବନ୍ଧୁକ; [ *v.* ଲୁଟି କରିବା ।
**Rifles,** *n.* (*pl.*) ବନ୍ଧୁକଧାରୀ ସୈନ୍ୟଦଳ ।
**Rift,** *n.* ଫାଙ୍କ, ଭେଦ, ଛିଦ୍ର ।
**Rig,** *n.* ଜାହାଜର ପାଲ ଦଉଡ଼ି; *v.* ଜାହାଜରେ ପାଲଦଉଡ଼ି ପ୍ରଭୃତି ଖଞ୍ଜିବା ।
**Rigging,** *n.* ପୋତସଜ୍ଜା, ପୋତର ରଜ୍ଜୁ ପ୍ରଭୃତି ସାମଗ୍ରୀ ।
**Right,** *a.* ଦକ୍ଷିଣ, ଡାହାଣ, ଉଚିତ, ଠିକ୍, ନ୍ୟାଯ୍ୟ; *n.* ଅଧିକାର; *ad* ଠିକ୍‌ରୂପେ ।
**Righteous,** *a.* ନ୍ୟାୟପରାୟଣ, ଧର୍ମଶୀଳ ।
**Righteously,** *ad.* ଧର୍ମତଃ, ନ୍ୟାୟତଃ, ସତ୍ ଉପାୟରେ ।
**Righteousness,** *n.* ଧାର୍ମିକତା, ନ୍ୟାୟପରତା ।
**Rightful,** *a.* ଅଧିକାରବିଶିଷ୍ଟ, ଅଧିକାରଯୁକ୍ତ ।
**Rightly,** *ad.* ଯଥାର୍ଥରେ, ନ୍ୟାୟତଃ
**Rigid,** *a.* କଠୋର, କର୍କଶ, ଉଗ୍ର ।
**Rigidity, Rigidness,** *n.* କାଠିନ୍ୟ, କଠୋରତା ।
**Rigidly,** *ad.* କଠୋରଭାବରେ, ଦୃଢ଼ରୂପେ ।
**Rigmarole,** *n.* ଅନର୍ଥକ କଥା ।
**Rigorous,** *a.* କଠୋର, ନିଷ୍ଠୁର, ସଗ୍ରମ ।
**Rigorously,** *ad.* କଠୋରଭାବରେ ।
**Rigour,** *n.* ଦୃଢ଼ତା, ନିଷ୍ଠୁରତା, କର୍କଶତା, ଦାରୁଣ ।
**Rill,** *n.* କ୍ଷୁଦ୍ରନଦୀ, ନାଳ ।
**Rim,** *n.* ପ୍ରାନ୍ତ, ଧାର, ଶେଷଭାଗ ।
**Rime,** *n.* ଶିଶିରକଣିକା, ହିମବିନ୍ଦୁ ।
**Rind,** *n.* ତ୍ୱକ୍, ବଲ୍କଲ, ଚୋପା ।
**Rinderpest,** *n.* ଗୋରୁମାନଙ୍କର ରୋଗବିଶେଷ ।
**Ring,** *n.* ମୁଦ୍ରିକା, ମୁଦି; *v.* ବାଜିବା, ବଜାଇବା ।
**Ringleader,** *n.* କୁକର୍ମର ନେତା ।
**Ringlet,** *n.* ଅଳକ, ଚୂର୍ଣ୍ଣକୁନ୍ତଳ ।
**Ringworm,** *n.* ଦଦ୍ରୁ, ଯାଦୁ ।
**Rinse,** *v.* ଧୋଇବା, ପ୍ରକ୍ଷାଳନ କରିବା
**Riot,** *n.* ବିପ୍ଳବ, କୋଳାହଳ, ଗୋଳମାଳ; *v.* ଗୋଳମାଳ କରିବା ।

Rioter, *n.* ଗୋଳମାଳକାରୀ । [ପୂର୍ଣ୍ଣ ।
Riotous, *a.* ବଳାତ୍ପୂର୍ଣ୍ଣ, ଗୋଳମାଳ-
Riotously, *ad.* ଗୋଳମାଳ-
ପ୍ରବକାରେ, ବଳାତରେ ।
Rip, *v.* ଚିରିବା, ଫାଡ଼ିବା ।
Riparian, *a.* ନଦୀକୂଳସମ୍ବନ୍ଧୀୟ, ନଦୀକୂଳପ୍ରିୟ ପଶୁବିଷୟକ ।
Ripe, *a.* ପକ୍ୱ, ପାଚିଲା ।
Ripen, *v.* ପକ୍ୱ ହେବା, ପାଚିବା ।
Ripeness, *n.* ପକ୍ୱତା, ପରିପାକ ।
Ripple, *n.* କ୍ଷୁଦ୍ରତରଙ୍ଗ, ଲହରୀ; *v.* ତରଙ୍ଗିତ ହେବା । [ *n.* ଉଦୟ, ବୃଦ୍ଧି ।
Rise, *v.* ଉଦିତ ହେବା, ବୃଦ୍ଧି ପାଇବା;
Risibility, *n.* ହାସ୍ୟୋଦ୍ଦୀପକତା ।
Risible, *a.* ହାସ୍ୟକର, ହାସ୍ୟୋଦ୍ଦୀପକ ।
Rising, *a.* ଉଦୀୟମାନ, ବର୍ଦ୍ଧିଷ୍ଣୁ, ବର୍ଦ୍ଧନଶୀଳ; *n.* ଉଦୟ, ବୃଦ୍ଧି, ବିଦ୍ରୋହ ।
Risk, *n.* କ୍ଷତି ବା ବିପଦର ଦାୟିତ୍ୱ; *v.* ଦାୟିତ୍ୱ ଗ୍ରହଣ କରିବା ।
Risky, *a.* ଦାୟିତ୍ୱପୂର୍ଣ୍ଣ, ଆଶଙ୍କାମୟ ।
Rite, *n.* ଧର୍ମବିଧି, ଧର୍ମକର୍ମ, ଆଚାର, ଶାସ୍ତ୍ରବିହିତ କର୍ମ ।
Ritual, *a.* ଶାସ୍ତ୍ରବିହିତ, ଧର୍ମାନୁମୋଦିତ; *n.* ଧର୍ମାନୁମୋଦିତ କର୍ମ । [ କରିବା ।
Rival, *n.* ପ୍ରତିଦ୍ୱନ୍ଦୀ; *v.* ପ୍ରତିଦ୍ୱନ୍ଦିତା
Rivalry, *n.* ପ୍ରତିଦ୍ୱନ୍ଦିତା, ପ୍ରତିସ୍ପର୍ଦ୍ଧା ।
Rive, *v.* ଛିନ୍ନ କରିବା, ଫାଟିବା ।
River, *n.* ନଦୀ, ସ୍ରୋତସ୍ୱତୀ ।
Rivet, *n.* କଣ୍ଟା; *v.* କଣ୍ଟାଦ୍ୱାରା ସଂଯୁକ୍ତ କରିବା ।
Rivulet, *n.* କ୍ଷୁଦ୍ର ନଦୀ, ନାଳ ।
Road, *n.* ପଥ, ମାର୍ଗ, ରାସ୍ତା, ସଡ଼କ ।
Roadstead, *n.* ଜାହାଜର ଲଙ୍ଗର ପକାଇବା ସ୍ଥାନ । [ ବୁଲିବା ।
Roam, *v.* ପରିଭ୍ରମଣ କରିବା, ଇତସ୍ତତଃ
Roamer, *n.* ଭ୍ରମଣକାରୀ, ପର୍ଯ୍ୟଟକ ।
Roaming, *a.* ଭ୍ରାମ୍ୟମାଣ, ପର୍ଯ୍ୟଟନକାରୀ; *n.* ପରିଭ୍ରମଣ, ପର୍ଯ୍ୟଟନ । [ *n.* ଗର୍ଜନ ।
Roar, *v.* ଗର୍ଜନ କରିବା, ଶବ୍ଦ କରିବା;
Roaring, *a.* ଗର୍ଜନକାରୀ ।
Roast, *v.* ସିଝ କରିବା, ଭାଜିବା; *n.* ଭଜା ହୋଇଥିବା ଖାଦ୍ୟ ।
Rob, *v.* ଚୋରି କରିବା, ଲୁଣ୍ଠନ କରିବା ।
Robber, *n.* ଚୋର, ଦସ୍ୟୁ, ଡକାଏତ ।
Robbery, *n.* ଚୋରି, ଡକାଏତି, ଦସ୍ୟୁବୃତ୍ତି । [ ପୋଷାକ ପିନ୍ଧିବା ।
Robe, *n.* ପୋଷାକ, ପରିଚ୍ଛଦ; *v.*
Robot, *n.* ଯନ୍ତ୍ରଚାଳିତ କୃତ୍ରିମ ମାନବ ।
Robust, *a.* ଦୃଢ଼ଶରୀର, ମାଂସଳ, ସବଳ । [ ସବଳତା ।
Robustness, *n.* ମାଂସଳତା,
Roc, *n.* ପୁରାଣବର୍ଣ୍ଣିତ ବୃହତ୍ ପକ୍ଷୀ-ବିଶେଷ ।
Rock, *n.* ପାହାଡ଼, ପ୍ରସ୍ତର; *v.* ଦୋଳିରେ ଖେଳିବା, ଦୋଳରେ ଝୁଲିବା ।

Rocket, *n.* ଆଗ୍ନେୟାସ୍ତ୍ରବିଶେଷ, ହାଉଇବାଣ । [ ପାଟ୍ଟାସ୍ଥ ପ୍ରକୃତ ।

Rookiness, *n.* ପର୍ବତବାହୁଲ୍ୟ,

Rocksalt, *n.* ସୈନ୍ଧବଲୁଣ ।

Rocky, *a.* ପ୍ରସ୍ତରମୟ, ପାହାଡ଼ିଆ, ପଥୁରିଆ ।

Rod, *n.* ଦଣ୍ଡ, ଯଷ୍ଟି, ଶଲାକା ।

Rodent, *n.* ଦଂଶନକାରୀ ଜୀବ; *a.* ଦଂଶକ । [ ମାଛଡ଼ିମ୍ବ ।

Roe, *n.* ମୃଗୀ, ହରିଣୀ, ମତ୍ସ୍ୟାଣ୍ଡ,

Rogue, *n.* ବଞ୍ଚକ, ପ୍ରତାରକ, ଦୁରାତ୍ମା ।

Roguish, *a.* ଧୂର୍ତ୍ତ, ଶଠ, ବଞ୍ଚନାପୂର୍ଣ୍ଣ ।

Roguishness, Roguery, *n.* ଶାଠ୍ୟ, ଧୂର୍ତ୍ତତା, ପ୍ରବଞ୍ଚନା ।

Role, *n.* ଭୂମିକା, କର୍ମ ।

Roll, *v.* ଲେଟିବା, ଗଡ଼ିବା, ବିଲୁଣ୍ଠିତ ହେବା, ଘୂରିବା; *n.* ତାଲିକା ।

Roller, *n.* ପରିବର୍ତ୍ତନ ଚକ୍ର, ବେଲେଣା କାଠି, ଗଡ଼ିବା ପଦାର୍ଥ ।

Rollick, *v.* ସ୍ଫୂର୍ତ୍ତି କରିବା ।

Rolling, *n.* ଘୂର୍ଣ୍ଣନ ।

Roman, *a.* ରୋମଦେଶୀୟ; *n.* ରୋମର ଅଧିବାସୀ, ରୋମର ଭାଷା ।

Roman Catholic, *n.* ଖ୍ରୀଷ୍ଟିଆନ ସମ୍ପ୍ରଦାୟବିଶେଷ ।

Romance, *n.* ଆଖ୍ୟାୟିକା, କଳ୍ପିତ କଥା, ଉପନ୍ୟାସ ।

Romantic, *a.* ଅଦ୍ଭୁତ, ବିଚିତ୍ର, କଳ୍ପିତ । [ ବାଳିକା ।

Romp, *n.* ଉଦ୍ଧତ କ୍ରୀଡ଼ା, ଚପଳା

Rood, *n.* ଭୂମିପରିମାଣବିଶେଷ (ଏକ ଏକରର ଚତୁର୍ଥାଂଶ) ।

Roof, *n.* ଛାତ, ଛପ୍ପର; *v.* ଆଚ୍ଛାଦନ କରିବା, ଛାତ ପକାଇବା ।

Roofless, *a.* ଅନାଚ୍ଛାଦିତ, ଛାତନଥିବା ।

Rook, *n.* ବାୟସ, ଡାମରାକାଉ । [ ସ୍ଥଳ

Rookery, *n.* କାଉମାନଙ୍କର ଆଶ୍ରୟ-

Room, *n.* ପ୍ରକୋଷ୍ଠ, କକ୍ଷ, ଗୃହ, ସ୍ଥାନ ।

Roomy, *a.* ବିସ୍ତୀର୍ଣ୍ଣ, ବିଶାଳ, ପ୍ରଶସ୍ତ ।

Roost, *n.* ପକ୍ଷୀର ବସିବା ଦଣ୍ଡ; *v.* ବସିବା, ଆଶ୍ରୟ ନେବା ।

Root, *n.* ଚେର, ମୂଳ, କାରଣ, ହେତୁ; *v.* ଚେର ଧରିବା, ଦୃଢ଼ ହେବା ।

Root out, *v.* ନିର୍ମୂଳ କରିବା, ଉତ୍ପାଟନ କରିବା ।

Rope, *n.* ରଜ୍ଜୁ, ଦଉଡ଼ି । [ ନୃତ୍ୟ ।

Rope-dance, *n.* ଦଉଡ଼ି ଉପରେ

Rope-dancer, *n.* ଯେ ଦଉଡ଼ି ଉପରେ ନୃତ୍ୟ କରେ ।

Rosary, *n.* ଅକ୍ଷମାଳା, ଜପମାଳା ।

Rose, *n.* ଗୋଲାପଫୁଲ । [ ସୁନ୍ଦର ।

Roseal, *a.* ଗୋଲାପସଦୃଶ, ସୁଗନ୍ଧ ଓ

Rose-apple, *n.* ଗୋଲାପଜାମୁ ।

Rosette, *n.* ଫିତାରେ ତିଆରି ଗୋଲାପଫୁଲ, କୃତ୍ରିମ ଗୋଲାପ ।

**Rose-water**, *n.* ଗୋଲାପଜଳ ।
**Rosin**, *n.* ଝୁଣା, ଡାର୍ପିନ ତେଲର କାଣ୍ଟି ।
**Rosiness**, *n.* ଗୋଲାପୀ ଆଭା ।
**Roster**, *n.* ପ୍ରତ୍ୟେକ ବ୍ୟକ୍ତିର କାର୍ଯ୍ୟତାଲିକା ।
**Rostrum**, *n.* ବକ୍ତୃତାମଞ୍ଚ ।
**Rosy**, *a.* ଗୋଲାପୀ, ଗୋଲାପରଙ୍ଗ ।
**Rot**, *v.* ପଚିବା, ସଢ଼ିବା; *n.* ପଚନ, କ୍ଷୟ ।
**Rotary**, *a.* ଚକ୍ରରୂପ ଗତିଶୀଳ ।
**Rotate**, *v.* ଆବର୍ତ୍ତନ କରିବା, ଘୂରିବା ।
**Rotating**, *a.* ଆବର୍ତ୍ତନକାରୀ ।
**Rotation**, *n.* ଆବର୍ତ୍ତନ, ଘୂର୍ଣ୍ଣନ ।
**Rotatory**, *a.* ଆବର୍ତ୍ତନଶୀଳ, ଘୂର୍ଣ୍ଣାୟମାନ ।
**Rote**, *n.* ଆବୃତ୍ତି, ମୁଖସ୍ଥକରଣ ।
**Rotten**, *a.* ପଚା, ସଢ଼ା । [ ପଚାଗୁଣ ।
**Rottenness**, *n.* ପଚନଶୀଳତା,
**Rotund**, *a.* ବର୍ତ୍ତୁଳ, ଗୋଲ ।
**Rotundity**, **Rotundness**, *n.* ବର୍ତ୍ତୁଳତା, ଗୋଲାକାର ।
**Rouge**, *n.* ରକ୍ତିମା, ଲାଲ ରଙ୍ଗ ।
**Rough**, *a.* ନତୋନ୍ନତ, ବିଷମ, ବନ୍ଧୁର, ରୁକ୍ଷ । [ କରିବା ।
**Roughen**, *v.* ଅସମ କରିବା, ସ୍ଥୂଳ
**Roughly**, *ad.* ରୁକ୍ଷଭାବରେ, ନିଷ୍ଠୁର ଭାବରେ, ମୋଟାମୋଟି ।
**Roughness**, *n.* କର୍କଶତା, ରୁକ୍ଷତା, ଅସମତା, କଠୋରତା, ଉଗ୍ରତା ।
**Round**, *a.* ବର୍ତ୍ତୁଳ, ବୃତ୍ତାକାର, ଗୋଲ; *n.* ପରିକ୍ରମା; *pre.* ଚତୁର୍ଦ୍ଦିଗରେ; *v.* ପରିଭ୍ରମଣ କରିବା, ଗୋଲ କରିବା ।
**Roundabout**, *a.* କୁଟିଳ, ବକ୍ର, ଅସରଳ, ଅସ୍ପଷ୍ଟ, ଭୁଲଣିଆ ।
**Roundish**, *a.* ପ୍ରାୟ ଗୋଲାକାର ।
**Roundly**, *ad.* ସ୍ପଷ୍ଟଭାବରେ ।
**Roundness**, *n.* ବର୍ତ୍ତୁଳତା, ଗୋଲାକୃତି, ସ୍ପଷ୍ଟତା ।
**Round up**, *v.* ଘେରାଉ କରିବା ।
**Round-up**, *n.* ଘେରାଉ, ବେଷ୍ଟନ ।
**Rouse**, *v.* ଜାଗ୍ରତ କରିବା, ନିଦରୁ ଉଠାଇବା । [ କୋଳାହଳ ।
**Rout**, *v.* ବିଧ୍ୱଂସ କରିବା; *n.* ଧ୍ୱଂସ,
**Route**, *n.* ପଥ, ମାର୍ଗ, ରାସ୍ତା ।
**Routed**, *a.* ଭଗ୍ନବ୍ୟୂହ, ପଳାୟିତ, ବିଧ୍ୱସ୍ତ । [ ପଦ୍ଧତି ।
**Routine**, *n.* କ୍ରମ, ପର୍ଯ୍ୟାୟ, ନିତ୍ୟକର୍ମ
**Rove**, *v.* ବିଚରଣ କରିବା, ପରିଭ୍ରମଣ କରିବା ।
**Rover**, *n.* ଭ୍ରମଣକାରୀ, ପର୍ଯ୍ୟଟକ ।
**Row**, *v.* ନୌକା ଚଳାଇବା, ଆହୁଲା ମାରିବା; *n.* ଧାଡ଼ି, ଶ୍ରେଣୀ, ପଙ୍କ୍ତି, କଳହ, କୋଳାହଳ । [ ଦୁଷ୍ଟାମି ।
**Rowdism**, *n.* କଳହପ୍ରିୟତା,
**Rowdy**, *a.* କଳହପ୍ରିୟ, ଦୁଷ୍ଟ, ଦୁର୍ଦ୍ଦାନ୍ତ
**Rower**, *n.* ନୌକାର ଚାଳକ, ନାବିକ, ନାଉରି, ଯେ ନୌକା ଚଳାଏ ।

**Royal**, *a.* ରାଜକୀୟ, ରାଜଯୋଗ୍ୟ, ରାଜୋଚିତ; *n.* କାଗଜର ଆକାର-ବିଶେଷ । [ ରାଜଭକ୍ତ ବ୍ୟକ୍ତି ।
**Royalist**, *n.* ରାଜତନ୍ତ୍ରର ସମର୍ଥକ,
**Royalty**, *n.* ରାଜାଧିକାର, ପ୍ରଭୁତ୍ୱ, ଆଧିପତ୍ୟ,ଲେଖକ ବା ମାଲିକର ଲଭ୍ୟାଂଶ ।
**Rub**, *v.* ଘର୍ଷଣ କରିବା, ମାଜିବା; *n.* ମର୍ଦ୍ଦନ, ଘର୍ଷଣ, ବିପଦ । [ ପଦାର୍ଥବିଶେଷ
**Rubber**, *n.* ଘର୍ଷକ, ସ୍ଥିତିସ୍ଥାପକ
**Rubbish**, *n.* ମଇଳା, ଅସାର ଦ୍ରବ୍ୟ, ଆବର୍ଜନା ।
**Rubicund**, *a.* ଆରକ୍ତ, ପାଟଳ ।
**Ruby**, *n.* ମାଣିକ୍ୟ, ପଦ୍ମରାଗ ।
**Rudder**, *n.* ନୌକାର କର୍ଣ୍ଣ ।
**Ruddiness**, *n.* ରକ୍ତିମା, ରକ୍ତ ବର୍ଣ୍ଣ ।
**Ruddy**, *a.* ରକ୍ତିମ, ଲୋହିତ ।
**Rude**, *a.* ଅଶିଷ୍ଟ, ଅଭଦ୍ର, ରୁକ୍ଷ, ଅବିନୀତ ।
**Rudely**, *ad.* ଅଭଦ୍ର ଭାବରେ, ରୁକ୍ଷ-ଭାବରେ । [ ରୁକ୍ଷତା, ଅଶିଷ୍ଟତା ।
**Rudeness**, *n.* ଧୃଷ୍ଟତା, ଅଭଦ୍ରତା,
**Rudiment**, *n.* ଉପକ୍ରମ, ପ୍ରାରମ୍ଭ, ପ୍ରଥମ ତତ୍ତ୍ୱ । [ ପ୍ରାଥମିକ ।
**Rudimentary**, *a.* ପ୍ରାରମ୍ଭିକ,
**Rue**, *v.* ଅନୁଶୋଚନା କରିବା, ସନ୍ତପ୍ତ ହେବା । [ ଦୁଃଖିତ ।
**Rueful**, *a.* ଅନୁତପ୍ତ, ସନ୍ତପ୍ତ, ବିଷଣ୍ଣ,
**Ruefully**, *ad.* ବିଷଣ୍ଣଭାବରେ, ଅନୁତାପ ସହକାରେ ।

**Ruffian**, *n.* ଗୁଣ୍ଡା, ଦୁଷ୍ଟ ପ୍ରକୃତିର ଲୋକ । [ କରିବା ।
**Ruffle**, *v.* ଅସ୍ଥିର କରିବା, ଅବ୍ୟବସ୍ଥିତ
**Rug**, *n.* କମ୍ବଳ, ବିଛଣା, ରେଜେଇ ।
**Rugged**, *a.* ବିଷମ, ରୁକ୍ଷ, କର୍କଶ ।
**Ruggedness**, *n.* ରୁକ୍ଷତା,କର୍କଶତା ।
**Ruin**, *v.* ନାଶ କରିବା, ଧ୍ୱଂସ କରିବା; *n.* ବିନାଶ, ଧ୍ୱଂସ । [ ଧ୍ୱଂସସାଧକ ।
**Ruination**, *n.* ଧ୍ୱଂସକରଣ,
**Ruinous**, *a.* ଧ୍ୱଂସକର, କ୍ଷୟକର, ଅନିଷ୍ଟକାରକ, ଧ୍ୱଂସସାଧକ ।
**Ruins**, *n.* (*pl.*) ଧ୍ୱଂସାବଶେଷ ।
**Rule**, *v.* ଶାସନ କରିବା, ପ୍ରଭୁତ୍ୱ କରିବା, ପରିପାଳନ କରିବା; *n.* ଶାସନ, ଅଧିକାର, ଆଧିପତ୍ୟ, ବିଧି, ନିୟମ ।
**Rule out**, *v.* ଅଗ୍ରାହ୍ୟ କରିବା ।
**Ruler**, *n.* ଶାସକ, ପ୍ରଭୁ, ରାଜା, ଅଧିପତି, ପାଳକ, ସରଳରେଖା ଟାଣିବାର ଦଣ୍ଡ । [ *n.* ଆଇନଗତ ନଜିର ।
**Ruling**, *a.* ନିୟନ୍ତ୍ରଣକାରୀ, ପ୍ରଧାନ;
**Rum**, *n.* ଆସବ, ମଦ୍ୟବିଶେଷ; *a.* ଅସଙ୍ଗତ, ଅପରୂପ ।
**Rumble**, *v.* ଗମ୍ଭୀର ଶବ୍ଦ କରିବା, ଗର୍ଜନ କରିବା, ଘଡ଼ଘଡ଼ କରିବା ।
**Rumbling**, *n.* ଘଡ଼ଘଡ଼ ଶବ୍ଦ, ଗର୍ଜନ । [ ରୋମନ୍ଥକ ପ୍ରାଣୀ ।
**Ruminant**, *a.* ରୋମନ୍ଥନକାରୀ; *n.*

**Ruminate**, *v.* ରୋମନ୍ଥନ କରିବା, ପାଗୁଳି କରିବା, ବାରମ୍ବାର ଚିନ୍ତା କରିବା ।

**Rumination**, *n.* ରୋମନ୍ଥନ, ବାରମ୍ବାର ଚିନ୍ତା ।

**Rummage**, *v.* ଟିକିନିକି ଅନୁସନ୍ଧାନ କରିବା, ଅସ୍ତବ୍ୟସ୍ତ କରିବା ।

**Rumour**, *n.* ଜନରବ, ଜନଶ୍ରୁତି; *v.* ଜନରବ ସୃଷ୍ଟି କରିବା ।

**Rump**, *n.* ସ୍ଫୀତ, ନିତମ୍ବ, ପିଚ୍ଛ ।

**Rumple**, *v.* କୁଞ୍ଚିତ କରିବା ।

**Run**, *v.* ଦୌଡ଼ିବା, ଧାଇଁବା, ଦ୍ରୁତଗମନ କରିବା; *n.* ଦୌଡ଼, ଧାବନ, ଦ୍ରୁତଗମନ ।

**Run about**, *v.* ଇତସ୍ତତଃ ଦୌଡ଼ିବା ।

**Run after**, *v.* ଅନୁଧାବନ କରିବା, ପଛରେ ଧାଇଁବା ।

**Run away**, *v.* ଦୂରକୁ ପଳାଇବା ।

**Runaway**, *a.* ପଳାୟିତ; *n.* ପଳାତକ ବ୍ୟକ୍ତି ।

**Rung**, *n.* ନିଶୁଣୀର ପାହାଚ ।

**Runner**, *n.* ଯେ ଦୌଡ଼େ; ଡାକ ହରକରା । [ ଦୌଡ଼; *a.* ଦୌଡ଼ୁଥିବା ।

**Running**, *n.* ପଳାୟନ, ଧାବନ,

**Run out**, *v.* ଶେଷ ପାଇବା, ସରିଯିବା ।

**Run over**, *v.* ଉଚ୍ଛୁଳିବା, ଉବୁରିବା ।

**Runway**, *n.* ଉଡ଼ାଜାହାଜର ଧାବନପଥ

**Rupee**, *n.* ଭାରତୀୟ ମୁଦ୍ରାବିଶେଷ, ଟଙ୍କା ।

**Rupture**, *n.* ଭେଦ, ଭଙ୍ଗ, ଫାଟ, ବିବାଦ; *v.* ଭେଦ ଜନ୍ମିବା, ଫାଟିଯିବା ।

**Rural**, *a.* ଗ୍ରାମ୍ୟ, ଗ୍ରାମୀଣ, ଗାଉଁଲି ।

**Ruse**, *n.* ଛଳନା, ପ୍ରତାରଣା, ଫନ୍ଦି ।

**Rush**, *v.* ଠେଲି ପଶିବା; *n.* ଭିଡ଼, ଠେଲାଠେଲି, ଏକ ଜାତୀୟ ତୃଣ ।

**Russet**, *a.* ଆରକ୍ତ-ପିଙ୍ଗଳ, ଗ୍ରାମ୍ୟ ।

**Russian**, *a.* ରୁଷୀୟ; *n.* ରୁଷିଆର ଅଧିବାସୀ, ରୁଷୀୟ ଭାଷା ।

**Rust**, *n.* କଳଙ୍କି, ଲୌହମଳ; *v.* କଳଙ୍କି ଧରିବା ।

**Rustic**, *a.* ଗ୍ରାମ୍ୟ, ଗାଉଁଲି, ମଫସଲି ।

**Rusticate**, *n.* ଗ୍ରାମାଞ୍ଚଳରେ ବାସ କରିବା, ଶିକ୍ଷାନୁଷ୍ଠାନରୁ କିଛିକାଳ ପାଇଁ ବିତାଡ଼ିତ କରିବା ।

**Rustication**, *n.* ଗ୍ରାମାଞ୍ଚଳରେ ବାସ, ଶିକ୍ଷାନୁଷ୍ଠାନରୁ ସାମୟିକ ବିତାଡ଼ନ ।

**Rusticity**, *n.* ଗ୍ରାମ୍ୟତା, ଅଶିଷ୍ଟତା ।

**Rustle**, *n.* ଖସ୍ ଖସ୍ ଶବ୍ଦ, ମର୍ମର ଧ୍ୱନି; *v.* ଖସ୍‌ଖସ୍ ଶବ୍ଦ କରିବା ।

**Rustling**, *n.* ମର୍ମର ଧ୍ୱନି, ଖସ୍‌ଖସ୍ ଶବ୍ଦ; *a.* ମର୍ମରଶବ୍ଦକାରୀ ।

**Rusty**, *a.* କଳଙ୍କି ଲାଗିଥିବା ।

**Rut**, *n.* ଶଗଡ଼ସଙ୍ଗ, ଚକର ଗାର, ହସ୍ତୀର ମଦଜଳ ।

**Ruth**, *n.* ଦୟା, ଅନୁକମ୍ପା ।

**Ruthless**, *a.* ନିର୍ଦ୍ଦୟ, ନିଷ୍ଠୁର ।

**Rye**, *n.* ଶସ୍ୟବିଶେଷ ।

**Ryot**, *n.* ରୟତ, କୃଷୀ, ପ୍ରଜା ।

# S

**Sabbath**, *n.* ବିଶ୍ରାମଦିବସ, ରବିବାର ।
**Sable**, *a.* କୃଷ୍ଣ, ଶ୍ୟାମ; *n.* କୃଷ୍ଣବର୍ଣ୍ଣ ।
**Sables**, *n.* (*pl.*) ଶୋକସୂଚକ କୃଷ୍ଣବର୍ଣ୍ଣ ପରିଚ୍ଛଦ । [ ଅନିଷ୍ଟସାଧନ ।
**Sabotage**, *n.* ଦୁରଭିସନ୍ଧିମୂଳକ,
**Sabre**, *n.* ଖଣ୍ଡା, ଖଡ଼୍ଗ, କୃପାଣ ।
**Saccharine**, *a.* ସୁମଧୁର, ଅତିମିଷ୍ଟ, ଚିନିର ଗୁଣବିଶିଷ୍ଟ ।
**Sacerdotal**, *a.* ଯାଜକୀୟ, ପୁରୋହିତ ସମ୍ବନ୍ଧୀୟ । [ ପୂତ୍ରକାଧାର ।
**Sachel**, *n.* ବହି ରଖିବାର ଥଳି,
**Sack**, *n.* ବସ୍ତା, ଅଖା, ଲୁଟପାଟ; *v.* ଲୁଟପାଟ କରିବା ।
**Sackage**, *n.* ଲୁଣ୍ଠନ, ଲୁଟପାଟ ।
**Sackcloth**, *n.* ଅଖା, ମୋଟଲୁଗା ।
**Sacrament**, *n.* ପଣ, ଶପଥ, ଖ୍ରୀଷ୍ଟିଆନ ମତରେ ପବିତ୍ର ଭୋଜନ ।
**Sacramental**, *a.* ଶପଥଦ୍ୱାରା ଗୃହୀତ, ପବିତ୍ର ଭୋଜନ ସମ୍ବନ୍ଧୀୟ ।
**Sacred**, *a.* ପବିତ୍ର, ପୂଜାର୍ହ, ପୁଣ୍ୟମୟ ।
**Sacredness**, *n.* ପବିତ୍ରତା, ଧାର୍ମିକତା ।
**Sacrifice**, *n.* ଯଜ୍ଞ, ହୋମ, ବଳି; *v.* ଯଜ୍ଞ କରିବା, ବଳି ଦେବା ।
**Sacrificer**, *n.* ଯାଜ୍ଞିକ, ଯେ ଯଜ୍ଞ କରେ ବା ବଳି ଦିଏ ।
**Sacrificial**, *a.* ଯଜ୍ଞୀୟ, ହୋମ-ସମ୍ବନ୍ଧୀୟ ।
**Sacrilege**, *n.* ଧର୍ମଲୋପ, ଧର୍ମଲଙ୍ଘନ, ଦେବସ୍ୱାପହରଣ । [ ଧର୍ମବିରୋଧୀ ।
**Sacrilegious**, *a.* ଦେବସ୍ୱାପହାରୀ,
**Sad**, *a.* ବିଷଣ୍ଣ, ଦୁଃଖିତ, ଶୋକାକୁଳ ।
**Sadden**, *v.* ବିଷଣ୍ଣ କରିବା, ଅବସନ୍ନ କରିବା, ଦୁଃଖ ଦେବା ।
**Saddle**, *n.* ପର୍ଯ୍ୟାଣ, ଜିନ୍; *v.* ଘୋଡ଼ାପିଠିରେ ଜିନ୍ ପକାଇବା ।
**Saddler**, *n.* ଯେ ଜିନ୍ ତିଆରି କରେ ।
**Sadly**, *ad.* ଦୁଃଖିତଭାବରେ, ବିଷାଦରେ ।
**Sadness**, *n.* ଦୁଃଖ, ବିଷାଦ, ଖେଦ ।
**Safe**, *a.* ନିରାପଦ, ସୁରକ୍ଷିତ, ନିର୍ଭୟ, ନିଃଶଙ୍କ; *n.* ଲୁହାର ଆଲମାରି । [କରିବା ।
**Safeguard**, *n.* ସୁରକ୍ଷା; *v.* ସୁରକ୍ଷା
**Safely**, *ad.* ନିରାପଦରେ, ନିଃଶଙ୍କ ଭାବରେ, ସୁରକ୍ଷିତଭାବରେ ।
**Safety**, *n.* କୁଶଳ, ନିରାପତ୍ତା, ଅଭୟ ।
**Safety-lamp**, *n.* କୋଇଲାଖଣିରେ ବ୍ୟବହୃତ ଲଣ୍ଠନବିଶେଷ ।
**Saffron**, *n.* କୁଙ୍କୁମ, ଜାଫ୍ରାନ ।
**Sag**, *v.* ଅବନତ ହେବା, ଝୁଲି ପଡ଼ିବା ।
**Sagacious**, *a.* ଚତୁର, ତୀକ୍ଷ୍ଣବୁଦ୍ଧି, ମେଧାବୀ, ବିଚାରଶୀଳ ।

Sagaciously, *ad.* ଚତୁରତ୍ତ୍ୱବରେ, ସୂକ୍ଷ୍ମ ବୁଦ୍ଧିରେ ।
Sagacity, *n.* ଚତୁର୍ତ୍ତି, ସୂକ୍ଷ୍ମ ବୁଦ୍ଧି ।
Sage, *n.* ପଣ୍ଡିତ, ଋଷି, ସିଦ୍ଧପୁରୁଷ; *a.* ଜ୍ଞାନୀ ।
Sagely, *a.* ଋଷିପ୍ରତିମ, ପଣ୍ଡିତତୁଲ୍ୟ; *ad.* ବିଜ୍ଞତାସହକାରେ ।
Sageness, *n.* ପାଣ୍ଡିତ୍ୟ, ପ୍ରାଜ୍ଞତା ।
Sagittarius, *n.* ଧନୁରାଶି ।
Sago, *n.* ସାଗୁଦାନା, ସାଗୁ । [ ଯିବା ।
Sail, *n.* ପାଲ; *v.* ପାଲ ସାହାଯ୍ୟରେ
Sailing, *a.* ପାଲଦ୍ୱାରା ଚାଳିତ; *n.* ପାଲ ସାହାଯ୍ୟରେ ଗମନାଗମନ ।
Sailor, *n.* ନାବିକ, ପୋତଚାଳକ ।
Saint, *n.* ସାଧୁ, ସନ୍ଥ, ଋଷି, ମହାପୁରୁଷ ।
Saint-like, *a.* ଋଷିପ୍ରତିମ, ସାଧୁପ୍ରକୃତିକ
Saintliness, *n.* ଋଷିପ୍ରକୃତି, ଧର୍ମପରାୟଣତା ।
Saintly, *a.* ଋଷିପ୍ରତିମ, ଋଷିତୁଲ୍ୟ ।
Sake, *n.* ପ୍ରୟୋଜନ, ଅଭିପ୍ରାୟ, ନିମିତ୍ତ ।
Sal, *n.* ଶାଳବୃକ୍ଷ । [ ଚଟଣି ।
Salad, *n.* କଞ୍ଚା ପରିବାରେ ପ୍ରସ୍ତୁତ
Salamander, *n.* ଟିକିଟିକିବିଶେଷ ।
Salaried, *a.* ବେତନଭୋଗୀ ।
Salary, *n.* ବେତନ, ବୃତ୍ତି ।
Sale, *n.* ବିକ୍ରୟ ।
Saleable, *a.* ବିକ୍ରୟଯୋଗ୍ୟ, ବିକ୍ରେୟ ।
Salesman, *n.* ବିକ୍ରେତା । [ ବିଶିଷ୍ଟ ।
Salient, *a.* କ୍ଷିପ୍ରଗମନକାରୀ, ମୁଖ୍ୟ, ପ୍ରଧାନ,
Saline, *a.* ଲବଣାକ୍ତ, ଲବଣଗୁଣବିଶିଷ୍ଟ, କ୍ଷାରଯୁକ୍ତ ।
Salineness, *n.* ଲବଣାକ୍ତତା ।
Saliva, *n.* ଲାଳ, ଛେପ ।
Salival, Salivary, *a.* ଲାଳସ୍ରାବୀ, ଲାଳସମ୍ବନ୍ଧୀୟ ।
Salivate, *v.* ଲାଳ ସ୍ରବିବା, ଲାଳ ବାହାରିବା ।
Sallow, *a.* ପାଣ୍ଡୁର, ବିବର୍ଣ୍ଣ ।
Sally, *v.* ନିର୍ଗତ ହେବା, ନିଷ୍କ୍ରାନ୍ତ ହେବା; *n.* ବହିର୍ଗମନ, ନିଷ୍କ୍ରମଣ ।
Salmon, *n.* ଏକଜାତୀୟ ମାଛ ।
Saloon, *n.* ଆମୋଦପ୍ରକୋଷ୍ଠ, ରେଳ ବା ଜାହାଜର ବିଶିଷ୍ଟ କକ୍ଷ, ପ୍ରସାଧନଶାଳା ।
Salt, *n.* ଲବଣ, ଲୁଣ; *v.* ଲବଣାକ୍ତ କରିବା ।
Saltcellar, *n.* ଲବଣାଧାର ।
Salted, *a.* ଲବଣାକ୍ତ ।
Saltern, *n.* ଲୁଣ କାରଖାନା ।
Saltish, *a.* ଲୁଣିଆ, ଈଷତ୍ ଲବଣାକ୍ତ ।
Saltless, *a.* ଲବଣହୀନ, ଅଲଣା ।
Saltness, *n.* ଲବଣତ୍ୱ, ଲୁଣିଆ ସ୍ୱାଦ ।
Saltpetre, *n.* ଯବକ୍ଷାର, ସୋଡ଼ା ।
Salubrious, *a.* ସ୍ୱାସ୍ଥ୍ୟକର, ହିତକର ।
Salutary, *a.* ଉପକାରୀ, ଶ୍ରେୟସ୍କର, ସ୍ୱାସ୍ଥ୍ୟକର । [ ଅଭିବାଦନ ।
Salutation, *n.* ପ୍ରଣାମ, ନମସ୍କାର,
Salutatory, *a.* ଅଭିବାଦନୀୟ ।
Salute, *v.* ପ୍ରଣାମ କରିବା, ଅଭିବାଦନ କରିବା, ନମସ୍କାର କରିବା ।

**Salvable**, *a.* ଉଦ୍ଧରଣୀୟ, ଉଦ୍ଧାର-ଯୋଗ୍ୟ ।
**Salvage**, *n.* ଜାହାଜଡୁବି, ଘରପୋଡ଼ି ଆଦରୁ ଉଦ୍ଧାର କରାଯାଇଥିବା ସମ୍ପତ୍ତି ।
**Salvation**, *n.* ମୋକ୍ଷ, ମୁକ୍ତି, ଉଦ୍ଧାର, ପରିତ୍ରାଣ ।
**Salve**, *n.* ମଲମ, ପ୍ରଲେପ ।
**Salver**, *n.* ରେକାବି, ଥାଳିଆ ।
**Same**, *a.* ଅଭିନ୍ନ, ଅପରିବର୍ତ୍ତିତ ।
**Sameness**, *n.* ଅଭିନ୍ନତା, ଐକ୍ୟ, ସାଦୃଶ୍ୟ ।
**Sample**, *n.* ନମୁନା, ଆଦର୍ଶ, ପ୍ରତିରୂପ ।
**Sanative**, **Sanatory**, *a.* ଆରୋଗ୍ୟଜନକ, ସ୍ୱାସ୍ଥ୍ୟକର, ହିତକର ।
**Sanatorium**, *n.* ସ୍ୱାସ୍ଥ୍ୟନିବାସ ।
**Sanctification**, *n.* ପବିତ୍ରୀକରଣ, ଶୁଚୀକରଣ । [ ଶୁଚିକର୍ତ୍ତା ।
**Sanctifier**, *n.* ପବିତ୍ରକାରକ,
**Sanctify**, *v.* ପବିତ୍ର କରିବା, ଶୁଦ୍ଧ କରିବା । [ ପବିତ୍ରକାରୀ ।
**Sanctifying**, *a.* ଶୋଧକ, ପାବନ,
**Sanctimonious**, *a.* ପବିତ୍ର, ନିଷ୍ପାପ, ପବିତ୍ରମ୍ମନ୍ୟ, ଅତିଧାର୍ମିକ ।
**Sanctimony**, *n.* ପବିତ୍ରତା, ଅତି-ଧାର୍ମିକତା । [ ମଞ୍ଜୁର; *v.* ମଞ୍ଜୁର କରିବା ।
**Sanction**, *n.* ଅନୁମତି, ଅନୁଜ୍ଞା,
**Sanctitude**, **Sanctity**, *n.* ପବିତ୍ରତା, ଶୁଦ୍ଧତା, ଶୁଚିତା ।
**Sanctuary**, *n.* ପବିତ୍ରସ୍ଥଳ, ଆଶ୍ରୟ-ସ୍ଥାନ । [ ସ୍ଥାନ ।
**Sanctum**, *n.* ଆଶ୍ରୟସ୍ଥଳ, ନିଭୃତ
**Sand**, *n.* ବାଲୁକା, ବାଲି ।
**Sandal**, *n.* ପାଦୁକା, ଚପଲ, ଚନ୍ଦନ ।
**Sandal-wood**, *n.* ଚନ୍ଦନକାଠ ।
**Sandbank**, *n.* ନଦୀର ଚଡ଼ା ।
**Sandpaper**, *n.* ବାଲିକାଗଜ ।
**Sands**, *n.* (*pl*). ସୈକତଭୂମି ।
**Sandstone**, *n.* କୁଣ୍ଡାପଥର ।
**Sandwich**, *n.* ଏକପ୍ରକାର ପୁରଦିଆ ପିଠା ।
**Sandy**, *a.* ବାଲୁକାମୟ, ବାଲିଆ ।
**Sane**, *a.* ପ୍ରକୃତିସ୍ଥ, ସୁସ୍ଥ, ସଚେତନ ।
**Sanely**, *ad.* ସୁସ୍ଥଚିତ୍ତରେ ।
**Saneness**, *n.* ଅବିକୃତ ଚିତ୍ତ, ସଜ୍ଞାନତା ।
**Sangfroid**, *n.* ଧୈର୍ଯ୍ୟ, ଅଭୟ ।
**Sanguinary**, *a.* ରକ୍ତାକ୍ତ, ମାରମୁହାଁ, ଭୀଷଣ, ନିଷ୍ଠୁର । [ ରକ୍ତିମ ।
**Sanguine**, *a.* ଆଶାପୂର୍ଣ୍ଣ, ଉତ୍ସୁକ,
**Sanguinely**, *ad.* ଉତ୍ସୁକଭାବରେ, ଦୃଢ଼ ଆଶାରେ ।
**Sanguineness**, *n.* ଦୃଢ଼ ଆଶା ।
**Sanitarium**, *n.* ସ୍ୱାସ୍ଥ୍ୟାଳୟ, ସ୍ୱାସ୍ଥ୍ୟ-ନିବାସ (*pl.* Sanitaria) ।
**Sanitary**, *a.* ସ୍ୱାସ୍ଥ୍ୟସମ୍ବନ୍ଧୀୟ, ସ୍ୱାସ୍ଥ୍ୟକର ।

Sanity, *n.* ମାନସିକ ସୁସ୍ଥତା, ବିଜ୍ଞତା, ସଜ୍ଞାନତା । [ ଖୋଳିବା, ନାଶ କରିବା ।
Sap, *n.* ରସ, ଦ୍ରବ, ନିର୍ଯ୍ୟାସ; *v.* ସୁଡ଼ଙ୍ଗ
Sapience, *n.* ବିଜ୍ଞତା, ବୁଦ୍ଧିମତ୍ତା ।
Sapient, *a.* ବିଜ୍ଞ, ପ୍ରାଜ୍ଞ, ବୁଦ୍ଧିମାନ୍, ଜ୍ଞାନୀ
Sapiently, *ad.* ବିଜ୍ଞତାପୂର୍ବକ ।
Sapless, *a.* ସାରହୀନ, ନିଃସାର, ନୀରସ ।
Sapling, *n.* କ୍ଷୁଦ୍ରଗଛ, ଗଛର ପୁଆ ।
Sapper, *n.* ସୁଡ଼ଙ୍ଗ ଖୋଦନକାରୀ ।
Sapphire, *n.* ଇନ୍ଦ୍ରନୀଳମଣି, ନୀଳୋତ୍ପଳ
Sappy, *a.* ରସାଳ, ସରସ ।
Sarcasm, *n.* ବ୍ୟଙ୍ଗ, ବିଦ୍ରୂପ, ଉପହାସ, ଆକ୍ଷେପ ।
Sarcastic, Sarcastical, *a.* ବ୍ୟଙ୍ଗାତ୍ମକ, ବିଦ୍ରୂପପୂର୍ଣ୍ଣ, ନିନ୍ଦାଗର୍ଭକ ।
Sarcastically, *ad.* ବ୍ୟଙ୍ଗ-ସହକାରେ, ଆକ୍ଷେପପୂର୍ବକ । [ ମାଂସଭୋଜୀ ।
Sacrophagous, *a.* ମାଂସାଶୀ,
Sardine, *n.* କ୍ଷୁଦ୍ର ମତ୍ସ୍ୟବିଶେଷ ।
Sardonic, *a.* କପଟ, ନିର୍ଦ୍ଦୟ ।
Sash, *n.* କଟିବନ୍ଧନୀ, କମରବନ୍ଧ ।
Satan, *n.* ସଇତାନ, ପାପାତ୍ମା ।
Satanic, Satanical, *a.* ଅତି ଦୁଷ୍ଟ, ପାମର, ସଇତାନ ସଦୃଶ ।
Satchel, *n.* Sachel (ଦେଖ) ।
Satellite, *n.* ଉପଗ୍ରହ, ଆଶ୍ରିତ ବ୍ୟକ୍ତି ।
Satiate, *v.* ପରିତୃପ୍ତ କରିବା, ସନ୍ତୁଷ୍ଟ କରିବା ।
Satiated, *a.* ପୂର୍ଣ୍ଣକାମ, ପରିତୃପ୍ତ, ସନ୍ତୁଷ୍ଟ । [ ସନ୍ତୋଷ ।
Satiation, *n.* ପୂର୍ଣ୍ଣତା, ପରିତୃପ୍ତି,
Satiety, *n.* ପରିତୋଷ, ପରିତୃପ୍ତି, ବିତୃଷ୍ଣା, ସନ୍ତୋଷ ।
Satin, *n.* ରେଶମୀ ବସ୍ତ୍ର । [ ରଚନା ।
Satire, *n.* ବ୍ୟଙ୍ଗକବିତା, ବିଦ୍ରୂପାତ୍ମକ
Satiric, Satirical, *a.* ବ୍ୟଙ୍ଗାତ୍ମକ, ଉପହାସାତ୍ମକ, ନିନ୍ଦାକର ।
Satirist, *n.* ବ୍ୟଙ୍ଗ ରଚନାର ଲେଖକ ।
Satirize, *v.* ବ୍ୟଙ୍ଗୋକ୍ତି କରିବା, ଆକ୍ଷେପଯୁକ୍ତ ବର୍ଣ୍ଣନା କରିବା ।
Satisfaction, *n.* ସନ୍ତୋଷ, ତୃପ୍ତି, ପରିପୂରଣ । [ ଜନକ ଭାବରେ ।
Satisfactorily, *ad.* ସନ୍ତୋଷ-
Satisfactory, *a.* ସନ୍ତୋଷଜନକ, ତୃପ୍ତିକର । [ ପୂରଣ କରିବା
Satisfy, *v.* ସନ୍ତୁଷ୍ଟ କରିବା, ଇଚ୍ଛା-
Saturate, *v.* ଆର୍ଦ୍ର ବା ସିକ୍ତ କରିବା, ପରିପୂର୍ଣ୍ଣ କରିବା । [ ଅବସ୍ଥା ।
Saturation, *n.* ପରିପୂରଣ, ପରିପୂର୍ଣ୍ଣ
Saturday, *n.* ଶନିବାର ।
Saturn, *n.* ଶନିଗ୍ରହ ।
Satyr, *n.* ବନଦେବତା, କାମୁକ ବ୍ୟକ୍ତି ।
Sauce, *n.* ଝୋଳ, ଚଟଣି, ସୁସ୍ୱାଦୁ ରସ । [ କଡ଼େଇ ।
Saucepan, *n.* ରନ୍ଧନ ପାତ୍ର,

**Saucer**, *n.* ଆଳଆ, ରେକାବ, ଗିନା ରଖାଯିବା ଆଳଆ ।
**Saucily**, *ad.* ଅଭଦ୍ର ଭାବରେ ।
**Saucy**, *a.* ଅଭଦ୍ର, ଅଶିଷ୍ଟ, ଅବାଧ୍ୟ ।
**Saunter**, *v.* ବୃଥା ବୁଲିବା, ଇତସ୍ତତଃ ଭ୍ରମଣ କରିବା ।
**Sausage**, *n.* ମସଲାଦିଆ ମାଂସପୋଳ ।
**Savage**, *a.* ବନ୍ୟ, ହିଂସ୍ର, ବର୍ବର, ଅସଭ୍ୟ; *n.* ନିଷ୍ଠୁର ବ୍ୟକ୍ତି ।
**Savagely**, *ad.* ବର୍ବର ଭାବରେ, ନିଷ୍ଠୁର ଭାବରେ । [ ନିଷ୍ଠୁରତା ।
**Savageness**, *n.* ବର୍ବରତା,
**Savant**, *n.* ବିଦ୍ୱାନ୍ ବ୍ୟକ୍ତି, ପଣ୍ଡିତ ।
**Save**, *v.* ରକ୍ଷା କରିବା, ତ୍ରାଣ କରିବା, ସଞ୍ଚୟ କରିବା; *pre.* ବିନା, ବ୍ୟତୀତ ।
**Saving**, *n.* ସଞ୍ଚୟ, ରକ୍ଷଣ; *a.* ବ୍ୟୟକୁଣ୍ଠ, ସଞ୍ଚୟଶୀଳ । [ ରକ୍ଷକ ।
**Saviour**, *n.* ତ୍ରାଣକର୍ତ୍ତା, ମୁକ୍ତିଦାତା,
**Savour**, *n.* ସ୍ୱାଦ, ଗନ୍ଧ, ସୁବାସ ।
**Savoury**, *a.* ସୁସ୍ୱାଦୁ, ସୁଗନ୍ଧଯୁକ୍ତ ।
**Saw**, *n.* କରତ; *v.* କରତରେ କାଟିବା ।
**Sawdust**, *n.* କରତଗୁଣ୍ଡ । [ କାଟେ ।
**Sawyer**, *n.* କରତୀ, ଯେ କରତରେ
**Say**, *v.* କହିବା; *n.* ଉକ୍ତି, ବଚନ, କଥା ।
**Saying**, *n.* ପ୍ରବାଦ, ପ୍ରବଚନ ।
**Scab**, *n.* କାଛୁ, କୁଣ୍ଡିଆ । [ ଖୋପ ।
**Scabbard**, *n.* ତରବାରି ପ୍ରଭୃତିର
**Scabby**, *a.* କାଛୁରୋଗଗ୍ରସ୍ତ, କାଛୁଆ ।
**Scaffold**, *n.* ମଞ୍ଚା, ଭାରା, ଫାଶିଖୁଣ୍ଟ ।
**Scaffolding**, *n.* ମଞ୍ଚା, ଭାରା ।
**Scald**, *v.* ସିଝିଯିବା, ଫୋଟକା ହେବା ।
**Scale**, *n.* ଶଲ୍କ, କାତି, ମାପକାଠି, ତରାଜୁର ପଲା; *v.* ଚଢ଼ିବା, ଆରୋହଣ କରିବା, କାତି ଛଡ଼ାଇବା ।
**Scalene**, *n.* ବିଷମବାହୁ ତ୍ରିଭୁଜ ।
**Scalp**, *n.* ମୁଣ୍ଡଖପୁରିର ଚର୍ମ ।
**Scaly**, *a.* କାତିଯୁକ୍ତ ।
**Scamble**, *v.* ବ୍ୟସ୍ତ ହେବା ।
**Scamp**, *n.* ଧୂର୍ତ୍ତ, ଶଠ ବ୍ୟକ୍ତି ।
**Scamper**, *v.* ଦ୍ରୁତ ବେଗରେ ଯିବା, ପଳାଇବା ।
**Scan**, *v.* ସୂକ୍ଷ୍ମ ପରୀକ୍ଷା କରିବା, କବିତାର ପଦପାତ ନିର୍ଦ୍ଦେଶ କରିବା, ବିବେଚନା କରିବା, ନିରୀକ୍ଷଣ କରିବା । [ କୁତ୍ସାରଟନା ।
**Scandal**, *n.* ଅପବାଦ, ନିନ୍ଦା,
**Scandalise**, **Scandalize**, *v.* କୁତ୍ସାରଟନା କରିବା, ବଦନାମ କରିବା ।
**Scandalous**, *a.* ଲଜ୍ଜାଜନକ, କୁତ୍ସାକର
**Scansion**, *n.* ଶ୍ଳୋକର ଛନ୍ଦ, ପଦପାତ ନିର୍ଦ୍ଦେଶ ।
**Scant**, *a.* ଅସମ୍ପୂର୍ଣ୍ଣ, ଅପ୍ରଚୁର, ଅଳ୍ପ ।
**Scantily**, *ad.* ସ୍ୱଳ୍ପ ପରିମାଣରେ ।
**Scantiness**, *n.* ସ୍ୱଳ୍ପତା, ଅପ୍ରଚୁରତା ।
**Scantling**, *n.* ଛୋଟ କାଠଖଣ୍ଡ ।
**Scanty**, *a.* ଅତ୍ୟଳ୍ପ, ଅପ୍ରଚୁର ।
**Scapula**, *n.* ସ୍କନ୍ଧ ଦେଶର ଅସ୍ଥି ।

**Scar**, *n.* କ୍ଷତ ଚିହ୍ନ; *v.* କ୍ଷତ କରି ଚିହ୍ନ ରଖିଦେବା । [ ଅପ୍ରଚୁର ।
**Scarce**, *a.* ବିରଳ, ଦୁର୍ଲଭ, ଦୁଷ୍ପ୍ରାପ୍ୟ,
**Scarcely**, *ad.* କ୍ୱଚିତ୍, କଦାଚିତ୍, ପ୍ରାୟ ନୁହେଁ । [ ବିରଳତା ।
**Scarcity**, *n.* ଅଭାବ, ଦୁର୍ଲଭତା,
**Scare**, *v.* ଭୀତ କରିବା; *n.* ଆକସ୍ମିକ ଭୟ ।
**Scare-crow**, *n.* ପାଳଭୂତ, ହୁରୁଡ଼ା, ପଶୁପକ୍ଷୀଙ୍କୁ ହୁରୁଡ଼ାଇବାପାଇଁ ଶସ୍ୟକ୍ଷେତ୍ରରେ ସ୍ଥାପିତ କୃତ୍ରିମ ମନୁଷ୍ୟ ମୂର୍ତ୍ତି ।
**Scarf**, *n.* ଓଢ଼ଣା, ଶରୀରଆବରକ ବସ୍ତ୍ର ।
**Scarlet**, *n.* ଗାଢ଼ ରକ୍ତବର୍ଣ୍ଣ; *a.* ଉଜ୍ଜ୍ୱଳ ରକ୍ତବର୍ଣ୍ଣବିଶିଷ୍ଟ । [ ଆଘାତ କରିବା ।
**Scathe**, *v.* କ୍ଷତ କରିବା, ନାଶ କରିବା,
**Scatter**, *v.* ଇତସ୍ତତଃ ଫିଙ୍ଗିବା, ବିଞ୍ଚିବା, ଏଣେତେଣେ ପକାଇବା ।
**Scavenger**, *n.* ଝାଡ଼ୁଦାର, ମେହେନ୍ତର ।
**Scene**, *n.* ଦୃଶ୍ୟ, ଘଟନାସ୍ଥଳ, ରଙ୍ଗମଞ୍ଚ ।
**Scenery**, *n.* ଦୃଶ୍ୟପଟ, ଛବି ।
**Scenic, Scenical**, *a.* ନାଟକୀୟ, ଦୃଶ୍ୟସମ୍ବନ୍ଧୀୟ ।
**Scent**, *n.* ଗନ୍ଧ, ଆଘ୍ରାଣ, ସୁବାସ; *v.* ସୁଗନ୍ଧିତ କରିବା, ଆଘ୍ରାଣ କରିବା ।
**Sceptic**, *n.* ନାସ୍ତିକ, ସଂଶୟବାଦୀ ।
**Sceptical**, *a.* ସନ୍ଦିଗ୍ଧ, ସଂଶୟାକୁଳ, ନାସ୍ତିକ । [ ନାସ୍ତିକତା ।
**Scepticism**, *n.* ସଂଶୟବାଦ,

**Sceptre**, *n.* ରାଜଦଣ୍ଡ, ରାଜଛତ୍ର ।
**Schedule**, *n.* ତାଲିକା, ନିର୍ଘଣ୍ଟ ।
**Scheme**, *n.* ଯୋଜନା, ପ୍ରଣାଳୀ, ପଦ୍ଧତି; *v.* ଯୋଜନା କରିବା । [ ମତଭେଦ ।
**Schism**, *n.* ବିଭେଦ, ଧର୍ମଗତ
**Scholar**, *n.* ପଣ୍ଡିତ, ବିଦ୍ୱାନ୍ ବ୍ୟକ୍ତି, ବୃତ୍ତିଧାରୀ ଛାତ୍ର, ବିଦ୍ୟାର୍ଥୀ ।
**Scholarly**, *a.* ପାଣ୍ଡିତ୍ୟପୂର୍ଣ୍ଣ ।
**Scholarship**, *n.* ଛାତ୍ରବୃତ୍ତି, ପାଣ୍ଡିତ୍ୟ, ବିଦ୍ୱତ୍ତା । [ ଶିକ୍ଷାସମ୍ବନ୍ଧୀୟ ।
**Scholastic**, *a.* ବିଦ୍ୟାଳୟସମ୍ବନ୍ଧୀୟ,
**School**, *n.* ବିଦ୍ୟାଳୟ, ପାଠଶାଳା, ସ୍କୁଲ୍ ।
**Schoolmaster**, *n.* ସ୍କୁଲ୍‌ଶିକ୍ଷକ ।
**Schoolmistress**, *n.* ସ୍କୁଲ୍‌ଶିକ୍ଷୟିତ୍ରୀ
**Schooner**, *n.* ଦୁଇ ମାସ୍ତୁଲବିଶିଷ୍ଟ କ୍ଷୁଦ୍ର ଜାହାଜ ।
**Sciatica**, *n.* କଟିବାତ ରୋଗ ।
**Science**, *n.* ବିଜ୍ଞାନ, ଶୃଙ୍ଖଳାବଦ୍ଧ ଜ୍ଞାନ, ଦର୍ଶନବିଦ୍ୟା । [ ସମ୍ବନ୍ଧୀୟ ।
**Scientific**, *a.* ବୈଜ୍ଞାନିକ, ବିଜ୍ଞାନ-
**Scientifically**, *ad.* ବୈଜ୍ଞାନିକ-ଭାବରେ ।
**Scientist**, *n.* ବୈଜ୍ଞାନିକ, ବିଜ୍ଞାନବେତ୍ତା ।
**Scimitar**, *n.* ଅସି, ଖଡ୍ଗ, ଖଣ୍ଡା ।
**Scion**, *n.* ଅଙ୍କୁର, ପଲ୍ଲବ, ଶାଖା ।
**Scissors**, *n.* (*pl.*) କଇଁଚି ।
**Scoff**, *v.* ଥଟ୍ଟା କରିବା, ଉପହାସ କରିବା
**Scoffer**, *n.* ଉପହାସକାରୀ ।

Scold, *v.* ତିରସ୍କାର କରିବା, ଗାଳି ଦେବା ।
Scoop, *n.* କୋରଡ଼, ବଡ଼ ଡଙ୍କା; *v.* ଖୋଳି ଗାତ କରିବା । [ ସୁଯୋଗ ।
Scope, *n.* କର୍ମକ୍ଷେତ୍ର,ପରିସର,ଉଦ୍ଦେଶ୍ୟ,
Scorch, *v.* ସିଝେଇ ଦେବା,ପୋଡ଼ିବା ।
Score, *n.* ଖେଳର ଗଣନା, ଏକ କୋଡ଼ି ସଂଖ୍ୟା; *v.* ଖେଳରେ ହାରଜିତ ଗଣିବା ।
Scorn, *n.* ଅବଜ୍ଞା, ଘୃଣା, ଧିକ୍କାର; *v.* ଘୃଣା କରିବା, ହେୟଜ୍ଞାନ କରିବା ।
Scorner, *n.* ଅବଜ୍ଞାକାରୀ, ନିନ୍ଦକ ।
Scornful, *a.* ଅବଜ୍ଞାପୂର୍ଣ୍ଣ, ଉଦ୍ଧତ ।
Scornfully, *ad.* ଅବଜ୍ଞାପୂର୍ବକ ।
Scorpion, *n.* କଙ୍କଡ଼ାବିଛା ।
Scot-free, *a.* ପୂର୍ଣ୍ଣ ନିର୍ଦ୍ଦୋଷରେ ମୁକ୍ତ ।
Scoundrel, *n.* ଅଧମ, ଦୁରାତ୍ମା, ପାଜି, ବଦମାସ । [ ଗୃଳିଯିବା ।
Scour, *v.* ମାଜି ପରିଷ୍କାର କରିବା, ଶୀଘ୍ର
Scourge, *n.* କୋରଡ଼ା, ଦଣ୍ଡ, ଶାସ୍ତି; *v.* ଶାସ୍ତି ଦେବା, କଶାଘାତ କରିବା ।
Scout, *n.* ଗୁପ୍ତଚର, ଶତ୍ରୁର ଗତିବିଧି ଜାଣିବାପାଇଁ ପ୍ରେରିତ ବ୍ୟକ୍ତି ।
Scowl, *v.* ଭ୍ରୂକୁଞ୍ଚନ କରିବା; *n.* ଭ୍ରୂକୁଟୀ
Scramble, *v.* ଗୁରୁଣ୍ଡି ଗୁରୁଣ୍ଡି ଯିବା, ଧରି ଧରି ଚଢ଼ିବା; *n.* କଷ୍ଟରେ ଆରୋହଣ ।
Scrap, *n.* କ୍ଷୁଦ୍ର ଖଣ୍ଡ, ଅଂଶ, ଟୁକୁରା ।
Scrape, *n.* କଷ୍ଟ, ଦୁଃଖ, ଦୁର୍ଗତି; *v.* ଘୃଷିବା । [ଚିରାଡିବା; *v.* ଚାଞ୍ଚୁଡ଼ା, ନଖକ୍ଷତ ।
Scratch, *v.* ଘଷିବା, ସଫା କରିବା,
Scrawl, *n.* କଦର୍ଯ୍ୟ ଲେଖା; *v.* କଦର୍ଯ୍ୟ ଭାବରେ ଲେଖିବା । [ କରିବା; *n.* ଚିତ୍କାର ।
Scream, *v.* ଚିତ୍କାର କରିବା, ଉଚ୍ଚ ଶବ୍ଦ
Screech, *n.* ପେଚାର ଚେଁ ଚେଁ ଶବ୍ଦ; *v.* ଚିତ୍କାର କରିବା । [ ଲୁଚାଇ ରଖିବା ।
Screen, *n.* ପର୍ଦ୍ଦା; *v.* ରକ୍ଷା କରିବା,
Screw, *n.* ପେଚକଣ୍ଟା; *v.* ପେଚ ଆଣ୍ଟିବା, ଲୁଚାଇ ରଖିବା, ଉତ୍ପୀଡ଼ନ କରିବା ।
Scribble, *v.* ଅସାବଧାନଭାବରେ ଲେଖିବା, ଗାରେଇବା; *n.* ତରବର ଲେଖା ।
Scribbler, *n.* କୁଲେଖକ, ମନ୍ଦ ଲିପିକାର
Scribe, *n.* ଲେଖକ, ଲିପିକାର ।
Scrip, *n.* ଛୋଟ ଥଳି, ଛୋଟ ଲେଖା ।
Script, *n.* ହସ୍ତାକ୍ଷର, ମୂଳ ଦଲିଲ, ହସ୍ତାକ୍ଷର ସଦୃଶ ଛାପା ।
Scriptural, *a.* ଧର୍ମଗ୍ରନ୍ଥବିଷୟକ ।
Scripture, *n.* ଧର୍ମଗ୍ରନ୍ଥ ।
Scrofula, *n.* ଗଣ୍ଡମାଳା ରୋଗ ।
Scrofulous, *a.* ଗଣ୍ଡମାଳାରୋଗଗ୍ରସ୍ତ ।
Scroll, *n.* ପତ୍ର, ଲେଖ୍ୟ, ଦୀର୍ଘପତ୍ର ।
Scrotum, *n.* ମୁଷ୍କ, ଅଣ୍ଡକୋଷ ।
Scrub, *n.* ନୀଚ ବ୍ୟକ୍ତି; *v.* ଘର୍ଷଣ କରିବା, ମାଜିବା । [ ବିଶେଷ ।
Scruple, *n.* ସଂଶୟ, ସନ୍ଦେହ, ପରିମାଣ-
Scrupulous, *a.* ସରଳ, ସୂକ୍ଷ୍ମଦୃଷ୍ଟି-ସମ୍ପନ୍ନ, ସତର୍କ, ସନ୍ଦେହୀ । [ଅତି ସାବଧାନରେ
Scrupulously, *ad.* ସନ୍ଦେହପୂର୍ବକ,
Scrutinise, *v.* ଅନୁସନ୍ଧାନରେ ପରୀକ୍ଷା କରିବା, ଅନୁସନ୍ଧାନ କରିବା ।

Scrutiny, *n.* ସୂକ୍ଷ୍ମ ପରୀକ୍ଷା, ବିବାଚନ ନିମିତ୍ତ ମନୋନୟନ ପତ୍ରର ପରୀକ୍ଷା, ଯାଞ୍ଚ ।
Scud, *v.* ଅତି ବେଗରେ ଯିବା; *n.* ବାୟୁଚାଳିତ ମେଘ ଖଣ୍ଡ । [*v.* ଠେଲାଠେଲି ହେବା ।
Scuffle, *n.* ହାତାହାତି ମରାମରି;
Scull, *n.* କପାଳ, ଶିରୋସ୍ଥି, ଗ୍ରେଟ ଆହୁଲା; *v.* ଆହୁଲା ମାରିବା ।
Scullery, *n.* ବାସନ ରଖିବା ସ୍ଥାନ ।
Scullion, *n.* ବାସନ ଧୋଇବା ଦାସଦାସୀ
Sculptor, *n.* ମୂର୍ତ୍ତି ଖୋଦକ, ଭାସ୍କର, ଶିଳ୍ପୀ [ ଭାସ୍କର୍ଯ୍ୟ, *v.* ମୂର୍ତ୍ତି ଖୋଦନ କରିବା ।
Sculpture, *n.* ମୂର୍ତ୍ତିଖୋଦନକଳା,
Scum, *n.* ମଇଳା, ଫେନ, ଫେଣ; *v.* ଫେଣ ବାହାର କରିବା ।
Scurrile, *a.* ଭଣ୍ଡ, ନୀଚ, ଅଧମ ।
Scurrility, *n.* ନୀଚତା, ଗ୍ରାମ୍ୟତା, କୁଭାଷା
Scurrilous, *a.* ରୂକ୍ଷ, ପରୁଷ, କଟୁଭାଷୀ ।
Scurvy, *n.* ରୋଗବିଶେଷ ।
Scuttle, *n.* ଧାତୁନିର୍ମିତ କୋଇଲା ପାତ୍ର; *v.* ଜାହାଜତଳେ ଛିଦ୍ର କରି ବୁଡ଼ାଇଦେବା ।
Scythe, *n.* ଦାଆ, ଶସ୍ୟ କାଟିବାର ଅସ୍ତ୍ର ।
Sea, *n.* ସାଗର, ସମୁଦ୍ର । [ ତଟସ୍ଥିତ ବନ୍ଧ ।
Sea-bank, *n.* ସମୁଦ୍ରତୀର, ସମୁଦ୍ର-
Sea-board, *n.* ସାଗରତଟ; *a.* ସମୁଦ୍ରତୀରସ୍ଥିତ ।
Sea-coast, *n.* ସମୁଦ୍ରକୂଳ ।
Seafaring, *a.* ଜାହାଜଚାଳନାକାରୀ, ଜାହାଜିଆ, ନୌବାଣିଜ୍ୟକାରୀ ।
Sea-fight, *n.* ନୌଯୁଦ୍ଧ, ଜଳଯୁଦ୍ଧ ।
Sea-girt, *a.* ସମୁଦ୍ରବଲୟିତ, ସମୁଦ୍ରବେଷ୍ଟିତ ।
Sea-gull, *n.* ସାମୁଦ୍ରିକ ପକ୍ଷୀବିଶେଷ ।
Sea-horse, *n.* ସିନ୍ଧୁଘୋଟକ ।
Seal, *n.* ମୋହର, ସାମୁଦ୍ରିକ ଜୀବବିଶେଷ; *v.* ମୋହର ଦେବା, ଗୋପନ ରଖିବା । [ ସମୁଦ୍ରଜଳପୃଷ୍ଠ ।
Sea-level, *n.* ସମୁଦ୍ରସମତଳ,
Sealing wax, *n.* ଜଉ, ଲାଖ ।
Seam, *n.* ସନ୍ଧି, ବସ୍ତ୍ରର ଯୋଡ଼, ସିଲେଇସ୍ଥାନ; *v.* ସିଲେଇ କରି ଯୋଡ଼ିବା ।
Seaman, *n.* ନାବିକ, ପୋତଚାଳକ ।
Seamless, *a.* ଯୋଡ଼ାଚିହ୍ନଶୂନ୍ୟ ।
Seamstress, Sempstress, *n.* ସିଲେଇ କରିବା ସ୍ତ୍ରୀଲୋକ ।
Sea-port, *n.* ବନ୍ଦର, ପୋତାଶ୍ରୟ ।
Sear, *v.* ପୋଡ଼ିବା, ଦଗ୍ଧ କରିବା, ଶୁଷ୍କ କରିବା; *a.* ଶୁଷ୍କ ।
Search, *v.* ଅନୁସନ୍ଧାନ କରିବା, ଖୋଜିବା, ତଲାସ କରିବା; *n.* ତଲାସି, ଅନୁସନ୍ଧାନ, ଅନ୍ୱେଷଣ, ପରୀକ୍ଷା ।
Searcher, *n.* ଅନ୍ୱେଷଣକାରୀ ।
Seashore, *n.* ସମୁଦ୍ରତଟ ।
Seasick, *a.* ସମୁଦ୍ରଯାତ୍ରା ହେତୁ ବମନାଦି ରୋଗରେ ଆକ୍ରାନ୍ତ ।
Seaside, *n.* ସମୁଦ୍ରର ଧାର ।

Season, *n.* ଋତୁ, ଉପଯୁକ୍ତ ସମୟ; *v.* ପାଗ କରିବା, ବ୍ୟବହାରୋପଯୋଗୀ କରିବା ବା ହେବା । [ କାଳାନୁରୂପ ।
Seasonable, *a.* ସମୟୋଚିତ,
Seasonal, *a.* ଋତୁ ଅନୁଯାୟୀ ।
Seasoned, *a.* ମସଲାଦିଆ, ପାଗ ହୋଇଥିବା । [ ଦେବା, ବସାଇବା ।
Seat, *n.* ଆସନ, ଚୌକି; *v.* ଆସନ
Seaward, *a.* ସାଗରାଭିମୁଖୀନ; *ad.* ସାଗରାଭିମୁଖରେ । [ ହୋଇଯିବା ।
Secede, *v.* ପୃଥକ୍ ହେବା, ଅଲଗା
Secession, *n.* ପରିତ୍ୟାଗ, ପୃଥକ୍‌କରଣ
Seclude, *v.* ସ୍ୱତନ୍ତ୍ର କରିବା ।
Secluded, *a.* ନିଭୃତ, ନିର୍ଜନ ।
Seclusion, *n.* ନିଭୃତ ସ୍ଥାନ, ନିର୍ଜନତା ।
Second, *a.* ଦ୍ୱିତୀୟ; *n.* ଏକ ମିନିଟର ୬୦ ଭାଗରୁ ଏକ ଭାଗ; *v.* ପ୍ରସ୍ତାବକୁ ସମର୍ଥନ କରିବା ।
Secondarily, *ad.* ଗୌଣଭାବରେ ।
Secondary, *a.* ଗୌଣ, ଅପ୍ରଧାନ ।
Second-rate, *a.* ଦ୍ୱିତୀୟ ସ୍ଥାନୀୟ, ଗୌଣ ।
Secrecy, *n.* ଗୋପନୀୟତା, ଗୁପ୍ତ ବିଷୟ ।
Secret, *a.* ଗୁପ୍ତ, ଲୁକ୍କାୟିତ; *n.* ଗୁପ୍ତ ବିଷୟ । [ ସମ୍ପାଦକୀୟ ।
Secretarial, *a.* ସେକ୍ରେଟରି ସମ୍ବନ୍ଧୀୟ,
Secretariat, *n.* ସଚିବାଳୟ, ସେକ୍ରେଟରିମାନଙ୍କ କର୍ମସ୍ଥଳ ।
Secretary, *n.* ସମ୍ପାଦକ, କର୍ମସଚିବ, ସେକ୍ରେଟରି ।
Secretaryship, *n.* ସମ୍ପାଦକ ବା ସେକ୍ରେଟରିଙ୍କର ପଦ ବା କର୍ମ ।
Secrete, *v.* ଲୁଚାଇବା, ଜଳୀୟ ଅଂଶ ନିଃସୃତ କରିବା ।
Secretion, *n.* ନିଃସରଣ, ନିଃସୃତ ଦ୍ରବ୍ୟ ।
Secretly, *ad.* ଗୋପନରେ, ଲୁକ୍କାୟିତ ଭାବରେ, ଅପ୍ରକାଶ୍ୟ ଭାବରେ ।
Sect, *n.* ସମ୍ପ୍ରଦାୟ, ଦଳ । [ ଦାୟିକ ।
Sectarian, *a.* ସମ୍ପ୍ରଦାୟଗତ, ସାମ୍ପ୍ର-
Section, *n.* ବିଭାଗ, ଦଳ, ଆଇନର ଦଫା, ପରିଚ୍ଛେଦ । [ ସମ୍ପ୍ରଦାୟଗତ ।
Sectional, *a.* ବିଭାଗୀୟ,
Sector, *n.* ଦୁଇ ବ୍ୟାସାର୍ଦ୍ଧ ଓ ବୃତ୍ତପରିଧିର ଆବଦ୍ଧ ବୃତ୍ତାଂଶ, ବୃତ୍ତଖଣ୍ଡ ।
Secular, *a.* ପାର୍ଥିବ, ଧର୍ମନିରପେକ୍ଷ ।
Secularize, *v.* ପାର୍ଥିବତା ପ୍ରତି ଆକୃଷ୍ଟ କରିବା ।
Secularity, Secularness, *n.* ଧର୍ମନିରପେକ୍ଷତା, ଐହିକତା । [ ରଖିବା ।
Secure, *a.* ନିରାପଦ, ନିର୍ଭୟ; *v.* ନିରାପଦ
Securely, *ad.* ନିରାପଦଭାବରେ ।
Security, *n.* ନିରାପତ୍ତା, ସୁରକ୍ଷଣ-ବ୍ୟବସ୍ଥା, ପ୍ରତିଭୂ, ଜାମିନ ।
Sedate, *a.* ଧୀର, ଗମ୍ଭୀର, ପ୍ରଶାନ୍ତ ।
Sedately, *ad.* ଗମ୍ଭୀରଭାବରେ ।
Sedative, *a.* ଅଚଞ୍ଚଳ, ଶାନ୍ତିପ୍ରଦ; *n.* ଶାନ୍ତିକାରକ ଔଷଧ ।

**Sedentary,** *a.* ଗଠସ୍ଥାନ,ନିରୁଦ୍ୟୋଗ ।
**Sediment,** *n.* କଲ୍କ, ମଇଳା, କାଣ୍ଡି, ପଙ୍କ, ଣିଠା, ସ୍ତର ।
**Sedimentary,** *a.* ସ୍ତରସ୍ଥ ।
**Sedition,** *n.* ରାଜଦ୍ରୋହ । [ ରାଜଦ୍ରୋହୀ
**Seditious,** *a.* ରାଜଦ୍ରୋହମୂଳକ,
**Seduce,** *v.* ପ୍ରଲୁବ୍ଧ କରିବା, କୁପଥଗାମୀ କରିବା, ଚରିତ୍ରଭ୍ରଷ୍ଟ କରିବା ।
**Seducer,** *n.* ପ୍ରଲୁବ୍ଧକାରୀ, ଭ୍ରଷ୍ଟକାରୀ ।
**Seduction,** *n.* ପ୍ରଲୋଭନ, ପ୍ରତାରଣା, ଭ୍ରଷ୍ଟକରଣ । [ କାରକ ।
**Seductive,** *a.* ପ୍ରଲୋଭନକର, ଭ୍ରଷ୍ଟ-
**Sedulous,** *a.* ଉଦ୍ୟମୀ, ଅଧ୍ୟବସାୟୀ ।
**Sedulously,** *ad.* ଅଧ୍ୟବସାୟ ସହକାରେ । [ ଉଦ୍ୟମଶୀଳତା ।
**Sedulousness,** *n.* ଅଧ୍ୟବସାୟ,
**See,** *v.* ଦେଖିବା, ମନ ଦେବା, ବୁଝିବା; *n.* ଧର୍ମାଧ୍ୟକ୍ଷଙ୍କ ଇଲାକା ।
**Seed,** *n.* ବୀଜ, ମଞ୍ଜି, ବଂଶ ।
**Seedling,** *n.* ବୀଜାଙ୍କୁର, ଚାରାଗଛ ।
**Seedsman,** *n.* ବୀଜବିକ୍ରେତା, ମଞ୍ଜିବିକାଳି ।
**Seed time,** *n.* ବୀଜବପନର ସମୟ ।
**Seek,** *v.* ଅନ୍ୱେଷଣ କରିବା, ଖୋଜିବା ।
**Seeker,** *n.* ଅନୁସନ୍ଧାତା,ଅନ୍ୱେଷଣକାରୀ ।
**Seem,** *v.* ବୋଧ ହେବା,ଅନୁମାନ ହେବା ।
**Seeming,** *a.* ବାହ୍ୟ, କୃତ୍ରିମ ।
**Seemingly,** *ad.* ବାହ୍ୟତଃ,ବାହାରୁ ।
**Seemly,** *a.* ଉଚିତ, ସଙ୍ଗତ ।
**Seer,** *n.* ଭବିଷ୍ୟଦ୍ରଷ୍ଟା, ସିଦ୍ଧପୁରୁଷ ।
**Seesaw,** *n.* ଏକପ୍ରକାର ଦୋଳି (ଏହାର ଦୁଇ ପାର୍ଶ୍ୱରେ ଦୁଇଜଣ ବସି ତଳ ଉପର ହୁଅନ୍ତି) । [ କ୍ଷୁବ୍ଧ ହେବା ।
**Seethe,** *v.* ସିଝ କରିବା ବା ହେବା,
**Segment,** *n.* ଖଣ୍ଡ, ବିଭାଗ, ବୃତ୍ତ ଓ ଜ୍ୟାଦ୍ୱାରା ଛେଦିତ ବୃତ୍ତାଂଶ, ବୃତ୍ତଚ୍ଛେଦ ।
**Segregate,** *v.* ସ୍ଥାନାନ୍ତର କରିବା, ପୃଥକ୍ କରିବା । [ ବିଚ୍ଛେଦ ।
**Segregation,** *n.* ପୃଥକ୍‌କରଣ,
**Seismal, Seismic,** *a.* ଭୂମିକମ୍ପ-ସମ୍ବନ୍ଧୀୟ । [ ବେଗପରିମାପକ ଯନ୍ତ୍ର ।
**Seismograph,** *n.* ଭୂମିକମ୍ପର
**Seismology,** *n.* ଭୂକମ୍ପବିଦ୍ୟା ।
**Seize,** *v.* ଧରିବା, ଅଟକାଇବା, ଜବତ କରିବା । [ ଅଧିକାର ।
**Seizure,** *n.* ଜବତ, ବଳପୂର୍ବକ
**Seldom,** *ad.* କ୍ୱଚିତ୍, କେବେ କେବେ, କଦାଚିତ୍ । [କରିବା,ବାଛିବା;*a.* ମନୋନୀତ
**Select,** *v.* ମନୋନୀତ କରିବା,ନିର୍ବାଚନ
**Selection,** *n.* ମନୋନୟନ,ନିର୍ବାଚନ, ପସନ୍ଦ, ନିର୍ବାଚିତ ବସ୍ତୁ ।
**Selective,** *a.* ନିର୍ବାଚନମୂଳକ ।
**Self,** *n.* ଆତ୍ମନ୍,ସ୍ୱୟଂ । [ପ୍ରକାଶ,ନମ୍ରତା ।
**Self-abasement,** *n.* ନ୍ୟୂନତା
**Self-applause,** *n.* ଆତ୍ମଶ୍ଲାଘା, ନିଜର ପ୍ରଶଂସା, ବଡ଼ିମା ।

Self-conceit, *n.* ଆତ୍ମାଭିମାନ ।
Self-confidence, *n.* ଆତ୍ମପ୍ରତ୍ୟୟ, ଆତ୍ମବିଶ୍ୱାସ ।
Self-confident, *a.* ଆତ୍ମବିଶ୍ୱାସୀ ।
Self-control, *n.* ଆତ୍ମସଂଯମ ।
Self-defence, *n.* ଆତ୍ମରକ୍ଷା ।
Self-denial, *n.* ଆତ୍ମତ୍ୟାଗ ।
Self-evident, *a.* ସ୍ୱତଃପ୍ରମାଣିତ ।
Self-existent, *a.* ସ୍ୱୟଂସ୍ଥିତ, ସ୍ୱୟମ୍ଭୂ ।
Self-government, *n.* ସ୍ୱାୟତ୍ତ-ଶାସନ, ପ୍ରଜାତନ୍ତ୍ରଶାସନ ।
Self-help, *n.* ଆତ୍ମନିର୍ଭରଶୀଳତା ।
Self-interest, *n.* ସ୍ୱାର୍ଥ, ସ୍ୱାର୍ଥପରତା ।
Selfish, *a.* ସ୍ୱାର୍ଥପର, ଆତ୍ମମୁଖୀ ।
Selfishly, *ad.* ସ୍ୱାର୍ଥପରଭାବରେ ।
Selfishness, *n.* ସ୍ୱାର୍ଥପରତା ।
Selfless, *a.* ନିଃସ୍ୱାର୍ଥପର ।
Self-reliance, *n.* ଆତ୍ମନିର୍ଭରଶୀଳତା
Self-reliant, *a.* ଆତ୍ମନିର୍ଭରଶୀଳ ।
Self-respect, *n.* ଆତ୍ମସମ୍ମାନ ।
Self-restraint, *n.* ଆତ୍ମସଂଯମ, ଆତ୍ମଦମନ । [ ଆତ୍ମତ୍ୟାଗ, ଆତ୍ମବଳି ।
Self-secrifice, *n.* ଆତ୍ମୋତ୍ସର୍ଗ,
Self-same, *n.* ଠିକ ସେହି, ଅନନ୍ୟ ।
Self-sufficient, *a.* ସ୍ୱୟଂସମ୍ପୂର୍ଣ୍ଣ, ଆତ୍ମନିର୍ଭରଶୀଳ ।
Self-willed, *a.* ସ୍ୱେଚ୍ଛାଗୁଣୀ ।
Sell, *v.* ବିକ୍ରୟ କରିବା ।

Seller, *n.* ବିକ୍ରେତା । [ ଆକାର ।
Semblance, *n.* ସାଦୃଶ୍ୟ, ଆଭାସ,
Semen, *n.* ବୀର୍ଯ୍ୟ, ଶୁକ୍ର, ରେତଃ ।
Semicircle, *n.* ଅର୍ଦ୍ଧବୃତ୍ତ ।
Semicolon, *n.* ଦ୍ୱିତୀୟ ଛେଦ (;) ।
Seminal, *a.* ଶୁକ୍ରସମ୍ବନ୍ଧୀୟ ।
Seminary, *n.* ବିଦ୍ୟାଳୟ, ଶିକ୍ଷାମନ୍ଦିର ।
Seminate, *v.* ବୀଜ ବପନ କରିବା, ବିସ୍ତାର କରିବା । [ (ଦେଖ) ।
Sempstress, *n.* Seamstress
Senate, *n.* ବିଶ୍ୱବିଦ୍ୟାଳୟର ବ୍ୟବସ୍ଥା-ସଭା, ମନ୍ତ୍ରୀସଭା । [ ସଭାର ସଦସ୍ୟ, ସଭାସଦ୍ ।
Senator, *n.* ବିଶ୍ୱବିଦ୍ୟାଳୟ ବ୍ୟବସ୍ଥା-
Send, *v.* ପ୍ରେରଣ କରିବା ।
Sender, *n.* ପ୍ରେରକ, ପ୍ରେଷକ ।
Send-off, *n.* ବିଦାୟ ।
Senile, *a.* ଜରାଗ୍ରସ୍ତ, ବୃଦ୍ଧ ।
Senility, *n.* ଜରା, ବାର୍ଦ୍ଧକ୍ୟ ।
Senior, *a.* ବୟୋଧିକ, ଜ୍ୟେଷ୍ଠ; *n.* ଉଚ୍ଚତର କର୍ମଚାରୀ, ଗୁରୁଜନ, ବୟୋଜ୍ୟେଷ୍ଠ ବ୍ୟକ୍ତି ।
Seniority, *n.* ଜ୍ୟେଷ୍ଠତ୍ୱ, ପୂର୍ବବର୍ତ୍ତିତା ।
Sensation, *n.* ଇନ୍ଦ୍ରିୟାନୁଭୂତ, ଚାଞ୍ଚଲ୍ୟ ।
Sensational, *a.* ଚାଞ୍ଚଲ୍ୟକର ।
Sense, *n.* ଜ୍ଞାନେନ୍ଦ୍ରିୟ, ବିଚାରଶକ୍ତି, ବୁଦ୍ଧି ।
Senseless, *a.* ହତଜ୍ଞାନ, ଅଚେତନ, ନିର୍ବୋଧ ।
Sensibility, *n.* ଇନ୍ଦ୍ରିୟାନୁଭୂତ ।

**Sensible**, *a.* ଇନ୍ଦ୍ରିୟଗ୍ରାହ୍ୟ, ବୁଦ୍ଧିମାନ୍, ଅଭିଜ୍ଞ , ବିଚାରବାନ୍ ।

**Sensibly**, *ad.* ବିଜ୍ଞଭାବରେ,ସଜ୍ଞାନରେ

**Sensitive**, *a.* ଅନୁଭୂତିଶୀଳ,ଅଭିମାନୀ, କୋମଳହୃଦୟ । [ ଅଭିମାନ ।

**Sensitiveness**, *n.* ଚେତନଶୀଳତା,

**Sensorial**, *a.* ଜ୍ଞାନେନ୍ଦ୍ରିୟସମ୍ବନ୍ଧୀୟ ।

**Sensory**, *a.* ସମ୍ବେଦକ ।

**Sensual**, *a.* ଇନ୍ଦ୍ରିୟଭୋଗ୍ୟ, କାମୁକ, ବିଷୟାସକ୍ତ । [ କାମୁକ ।

**Sensualist**, *n.* ଇନ୍ଦ୍ରିୟସୁଖାଭିଳାଷୀ,

**Sensuality**, *n.* ବିଷୟାସକ୍ତି,କାମାସକ୍ତି, ଇନ୍ଦ୍ରିୟସୁଖଭୋଗ ।

**Sensuous**, *a.* ଇନ୍ଦ୍ରିୟବିଷୟକ ।

**Sentence**, *n.* ଦଣ୍ଡାଜ୍ଞା, ବାକ୍ୟ; *v.* ଦଣ୍ଡାଦେଶ ଦେବା । [ ଓ ଅର୍ଥପୂର୍ଣ୍ଣ ।

**Sententious**, *a.* ଭାବଗର୍ଭିକ, ସଂକ୍ଷିପ୍ତ

**Sentient**, *a.* ସଚେତନ, ବୋଧଶକ୍ତି-ସମ୍ପନ୍ନ । [ ଭାବପ୍ରବଣତା ।

**Sentiment**, *n.* ରସ, ଭାବ, ଅଭିପ୍ରାୟ,

**Sentimental**, *a.* ଭାବପ୍ରବଣ,ସରସ ।

**Sentimentality**, *n.* ଭାବପ୍ରବଣତା, ରସଗ୍ରାହକତା । [ ଜଗୁଆଳ ।

**Sentinel, Sentry**, *n.* ପ୍ରହରୀ,ରକ୍ଷୀ,

**Separable**, *a.* ବିଚ୍ଛେଦ୍ୟ, ପୃଥକ୍-କରଣୀୟ । [ *v.* ପୃଥକ୍ କରିବା ।

**Separate**, *a.* ପୃଥକ୍, ବିଚ୍ଛିନ୍ନ;

**Separately**, *ad.* ପୃଥକ୍ଭାବରେ ।

**Separation**, *n.* ପୃଥକ୍କରଣ,ବିଚ୍ଛେଦ, ବିୟୋଗ । [ ମାସ, ସେପ୍ଟେମ୍ବର ।

**September**, *n.* ଇଂରାଜୀ ବର୍ଷର ନବମ

**Septennial**, *a.* ସପ୍ତବାର୍ଷିକ, ସାତ-ବର୍ଷରେ ଅନୁଷ୍ଠେୟ ।

**Septic**, *a.* ପଚନଶୀଳ । [ ବୟସ୍କ ବ୍ୟକ୍ତି ।

**Septuagenarian**, *n.* ସପ୍ତତିବର୍ଷ-

**Sepulchral**, *a.* ସମାଧିସମ୍ବନ୍ଧୀୟ ।

**Sepulchre**, *n.* ସମାଧି, କବର ।

**Sepulture**, *n.* ଅନ୍ତ୍ୟେଷ୍ଟିକ୍ରିୟା, କବରରେ ଶବସ୍ଥାପନ ।

**Sequel**, *n.* ପରିଣାମ, ପରବର୍ତ୍ତୀ ଫଳ ।

**Sequence**, *n.* ଅନୁକ୍ରମ, ପରିଣାମ ।

**Sequester**, *v.* ପୃଥକ୍ କରିବା, ବିଚ୍ଛିନ୍ନ କରିବା ।

**Sequestered**, *a.* ନିଭୃତ, ନିର୍ଜନ ।

**Seraph**, *n.* ଦେବଦୂତବିଶେଷ (*pl.* Seraphim) ।

**Serenade**, *n.* ନୈଶ ଗାନବାଦ୍ୟ ।

**Serene**, *a.* ପ୍ରଶାନ୍ତ, ଧୀର, ଶାନ୍ତ ।

**Serenely**, *ad.* ପ୍ରଶାନ୍ତଭାବରେ ।

**Serenity**, *n.* ପ୍ରସନ୍ନତା,ଶାନ୍ତି,ସ୍ଥୈର୍ଯ୍ୟ ।

**Serf**, *n.* ଦାସ, ଭୃତ୍ୟ ।

**Serfdom**, *n.* ଦାସ୍ୟ, ଦାସବୃତ୍ତି ।

**Sergeant**, *n.* ହାବିଲଦାର, ସର୍ଜଣ୍ଟ, ପୁଲିସ କର୍ମଚାରୀବିଶେଷ ।

**Serial**, *a.* କ୍ରମିକ, ଯଥାକ୍ରମ ।

**Serially**, *ad.* କ୍ରମାନୁସାରେ ।

Seriatim, *ad.* କ୍ରମାନୁସାରେ, ଯଥାକ୍ରମେ । [ ସ୍ତୁପ

Sericulture, *n.* ଗୋଟିପୋକ

Series, *n.* ପର୍ଯ୍ୟାୟ, ପରମ୍ପରା, କ୍ରମ ।

Serious, *a.* ଗମ୍ଭୀର, ସାଙ୍ଘାତିକ, ଧୀରପ୍ରକୃତ ।

Seriously, *ad.* ଗୁରୁତ୍ବ ସହକାରେ, ଗମ୍ଭୀରଭାବରେ ।

Seriousness, *n.* ଗୁରୁତ୍ବ, ଗାମ୍ଭୀର୍ଯ୍ୟ ।

Sermon, *n.* ଧର୍ମୋପଦେଶ, ଧର୍ମଶିକ୍ଷା ।

Sermonize, *v.* ଧର୍ମ ଉପଦେଶ ଦେବା ।

Serpent, *n.* ସର୍ପ, ଭୁଜଙ୍ଗ ।

Serpentine, *a.* ସର୍ପତୁଲ୍ୟ, ସର୍ପିଲ, ସର୍ପର ଗତି ପରି କୁଟିଳ । [ ଅଂଶ ।

Serum, *n.* ରକ୍ତରେ ଥିବା ଜଳୀୟ

Servant, *n.* ଭୃତ୍ୟ, ଦାସ, ସେବକ, ପରିଜନ । [ କରିବା, ଚାକିରି କରିବା ।

Serve, *v.* ପରିଚର୍ଯ୍ୟା କରିବା, ସେବା

Server, *n.* ସେବାକାରୀ, ସେବକ ।

Service, *n.* ପରିଚର୍ଯ୍ୟା, ସେବା, ଚାକିରି । [ ଉପଯୋଗୀ ।

Serviceable, *a.* କାର୍ଯ୍ୟକ୍ଷମ,

Servile, *a.* ଦାସୋଚିତ, ଖୋସାମଦିଆ ।

Servility, *n.* ଦାସ୍ୟଭାବ, ଖୋସାମଦି ।

Servitude, *n.* ଦାସତ୍ବ, ଗୋଲାମି ।

Sesame, Sesamum, *n.* ତିଳ, ରାସି, ରାଶି ।

Session, *n.* ଅଧିବେଶନ, କାର୍ଯ୍ୟନିର୍ବାହ କାଳ ।

Set, *n.* ଗଣ, ସମୂହ; *v.* ବିନ୍ୟାସ କରିବା, ସ୍ଥାପନ କରିବା, ଅସ୍ତ ହେବା ।

Set about, *v.* ଆରମ୍ଭ କରିବା ।

Set against, *v.* ବିରୋଧ କରାଇବା ।

Set aside, *v.* ରଦ କରିବା ।

Set before, *v.* ଉପସ୍ଥାପିତ କରିବା ।

Set down, *v.* ତଳେ ରଖିବା, ଲେଖିବା । [ ବର୍ଣ୍ଣନା କରିବା ।

Set forth, *v.* ନିର୍ଦ୍ଦେଶ କରିବା,

Set in, *v.* ଉପସ୍ଥିତ ହେବା ।

Set on, *v.* ପ୍ରବୃତ୍ତ କରିବା ।

Set-off, *n.* ପରିବର୍ତ୍ତି, ସମମୂଲ୍ୟ ଦ୍ରବ୍ୟ, ମଜୁରି ।

Set out, *v.* ପ୍ରସ୍ଥାନ କରିବା ।

Set up, *v.* ସ୍ଥାପିତ କରିବା ।

Settle, *v.* ଅବସ୍ଥାପିତ କରିବା, ସ୍ଥିର କରିବା ବା ହେବା, ନିର୍ଣ୍ଣୟ କରିବା, ବାସ କରିବା । [ ବାସସ୍ଥାନ, ବନ୍ଦୋବସ୍ତ ।

Settlement, *n.* ନିର୍ଣ୍ଣୟ, ସମାଧାନ,

Settler, *n.* ନିବାସୀ, ଔପନିବେଶିକ ।

Seven, *a.* ସପ୍ତ, ସାତ ।

Sevenfold, *a.* ସପ୍ତଗୁଣ, ସାତପ୍ରସ୍ତ ।

Seventeen, *a.* ସପ୍ତଦଶ, ସତର ।

Seventeenth, *a.* ସପ୍ତଦଶସ୍ଥାନୀୟ ।

Seventh, *a.* ସପ୍ତମ ।

Seventieth, *a.* ସପ୍ତତିତମ ।

Seventy, *a.* ସପ୍ତତି, ସତୁରି ।
Sever, *v.* ଛିନ୍ନ କରିବା, ପୃଥକ୍ କରିବା ।
Several, *a.* ଭିନ୍ନ, ପୃଥକ୍, ଅନେକ, ବହୁତ । [ ପ୍ରତ୍ୟେକେ ।
Severally, *ad.* ପୃଥକ୍ଭାବରେ,
Severance, *n.* ପୃଥକ୍କରଣ, ପାର୍ଥକ୍ୟ, ବିଭାଗ । [ ଉଗ୍ର, ନିଷ୍ଠୁର ।
Severe, *a.* ତୀକ୍ଷ୍ଣ, କଠୋର, ତୀବ୍ର,
Severely, *ad.* କଠୋରଭାବରେ, ନିଷ୍ଠୁରଭାବରେ ।
Severity, *n.* କଠୋରତା, ତୀବ୍ରତା, ନିଷ୍ଠୁରତା ।
Sew, *v.* ସିଲେଇ କରିବା । [ ଭୂଗର୍ଭସ୍ଥ ନାଳ
Sewer, *n.* ମଇଳା ନିଷ୍କାସନ ପାଇଁ
Sewerage, *n.* ଭୂଗର୍ଭସ୍ଥ ନାଳରେ ନିଷ୍କାସିତ ମଇଳା ।
Sex, *n.* ଲିଙ୍ଗ, ପୁରୁଷ-ନାରୀ ଭେଦ ।
Sexagenarian, *n.* ଷଷ୍ଟିବର୍ଷବୟସ୍କ ବ୍ୟକ୍ତି ।
Sexangular, *a.* ଷଟ୍କୋଣବିଶିଷ୍ଟ ।
Sexennial, *a.* ଷଡ୍ବାର୍ଷିକ, ଷଡ୍ବର୍ଷ-ବ୍ୟାପୀ । [ ମାପିବାର ଯନ୍ତ୍ର ।
Sextant, *n.* କୌଣିକ ଦୂରତ୍ୱ
Sexton, *n.* ଗୀର୍ଜାର କର୍ମଚାରୀବିଶେଷ, କବରଖୋଦକ ।
Sexual, *a.* ଯୌନ, ଦାମ୍ପତ୍ୟସମ୍ବନ୍ଧୀୟ ।
Shabbily, *ad.* କଦର୍ଯ୍ୟଭାବରେ, କୁତ୍ସିତରୂପେ ।
Shabbiness, *n.* କଦର୍ଯ୍ୟତା, ନୀଚତା ।
Shabby, *a.* ଛିନ୍ନବସ୍ତ୍ରପରିହିତ, କଦର୍ଯ୍ୟ, କୁତ୍ସିତ । [ ବେଡ଼ି ପକାଇବା ।
Shackle, *v.* ଶୃଙ୍ଖଳାବଦ୍ଧ କରିବା,
Shackles, *n.* ପାଦର ବେଡ଼ି, ହାତକଡ଼ି
Shade, *n.* ଛାୟା, ଅନ୍ଧକାର; *v.* ଛାଇ କରିବା । [ ପକାଇବା ।
Shadow, *n.* ଛାୟା, ପ୍ରତିବିମ୍ବ; *v.* ଛାଇ
Shadowy, *a.* ଛାୟାମୟ, ଛାୟାରୂପୀ, ଅପାର୍ଥିବ ।
Shady, *a.* ଛାୟାଛନ୍ନ, ସନ୍ଦେହଜନକ ।
Shaft, *n.* ତୀର, ଶର, ଖଣିର ପ୍ରବେଶପଥ ।
Shag, *n.* ମୋଟା ଲୋମ, ଲୋମନିର୍ମିତ ବସ୍ତ୍ର; *v.* କୁତ୍ସିତ ହେବା । [ ଅପରିଚ୍ଛନ୍ନତା ।
Shagginess, *n.* ଲୋମଶତା,
Shaggy, *a.* ଦୀର୍ଘ ଲୋମାଚ୍ଛାଦିତ, ଲୋମଶ, ଅପରିଚ୍ଛନ୍ନ । [ କମ୍ପନ ।
Shake, *v.* ହଲାଇବା, କମ୍ପିବା; *n.*
Shall, *v.* ଭବିଷ୍ୟତ୍କାଳସୂଚକ, ସାହାଯ୍ୟକାରୀ କ୍ରିୟା (ବା, ବ, ବେ ପ୍ରଭୃତି) ।
Shallop, *n.* ମାସ୍ତୁଲହୀନ କ୍ଷୁଦ୍ର ନୌକା, ସୁଲୁପ । [ *n.* ଅଗଭୀର ସ୍ଥାନ ।
Shallow, *a.* ଅଗଭୀର, ଅଳ୍ପବୁଦ୍ଧି;
Shallowness, *n.* ଅଗଭୀରତା, ବୁଦ୍ଧିର ଅଳ୍ପତା । [ ଠକାମି ।
Sham, *a.* କୃତ୍ରିମ, ଠକେଇ; *n.* ଫାଙ୍କି,
Shambles, *n.* (*pl.*) କଂସେଇଖାନା ।
Shame, *n.* ଲଜ୍ଜା; *v.* ଲଜ୍ଜିତ କରିବା ।

Shamefaced, *a* ଲଜ୍ଜାଳୁ, ଲଜ୍ଜାଶୀଳ, ଲଜ୍ଜିତ ।
Shameful, *a.* ଲଜ୍ଜାଜନକ, ନିନ୍ଦନୀୟ ।
Shameless, *a.* ନିର୍ଲଜ୍ଜ, ଲଜ୍ଜାହୀନ ।
Shamelessness, *n.* ନିର୍ଲଜ୍ଜତା ।
Shank, *n.* ପାଦର ନଳୀହାଡ଼ ।
Shape, *n.* ଆକାର, ଗଢ଼ଣ; *v.* ଗଠନ କରିବା ।
Shapeless, *a.* କଦାକାର, ବେଢଙ୍ଗ ।
Shapely, *a.* ସୁରୂପ, ଡଉଲ, ସୁନ୍ଦର ।
Share, *n.* ଅଂଶ, ଭାଗ; *v.* ଭାଗ କରିବା, ବାଣ୍ଟିବା ।
Shareholder, *n.* ଅଂଶୀଦାର ।
Sharer, *n.* ଅଂଶଭାଗୀ, ଅଂଶୀଦାର ।
Shark, *n.* ହାଙ୍ଗରମାଛ, ପ୍ରବଞ୍ଚକ ।
Sharp, *a.* ତୀକ୍ଷ୍ଣ, ଧାରୁଆ । [ କରିବା ।
Sharpen, *v.* ଧାର କରିବା, ତୀକ୍ଷ୍ଣ
Sharper, *n.* ଠକ, ପ୍ରବଞ୍ଚକ ।
Sharply, *ad.* ତୀକ୍ଷ୍ଣଭାବରେ ।
Sharpness, *n.* ତୀକ୍ଷ୍ଣତା ।
Sharp-sighted, *a.* ତୀକ୍ଷ୍ଣଦୃଷ୍ଟି-ସମ୍ପନ୍ନ । [ ବିଶିଷ୍ଟ ।
Sharp-witted, *a.* ତୀକ୍ଷ୍ଣବୁଦ୍ଧି-
Shatter, *v.* ଖଣ୍ଡବିଖଣ୍ଡ କରିବା, ଧ୍ୱସ୍ତ କରିବା । [ ଖଣ୍ଡସମୂହ ।
Shatters, *n.* (*pl*). ଛୋଟ ଛୋଟ
Shave, *v.* କ୍ଷୌର କରିବା ।
Shaver, *n.* କ୍ଷୌରକାର, ଭଣ୍ଡାରି ।
Shaving, *n.* କ୍ଷୌରକର୍ମ ।
Shawl, *n.* ଶାଲ, ପଶମନିର୍ମିତ ଚଦର ।
She, *pro.* ସେ (ସ୍ତ୍ରୀଲିଙ୍ଗବାଚକ) ।
Sheaf, *n.* ଶସ୍ୟର ବିଡ଼ା, କଲେଇ ।
Shear, *v.* କଇଁଚିରେ କାଟିବା, ମେଷର ଲୋମ କାଟିବା । [ କାଞ୍ଚି ।
Shearer, *n.* ମେଷର ଲୋମକର୍ତ୍ତିନ-
Shears, *n.* (*pl.*) ବଡ଼ କଇଁଚି ।
Sheath, *n.* ଖୋପ, ଖୋଳ, କୋଷ ।
Sheathe, *v.* ଖୋପରେ ରଖିବା ।
Shed, *v.* ବିସର୍ଜନ କରିବା, ବିକୀର୍ଣ୍ଣ କରିବା; *n.* କୁଡ଼ିଆଘର ।
Sheen, *n.* ଉଜ୍ଜ୍ୱଳତା, ଦୀପ୍ତି ।
Sheep, *n.* ମେଷ, ମେଣ୍ଢା । [ ଖୁଆଡ଼ ।
Sheepfold, *n.* ମେଷଶାଳା, ମେଣ୍ଢା-
Sheepish, *a.* ମେଷତୁଲ୍ୟ, ଭୟାଳୁ ।
Sheepishly, *ad.* ଭୟାତୁରଭାବରେ
Sheer, *a.* କେବଳ, ମାତ୍ର ।
Sheet, *n.* ଧାତୁର ଚଦର, ତକ୍ତା, ଫର୍ଦ୍ଦ ।
Sheet-anchor, *n.* ଜାହାଜର ପ୍ରଧାନ ଲଙ୍ଗର ।
Shelf, *n.* ଭଣ୍ଡା, ଥାକ, ମଞ୍ଚା ।
Shell, *n.* ଶଙ୍ଖ, ଶାମୁକା, ଖୋଳ; *v.* ଗୋଳାମାଡ଼ କରିବା ।
Shell-fish, *n.* ଶାମୁକା, କଠିନ ଆବରଣଯୁକ୍ତ ପ୍ରାଣୀ ।

**Shelter**, *n.* ଆଶ୍ରୟ, ଶରଣ; *v.* ଆଶ୍ରୟ ଦେବା, ରକ୍ଷା କରିବା । [ ରଖିବା ।
**Shelve**, *v.* ଆଡ଼େଇ ଦେବା, ଥାକରେ
**Shepherd**, *n.* ମେଷପାଳକ, ମେଣ୍ଢା-ଜଗୁଆଳ ।
**Sherry**, *n.* ଏକପ୍ରକାର ମଦ୍ୟ ।
**Shew**, *v.* ଦେଖାଇବା, ପ୍ରକାଶ କରିବା ।
**Shield**, *n.* ଢାଲ, ଫଲକ; *v.* ଆଶ୍ରୟ ଦେବା, ରକ୍ଷା କରିବା ।
**Shift**, *n.* ପରିବର୍ତ୍ତନ, ଉପାୟ, ଛଳନା, ପାଳି; *v.* ପରିବର୍ତ୍ତନ କରିବା ।
**Shiftless**, *a.* ନିରୁପାୟ, ଉଦ୍ୟମହୀନ ।
**Shilling**, *n.* ଇଂଲଣ୍ଡର ମୁଦ୍ରାବିଶେଷ (ପ୍ରାୟ ୭୫ ପଇସା) ।
**Shin**, *n.* ଗୋଡ଼ର ଲମ୍ବ ନଳୀହାଡ଼ ।
**Shine**, *v.* କିରଣ ଦେବା, ଉଜ୍ଜ୍ୱଳ ଦିଶିବା
**Shingle**, *n.* ବାଲିଗେରେଡ଼ା, ଗୋଡ଼ି ।
**Shining**, *a.* ତେଜସ୍ୱାନ୍, ଉଜ୍ଜ୍ୱଳ, ଦୀପ୍ତିମନ୍ତ । [ *v.* ଜାହାଜରେ ଲଦିବା ।
**Ship**, *n.* ଜାହାଜ, ପୋତ;
**Shipboard**, *ad.* ଜାହାଜରେ; *n.* ଜାହାଜର ପାର୍ଶ୍ୱ । [ ବିଶେଷ ।
**Shipmate**, *n.* ଜାହାଜର କର୍ମଚାରୀ-
**Shipwreck**, *n.* ଜାହାଜଡୁବି, ପୋତର ଧ୍ୱଂସ । [ ପୋତନିର୍ମାତା ।
**Shipwright**, *n.* ଜାହାଜର କାରିଗର,
**Shipyard**, *n.* ପୋତନିର୍ମାଣ ସ୍ଥାନ ।
**Shire**, *n.* (ଇଂଲଣ୍ଡର) ଜିଲା, ଶାସନ-ବିଭାଗ ।
**Shirk**, *v.* ଏଡ଼ିଦେବା, ଖସିଯିବା ।
**Shirker**, *n.* ଯେ କର୍ତ୍ତବ୍ୟକୁ ଏଡ଼ିଦିଏ ।
**Shirt**, *n.* କମିଜ, ଅଙ୍ଗରଖା ।
**Shiver**, *v.* କମ୍ପିବା, ଥରିବା ।
**Shivering**, *n.* କମ୍ପନ; *a.* କମ୍ପମାନ ।
**Shoal**, *n.* (ମତ୍ସ୍ୟାଦିର) ଦଳ, ପୁଳକ, ଅଗଭୀର ସ୍ଥାନ । [ *v.* ଚକଚ କରିବା ।
**Shock**, *n.* ଧକ୍କା, ଆଘାତ, ଚମକ;
**Shocking**, *a.* ଭୟଙ୍କର, ଘୃଣ୍ୟ, କଦର୍ଯ୍ୟ, ଉଦ୍‌ବେଗଜନକ ।
**Shoe**, *n.* ଜୋତା, ପାଦୁକା, ଉପାନହ; *v.* ଘୋଡ଼ାର ନାଲ ମାରିବା ।
**Shoe-maker**, *n.* ମୋଚି, ଚର୍ମକାର, ଜୋତାନିର୍ମାତା ।
**Shoot**, *n.* ନବପଲ୍ଲବ, ନୂଆ ପତ୍ର, ଶର ମାରିବା, ଗୁଳି ମାରିବା, ଗଜୁରିବା ।
**Shop**, *n.* ଦୋକାନ, ବିକ୍ରୟଶାଳା ।
**Shopkeeper**, *n.* ଦୋକାନୀ, ବିକ୍ରେତା ।
**Shore**, *n.* ତଟ, କୂଳ, ତୀର ।
**Shoreless**, *a.* ଅକୂଳ, ଅପାର ।
**Short**, *a.* କ୍ଷୁଦ୍ର, ହ୍ରସ୍ୱ, ଅଳ୍ପ, ବାଙ୍ଗରା, ଊଣା
**Shorten**, *v.* କ୍ଷୁଦ୍ର ବା ହ୍ରସ୍ୱ କରିବା, କମ୍ କରିବା । [ ଲିଖନପଦ୍ଧତି ।
**Shorthand**, *n.* କ୍ଷୁଦ୍ର ପ୍ରଲିଖନ, ସଂକ୍ଷିପ୍ତ
**Short-lived**, *a.* ଅଳ୍ପକାଳସ୍ଥାୟୀ ।
**Shortly**, *ad.* ଶୀଘ୍ର, ଅବିଳମ୍ବେ ।
**Short-sighted**, *a.* ଅଦୂରଦର୍ଶୀ ।
**Shot**, *n.* ଗୁଳି, ଛରରା ।

**Should**, *v.* ଔଚତ୍ୟ ବା ଭବଷ୍ୟଦ୍-ବୋଧକ ସାହାଯ୍ୟକାରୀ କ୍ରିୟା । [ ବହିବା ।
**Shoulder**, *n.* ସ୍କନ୍ଧ, କାନ୍ଧ; *v.* କାନ୍ଧରେ
**Shout**, *n.* ଚତ୍କାର, ଉଚ୍ଚ ଧ୍ୱନ; *v.* ଚତ୍କାର କରବା । [ କରବା ।
**Shove**, *n.* ଧକ୍କା, ଠେଲା; *v.* ସଞ୍ଚାଳତ
**Shovel**, *n.* କୋଦାଳ, କୋଡ଼ ।
**Show**, *v.* ଦେଖାଇବା, ପ୍ରଦର୍ଶନ କରବା; *n.* ପ୍ରଦର୍ଶନ, ଆଡ଼ମ୍ବର ।
**Shower**, *n.* ବୃଷ୍ଟିପାତ, ଅସର; *v.* ବର୍ଷା କରବା, ଅତମାତ୍ରାରେ ଦେବା ।
**Showery**, *a.* ବୃଷ୍ଟିମୟ । [ ପୂର୍ଣ୍ଣ ।
**Showy**, *a.* ସୁନ୍ଦର, ଦର୍ଶନୀୟ, ଆଡ଼ମ୍ବର-
**Shred**, *n.* ଟିକଟିକ ଖଣ୍ଡ, କନାଖଣ୍ଡ; *v.* ଟିକଟିକ କରବା ।
**Shrew**, *n.* ମୁଖର ବା କଳହକାରୀ ସ୍ତ୍ରୀ ।
**Shrewd**, *a.* ଚତୁର, ଧୂର୍ତ୍ତ, ଶିଆଣା ।
**Shrewdly**, *ad.* ଚତୁରସ୍ୱଭବରେ, କୌଶଳରେ । [ କରବା; *n.* ଚତ୍କାର ।
**Shriek**, *v.* ଚତ୍କାର କରବା, ଆର୍ତ୍ତଧ୍ୱନ
**Shrill**, *a.* କର୍ଣ୍ଣକଟୁ, କର୍କଶ, ତୀବ୍ର ।
**Shrillness**, *n.* କର୍କଶତା, ତୀବ୍ରତା ।
**Shrimp**, *n.* ଚିଙ୍ଗୁଡ଼ିମାଛ ।
**Shrine**, *n.* ଦେବମନ୍ଦର, ପୁଣ୍ୟସ୍ଥାନ ।
**Shrink**, *v.* ସଙ୍କୁଚତ ହେବା, ପଶ୍ଚାତ୍-ପଦ ହେବା । [ ହେବା ।
**Shrivel**, *v.* ସଙ୍କୁଚତ କରବା ବା
**Shrivelled**, *a.* ସଙ୍କଚତ ।
**Shroud**, *n.* ଶବର ଆଚ୍ଛାଦକ ବସ୍ତ୍ର; *v.* ଆଚ୍ଛାଦନ କରବା ।
**Shrub**, *n.* ଗୁଳ୍ମ, ବୁଦା ।
**Shrubbery**, *n.* ଗୁଳ୍ମାଚ୍ଛାଦତ ସ୍ଥାନ ।
**Shrug**, *v.* ସଞ୍ଚାଳନ କରବା, ସଙ୍କୋଚନ କରବା; *n.* ସଞ୍ଚାଳନ ।
**Shudder**, *v.* ରୋମାଞ୍ଚତ ହେବା, ଥରବା; *n.* କମ୍ପନ । [ ଗୋଳେଇବା ।
**Shuffle**, *v.* ଠକବା, ତାସ ଫେଣ୍ଟିବା,
**Shuffler**, *n.* ପ୍ରବଞ୍ଚକ, ଠକ ।
**Shun**, *v.* ତ୍ୟାଗ କରବା, ବର୍ଜନ କରବା ।
**Shut**, *v.* ବନ୍ଦ କରବା, ଆବଦ୍ଧ ରଖିବା; *a.* ରୁଦ୍ଧ ।
**Shutter**, *n.* କବାଟ, ଦୁଆର ।
**Shuttle**, *n.* ତନ୍ତୀର ମାକୁ, କଣ୍ଡା ।
**Shy**, *a.* ସଲଜ୍ଜ, ଲଜ୍ଜାଶୀଳ, ସଙ୍କୁଚତ ।
**Shyness**, *n.* ଲଜ୍ଜାଶୀଳତା, ଭୀରୁତା, ସଙ୍କୋଚ ।
**Sibilant**, *n.* ଉଷ୍ମ ବର୍ଣ୍ଣ । [ ସନ୍ତପ୍ତ ।
**Sick**, *a.* ରୁଗ୍ଣ, ପୀଡ଼ିତ, ବରକ୍ତ,
**Sicken**, *v.* ପୀଡ଼ିତ ହେବା, ବରକ୍ତ କରବା ।
**Sickening**, *a.* ବୀଭତ୍ସ, ବରକ୍ତକର ।
**Sickle**, *n.* ଦାଆ, ଶସ୍ୟ କାଟିବାର ହତଆର ।
**Sickly**, *a.* ଅସୁସ୍ଥ, ଦୁର୍ବଳ, ରୁଗ୍ଣ ।
**Sickness**, *n.* ରୋଗ, ପୀଡା, ବମନେଚ୍ଛା

Side, *n.* ପାର୍ଶ୍ୱ, ପାଖ; *v.* ପକ୍ଷଗ୍ରହଣ କରିବା ।
Sidelong, *a.* ତେର୍ଛା, ବକ୍ର, ତର୍ଯ୍ୟକ୍ ।
Sideways, *ad.* ଏକପାର୍ଶ୍ୱରେ, ତର୍ଯ୍ୟକ୍‌ଭାବରେ । [ ସୈନ୍ୟଦ୍ୱାରା ବେଷ୍ଟନ ।
Siege, *n.* ଗଡ଼ ବା ନଗରର ଅବରୋଧ,
Siesta, *n.* ଦିବାନିଦ୍ରା ।
Sieve, *n.* ଚାଲୁଣୀ, ଛାଣିବାର ଉପକରଣ ।
Sift, *v.* ଚାଲୁଣୀରେ ଛାଣିବା, ଚଲେଇବା, ଆଲୋଚନା କରିବା । [ *n.* ଦୀର୍ଘଶ୍ୱାସ ।
Sigh, *v.* ଦୀର୍ଘଶ୍ୱାସ ପକାଇବା;
Sight, *n.* ଦୃଷ୍ଟିଶକ୍ତି, ଦର୍ଶନୀୟ ବସ୍ତୁ; *v.* ଦୃଷ୍ଟିଗୋଚର ହେବା ।
Sightless, *a.* ଦୃଷ୍ଟିହୀନ, ଅନ୍ଧ ।
Sightly, *a.* ସୁରୂପ, ସୁଦୃଶ୍ୟ ।
Sign, *n.* ଚିହ୍ନ, ଲକ୍ଷଣ, ସଙ୍କେତ; *v.* ଚିହ୍ନ ଦେବା, ସ୍ୱାକ୍ଷର କରିବା ।
Signal, *n.* ସଙ୍କେତ, ଠାର; *v.* ସଙ୍କେତ ଦେବା, ଠାରିବା; *a.* ଅପୂର୍ବ, ଅସାଧାରଣ, ସ୍ମରଣୀୟ ।
Signalise, Signalize, *v.* ପ୍ରସିଦ୍ଧ କରିବା, ସ୍ମରଣୀୟ କରିବା, ସଙ୍କେତ ଦ୍ୱାରା ଜଣାଇବା ।
Signaller, *n.* ସଙ୍କେତକାରୀ ।
Signally, *ad.* ସ୍ମରଣୀୟଭାବରେ, ଅଭ୍ଭୁତରୂପେ । [ ଲେଖକ ।
Signatory, *n.* ସ୍ୱାକ୍ଷରକାରୀ, ସ୍ୱନାମ-
Signature, *n.* ସ୍ୱାକ୍ଷର, ଦସ୍ତଖତ ।
Sign-board, *n.* ବିଜ୍ଞାପନ ନିମନ୍ତେ ସ୍ଥାପିତ ପଟା । [ ମୋହର ।
Signet, *n.* ନାମାଙ୍କିତ ମୁଦ୍ରା, ରାଜାଙ୍କର
Signet-ring, *n.* ନାମାଙ୍କିତ ଅଙ୍ଗୁରୀୟ
Significance, *n.* ଗୌରବ, ମହତ୍ତ୍ୱ, ତାତ୍ପର୍ଯ୍ୟ, ଅଭିପ୍ରାୟ । [ ଗୁରୁତ୍ୱପୂର୍ଣ୍ଣ ।
Significant, *n.* ତାତ୍ପର୍ଯ୍ୟପୂର୍ଣ୍ଣ,
Signification, *n.* ଅର୍ଥ, ଅଭିପ୍ରାୟ, ଭାବ
Signify, *v.* ବୁଝାଇବା, ସୂଚନା ଦେବା, ଭାବପ୍ରକାଶ କରିବା ।
Silence, *n.* ମୌନଭାବ, ନୀରବତା, ନିଃଶବ୍ଦତା; *v.* ନୀରବ କରିବା, ଚୁପ୍ କରିବା ।
Silent, *a.* ମୂକ, ମୌନ, ନିଃଶବ୍ଦ, ନୀରବ ।
Silently, *ad.* ନୀରବରେ, ନିଃଶବ୍ଦରେ ।
Silk, *n.* ରେଶମ, ତସର, ପଟ୍ଟବସ୍ତ୍ର ।
Silken, *a.* ରେଶମନିର୍ମିତ, କୋମଳ, ମସୃଣ
Silkworm, *n.* ଗୋଟିପୋକ, ରେଶମପୋକ । [ ତଳ ଅଂଶ ।
Sill, *n.* ଦେହଳୀ, ଏରୁଣ୍ଡି, ଚଉକାଠର
Silliness, *n.* ନିର୍ବୋଧତା, ବୋକାମି ।
Silly, *a.* ମୂର୍ଖ, ମୂଢ଼, ନିର୍ବୋଧ ।
Silt, *n.* ପଟୁମାଟି, ପଙ୍କ; *v.* ପଟୁମାଡ଼ିଯିବା ।
Silvan, *a.* ବନ୍ୟ, ବନଜାତ, ବନସମ୍ବନ୍ଧୀୟ ।
Silver, *n.* ରଜତ, ରୌପ୍ୟ, ରୁପା ।
Silversmith, *n.* ରୁପ୍ୟକାର, ସ୍ୱର୍ଣ୍ଣକାର
Silvery, *a.* ରଜତୋପମ, ଶୁକ୍ଳ, ଶ୍ୱେତ ।

**Similar**, *a.* ତୁଲ୍ୟ, ସମାନ, ସଦୃଶ, ଅନୁରୂପ । [ ସାଦୃଶ୍ୟ ।
**Similarity**, *n.* ସାମ୍ୟ, ତୁଲ୍ୟତା,
**Similarly**, *ad.* ତଦ୍ରୂପ, ତଦନୁରୂପ, ସେହିପରି ।
**Simile**, *n.* ଉପମା, ନିଦର୍ଶନ ।
**Similitude**, *n.* ସାଦୃଶ୍ୟ, ଔପମ୍ୟ, ଦୃଷ୍ଟାନ୍ତ, ତୁଲନା । [ କରିବା ।
**Simmer**, *v.* ଧୀରେ ଧୀରେ ପାକ
**Simper**, *v.* ମୂରକ ହସିବା, ବିକୃତ ହସ ହସିବା; *n.* ବିକୃତ ହାସ୍ୟ । [ ସହଜ ।
**Simple**, *a.* ସରଳ, ଅମାୟିକ, ଅକପଟ,
**Simpleton**, *n.* ମୂଢ଼, ସ୍ୱଳ୍ପବୁଦ୍ଧି, ନିର୍ବୋଧ ବ୍ୟକ୍ତି ।
**Simplicity, Simpleness**, *n.* ସରଳତା, ସ୍ପଷ୍ଟତା, ସୁଗମତ୍ୱ । [ ଅମିଶ୍ରକରଣ ।
**Simplification**, *n.* ସରଳୀକରଣ,
**Simplify**, *v.* ସରଳ କରିବା, ସହଜ କରିବା, ବିଶଦ କରିବା । [ ମାତ୍ର ।
**Simply**, *ad.* ସହଜଭାବରେ, କେବଳ,
**Simulate**, *v.* ଛଳନା କରିବା, ଜାଲ୍ କରିବା । [ କୃତ୍ରିମତା ।
**Simulation**, *n.* ଛଳନା, କାପଟ୍ୟ,
**Simultaneous**, *a.* ଏକକାଳିକ, ସମକାଳରେ ଘଟିତ ।
**Simultaneously**, *ad.* ଏକକାଳରେ, ଯୁଗପତ୍ । [ କରିବା ।
**Sin**, *n.* ପାପ, ପାତକ, ଅପରାଧ; *v.* ପାପ
**Since**, *pre.* ଠାରୁ, ଅବଧି; *con.* ଯେହେତୁ । [ ଯଥାର୍ଥ ।
**Sincere**, *a.* ନିଷ୍କପଟ, ସରଳ,
**Sincerely**, *ad.* ସରଳଭାବରେ, ନିଷ୍କପଟରେ ।
**Sincereness, Sincerity**, *n.* ସାରଲ୍ୟ, ଯାଥାର୍ଥ୍ୟ, ନିଷ୍କପଟତା ।
**Sinecure**, *n.* କର୍ମବିନା ବେତନ-ପ୍ରାପ୍ତି, କର୍ମଶୂନ୍ୟ ପଦ ।
**Sine die**, *ad.* ଅନିର୍ଦ୍ଦିଷ୍ଟ କାଳ ନିମନ୍ତେ ।
**Sinew**, *n.* ଶିରା, ସ୍ନାୟୁ, ବଳ, ସାମର୍ଥ୍ୟ ।
**Sinful**, *a.* ପାପିଷ୍ଠ, ପାତକୀ, ପାପକର୍ମି ।
**Sing**, *v.* ଗାନ କରିବା, ଗାଇବା ।
**Singe**, *v.* ଦରପୋଡ଼ା କରିବା, ସାମାନ୍ୟ ଦଗ୍ଧ କରିବା ।
**Singer**, *n.* ଗାୟକ, ଯେ ଗାନ କରେ ।
**Single**, *a.* ଏକ, ଅଦ୍ୱିତୀୟ, ଅବିଭକ୍ତ, କେବଳ; *v.* ପୃଥକ୍ କରିବା ।
**Singlehanded**, *a.* & *ad.* ଏକାକୀ, ଅନ୍ୟର ସାହାଯ୍ୟବିନା ।
**Singleness**, *n.* ଅଦ୍ୱିତୀୟତା, ଅଖଣ୍ଡତା, ଅବିବାହିତାବସ୍ଥା ।
**Singly**, *ad.* ଏକାକୀ, ଅନ୍ୟବିନା, ଗୋଟି ଗୋଟି କରି, ପ୍ରତ୍ୟେକେ ।
**Singular**, *a.* ଏକ, ଅପୂର୍ବ, ଅନୁପମ, ଅସାଧାରଣ । [ ବିଶିଷ୍ଟତା ।
**Singularity**, *n.* ଅପୂର୍ବତା, ବୈଚିତ୍ର୍ୟ,

**Singularly**, *ad.* ଅପୂର୍ବଭାବରେ, ଆଶ୍ଚର୍ଯ୍ୟରୂପେ । [ ଦୁଷ୍ଟ ।

**Sinister**, *a.* ଅଶୁଭ, ମନ୍ଦ, କୁଟିଳ,

**Sink**, *v.* ନିମଗ୍ନ ହେବା, ବୁଡ଼ିଯିବା, ଅଧୋଗାମୀ ହେବା ।

**Sinless**, *a.* ନିଷ୍ପାପ, ନିର୍ଦ୍ଦୋଷ ।

**Sinner**, *n.* ପାପାତ୍ମା, ପାପକର୍ମୀ, ପାପିଷ୍ଠ ବ୍ୟକ୍ତି । [ ବକ୍ରଗତି ।

**Sinuosity**, *n.* କୁଟିଳତା, ବକ୍ରତା,

**Sinuous, Sinuose**, *a.* କୁଟିଳ-ପ୍ରକୃତିକ, ଛଳନାପୂର୍ଣ୍ଣ, ବକ୍ର ।

**Sinus**, *n.* ନାଳୀଘାଆ ।

**Sip**, *v.* ଅଳ୍ପ ଅଳ୍ପ କରି ପିଇବା ।

**Siphon, Syphon**, *n.* ଉତ୍-କ୍ଷେପଣୀ, ପାତ୍ରରୁ ତରଳଦ୍ରବ୍ୟ କାଢ଼ିବାର ନଳ । [ (ସମ୍ବୋଧନ) ।

**Sir**, *n.* ଭଦ୍ର, ଆର୍ଯ୍ୟ, ମହାଶୟ

**Sire**, *n.* ଦେବ, ମହାରାଜ (ସମ୍ବୋଧନ), ତାତ, ଜନକ । [ ମୋହିନୀ, ସତର୍କଧ୍ୱନି ।

**Siren, Syren**, *n.* ମାୟାବିନୀ,

**Sirius**, *n.* ନକ୍ଷତ୍ରବିଶେଷ ।

**Sirrah**, *interj.* ଅରେ, ରେ, ହେ ।

**Sirup, Syrup**, *n.* ସିରା, ମଧୁରରସ ।

**Sister**, *n.* ଭଗିନୀ, ସହୋଦରା, ଭଉଣୀ, ସେବା-ଭଗିନୀ । [ ସମାଜ ।

**Sisterhood**, *n.* ଭଗିନୀତ୍ୱ, ଭଗିନୀ-

**Sister-in-law**, *n.* ଶାଳୀ, ଭାଉଜ, ଭାଇବୋହୂ, ନଣନ୍ଦ ପ୍ରଭୃତି ।

**Sisterlike**, *a.* ଭଗିନୀତୁଲ୍ୟ ।

**Sisterly**, *a.* ସ୍ନେହୀସ୍ବ, ଭଗିନୀଯୋଗ୍ୟ ।

**Sit**, *v.* ବସିବା, ଉପବେଶନ କରିବା ।

**Site**, *n.* ସ୍ଥିତି, ଗୃହଭୂମି, ବାସ୍ତୁ, ସ୍ଥାନ ।

**Sitting**, *n.* ଉପବେଶନ, ବୈଠକ; *a.* ଉପବିଷ୍ଟ । [ ପ୍ରତିଷ୍ଠିତ ।

**Situate, Situated**, *a.* ଅବସ୍ଥିତ,

**Situation**, *n.* ଅବସ୍ଥା, ଅବସ୍ଥିତି, ପଦବୀ ।

**Six**, *a.* ଷଟ୍, ଛଅ; *n.* ଷଟ୍ସଂଖ୍ୟା ।

**Sixfold**, *a.* ଛଅଗୁଣ, ଛଅପ୍ରସ୍ଥ ।

**Sixteen**, *a.* ଷୋଡ଼ଶ, ଷୋଳ; *n.* ଷୋଳସଂଖ୍ୟା ।

**Sixteenth**, *a.* ଷୋଡ଼ଶ ।

**Sixth**, *a.* ଷଷ୍ଠ ।

**Sixthly**, *ad.* ଷଷ୍ଠତଃ ।

**Sixtieth**, *a.* ଷଷ୍ଟିତମ ।

**Sixty**, *a.* ଷଷ୍ଟି, ଷାଠିଏ ।

**Sizable, Sizeable**, *a.* ଉତ୍ତମ ଆୟତନବିଶିଷ୍ଟ ।

**Size**, *n.* ଆୟତନ, ପରିମାଣ, ମାପ ।

**Skate**, *n.* ବରଫଉପରେ ଦ୍ରୁତ ଗମନାର୍ଥ ପାଦୁକା; *v.* ଉକ୍ତ ପାଦୁକା ପିନ୍ଧି ବରଫରେ ଦୌଡ଼ିବା ।

**Skeleton**, *n.* କଙ୍କାଳ, ଅସ୍ଥିପଞ୍ଜର ।

**Sketch**, *n.* ନକ୍ସା, ସ୍ଥୂଳ ବର୍ଣ୍ଣନା, ରେଖାଚିତ୍ର; *v.* ନକ୍ସା କରିବା, ସଂକ୍ଷେପରେ ବର୍ଣ୍ଣନା କରିବା । [ ନକ୍ସାତୁଲ୍ୟ ।

**Sketchy**, *a.* ସଂକ୍ଷିପ୍ତ, ଅସମ୍ପୂର୍ଣ୍ଣ,

Skew, *a.* ତେର୍ଚ୍ଛା, ବିଷମ, ବକ୍ର ।
Skiff, *n.* କ୍ଷୁଦ୍ର ନୌକା, ଡଙ୍ଗା ।
Skilful, *a.* କୁଶଳ, ଦକ୍ଷ, ଚତୁର, ପାରଗ ।
Skilfully, *ad.* ଦକ୍ଷତା ସହକାରେ ।
Skilfulness, *n.* ନୈପୁଣ୍ୟ, ଦକ୍ଷତା ।
Skill, *n.* କୌଶଳ, ପଟୁତା, ଦକ୍ଷତା, ନୈପୁଣ୍ୟ । [ ପ୍ରବୀଣ ।
Skilled, *a.* କୁଶଳ, ନିପୁଣ, ଦକ୍ଷ,
Skim, *n.* ମଣ୍ଡ, ଫେଣ, ସର; *v.* ଫେଣ ବା ସର ବାହାର କରିବା, ବେଗରେ ପଳାଇବା । [ କାଢ଼ିବାର ପାତ୍ର ।
Skimmer, *n.* ଜାଲିଚଟୁ, ସର
Skimmings, *n.* (*pl.*) ଖାଦ, ସର ।
Skin, *n.* ଚମ, ଚର୍ମ, ତ୍ୱକ୍; *v.* ଚମ ଉତାରିବା, ଛାଲ କାଢ଼ିବା ।
Skin-deep, *a.* ଅଗଭୀର, ବାହ୍ୟିକ ଉପରଠାଉରିଆ ।
Skinny, *a.* ଚର୍ମମାତ୍ରାବଶିଷ୍ଟ, କ୍ଷୀଣ ।
Skip, *v.* ଡେଇଁବା; *n.* ଡିଆଁ, ନୃତ୍ୟ ।
Skipper, *n.* ନୌକାଧ୍ୟକ୍ଷ । [ କଳହ ।
Skirmish, *n.* ଖଣ୍ଡଯୁଦ୍ଧ, ବିବାଦ,
Skirt, *n.* ପ୍ରାନ୍ତ, ଧାର, ବସ୍ତ୍ରାଞ୍ଚଳ, ପର୍ଯ୍ୟନ୍ତ ।
Skittish, *a.* ଚଞ୍ଚଳ, ଚପଳ, ସଳଜ୍ଜ, କ୍ରୀଡ଼ାପରାୟଣ । [ ରହିବା ।
Skulk, *v.* ନିର୍ଜନରେ ରହିବା, ଲୁଚି
Skull, *n.* କପାଳ, ଶିରୋସ୍ଥି, କରୋଟି ।
Sky, *n.* ଆକାଶ, ଗଗନ, ବ୍ୟୋମ ।
Sky-blue, *a.* ଆକାଶ ସଦୃଶ ନୀଳ ।
Sky-high, *a.* ଗଗନସ୍ପର୍ଶୀ ।
Skylark, *n.* ଭରଦ୍ୱାଜ, ଭରଦ୍ୱାଜପକ୍ଷୀ ।
Skylight, *n.* ଘରକୁ ଆଲୁଅ ଆସିବା ପାଇଁ ଛାତରେ ବା କାନ୍ଥର ଊର୍ଦ୍ଧ୍ୱାଂଶରେ ଥିବା ଝରକା ।
Skyline, *n.* ଦିଗ୍‌ବଳୟ ।
Skyrocket, *n.* ହାଉଇବାଣ ।
Skyscraper, *n.* ନଭସ୍ପର୍ଶୀ ପ୍ରାସାଦ, ବହୁତଳବିଶିଷ୍ଟ ସୌଧ ।
Skyward, *ad.* ଆକାଶାଭିମୁଖରେ ।
Slab, *n.* ଶିଳାପଟ୍ଟ, ଶିଳାଫଳକ ।
Slabber, *v.* ଛେପ ପକାଇବା ।
Slabby, *a.* କାଦୁଆ, ପଙ୍କିଳ ।
Slack, *a.* ଶିଥିଳ, ମନ୍ଦ, ଢିଲା, ଅସାବଧାନ ।
Slacken, *v.* ଶିଥିଳ କରିବା, ଅଳସହେବା ।
Slackness, *n.* ଶୈଥିଲ୍ୟ, ଶିଥିଳତା ।
Slake, *v.* ପ୍ରଶମିତ କରିବା, ପୋଡ଼ା ଚିପରେ ପାଣି ଦେବା ।
Slam, *v.* ତୀବ୍ର ଶବ୍ଦ ସହ ବନ୍ଦ କରିବା ।
Slander, *v.* ଅପବାଦ ଦେବା, ଦୁର୍ନାମ କରିବା; *n.* ଅପବାଦ, ଦୁର୍ନାମ ।
Slanderer, *n.* ଦୁର୍ନାମକାରୀ, ଅପବାଦକାରୀ ।
Slanderous, *a.* ଅପବାଦମୂଳକ ।
Slang, *n.* ଅପଭ୍ରଂଶ, ଅଶ୍ଳୀଳ ଭାଷଣ ।
Slant, Slanting, *a.* ତେର୍ଚ୍ଛା, ବକ୍ର, କୁଟିଳ, ତେର୍ଚ୍ଛା ।

**Slant**, *v.* ବକ୍ର ହେବା ବା ବକ୍ର କରିବା ।
**Slap**, *n.* ଚପେଟାଘାତ; *v.* ଚପେଟାଘାତ କରିବା । [ *n.* ଆଘାତ ।
**Slash**, *v.* କ୍ଷତବିକ୍ଷତ କରିବା;
**Slashing**, *a.* ମର୍ମଭେଦୀ, ତୀକ୍ଷ୍ଣ ।
**Slate**, *n.* ସ୍ଲେଟ, ଲେଖିବାର ପଟା ।
**Slaughter**, *v.* ହତ୍ୟା କରିବା; *n.* ହତ୍ୟା, ବଧ । [ ଘାତକ, କଂସେଇ ।
**Slaughterer**, *n.* ହତ୍ୟାକାରୀ,
**Slaughter-house**, *n.* ଜୀବବଧ ଗୃହ, କଂସେଇଖାନା ।
**Slave**, *n.* ଦାସ, ଭୃତ୍ୟ, କ୍ରୀତଦାସ ।
**Slaver**, *n.* ଲାଳ, ଛେପ ।
**Slavery**, *n.* ଦାସତ୍ୱ, ଦାସବୃତ୍ତି ।
**Slave-trade**, *n.* ଦାସବ୍ୟବସାୟ ।
**Slavish**, *a.* ଦାସତୁଲ୍ୟ, ଦାସୋଚିତ ।
**Slavishly**, *ad.* ଦାସପରି, ଦାସଭାବରେ ।
**Slay**, *v.* ହତ୍ୟା କରିବା, ବଧ କରିବା ।
**Slayer**, *n.* ବଧକାରୀ, ଘାତକ ।
**Sledge**, *n.* ଚକହୀନ ଯାନବିଶେଷ, ସ୍ଲେଜ ଗାଡ଼ି, ହାତୁଡ଼ି । [ ମୁଗୁର ।
**Sledge-hammer**, *n.* ମୁଦ୍‌ଗର,
**Sleek**, *a.* ମୃଦୁ, ସ୍ନିଗ୍ଧ, ମସୃଣ, ସୁଖସ୍ପର୍ଶ ।
**Sleep**, *v.* ନିଦ୍ରାଯିବା, ଶୋଇବା; *n.* ନିଦ୍ରା, ଶୟନ ।
**Sleeper**, *n.* ନିଦ୍ରାଳୁ ବା ନିଦ୍ରିତ ବ୍ୟକ୍ତି, ରେଳପଥ ତଳେ ଥିବା ଧାରଣା ।
**Sleepily**, *ad.* ନିଦରେ ଢୁଳେଇ ଢୁଳେଇ, ତନ୍ଦ୍ରାଳୁଭାବରେ ।
**Sleepless**, *a.* ଉନ୍ନିଦ୍ର, ଉଜାଗର ।
**Sleeplessness**, *n.* ଉନ୍ନିଦ୍ରତା, ନିଦ୍ରାହୀନତା, ଅନିଦ୍ରା ।
**Sleepy**, *a.* ନିଦ୍ରାଳୁ, ନିଦ୍ରାକ୍ରାନ୍ତ ।
**Sleet**, *n.* ଶୀକର, ତୁଷାର; *v.* ତୁଷାରପାତ ହେବା ।
**Sleeve**, *n.* ଅସ୍ତିନ, ହାତର ଆବରଣ ।
**Sleeveless**, *a.* ଅସ୍ତିନ ନଥିବା ।
**Sleight**, *n.* କୁହୁକ, ଇନ୍ଦ୍ରଜାଲ, ପ୍ରତାରଣା
**Sleight-of-hand**, *n.* ହସ୍ତକୌଶଳ
**Slender**, *a.* କୃଶ, କ୍ଷୀଣ, ଦୁର୍ବଳ ।
**Slenderness**, *n.* କୃଶତା, କ୍ଷୀଣତା, ଶୀର୍ଣ୍ଣତା, ଅପ୍ରଚୁରତା ।
**Slice**, *n.* ଖଣ୍ଡ; *v.* ଖଣ୍ଡ ଖଣ୍ଡ କରିବା ।
**Slide**, *v.* ଖସିବା, ଗଡ଼ିବା; *n.* ପିଚ୍ଛିଳ ସ୍ଥାନ
**Slight**, *a.* ସାମାନ୍ୟ, ଅଳ୍ପ, ତୁଚ୍ଛ; *n.* ଅବଜ୍ଞା; *v.* ଅବଜ୍ଞା କରିବା ।
**Slighter**, *n.* ଉପେକ୍ଷାକାରୀ, ଅବଜ୍ଞାକାରୀ
**Slightingly**, *ad.* ଅନାଦରରେ, ଅବଜ୍ଞା ସହକାରେ । [ କହନ୍ତି, ଟିକିଏ ।
**Slightly**, *ad.* ସାମାନ୍ୟଭାବରେ,
**Slightness**, *n.* ଦୁର୍ବଳତା, ଅମନୋଯୋଗ, ଅବଜ୍ଞା ।
**Slily**, *ad.* ପ୍ରତାରଣାପୂର୍ବକ ।
**Slim**, *a.* କ୍ଷୀଣ, କୃଶ, ସରୁ, ଦୁର୍ବଳ ।
**Slime**, *n.* ପଙ୍କ, କର୍ଦ୍ଦମ, ଅଠା ।

**Slimness**, *n.* କ୍ଷୀଣତା, କୃଶତା ।

**Slimy**, *a.* ପଙ୍କିଳ, କର୍ଦ୍ଦମମୟ, ଅଠାଳିଆ, ମଇଳାପୂର୍ଣ୍ଣ ।

**Sling**, *n.* ନିକ୍ଷେପକ ଯନ୍ତ୍ର; *v.* ନିକ୍ଷେପ କରିବା, ଘୂରେଇ ଘୂରେଇ ଫିଙ୍ଗିବା ।

**Slink**, *v.* ଲୁଚି ପଳାଇବା, ଖସିଯିବା ।

**Slip**, *v.* ସ୍ଖଳିତ ହେବା, ଖସିପଡ଼ିବା; *n.* ପତନ, ସ୍ଖଳନ ।

**Slipper**, *n.* ପାଦୁକା, ଚଟିଜୋତା ।

**Slipperiness**, *n.* ପିଚ୍ଛିଳତା, ମସୃଣତା

**Slippery**, *a.* ମସୃଣ, ପିଚ୍ଛିଳ, ଖସଡ଼ା ।

**Slit**, *n.* ଦୀର୍ଘଚ୍ଛେଦ, ଚିରା, ଫାଟ; *v.* ଚିରିବା, ଫାଡ଼ିବା ।

**Slogan**, *n.* ଦଳର ଧ୍ୱନି, ଦୁଆ ।

**Sloop**, *n.* ଏକମାସ୍ତୁଲବିଶିଷ୍ଟ ଜାହାଜ, ସ୍ଲୁପ । [ *n.* କ୍ରମନିମ୍ନ ଭୂମି, ଗଡ଼ାଣି ।

**Slope**, *v.* କ୍ରମଶଃ ନିମ୍ନ ହେବା;

**Sloping**, *a.* ଢାଲୁ, ଗଡ଼ାଣିଆ, କ୍ରମନିମ୍ନ ।

**Slot**, *n.* ଛିଦ୍ର, କାଲକ ।

**Sloth**, *n.* ତନ୍ଦ୍ରା, ଆଳସ୍ୟ, ଜଡ଼ତା ।

**Slothful**, *a.* ଅଳସ, ତନ୍ଦ୍ରାଳୁ, ଢିଲା, କର୍ମକୁଣ୍ଠ । [ ପଙ୍କିଳ ସ୍ଥାନ ।

**Slough**, *n.* ନିର୍ମୋକ, ସାପକାଢ,

**Sloven**, *n.* ଅପରିଚ୍ଛନ୍ନ ପୁରୁଷ, କୁତ୍ସିତ ଲୋକ ।

**Slovenliness**, *n.* ଅପରିଷ୍କାର, ଅପରିଚ୍ଛନ୍ନତା, ମଳିନତା, ଅବ୍ୟବସ୍ଥା ।

**Slovenly**, *a.* ଅପରିଷ୍କୃତ, ମଳିନ, କଦର୍ଯ୍ୟ, ଅପରିଚ୍ଛନ୍ନ ।

**Slow**, *a.* ମନ୍ଦ, ଧୀର, ମନ୍ଥର, ଅଳସ ।

**Slowly**, *ad.* ଧୀରଭାବରେ, ମନ୍ଦଗତିରେ, ବିଳମ୍ବରେ । [ ବିଳମ୍ବ ।

**Slowness**, *n.* ମାନ୍ଦ୍ୟ, ଦୀର୍ଘସୂତ୍ରତା,

**Sluggard**, *n.* ଆଳସ୍ୟପରାୟଣ ବ୍ୟକ୍ତି ।

**Sluggish**, *a.* ମନ୍ଦ,ଅଳସ,ଜଡ଼,ତନ୍ଦ୍ରାଳୁ

**Sluice**, *n.* ଜଳନିର୍ଗମନ ଦ୍ୱାର, ନଳା ।

**Slumber**, *n.* ସ୍ୱଳ୍ପନିଦ୍ରା; *v.* ଶୟନ କରିବା । [ କରିବା ।

**Slur**, *n.* କଳଙ୍କ, ଦୂଷଣ; *v.* କଳଙ୍କିତ

**Slut**, *n.* ପୁଂଶ୍ଚଳୀ, ବେଶ୍ୟା, ଅପରିଷ୍କୃତା ରମଣୀ ।

**Sly**, *a.* ଧୂର୍ତ୍ତ, ଚତୁର, କପଟୀ । [ ଛଳନା ।

**Slyness**, *n.* ଚତୁରତା, ଧୂର୍ତ୍ତତା,

**Smack**, *v.* ଆସ୍ୱାଦ ଦେବା, ସୂଚନା ଦେବା

**Small**, *a.* ଅଳ୍ପ, ସାମାନ୍ୟ, ଲଘୁ, କ୍ଷୁଦ୍ର ।

**Smallness**, *n.* କ୍ଷୁଦ୍ରତା, ଅଳ୍ପତା, ଲଘୁତା । [ ରୋଗ ।

**Small-pox**, *n.* ମସୂରିକା, ବସନ୍ତ

**Smart**, *a.* ତୀକ୍ଷ୍ଣବୁଦ୍ଧି, ଚତୁର, ଦ୍ରୁତ; *v.* ବ୍ୟଥା ଦେବା । [ ସୁଷ୍ଠୁରୂପେ ।

**Smartly**, *ad.* ତୀକ୍ଷ୍ଣଭାବରେ, ଶୀଘ୍ର,

**Smartness**, *n.* ତୀବ୍ରତା, ତୀକ୍ଷ୍ଣତା, ଚତୁରତା, ତତ୍ପରତା ।

**Smash**, *v.* ଚୂର୍ଣ୍ଣୀଭୂତ କରିବା, ଭାଙ୍ଗିବା, ନିକ୍ଷେପଣ କରିବା ।

**Smatter,** *v.* ଅଳ୍ପ ଜାଣିବା ।

**Smattering,** *n.* ସ୍ୱଳ୍ପଜ୍ଞାନ, ପଲ୍ଲବଗ୍ରାହୀପାଣ୍ଡିତ୍ୟ ।

**Smear,** *v.* ଲେପନ କରିବା, ବୋଳିବା ।

**Smell,** *v.* ଆଘ୍ରାଣ କରିବା; *n.* ଘ୍ରାଣ, ଗନ୍ଧ, ବାସ ।

**Smelt,** *v.* ଧାତୁ ତରଳାଇବା ।

**Smelter,** *n.* କମାର, ଯେ ଧାତୁ ତରଳାଇ ସଫା କରେ ।

**Smile,** *v.* ମୃଦୁହାସ୍ୟ କରିବା; *n.* ଈଷଦ୍ଧାସ୍ୟ, ସ୍ମିତ, ମନ୍ଦହାସ ।

**Smiling,** *a.* ସସ୍ମିତ, ପ୍ରସନ୍ନ ।

**Smilingly,** *ad.* ହାସ୍ୟମୁଖରେ, ପ୍ରସନ୍ନ ବଦନରେ । [ କରିବା ।

**Smirk,** *n.* ବକ୍ରହାସ; *v.* ବକ୍ରହାସ୍ୟ

**Smite,** *v.* ଆଘାତ କରିବା, ପୀଡ଼ାଦେବା, ପ୍ରହାର କରିବା ।

**Smith,** *n.* ଶିଳ୍ପୀ, କାରିଗର, କମାର ।

**Smithy,** *n.* ଶିଳ୍ପଶାଳା, କମାରଶାଳ ।

**Smoke,** *n.* ଧୂମ, ଧୂଆଁ; *v.* ଧୂମପାନ କରିବା, ଧୂଆଁ ଦେବା । [ ଧୂମପାନ କରେ ।

**Smoker,** *n.* ଧୂମପାୟୀ ବ୍ୟକ୍ତି, ଯେ

**Smoking,** *n.* ଧୂମପାନ ।

**Smokeless,** *a.* ନିର୍ଧୂମ, ଧୂମହୀନ ।

**Smoky,** *a.* ଧୂମମୟ, ଧୂମବହୁଳ, ଧୂମପୂର୍ଣ୍ଣ । [ କରିବା ।

**Smooth,** *a.* ସ୍ନିଗ୍ଧ, ମସୃଣ; *v.* ମସୃଣ

**Smoothly,** *ad.* ନିର୍ବିଘ୍ନରେ, ଅନାୟାସରେ । [ ସ୍ନିଗ୍ଧତା, ନିର୍ବିଘ୍ନତା ।

**Smoothness,** *n.* ମସୃଣତା,

**Smother,** *v.* ଶ୍ୱାସରୋଧ କରିବା ।

**Smoulder,** *v.* ଅନ୍ତର୍ଦାହ କରିବା ।

**Smuggle,** *v.* ନିଷିଦ୍ଧ ଦ୍ରବ୍ୟର କାରବାର କରିବା । [ କାରବାର କରେ ।

**Smuggler,** *n.* ଯେ ବେଆଇନ

**Snag,** *n.* କ୍ଷୁଦ୍ର ଡାଳ, ଅପ୍ରତ୍ୟାଶିତ ବିଘ୍ନ ।

**Snail,** *n.* ଗେଣ୍ଡା ।

**Snake,** *n.* ସର୍ପ, ସାପ ।

**Snap,** *v.* ହଠାତ୍ ଛିଣ୍ଡାଇ ଦେବା; *n.* ସହସା ଭଙ୍ଗକରଣ; *a.* ଆକସ୍ମିକ ।

**Snapshot,** *n.* ସଙ୍ଗେ ସଙ୍ଗେ ଉତ୍ତୋଳିତ ଆଲୋକ ଚିତ୍ର, ତାତ୍କାଳିକ ଫଟୋ ଉତ୍ତୋଳନ । [ ପକାଇବା ।

**Snare,** *n.* ଫାଶ, ଜାଲ; *v.* ଫାଶରେ

**Snarl,** *v.* କୁକ୍କୁର ପରି ଗର୍ଜିବା, ଫାନ୍ଦରେ ପକାଇବା; *n.* ଖାପଚ, ଫାନ୍ଦ ।

**Snatch,** *v.* ଛଡ଼ାଇ ନେବା, ହଠାତ୍ ଟାଣିନେବା; *n.* ବଳାତ୍କାରରେ ଧାରଣ ।

**Sneak,** *v.* ଗୋପନରେ ଖସିଯିବା, ଲୁଚି ପଳାଇବା । [ କୁତ୍ସିତସ୍ୱଭାବ ।

**Sneaking,** *a.* ଅଧମ, ନୀଚ,

**Sneer,** *v.* ବ୍ୟଙ୍ଗବିଦ୍ରୂପ କରିବା, ଥଟ୍ଟା କରିବା; *n.* ବିଦ୍ରୂପ, ଅବଜ୍ଞା ।

**Sneeze,** *v.* ଛିଙ୍କିବା; *n.* ଛିଙ୍କ ।

Sniff, *v.* ନିଶ୍ୱାସରେ ଟାଣିନେବା, ଶୁଙ୍ଘିବା ।
Snip, *v.* ଅଗ କାଟିବା, ଲ୍ରଟ କରିବା ।
Snipe, *n.* ଜଳଚର ପକ୍ଷୀବିଶେଷ, ନିର୍ବୋଧ ବ୍ୟକ୍ତି ।
Snob, *n.* ଭଦ୍ରମ୍ମନ୍ୟ ଇତର ଲୋକ ।
Snore, *v.* ଘୁଙ୍ଗୁଡ଼ିମାରିବା; *n.* ଘୁଙ୍ଗୁଡ଼ି ।
Snort, *v.* ଫୁତ୍କାର ମାରିବା, ଫୁତ୍କାର କରିବା; *n.* ଫୁତ୍କାର, ନାକଫୁଙ୍କ ।
Snot, *n.* ଶିଙ୍ଘାଣି, ନାସାର ଶ୍ଳେଷ୍ମା ।
Snout, *n.* କେତେକ ପଶୁର ଦୀର୍ଘ ନାସା, ଶୁଣ୍ଡ, ନଳର ଅଗଭାଗ ।
Snow, *n.* ବରଫ, ତୁଷାର, ହିମ; *v.* ତୁଷାର ପଡ଼ିବା ।
Snow-blind, *a.* ହିମାନ୍ଧ ।
Snow-capped, *a.* ତୁଷାରକିରୀଟ ।
Snow-line, *n.* ହିମରେଖା ।
Snow-white, *a.* ତୁଷାରତୁଲ୍ୟ ଶୁଭ୍ର ।
Snowy, *a.* ତୁଷାରମୟ, ତୁଷାରବନ୍ତ ।
Snub, *n.* ଧମକ, ପରାଭବ, ମୃଦୁଭର୍ତ୍ସନା; *v.* ମୃଦୁଭର୍ତ୍ସନା କରିବା । [ ଚେପ୍ଟାନାକା ।
Snub-nosed, *a.* ନତନାସିକ,
Snuff, *n.* ନସ୍ୟ, ନାସ; *v.* ନାସ ଶୁଙ୍ଘିବା, ବତୀର ଦଗ୍ଧାଂଶ କାଟିବା ।
Snuff-box, *n.* ନାସଦାନି ।
Snuffle, *v.* ନାକରେ କଥା କହିବା, ଆନୁନାସିକ ସ୍ୱରରେ କହିବା ।
Snug, *a.* ନିକଟବର୍ତ୍ତୀ, ଲଗାଲଗି, ଆବୃତ, ସୁରକ୍ଷିତ ।
Snugly, *ad.* ଲଗାଲଗି ହୋଇ, ନିରାପଦରେ, ସ୍ୱଚ୍ଛନ୍ଦରେ ।
So, *ad.* ସେହିପରି, ଏଣୁ, ଏହିରୂପେ, ସୁତରାଂ, ଅତଏବ । [ ଶୋଷିନେବା ।
Soak, *v.* ସିକ୍ତ କରିବା, ଭିଜାଇବା,
Soakage, *n.* ଶୋଷଣ ।
Soap, *n.* ସାବୁନ; *v.* ସାବୁନ ଘଷିବା ।
Soapy, *a.* ସାବୁନ ପରି ମସୃଣ ଓ କୋମଳ, ସାବୁନତୁଲ୍ୟ ।
Soapnut, *n.* ରିଠାଫଳ ।
Soar, *v.* ଊର୍ଦ୍ଧ୍ୱକୁ ଉଠିବା, ଉଡ଼ିଯିବା; *n.* ଊର୍ଦ୍ଧ୍ୱଗମନ, ଉଡ୍ଡୟନ ।
Sob, *v.* ଦୀର୍ଘଶ୍ୱାସ ପକାଇବା, ଶୋକ-ଗଦ୍‌ଗଦ ହେବା; *n.* ଦୀର୍ଘଶ୍ୱାସ ସହ ଶୋକ ।
Sober, *a.* ଧୀର, ଶାନ୍ତ, ଗମ୍ଭୀର, ବସ୍ତୁରବନ୍ତ, ପ୍ରକୃତିସ୍ଥ, ଅମତ୍ତ; *v.* ସଂଯତ କରିବା । [ ଭାବରେ ।
Soberly, *ad.* ଧୀର ଢଙ୍ଗରେ, ଗମ୍ଭୀର
Soberness, Sobriety, *n.* ଗାମ୍ଭୀର୍ଯ୍ୟ, ଧୈର୍ଯ୍ୟ, ମିତାଚାର, ବସ୍ତୁର-ଶୀଳତା, ମଦ୍ୟପାନରାହିତ୍ୟ, ସଂଯମ ।
So-called, *a.* ତଥାକଥିତ ।
Sociability, *n.* ଶାଳୀନତା, ସୌଜନ୍ୟ, ସମାଜପ୍ରିୟତା ।
Sociable, *a.* ମଧୁରାଳାପୀ, ସମାଜପ୍ରିୟ ।
Social, *a.* ସାମାଜିକ, ସମାଜସମ୍ବନ୍ଧୀୟ ।
Socialism, *n.* ସମାଜବାଦ ।

**Socialist**, *n.* ସମାଜବାଦୀ, ସମାଜ-ବାଦର ସମର୍ଥକ ।
**Socialistic**, *a.* ସମାଜବାଦସମ୍ବନ୍ଧୀୟ ।
**Society**, *n.* ସମାଜ, ସଙ୍ଘ, ସମ୍ପ୍ରଦାୟ, ସାହଚର୍ଯ୍ୟ ।
**Sociologist**, *n.* ସମାଜତତ୍ତ୍ୱବିଦ୍ ।
**Sociology**, *n.* ସମାଜତତ୍ତ୍ୱ, ସମାଜଶାସ୍ତ୍ର
**Sock**, *n.* ଅଧାମୋଜା, ଶ୍ଲେଟ ମୋଜା ।
**Socket**, *n.* ଖୋଲ, ଖୋପ, ଆଧାର ।
**Sod**, *n.* ଘାସଚେକ; *v.* ଘାସଚେକ ବିଛେଇବା ।
**Soda**, *n.* କ୍ଷାର, ସୋଡ଼ା ।
**Soda-water**, *n.* ସୋଡ଼ାପାଣି ।
**Sodden**, *a.* ଜଳରେ ସିଦ୍ଧ, ଜଳସିକ୍ତ, ଦରସିଝା । [ ବିଶେଷ ।
**Sodium**, *n.* ହରିଦ୍ରାଭ ଶ୍ୱେତଧାତୁ-
**Sodomite**, *n.* ପୁଂମୈଥୁନକାରୀ ।
**Sodomy**, *n.* ପୁଂମୈଥୁନ । [ ପର୍ଯ୍ୟଙ୍କ ।
**Sofa**, *n.* ସୁସଜ୍ଜିତ ଆସନ, ଗଦିବିଶିଷ୍ଟ
**Soft**, *a.* କୋମଳ, ନରମ, ମୃଦୁ ।
**Soften**, *v.* ନରମ କରିବା, ଶାନ୍ତ ହେବା ବା କରିବା ।
**Soft-hearted**, *a.* କୋମଳହୃଦୟ ।
**Softly**, *ad.* କୋମଳଭାବରେ ।
**Softness**, *n.* କୋମଳତା, ମୃଦୁତା, ନମ୍ରତା । [ କରିବା ।
**Soil**, *n.* ମୃତ୍ତିକା, ମାଟି, ଭୂମି; *v.* ମଇଳା
**Soiree**, *n.* ସାନ୍ଧ୍ୟ ମଜଲିସ ।
**Sojourn**, *n.* ସାମୟିକ ଅବସ୍ଥାନ, ରହଣି; *v.* କିଛି କାଳ ନିମନ୍ତେ ପ୍ରବାସରେ ରହିବା ।
**Sojourner**, *n.* ପ୍ରବାସୀ, ବିଦେଶୀ ।
**Solace**, *n.* ଶାନ୍ତି, ସାନ୍ତ୍ୱନା, ଆଶ୍ୱାସ; *v.* ଆଶ୍ୱାସନା ଦେବା, ପ୍ରବୋଧ କରିବା ।
**Solar**, *a.* ସୌର, ସୂର୍ଯ୍ୟସମ୍ବନ୍ଧୀୟ ।
**Solar eclipse**, *n.* ସୂର୍ଯ୍ୟୋପରାଗ ।
**Solar system**, *n.* ସୌରମଣ୍ଡଳ ।
**Solder**, *v.* ଧାତୁର ପାଟଆଦ୍ୱାରା ଝାଳିବା; *n.* ଝଳା ।
**Soldier**, *n.* ସୈନ୍ୟ, ସୈନିକ, ଯୋଦ୍ଧା ।
**Soldierly**, *a.* ସୈନିକୋଚିତ, ସାହସୋଚିତ । [ ସୈନ୍ୟଦଳ ।
**Soldiery**, *n.* ସୈନ୍ୟସମୂହ,
**Sole**, *a.* ଏକାକୀ, ଏକମାତ୍ର, ପାଦତଳ, ପାଦୁକାତଳ । [ ପୂର୍ଣ୍ଣରୂପେ ।
**Solely**, *ad.* କେବଳ, ମାତ୍ର,
**Solemn**, *a.* ପୁଣ୍ୟ, ପବିତ୍ର, ଗମ୍ଭୀର, ଧର୍ମସମ୍ମତ, ବିଧିବଦ୍ଧ ।
**Solemnity**, **Solemnness**, *n.* ବିଧି, ଗୌରବ, ଧର୍ମକ୍ରିୟା, ଆଡ଼ମ୍ବର ।
**Solemnization**, *n.* ଯଥାବିଧି ସମ୍ପାଦନ । [ କରିବା ।
**Solemnize**, *v.* ବିଧିପୂର୍ବକ ଅନୁଷ୍ଠାନ
**Solemnly**, *ad.* ଯଥାବିଧି, ଆନୁଷ୍ଠାନିକ ଭାବରେ, ଆଡ଼ମ୍ବରସହକାରେ । [ କରିବା ।
**Solicit**, *v.* ପ୍ରାର୍ଥନା କରିବା, ଅନୁନୟ

**Solicitation**, *n.* ଯାଚଞ୍ଚା, ପ୍ରାର୍ଥନା, ବିନୀତ ଅନୁରୋଧ ।

**Solicitor**, *n.* ଯାଚକ, ପ୍ରାର୍ଥୀ, ଓକିଲ ।

**Solicitous**, *a.* ଉତ୍ସୁକ, ବ୍ୟଗ୍ର, ଉଦ୍‌ବିଗ୍ନ । [ ଉତ୍କଣ୍ଠା, ଉଦ୍‌ବେଗ ।

**Solicitude**, *n.* ବ୍ୟଗ୍ରତା, ଔତ୍ସୁକ୍ୟ,

**Solid**, *a.* ସାରବାନ୍, ସ୍ଥୂଳ, କଠିନ, ସୁଦୃଢ଼, ଘନ; *n.* ଘନ ପଦାର୍ଥ । [ ସହୃତ ।

**Solidarity**, *n.* ଦୃଢ଼ତା, ଏକତା,

**Solidify**, *v.* ଦୃଢ଼ ହେବା ବା କରିବା, ଘନୀଭୂତ ହେବା ବା କରିବା ।

**Solidity**, **Solidness**, *n.* ଘନତା, କାଠିନ୍ୟ, ଦୃଢ଼ତା ।

**Soliloquize**, *v.* ସ୍ୱଗତଉକ୍ତି କରିବା ।

**Soliloquy**, *n.* ସ୍ୱଗତୋକ୍ତି, ସ୍ୱଗତଭାଷଣ

**Solitary**, *a.* ନିର୍ଜନ, ବିଜନ, ଏକାନ୍ତ, ନିଭୃତ, ଏକାକୀ ।

**Solitude**, *n.* ବିଜନତା, ନିର୍ଜନ ସ୍ଥାନ ।

**Solo**, *n.* ଜଣକଦ୍ୱାରା ଗାନ କରାଯାଉଥିବା ସଙ୍ଗୀତ ବା ଗୋଟିଏ ବାଦ୍ୟଯନ୍ତ୍ରରେ ବଜାଯାଉଥିବା ସ୍ୱର ।

**Solstice**, *n.* ଅୟନାନ୍ତ ବିନ୍ଦୁ, ଅୟନାନ୍ତ ଦିବସ, କ୍ରାନ୍ତି ।

**Solubility**, *n.* ଦ୍ରବଣୀୟତା ।

**Soluble**, *a.* ଦ୍ରବଣୀୟ, ଯାହା ଦ୍ରବ କରାଯାଇପାରେ ।

**Solution**, *n.* ସମାଧାନ, ବ୍ୟାଖ୍ୟା, ଦ୍ରାବଣ, ଦ୍ରବରେ ପରିଣତ ପଦାର୍ଥ ।

**Solve**, *v.* ସମାଧାନ କରିବା, ବଣ୍ଟ କରିବା । [ କରିବାର ସାମର୍ଥ୍ୟ

**Solvency**, *n.* ଋଣ ପରିଶୋଧ

**Solvent**, *a.* ଋଣ ପରିଶୋଧ କରିବାକୁ ସମର୍ଥ, ଦ୍ରାବକ ।

**Sombre**, *a.* ଗମ୍ଭୀର, ବିଷାଦଗ୍ରସ୍ତ ।

**Sombreness**, *n.* ଗାମ୍ଭୀର୍ଯ୍ୟ, ବିଷଣ୍ଣତା, ଅପ୍ରସନ୍ନତା ।

**Some**, *a.* କେତେକ, କେହି, କୌଣସି ।

**Somebody**, *n.* କେହି ଜଣେ, କୌଣସି ଲୋକ । [ପ୍ରକାରେ, କେତେକ ପରିମାଣରେ ।

**Somehow**, *ad.* କୌଣସି ନା କୌଣସି

**Someone**, *n.* କେହି ଜଣେ, କଏ ଜଣେ ଲୋକ । [ଉପରକୁ ମୁଣ୍ଡ ତଳକୁ କରି ଡିଆଁ ।

**Somersault**, *n.* ମାଙ୍କଡ଼ଚଢ଼, ଗୋଡ଼

**Something**, *n.* ଗୋଟାଏ କିଛି, କିଞ୍ଚିତ୍ ପରିମାଣ, ସାମାନ୍ୟକିଛି । [*ad.* ପୂର୍ବେ, ଏକଦା

**Sometime**, *a.* ପୂର୍ବତନ, ଭୂତପୂର୍ବ;

**Sometimes**, *ad.* ସମୟେ ସମୟେ, କେବେ କେବେ ।

**Somewhat**, *ad.* କିଞ୍ଚିତ୍ ପରିମାଣରେ ।

**Somewhere**, *ad.* କୌଣସି ଅନିର୍ଦ୍ଦିଷ୍ଟ ସ୍ଥାନରେ । [ ଭ୍ରମଣ ରୋଗ ।

**Somnabulism**, *n.* ନିଦ୍ରାବସ୍ଥାରେ

**Somnabulist**, *n.* ନିଦ୍ରାଚର, ଯେ ନିଦ୍ରିତାବସ୍ଥାରେ ଭ୍ରମଣ କରେ ।

**Somniferous**, *a.* ନିଦ୍ରାଜନକ ।

Somniloquist, *n.* ନିଦ୍ରାଲାପୀ, ଯେ ନିଦ୍ରାବସ୍ଥାରେ କଥା କହେ ।
Son, *n.* ସୁତ, ପୁତ୍ର, ତନୟ ।
Song, *n.* ଗୀତ, ସଙ୍ଗୀତ, କବିତା, ଗାନ ।
Song-bird, *n.* ଗାୟକ ପକ୍ଷୀ, ଯେଉଁ ପକ୍ଷୀ ଗାଇପାରେ ।
Songster, *n.* ଗାୟକ, ଗାଇବାରେ ନିପୁଣ ବ୍ୟକ୍ତି, ଗାୟକ ପକ୍ଷୀ (*Fem.* Songstress) ।
Son-in-law, *n.* ଜାମାତା, ଜ୍ୱାଇଁ ।
Sonless, *a.* ପୁତ୍ରହୀନ । [ ଗୀତିକା ।
Sonnet, *n.* ଚତୁର୍ଦ୍ଦଶପଦୀ କବିତା,
Sonneteer, *n.* ଚତୁର୍ଦ୍ଦଶପଦୀ କବିତାର ରଚୟିତା ।
Sonorous, *a.* ଶବ୍ଦକର, ଧ୍ୱନିଜନକ ।
Sonorously, *ad.* ଉଚ୍ଚଧ୍ୱନିରେ, ମହାଶବ୍ଦରେ ।
Soon, *ad.* ଅଚିରାତ୍, ଅବିଲମ୍ବେ, ଶୀଘ୍ର ।
Sooner or later, *ad.* ଆଗେ ହେଉ ବା ପଛେ ହେଉ, କେବେ ହେଲେ, ଭବିଷ୍ୟତରେ । [ କରିବା ।
Soot, *n.* ଅଳଙ୍କୃ; *v.* ଅଳଙ୍କୃଦ୍ୱାରା ଆବୃତ
Sooth, *n.* ସତ୍ୟ, ବାସ୍ତବତା, ଯଥାର୍ଥତା ।
Soothe, *v.* ଶାନ୍ତ କରିବା, ସାନ୍ତ୍ୱନା ଦେବା, ତୁଷ୍ଟ କରିବା । [ ଜନକ ।
Soothing, *a.* ଶାନ୍ତିପ୍ରଦ, ଆଶ୍ୱାସ-
Soothsayer, *n.* ଭବିଷ୍ୟଦ୍‌ବକ୍ତା, ଦୈବଜ୍ଞ ।
Sooty, *a.* ଅଳଙ୍କୃପୂର୍ଣ୍ଣ, ଘନକୃଷ୍ଣବର୍ଣ୍ଣ ।
Sop, *n.* ଦୁଧ ବା ଝୋଳରେ ଭିଜାଥିବା ରୁଟି; *v.* ଜଳୀୟ ଦ୍ରବ୍ୟରେ ସିକ୍ତ କରିବା ।
Sophism, *n.* ବାକ୍‌ଛଳ, କୁତର୍କ ।
Sophist, *n.* କୁତାର୍କିକ ।
Sophistic, Sophistical, *a.* କୁତର୍କକାରୀ । [ ଦୂଷିତ କରିବା ।
Sophisticate, *v.* ଅପମିଶ୍ରଣ କରିବା,
Sophistication, *n.* ଅପମିଶ୍ରଣ, ଦୂଷିତକରଣ । [ ନିଦ୍ରାଜନକ, ନିଦ୍ରାକାରକ
Soporiferous, Soporific, *a.*
Sorcerer, *n.* ଐନ୍ଦ୍ରଜାଲିକ, ଯାଦୁକର, ଅଭିଚାରୀ । [ ଡାକିନୀ ।
Sorceress, *n.* କୁହୁକିନୀ, ଯୋଗିନୀ,
Sorcery, *n.* ଇନ୍ଦ୍ରଜାଲ, ଯାଦୁବିଦ୍ୟା, ଅଭିଚାର । [ ଜଘନ୍ୟ, ନିନ୍ଦ୍ୟ ।
Sordid, *a.* ନୀଚ, କୁତ୍ସିତ, ଅଧମ,
Sore, *n.* କ୍ଷତ, ବ୍ରଣ, ଘାଆ; *a.* ଦାରୁଣ, ତୀବ୍ର, କ୍ଳେଶପ୍ରଦ ।
Sorely, *ad.* ଅତ୍ୟନ୍ତ, ଦାରୁଣଭାବରେ ।
Sorrow, *n.* ଶୋକ, ଦୁଃଖ, ବିଷାଦ, ଖେଦ । [ ଖିନ୍ନ, ଶୋକାର୍ତ୍ତ ।
Sorrowful, *a.* ଦୁଃଖିତ, ବିଷଣ୍ଣ,
Sorrowfully, *ad.* ବିଷଣ୍ଣଭାବରେ, ଦୁଃଖିତଭାବରେ । [ ଦୟନୀୟ ।
Sorry, *a.* ଦୁଃଖିତ, ଖିନ୍ନ, ବିଷଣ୍ଣ,
Sort, *n.* ପ୍ରକାର, ଭେଦ, ଶ୍ରେଣୀ; *v.* ଶ୍ରେଣୀ ଅନୁସାରେ ବାଛିବା ।

Sortie, *n.* ଅବରୁଦ୍ଧ ସୈନ୍ୟଦଳର ସହସା ବହିର୍ଗମନ । [ ପାନୋନ୍ମତ୍ତ, ମାତାଲ ।
Sot, Sottish, *a.* ପାନାସକ୍ତ,
Soul, *n.* ଆତ୍ମା, ପ୍ରାଣ ।
Soulful, *a.* ଭାବପୂର୍ଣ୍ଣ, ଭାବଗର୍ଭିତ ।
Soulless, *a.* ନିଷ୍ପ୍ରାଣ, ନିସ୍ତେଜ ।
Sound, *n.* ଶବ୍ଦ, ନିନାଦ, ଧ୍ୱନି, ସ୍ୱର; *a.* ସୁସ୍ଥ, ନିରୋଗ, ଅଖଣ୍ଡ, ଗାଢ଼; *v.* ଶବ୍ଦ କରିବା, ଶୁଣାଇବା, ସମୁଦ୍ରର ଗଭୀରତା ମାପିବା । [ ଅତଳଗର୍ଭ ।
Soundless, *a.* ଶବ୍ଦହୀନ, ନୀରବ,
Soundly, *ad.* ତୀବ୍ରଭାବରେ, ଦୃଢ଼ରୂପେ, ଗାଢ଼ଭାବରେ, ଅତ୍ୟନ୍ତ ।
Soundness, *n.* ଆରୋଗ୍ୟ, ସୁସ୍ଥତା, ଅକ୍ଷତ ଅବସ୍ଥା, ଦୃଢ଼ତା, ଯାଥାର୍ଥ୍ୟ ।
Soup, *n.* ଜୂଷ, ସୁରୁଆ, ଝୋଳ ।
Sour, *a.* ଖଟା, ଅମ୍ଳ, ଆମ୍ବିଳା; *v.* ଅମ୍ଳ ହେବା ବା କରିବା । [ ଉତ୍ପତ୍ତିସ୍ଥଳ ।
Source, *n.* ମୂଳ, କାରଣ, ହେତୁ,
Sourish, *a.* ଈଷଦ୍ ଅମ୍ଳ, ଖଟାଳିଆ ।
South, *n.* ଦକ୍ଷିଣଦିଗ ।
South-east, *n.* ଦକ୍ଷିଣପୂର୍ବ, ଅଗ୍ନି-କୋଣ । [ *a.* ଦାକ୍ଷିଣାତ୍ୟ, ଦକ୍ଷିଣାଗତ ।
Southerly, Southern,
Southernmost, *a.* ଦକ୍ଷିଣପ୍ରାନ୍ତସ୍ଥିତ
South-pole, *n.* ଦକ୍ଷିଣମେରୁ, କୁମେରୁ । [ ଦକ୍ଷିଣସ୍ଥ ।
Southward, *a.* ଦକ୍ଷିଣାଭିମୁଖୀ,
Southwards, *ad.* ଦକ୍ଷିଣାଭିମୁଖରେ, ଦକ୍ଷିଣଦିଗରେ । [ ନୈର୍‌ଋତ କୋଣ ।
South-west, *n.* ଦକ୍ଷିଣପଶ୍ଚିମ,
Souvenir, *n.* ଅଭିଜ୍ଞାନ, ସ୍ମାରକଚିହ୍ନ ।
Sovereign, *n.* ସ୍ୱର୍ଣ୍ଣମୁଦ୍ରାବିଶେଷ, ଅଧୀଶ୍ୱର, ସମ୍ରାଟ୍, ମହାରାଜ; *a.* ପ୍ରଧାନ, ଶ୍ରେଷ୍ଠ, ସାର୍ବଭୌମ । [ ଆଧିପତ୍ୟ, ପ୍ରଭୁତ୍ୱ ।
Sovereignty, *n.* ସାର୍ବଭୌମତ୍ୱ,
Sow, *n.* ଶୂକରୀ, ମାଈ ବାରାହୀ; *v.* ବପନ କରିବା, ବୁଣିବା ।
Sower, *n.* ବପନକାରୀ, ଯେ ବୁଣେ ।
Space, *n.* ଆକାଶ, ଶୂନ୍ୟ, ଅନ୍ତରୀକ୍ଷ, ସ୍ଥାନ । [ ବିପୁଳ ।
Spacious, *a.* ବିସ୍ତୀର୍ଣ୍ଣ, ପ୍ରଶସ୍ତ, ବିଶାଳ,
Spade, *n.* କୋଦାଳ, କୋଡ଼ି, କାଙ୍କ ।
Spadework, *n.* ପ୍ରାଥମିକ କାର୍ଯ୍ୟ ।
Span, *n.* ବିତସ୍ତି, ଗୃଖଣ୍ଡ, ବିସ୍ତୃତ; *v.* ଗୃଖଣ୍ଡରେ ମାପିବା ।
Spangle, *n.* ତାରାସଦୃଶ ଗୋଲାକାର ଧାତୁ ଚକତି; *v.* ଉକ୍ତ ଚକତିଦ୍ୱାରା ଖଚିତ କରିବା । [ ଅଧିବାସୀ ।
Spaniard, *n.* ସ୍ପେନଦେଶର
Spaniel, *n.* ଏକଜାତୀୟ କୁକ୍କୁର ।
Spanish, *n.* ସ୍ପେନଦେଶର ଭାଷା; *a.* ସ୍ପେନଦେଶୀୟ । [ବେଗରେ ଚାଲିଯିବା ।
Spank, *v.* ଚପେଟାଘାତ କରିବା,
Spar, *n.* ଦୀର୍ଘ ଯଷ୍ଟି, ଦଣ୍ଡ, କାଷ୍ଠଖଣ୍ଡ; *v.* ପରସ୍ପରରେ ହସ୍ତାହସ୍ତି ହେବା ।

**Spare**, *a.* ବଳକା, ସ୍ୱଳ୍ପ; *v.* ମିତବ୍ୟୟ କରିବା, ଛାଡ଼ିଦେବା, ରକ୍ଷା କରିବା; *n.* ଯାହା ସଞ୍ଚିତ ଅଛି, ଯନ୍ତ୍ରର ପରିବର୍ତ୍ତନୀୟ ଅଂଶ । [ ପରିମିତ ।

**Sparing**, *a.* ମିତବ୍ୟୟୀ, ଅଳ୍ପ,

**Sparingly**, *ad.* ଅଳ୍ପ ପରିମାଣରେ, ଅଳ୍ପ ଅଳ୍ପ ।

**Spark**, *n.* ସ୍ଫୁଲିଙ୍ଗ, ଅଗ୍ନିକଣା ।

**Sparkle**, *v.* ସ୍ଫୁରିବା, ଉଜ୍ଜ୍ୱଳ ହେବା, ଅଗ୍ନିକଣା ବିକୀର୍ଣ୍ଣ କରିବା ।

**Sparkling**, *a.* ଦୀପ୍ତିମନ୍ତ, ଅତ୍ୟୁଜ୍ଜ୍ୱଳ ।

**Sparrow**, *n.* ଚଟକ, ଘରଚଟିଆ ପକ୍ଷୀ ।

**Sparse**, *n.* ଅନିବିଡ଼, ବିରଳ ।

**Sparsely**, *ad.* ବିରଳଭାବରେ ।

**Spasm**, *n.* ସଙ୍କୋଚନ, ଆକ୍ଷେପ ।

**Spasmodic**, *a.* ଆକ୍ଷେପିକ, ଅଙ୍ଗସଙ୍କୋଚକ । [ ଫିଙ୍ଗିବା ।

**Spatter**, *v.* ଲିପ୍ତ କରିବା, ମଇଳା ପାଣି

**Spatula**, *n.* ବିଲେପନୀ, ଧାରହୀନ ପ୍ରଶସ୍ତ ଛୁରିକା ।

**Spawl**, *n.* ନିଷ୍ଠୀବନ, ଛେପ ।

**Spawn**, *n.* ମତ୍ସ୍ୟ-ଭେକାଦିର ଡିମ୍ବ; *v.* ଅଣ୍ଡା ଛାଡ଼ିବା ।

**Speak**, *v.* କହିବା, ବକ୍ତୃତା ଦେବା ।

**Speaker**, *n.* ବକ୍ତା, ଯେ କହେ, ବାଚସ୍ପତି ।

**Speaking**, *n.* ଭାଷଣ, କଥନ ।

**Spear**, *n.* ଶୂଳ, କୁନ୍ତ, ଶଲ୍ୟ, ବର୍ଚ୍ଛା; *v.* ଶୂଳରେ ବିଦ୍ଧ କରିବା ।

**Special**, *a.* ବିଶେଷ, ଅସାଧାରଣ ।

**Specialisation, Specialization**, *n.* ବିଶେଷ ଜ୍ଞାନାର୍ଜନ ।

**Specialise, Specialize**, *v.* ବିଶେଷ ଜ୍ଞାନ ଅର୍ଜନ କରିବା ।

**Specialist**, *n.* ବିଶେଷଜ୍ଞ ।

**Speciality**, *n.* ବୈଶିଷ୍ଟ୍ୟ । [ଭାବରେ ।

**Specially**, *ad.* ବିଶେଷତଃ, ବିଶେଷ-

**Species**, *n.* ଜାତି, ପ୍ରକାର, ଶ୍ରେଣୀ ।

**Specific**, *a.* ବିଶିଷ୍ଟ, ଅସାଧାରଣ, ନିର୍ଦ୍ଦିଷ୍ଟ; *n.* ବିଶେଷ ଗୁଣବିଶିଷ୍ଟ ଔଷଧ ।

**Specifical**, *a.* ଅସାଧାରଣ, ନିଶ୍ଚିତ ।

**Specifically**, *ad.* ବିଶେଷଭାବରେ, ନିର୍ଦ୍ଦିଷ୍ଟଭାବରେ । [ବିବରଣ, ବିଶେଷ ନିର୍ଦ୍ଦେଶ

**Specification**, *n.* ସବିଶେଷ

**Specific gravity**, *n.* ଆପେକ୍ଷିକ ଗୁରୁତ୍ୱ । [ ଉଲ୍ଲିଖିତ ।

**Specified**, *a.* ନିର୍ଦ୍ଦିଷ୍ଟ, ବିଶେଷଭାବେ

**Specify**, *v.* ବିଶେଷରୂପେ ନିର୍ଦ୍ଦେଶ କରିବା, ସ୍ପଷ୍ଟ ଉଲ୍ଲେଖ କରିବା ।

**Specimen**, *n.* ଆଦର୍ଶ, ନମୁନା ।

**Specious**, *a.* ଆପାତ ସତ୍ୟ, ବାହ୍ୟତଃ ସୁନ୍ଦର, ବାସ୍ତବରୂପେ ପ୍ରତୀୟମାନ ।

**Speck**, *n.* ଚିହ୍ନ, ବିନ୍ଦୁ, କଳଙ୍କ, ଲବ ।

**Speckle**, *v.* ଚିହ୍ନିତ କରିବା, ଛୋଟ ଛୋଟ ଦାଗ ଲଗାଇବା; *n.* ଛୋଟ ଦାଗ ।

**Speckled**, *a*. ଚକବଚକ, ବନ୍ଦୁ ବନ୍ଦୁ ଚହ୍ନଯୁକ୍ତ ।

**Spectacle**, *n*. ଦୃଶ୍ୟ, ଦୃଷ୍ଟିବିଷୟ ।

**Spectacles**, *n*. ଚଶମା, ପ୍ରଚକ୍ଷୁ ।

**Spectacular**, *a*. ଦର୍ଶନୀୟ, ଦୃଶ୍ୟବିଷୟକ, ଆଡ଼ମ୍ବରପୂର୍ଣ୍ଣ ।

**Spectator**, *n*. ଦ୍ରଷ୍ଟା, ଦର୍ଶକ ।

**Spectral**, *a*. ଭୌତିକ, ପୈଶାଚିକ, ପ୍ରେତସଦୃଶ ।

**Spectre**, *n*. ପିଶାଚ, ଭୂତ, ପ୍ରେତ ।

**Speculate**, *v*. କଳ୍ପନା କରିବା, ଅନୁମାନ କରିବା, ଅଧିକ ଲାଭ ଆଶାରେ ଜିନିଷ କିଣି ରଖିବା ।

**Speculation**,*n*.ଅଧିକ ଲାଭ ଆଶାରେ ଦ୍ରବ୍ୟର ଆଦାନପ୍ରଦାନ,ଅନୁମାନ,କଳ୍ପନା ।

**Speculative**, *a*. କାଳ୍ପନିକ, ଚିନ୍ତାଶୀଳ ।

**Speculator**, *n*. ବିବେଚକ, କଳ୍ପନାକାରୀ, ଅତିରିକ୍ତ ଲାଭ ଆଶାରେ ବ୍ୟବସାୟକାରୀ । [ପ୍ରତିଫଳକ ଧାତୁପତ୍ର ।

**Speculum**, *n*. ଅଇନା, ଦର୍ପଣ,

**Speech**,*n*.ବାଣୀ,ଭାଷଣ,କଥନ,ଉକ୍ତି ।

**Speechless**, *a*. ନିର୍ବାକ୍ ।

**Speed**, *n*. ବେଗ, ତ୍ୱରା; *v*. ବେଗରେ ଯିବା, ତ୍ୱରାନ୍ୱିତ କରିବା । [ ବେଗରେ ।

**Speedily**, *ad*. ଶୀଘ୍ର, ଦ୍ରୁତଭାବରେ,

**Speedy**,*a*. ଶୀଘ୍ରଗାମୀ, ତ୍ୱରିତ, ଦ୍ରୁତ ।

**Spell**, *n*. ମନ୍ତ୍ର, ଅଭିଗ୍ରହ; *v*. ବନାନ କରିବା । [ ମନ୍ତ୍ରମୁଗ୍ଧ ।

**Spell-bound**, *a*. ମନ୍ତ୍ରରୁଦ୍ଧଶକ୍ତି,

**Spelling**, *n*. ବର୍ଣ୍ଣବିନ୍ୟାସ, ବନାନ ।

**Spend**, *v*. ବ୍ୟୟ କରିବା, ଖରଚ କରିବା । [ ବ୍ୟୟଶୀଳ ବ୍ୟକ୍ତି ।

**Spendthrift**,*n*. ଅପବ୍ୟୟୀ, ଅତିରିକ୍ତ

**Spent**, *a*. ବ୍ୟୟିତ, କ୍ଳାନ୍ତ, ଅବସନ୍ନ ।

**Sperm**, *n*. ଶୁକ୍ର, ବୀର୍ଯ୍ୟ, ବୀଜ ।

**Spermatorrhœa**, *a*. ଶୁକ୍ରତାରଲ୍ୟ

**Spew**, *v*. ବମନ କରିବା ।

**Sphere**, *n*. ମଣ୍ଡଳ, ଗୋଲକାର ବସ୍ତୁ, କର୍ମକ୍ଷେତ୍ର । [ମଣ୍ଡଳାକୃତି, ବର୍ତ୍ତୁଳ ।

**Spherical**, *a*. ଗୋଲକାରବିଶିଷ୍ଟ,

**Spheroid**, *n*. ଅଣ୍ଡାକାର ବସ୍ତୁ, ଈଷତ୍ ଗୋଲକାର ବସ୍ତୁ । [ ଦାନବମୂର୍ତ୍ତି ।

**Sphinx**, *n*. ମିଶର ଦେଶର ଏକ

**Spice**, *n*. ମଶଲା, ସୁଗନ୍ଧକାରକ ଦ୍ରବ୍ୟ ।

**Spicy**, *a*. ମଶଲାଯୁକ୍ତ, ସୁଗନ୍ଧ ।

**Spider**, *n*. ବୁଢ଼ିଆଣି, ମାକଡ଼ସା ।

**Spigot**, *n*. କିଲା, କାଠର ଠିପି ।

**Spike**,*n*.ଶସ୍ୟର ଶିଂଷା,କିଲା । [ପଡ଼ିବା ।

**Spill**, *v*. ଢାଳିବା, ଉଡ଼ିବା, ଚହଲି

**Spillway**, *n*. ଜଳନିର୍ଗମନ ପଥ ।

**Spin**, *v*. ସୂତା କାଟିବା, ଘୂରିବା ।

**Spinage**, *n*. ପୋଇ ଶାଗ ।

**Spinal**, *a*. ମେରୁଦଣ୍ଡ ସମ୍ବନ୍ଧୀୟ ।

Spinal column, *n.* ମେରୁଦଣ୍ଡ ।
Spindle, *n.* ଡାକୁଡ଼ି, କଣ୍ଡା ।
Spine, *n.* ମେରୁଦଣ୍ଡ ।
Spinner, *n.* କାଟୁଣୀ, ଯେ ସୂତା କାଟେ ।
Spinning wheel, *n.* ଚରଖା, ଅରଟ, ସୂତାକାଟିବାର ଯନ୍ତ୍ର ।
Spinster, *n.* ଅବିବାହିତା ସ୍ତ୍ରୀ, କୁମାରୀ ।
Spiral, *a.* ଘୂରିଘୂରି ଉପରକୁ ଉଠିଥିବା, ଆବର୍ତ୍ତିତ, ଚକ୍ରାକାର ।
Spire, *n.* ଶିଖର, ଚୂଡ଼ା, ଶୃଙ୍ଗ ।
Spirit, *n.* ଆତ୍ମା, ପ୍ରାଣ, ପ୍ରେତ, ଉତ୍ସାହ, ଓଜଃ, ମଦ୍ୟ । [ ସତେଜ, ଉଗ୍ର ।
Spirited, *a.* ପ୍ରାଣବନ୍ତ, ଓଜସ୍ୱୀ,
Spiritless, *a.* ନିରୁତ୍ସାହ, ନିସ୍ତେଜ, ନିର୍ଜୀବ । [ ଅପାର୍ଥିବ, ଅଶରୀରୀ ।
Spiritual, *a.* ଆଧ୍ୟାତ୍ମିକ, ପାରମାର୍ଥିକ,
Spiritualism, *n.* ଅଧ୍ୟାତ୍ମିକତା, ବ୍ରହ୍ମବାଦ । [ ଅଧ୍ୟାତ୍ମବାଦୀ ।
Spiritualist, *n.* ବ୍ରହ୍ମବାଦୀ,
Spirituality, *n.* ପରମାର୍ଥନିଷ୍ଠା ।
Spiritually, *ad.* ପରମାର୍ଥ ଦୃଷ୍ଟିରେ ।
Spirt, *v.* ଢାଳିବା, ଉଡ଼ିବା । [ କାଢ଼ିବା ।
Spit, *v.* ଛେପ ପକାଇବା, ଖଙ୍କାର
Spite, *n.* ଈର୍ଷା, ଦ୍ୱେଷ, ଅସୂୟା; *v.* ଈର୍ଷା କରିବା ।
Spiteful, *a.* ଦ୍ୱେଷୀ, ଈର୍ଷ୍ୟକ, ହିଂସୁକ ।
Spittle, *n.* ଛେପ, ଖଙ୍କାର, ଲାଳ ।

Splash, *v.* (ଜଳ ଆଦି) ଇତସ୍ତତଃ ବିକ୍ଷେପ କରିବା; *n.* (ଜଳ ଆଦିର) ଇତସ୍ତତଃ ବିକ୍ଷେପଣ ।
Spleen, *n.* ପ୍ଲୀହା, ଗୁଲ୍ମ, କ୍ରୋଧ ।
Splendid, *a.* ଉଜ୍ଜ୍ୱଳ, ଶ୍ରେଷ୍ଠ, ଦୀପ୍ତିମନ୍ତ, ଅତି ସୁନ୍ଦର, ପ୍ରକାଣ୍ଡ, ବିଖ୍ୟାତ ।
Splendour, *n.* ତେଜ, ଶୋଭା, ଶ୍ରୀ, ଦୀପ୍ତି, କାନ୍ତି, ଉଜ୍ଜ୍ୱଳତା, ଜାକଜମକ ।
Splenetic, *a.* ପ୍ଲୀହାରୋଗଗ୍ରସ୍ତ, କ୍ରୋଧୀ ।
Splice, *v.* ଦଉଡ଼ିର ଦୁଇମୁଣ୍ଡକୁ ବଳି ଯୋଡ଼ିବା; *n.* ବଳିବାଦ୍ୱାରା ଦଉଡ଼ିର ଦୁଇମୁଣ୍ଡର ଯୋଡ଼ । [ ଭଗ୍ନ କରିବା, ଫାଡ଼ିବା ।
Splint, *n.* କାଷ୍ଠଖଣ୍ଡ, ଚୂକୁରା; *v.* ବନ୍ଧା-
Splinter, *n.* କାଷ୍ଠଖଣ୍ଡ, ଚୂକୁରା ।
Split, *v.* ଫାଡ଼ିବା, ଦ୍ୱିଧା କରିବା, ଚିରିବା । [ ନାଶ କରିବା; *n.* ଲୁଣ୍ଠିତ ଦ୍ରବ୍ୟ ।
Spoil, *v.* ଖରାପ କରିବା, କଳୁଷିତ କରିବା,
Spoiled, Spoilt, *a.* ଦୂଷିତ, କଳୁଷିତ, ଅପକ୍ୱଳିତ ।
Spoke, *n.* ଅର, ଚକର ଦଣ୍ଡ ।
Spoken, *a.* କଥିତ, ମୌଖିକ, କୁହାଯାଇଥିବା ।
Spokesman, *n.* ମୁଖପାତ୍ର, ପ୍ରତିନିଧି ।
Spoliate, *v.* ଲୁଣ୍ଠନ କରିବା, ଅପହରଣ କରିବା, ବିନାଶ କରିବା ।
Spoliation, *n.* ଲୁଣ୍ଠନ, ଅପହରଣ ।
Sponge, *n.* ଜଳଶୋଷଣକାରୀ ସଛିଦ୍ର ପଦାର୍ଥବିଶେଷ, ସ୍ପଞ୍ଜ ।

**Spongy**, *a.* ସ୍ପଞ୍ଜତୁଲ୍ୟ, ଜଳଶୋଷଣକାରୀ । [ବା ଧର୍ମମାତା), ପ୍ରତିଭୂ, ଜାମିନ୍ ।
**Sponsor**, *n.* ଧର୍ମପ୍ରତିନିଧି (ଧର୍ମପିତା
**Spontaneity**, *n.* ସ୍ୱେଚ୍ଛା, ଆପଣା ରୁଚି । [ସ୍ୱତଃପ୍ରବୃତ୍ତ, ସ୍ୱେଚ୍ଛାମୂଳକ ।
**Spontaneous**, *a.* ସ୍ୱେଚ୍ଛାପୂର୍ବକକୃତ,
**Spontaneously**, *ad.* ସ୍ୱେଚ୍ଛାରେ, ସ୍ୱତଃ, ସ୍ୱେଚ୍ଛାପୂର୍ବକ ।
**Spoon**, *n.* ଚାମଚ, ଡଙ୍କି ।
**Spoonful**, *n.* ପୂର୍ଣ୍ଣ ଏକ ଚାମଚ ।
**Sporadic**, *a.* ବିକ୍ଷିପ୍ତଭାବରେ ସଂଘଟିତ, ଏକମାତ୍ର, ଅନନ୍ୟସୃତ ।
**Sporadically**, *ad.* କୌଣସିଠାରେ ଗୋଟାଏ ଗୋଟାଏ, ଠାଏ ଠାଏ, କ୍ୱଚିତ୍ ।
**Sport**, *v.* ବିହାର କରିବା, କ୍ରୀଡ଼ା କରିବା; *n.* କ୍ରୀଡ଼ା, ବିଳାସ, ଶିକାର ।
**Sportive**, *a.* କ୍ରୀଡ଼ାଶୀଳ, କେଳିପ୍ରିୟ ।
**Sports**, *n.* କ୍ରୀଡ଼ାପ୍ରତିଯୋଗିତା ।
**Sportsman**, *n.* ଖେଳବାଡ଼, ଶିକାରୀ ।
**Spot**, *n.* ସ୍ଥାନ, ଦାଗ, କଳଙ୍କ, ଚିହ୍ନ; *v.* ଦାଗ ଲଗାଇବା ।
**Spotless**, *a.* ନିଷ୍କଳଙ୍କ, ବିଶୁଦ୍ଧ, ନିର୍ମଳ ।
**Spotted**, *a.* ଚିତବିଚିତ୍ର, ଚିହ୍ନିତ, ବିନ୍ଦୁବିନ୍ଦୁ ଦାଗବିଶିଷ୍ଟ । [ପାଣିଗ୍ରହଣ ।
**Spousal**, *n.* ବିବାହ, ପରିଣୟ,
**Spouse**, *n.* ଭର୍ତ୍ତା ବା ଭାର୍ଯ୍ୟା, ପତି ବା ପତ୍ନୀ, ବର ବା କନ୍ୟା ।
**Spout**, *n.* ନାଳୀ, ପ୍ରଣାଳୀ; *v.* ନିର୍ଗତ ହେବା, ନିଃସୃତ ହେବା । [ସ୍ନାୟୁ ବ୍ୟଥା ।
**Sprain**, *v.* ଶିର ମକଚିଯିବା; *n.*
**Sprawl**, *v.* ଛଟପଟ ହେବା, ହାତ ଗୋଡ଼ ଲମ୍ବାଇ ପଡ଼ିବା ।
**Spray**, *n.* ଉତ୍କ୍ଷିପ୍ତ ଜଳଧାର, ଫେଣ; *v.* ସୂକ୍ଷ୍ମଧାରରେ ସିଞ୍ଚିବା ।
**Spread**, *v.* ବିସ୍ତାର କରିବା, ପ୍ରସାରିତ ହେବା, ବୃଦ୍ଧିପାଇବା; *n.* ବିସ୍ତାର, ପ୍ରସାର ।
**Spree**, *n.* ମତ୍ତଜନମଜଲିସ, ମଦ୍ୟପାନପୂର୍ବକ ହସ୍ତାହସ୍ତି ।
**Spright**, *n.* ଭୂତ, ପ୍ରେତ, ପିଶାଚ ।
**Sprightliness**, *n.* ଉଲ୍ଲାସ, ହର୍ଷ, ପ୍ରଫୁଲ୍ଲତା ।
**Sprightly**, *a.* ଉଲ୍ଲାସୀ, ହୃଷ୍ଟ, ପ୍ରଫୁଲ୍ଲ ।
**Spring**, *n.* ବସନ୍ତକାଳ, ଝରଣା, ପ୍ରସ୍ରବଣ, ଗଦି; *v.* ଉଦ୍‌ଗତ ହେବା, କୁଦିପଡ଼ିବା ।
**Springlet**, *n.* ନିର୍ଝର, କ୍ଷୁଦ୍ର ଝରଣା ।
**Spring-tide**, *n.* ଜୁଆର ।
**Sprinkle**, *v.* ସିଞ୍ଚିବା, ସେଚନ କରିବା ।
**Sprite**, *n.* ଭୂତ, ପ୍ରେତ, ପିଶାଚ ।
**Sprout**, *n.* ମଞ୍ଜରୀ, ପଲ୍ଲବ, ଅଙ୍କୁର, ପ୍ରରୋହ; *v.* ଅଙ୍କୁରିତ ହେବା, ବିକଶିତ ହେବା, ଗଜୁରିବା ।
**Spruce**, *a.* ପରିଚ୍ଛନ୍ନ, ସୁବେଶ ।
**Spume**, *n.* ଫେଣ; *v.* ଫେଣ ବାହାରିବା ।
**Spumy**, *a.* ଫେନିଳ, ଫେନଯୁକ୍ତ ।

**Spur**, *n.* ଉତ୍ତେଜନା, ପ୍ରେରଣା, ଅଶ୍ୱାରୋହୀର ଜୋତାରେ ଥିବା କଣ୍ଟା; *v.* ଉତ୍ତେଜିତ କରିବା । [ ମିଥ୍ୟା, କାଳ୍ପନିକ ।

**Spurious**, *a.* କୃତ୍ରିମ, ଭେଜାଲ,

**Spurn**, *v.* ଧିକ୍କାର କରିବା, ଘୃଣା କରିବା; *n.* ଘୃଣା, ଅନାଦର, ଧିକ୍କାର ।

**Spurt**, *n.* ପ୍ରଗାଢ଼ ଉଦ୍ୟମ, ଜଳୋତ୍କ୍ଷେପ; *v.* ବେଗରେ ବାହାରି ପଡ଼ିବା ।

**Sputter**, *v.* ଲାଳ ଗଡ଼େଇବା, ଛେପ ବାହାରକରି କହିବା, ଦ୍ରୁତ ଉଚ୍ଚାରଣ କରିବା

**Sputum**, *n.* ଛେପ, ଖଙ୍କାର ।

**Spy**, *n.* ଚର, ଗୁପ୍ତଚର, ଗୁଇନ୍ଦା; *v.* ଗୁପ୍ତ ସନ୍ଧାନ କରିବା ।

**Spy-glass**, *n.* କ୍ଷୁଦ୍ର ଦୂରବୀକ୍ଷଣ ଯନ୍ତ୍ର ।

**Squabble**, *n.* କଳହ, ବିବାଦ; *v.* କଳହ କରିବା ।

**Squad**, *n.* କ୍ଷୁଦ୍ର ଦଳ ।

**Squadron**, *n.* ଅଶ୍ୱାରୋହୀ ସୈନ୍ୟଦଳ, ନୌବାହିନୀର ସୈନ୍ୟଦଳ, ରଣତରୀର ଦଳ । [ କୁତ୍ସିତ, କଦର୍ଯ୍ୟ ।

**Squalid**, *a.* ଅପରିଷ୍କୃତ, ମଳିନ,

**Squall**, *n.* ଚିତ୍କାର, କୋଳାହଳ, ପ୍ରବଳ ବାତ୍ୟା; *v.* ଚିତ୍କାର କରିବା, ଉଚ୍ଚ ଶବ୍ଦ କରିବା । [ କଦର୍ଯ୍ୟ ଅବସ୍ଥିତ ।

**Squalor**, *n.* ଅପରିଷ୍କୃତ ଅବସ୍ଥା,

**Squander**, *v.* ଅପବ୍ୟୟ କରିବା, ଅଯଥା ଖର୍ଚ୍ଚ କରିବା ।

**Square**, *n.* ବର୍ଗ, ସମଚତୁରସ୍ର କ୍ଷେତ୍ର, ବର୍ଗକ୍ଷେତ୍ର, ଅଗଣା; *a.* ଚତୁଷ୍କୋଣବିଶିଷ୍ଟ, ନ୍ୟାଯ୍ୟ; *v.* ବର୍ଗଫଳ ବାହାର କରିବା, ସମାନ ହୋଇଯିବା ।

**Square-root**, *n.* ବର୍ଗମୂଳ ।

**Squash**, *v.* ଚିପୁଡ଼ିବା, ପେଷିବା, ଚିପିବା, ଦଳିବା; *n.* କୋମଳ ଦ୍ରବ୍ୟ ।

**Squat**, *v.* ଚକାମାଡ଼ି ବସିବା ।

**Squeak**, *v.* ଚିଁ ଚିଁ ଶବ୍ଦ କରିବା; *n.* ଚିଁ ଚିଁ ଶବ୍ଦ । [ କରିବା ।

**Squeal**, *v.* ଚିତ୍କାର କରିବା, କେଁ କେଁ

**Squeeze**, *v.* ନିଷ୍ପେଷିତ କରିବା, ମର୍ଦ୍ଦନ କରିବା, ଚିପୁଡ଼ିବା ।

**Squib**, *n.* ବ୍ୟଙ୍ଗରଚନା, ହାଉଇବାଣ ।

**Squint**, *v.* ଟେରେଇ ଚାହିଁବା; *n.* ବକ୍ରଦୃଷ୍ଟି; *a.* ଟେରା ।

**Squire**, *n.* ଜମିଦାର, ଭୂସ୍ୱାମୀ ।

**Squirrel**, *n.* ଗୁଣ୍ଡୁଚିମୂଷା, କାଷ୍ଠମାର୍ଜାର

**Squirt**, *n.* କ୍ଷୁଦ୍ର ଜଳଧାରା, ପିଚକାରୀ; *v.* ପିଚକାରୀରେ ପାଣି ଫିଙ୍ଗିବା ।

**Stab**, *v.* ସୂକ୍ଷ୍ମାଗ୍ର ଅସ୍ତ୍ରରେ ବିଦ୍ଧ କରିବା, ଭୁସିଦେବା; *n.* ଅସ୍ତ୍ରବେଧଜନିତ କ୍ଷତ ।

**Stability**, *n.* ଦୃଢ଼ତା, ସ୍ଥାୟିତ୍ୱ, ନିଶ୍ଚଳତା ।

**Stabilise, Stabilize**, *v.* ଦୃଢ଼ୀଭୂତ କରିବା, ସ୍ଥାୟୀ କରିବା ।

**Stable**, *a.* ଦୃଢ଼, ସ୍ଥିର, ନିଶ୍ଚଳ; *n.* ଅସ୍ତାବଲ, ଅଶ୍ୱଶାଳା ।

**Stack**, *n.* ସ୍ତୂପ, ଗଦା; *v.* ସ୍ତୂପୀକୃତ କରିବା, ଗଦା କରିବା ।

**Stadium**, *n.* କ୍ରୀଡ଼ାଦର୍ଶନାର୍ଥ ମଞ୍ଚ, କ୍ରୀଡ଼ାଙ୍ଗନ (*pl.* Stadia) ।

**Staff**, *n.* ଯଷ୍ଟି, ବାଡ଼ି, ଅବଲମ୍ବନ, କର୍ମଚାରୀବର୍ଗ ।

**Stag**, *n.* କୁରଙ୍ଗ, ହରିଣ, ମୃଗ ।

**Stage**, *n.* ରଙ୍ଗମଞ୍ଚ, ନାଟ୍ୟଶାଳା, ଅଭିନୟଗୃହ; *v.* ମଞ୍ଚସ୍ଥ କରିବା ।

**Stagger**, *v.* ଟଳମଳ ହେବା, ଅଟିବା ।

**Stagnancy**, *n.* ନିଶ୍ଚଳତା, ସ୍ଥୈର୍ଯ୍ୟ, ଗତିରାହିତ୍ୟ, ବଦ୍ଧତା ।

**Stagnant**, *a.* ବଦ୍ଧ, ସ୍ରୋତହୀନ, ନିଶ୍ଚେଷ୍ଟ, ଜଡ଼, ଗତିହୀନ ।

**Stagnate**, *v.* ନିଶ୍ଚଳ ହେବା, ଗତିହୀନ ହେବା । [ ନିଶ୍ଚଳତା ।

**Stagnation**, *n.* ବଦ୍ଧତା, ଗତିରାହିତ୍ୟ,

**Staid**, *a.* ଶାନ୍ତ, ଗମ୍ଭୀର, ସ୍ଥିର, ଅଚଞ୍ଚଳ । [ *v.* କଳଙ୍କିତ କରିବା ।

**Stain**, *n.* କଳଙ୍କ, ଦାଗ, ଚିହ୍ନ;

**Stainless**, *a.* ନିଷ୍କଳଙ୍କ, ଯାହା କଳଙ୍କ ଧରେନାହିଁ ।

**Stair**, *n.* ସୋପାନ, ପାହାଚ, ସିଢ଼ି ।

**Staircase**, *n.* ସୋପାନପଥ, ପାହାଚ-ଶ୍ରେଣୀ ।

**Stake**, *n.* ଶୂଳ, ଖୁଣ୍ଟ, କୀଳା, ବାଜି, ପଣ; *v.* ବାଜିରଖିବା, ପଣ କରିବା ।

**Stale**, *a.* ପର୍ଯ୍ୟୁଷିତ, ନୀରସ, ବାସି ।

**Stalemate**, *n.* ଅଚଳ ଅବସ୍ଥା; *v.* ଅଚଳ ଅବସ୍ଥାରେ ପକାଇବା ।

**Stalk**, *n.* ନଳ, କାଣ୍ଡ, ବୃନ୍ତ, ଆଡ଼ମ୍ବରରେ ଗମନ; *v.* ଗର୍ବ ପଦକ୍ଷେପରେ ଚାଲିବା । [ ଘୋଡ଼ାଶାଳ ।

**Stall**, *n.* ଦୋକାନ, ପଣ୍ୟଶାଳା,

**Stallion**, *n.* ଘୋଡ଼ା, (ଅଚ୍ଛିନ୍ନମୁଷ୍କ) ଅଶ୍ୱ । [ଧୈର୍ଯ୍ୟଶୀଳ; *n.* ଦୃଢ଼ମନା ବ୍ୟକ୍ତି ।

**Stalwart**, *a.* ସାହସୀ, ବଳଶାଳୀ,

**Stamen**, *n.* ପୁଂକେଶର, ପରାଗକେଶର

**Stamina**, *n.* ଶକ୍ତି, ବଳ, ବୀର୍ଯ୍ୟ, ଓଜଃ, ତେଜ, ସାର । [ କହିବା ।

**Stammer**, *v.* ଖନେଇ ଖନେଇ

**Stammerer**, *n.* ଖନା, ଯେ ରହି ରହି କହେ, ଅସ୍ପଷ୍ଟବାଦୀ ।

**Stamp**, *n.* ମୁଦ୍ରା, ଛାପ, ମୋହର; *v.* ମୋହର ଦେବା, ଚିହ୍ନିତ କରିବା ।

**Stampede**, *n.* ଇତସ୍ତତଃ ପଳାୟନ ।

**Stanch**, *a.* ସ୍ଥିର, ଅଚଳ, ଧୀର ।

**Stand**, *v.* ଦଣ୍ଡାୟମାନ ରହିବା, ଠିଆ ହେବା, ସହ୍ୟ କରିବା; *n.* ସ୍ଥିତି, ଅବସ୍ଥା ।

**Standard**, *n.* ପତାକା, ଧ୍ୱଜା, ମୂଲ୍ୟ; *a.* ପ୍ରଚଳିତ, ପ୍ରାମାଣିକ ।

**Standing**, *a.* ଦଣ୍ଡାୟମାନ, ସ୍ଥାୟୀ, ସ୍ଥିର; *n.* ପଦ, ସ୍ଥାନ ।

**Stand-point**. *n.* ମୌଳିକ ମତ, ଦୃଷ୍ଟିକୋଣ, ନିର୍ଦ୍ଦିଷ୍ଟ ସ୍ଥାନ ।

**Standstill,** *n.* ବିରତି, ସ୍ଥିତାବସ୍ଥା ।
**Stanza,** *n.* କବିତାର ପଦ, ଚରଣ ।
**Staple,** *a.* ପ୍ରଧାନ, ପ୍ରଚଳିତ, ମୁଖ୍ୟ, ବିଶିଷ୍ଟ; *n.* ଦେଶର ପ୍ରଧାନ ପଣ୍ୟଦ୍ରବ୍ୟ ।
**Star,** *n.* ନକ୍ଷତ୍ର, ତାରକା, ଅଦ୍ଭୁତ-ଗୁଣସମ୍ପନ୍ନ ବ୍ୟକ୍ତି । [ ପାର୍ଶ୍ୱ ।
**Star-board,** *n.* ନୌକାର ଦକ୍ଷିଣ-
**Starch,** *n.* ଶ୍ୱେତସାର, ମଣ୍ଡ ।
**Starchy,** *a.* ଶ୍ୱେତସାରବିଶିଷ୍ଟ, ମଣ୍ଡଯୁକ୍ତ । [ ଏକ ଦୃଷ୍ଟିରେ ଚାହିଁବା ।
**Stare,** *v.* ଅନିମେଷ ନେତ୍ରରେ ଚାହିଁବା,
**Stark,** *a.* ଘୁର, ସମ୍ପୂର୍ଣ୍ଣ, କଠିନ; *ad.* ସମ୍ପୂର୍ଣ୍ଣରୂପେ ।
**Starry,** *a.* ତାରକାକୀର୍ଣ୍ଣ, ତାରକିତ ।
**Start,** *v.* ଚଳିବା, ସହସା କମ୍ପିବା, ଚକିତ ହେବା, ପ୍ରବୃତ୍ତ ହେବା, ଆରମ୍ଭ କରିବା; *n.* ପ୍ରାରମ୍ଭ, ସନ୍ତ୍ରାସ, ଚମକ ।
**Startle,** *v.* ଚକିତ ହେବା, ତ୍ରସ୍ତ ହେବା, ଚକିତ କରିବା, ବିସ୍ମିତ କରିବା ।
**Startling,** *a.* ଚମକପ୍ରଦ, ଉଦ୍‌ବେଗ-ଜନକ । [ କ୍ଷୁଧା, ଅନଶନକ୍ଳେଶ ।
**Starvation,** *n.* ଅନାହାର, ଖାଦ୍ୟା-
**Starve,** *v.* କ୍ଷୁଧାରେ ପୀଡ଼ିତ ହେବା, ଆହାରାଭାବରେ କଷ୍ଟ ପାଇବା, ଅନାହାରରେ ମରିବା । [ କ୍ଲିଷ୍ଟ, ବୁଭୁକ୍ଷୁ ।
**Starving,** *a.* କ୍ଷୁତ୍ପୀଡ଼ିତ, ଅନାହାର-
**State,** *n.* ଅବସ୍ଥା, ଦଶା, ଗତି, ରାଜ୍ୟ, ରାଜସରକାର; *v.* ବର୍ଣ୍ଣନା କରିବା ।
**Statecraft,** *n.* ରାଜ୍ୟଶାସନ କୌଶଳ, ରାଜ୍ୟଶାସନ ବିଦ୍ୟା ।
**Stated,** *a.* କଥିତ, ବର୍ଣ୍ଣିତ, ନିର୍ଦ୍ଦିଷ୍ଟ, ନିରୂପିତ, ଉକ୍ତ । [ଶାଳୀ, ଗୌରବାନ୍ୱିତ ।
**Stately,** *a.* ଆଡ଼ମ୍ବରପୂର୍ଣ୍ଣ, ପ୍ରତାପ-
**Statement,** *n.* ଉକ୍ତି, ନିବେଦନ, ବଚନ, ବିବୃତି । [ ରାଜନୀତିବିଶାରଦ ।
**Statesman,** *n.* ରାଜନୀତିଜ୍ଞ,
**Statesmanship,** *n.* ନୀତିଜ୍ଞତା, ରାଜନୀତିରେ ପଟୁତା ।
**Static, Statical,** *a.* ସ୍ଥିତିଶୀଳ ।
**Statics,** *n.* ସ୍ଥିତିବିଜ୍ଞାନ ।
**Station,** *n.* ସ୍ଥାନ, ଅବସ୍ଥିତି, ପଦ, ଅବସ୍ଥା; *v.* ଅବସ୍ଥାପିତ କରିବା ।
**Stationary,** *a.* ସ୍ଥିର, ନିଶ୍ଚଳ, ସ୍ଥାବର, ଅଚର । [ ବିକ୍ରେତା ।
**Stationer,** *n.*କାଗଜକଲମ ପ୍ରଭୃତିର
**Stationery,** *n.* ଲେଖାର୍ଥ କାଗଜ-କଲମ ପ୍ରଭୃତି । [ ପରିସଂଖ୍ୟାନବିଷୟକ ।
**Statistic, Statistical,** *a.*
**Statistician,** *n.* ପରିସଂଖ୍ୟାନକାରୀ ।
**Statistics,** *n.* ପରିସଂଖ୍ୟାନ ।
**Statuary,** *n.* ପ୍ରତିମୂର୍ତ୍ତିନିର୍ମାଣକାରୀ ।
**Statue,** *n.* ପ୍ରତିମା, ମୂର୍ତ୍ତି, ପ୍ରତିକୃତି ।
**Statuette,** *n.* କ୍ଷୁଦ୍ର ପ୍ରତିମୂର୍ତ୍ତି ।
**Stature,** *n.* ପ୍ରମାଣ, ଉଚ୍ଚତା, ମୂର୍ତ୍ତି, ଆକାର । [ ମର୍ଯ୍ୟାଦା ।
**Status,** *n.* ସ୍ଥିତି, ପଦବୀ, ସାମାଜିକ

**Status ante,** *n.* ପୂର୍ବସ୍ଥିତାବସ୍ଥା ।
**Status quo,** *n.* ସ୍ଥିତାବସ୍ଥା ।
**Statute,** *n.* ବିଧି, ନିୟମ, ବ୍ୟବସ୍ଥା, ଆଇନ । [ ନିୟମଗତ, ଆଇନସଙ୍ଗତ ।
**Statutory,** *a.* ବିଧିବଦ୍ଧ, ବୈଧାନିକ,
**Staunch,** *a.* ଦୃଢ଼, ଶକ୍ତ, ସ୍ଥିର, 'Stauch' ଦେଖ । [ବିଳମ୍ବ କରିବା ।
**Stave,** *n.* ପିପାର କାଠପଟା; *v.*
**Stay,** *v.* ରହିବା, ବାସ କରିବା, ନିବୃତ୍ତ କରିବା; *n.* ସ୍ଥିତି, ବିରତି, ନିରୋଧ ।
**Stead,** *n.* ସ୍ଥାନ, ଭୂମି, ପରିବର୍ତ୍ତେ ।
**Steadfast,** *a.* ସ୍ଥିର, ଦୃଢ଼, ଧୀର, ଅଟଳ, ସ୍ଥିରବୁଦ୍ଧି ।
**Steadily,** *ad.* ଦୃଢ଼ଭାବରେ, ଅନବରତ, ଅବିଶ୍ରାନ୍ତ, ସର୍ବଦା । [ ଦୃଢ଼ତା ।
**Steadiness,** *n.* ସ୍ଥୈର୍ଯ୍ୟ, ଧୈର୍ଯ୍ୟ,
**Steady,** *a.* ସ୍ଥିର, ଦୃଢ଼, ଅଚଞ୍ଚଳ, ଧୀର, ଅବିରତ ।
**Steak,** *n.* ସିଦ୍ଧମାଂସଖଣ୍ଡ, ଟୁକୁରା ମାଂସ ।
**Steal,** *v.* ଚୋରି କରିବା, ଅପହରଣ କରିବା । [ ଗୋପନ କର୍ମ ।
**Stealth,** *n.* ଚୋରି, ଅପହରଣ,
**Stealthily,** *ad.* ଗୋପନରେ, ଅଲକ୍ଷିତ ଭାବରେ, ଲୁଚି ରହି ।
**Stealthy,** *a.* ପ୍ରଚ୍ଛନ୍ନ, ଗୁପ୍ତ, ଅଲକ୍ଷିତ, ଅପ୍ରକାଶ୍ୟ । [ ଆକାରରେ ଉଠିବା ।
**Steam,** *n.* ବାଷ୍ପ, ଧୂମ; *v.* ବାଷ୍ପ
**Steam boat,** *n.* ବାଷ୍ପୀୟ ପୋତ ବା ନୌକା । [ ଷ୍ଟୀମ ଇଞ୍ଜିନ ।
**Steam-engine,** *n.* ବାଷ୍ପୀୟ ଯନ୍ତ୍ର,
**Steamer,** *n.* ବାଷ୍ପୀୟ ପୋତ ବା ଜାହାଜ ।
**Steed,** *n.* ଅଶ୍ୱ, ଘୋଡ଼ା ।
**Steel,** *n.* ଇସ୍ପାତ; *v.* କଠିନ କରିବା ।
**Steep,** *a.* ଅତଟ, ଦୁରାରୋହ; *n.* ଭୃଗୁ, ଅତଟ ପାହାଡ଼; *v.* ନିମଗ୍ନ କରିବା ।
**Steeple,** *n.* ପ୍ରାସାଦ ପ୍ରଭୃତିର ଶିଖର, ଶୃଙ୍ଗ । [ ବାଛୁରି (*Fem.* Heifer) ।
**Steer,** *v.* ପୋତ ଚଳାଇବା; *n.* ଅଣ୍ଡିରା
**Steerage,** *n.* ପୋତଚାଳନା, ପଥପ୍ରଦର୍ଶନ ।
**Steersman,** *n.* କର୍ଣ୍ଣଧାର, ନାବିକ ।
**Stellar,** *a.* ନାକ୍ଷତ୍ରିକ, ତାରକା ସମ୍ବନ୍ଧୀୟ । [ *v.* ପ୍ରତିରୋଧ କରିବା ।
**Stem,** *n.* ବୃନ୍ତ, କାଣ୍ଡ, ନାଡ଼, ଶାଖା;
**Stench,** *n.* ପୂତଗନ୍ଧ, ଦୁର୍ଗନ୍ଧ ।
**Stenograph,** *n.* ସାଙ୍କେତିକ ଲିପି; *v.* ସାଙ୍କେତିକ ଲିପିରେ ଲେଖିବା ।
**Stenographer,** *n.* ଯେ ସାଙ୍କେତିକ ଲିପିରେ ଲେଖେ । [ ଲିଖନପଦ୍ଧତି ।
**Stenography,** *n.* ସାଙ୍କେତିକ
**Stentorian,** *a.* ଉଚ୍ଚ ଶବ୍ଦକାରୀ, ଗମ୍ଭୀରଧ୍ୱନିବିଶିଷ୍ଟ ।
**Step,** *n.* ପାଦ, ସୋପାନ, ପାଦନ୍ୟାସ, ପଦକ୍ଷେପ, ପାହୁଣ୍ଡ, ଉପାୟ; *v.* ପଦକ୍ଷେପ କରିବା ।

Step-brother, *n.* ସାବତ ଭାଇ ।
Step by step, *ad.* ସୋପାନକ୍ରମେ, କ୍ରମଶଃ । [ ଝିଅ ।
Step-child, *n.* ସାବତ ପୁଅ ବା
Step-daughter, *n.* ସାବତ ଝିଅ ।
Step-father, *n.* ଉପପିତା, ନିଜ ପିତାଙ୍କ ମୃତ୍ୟୁପରେ ମାତା ଯାହାକୁ ପତି-ରୂପେ ଗ୍ରହଣ କରନ୍ତି ।
Step-mother, *n.* ସାବତ ମାଆ ।
Step-sister, *n.* ସାବତ ଭଉଣୀ ।
Step-son, *n.* ସାବତ ପୁଅ ।
Stereoscope, *n.* ଘନଦର୍ଶୀ ବା ତ୍ରିମିତଦର୍ଶକ ଯନ୍ତ୍ର । [ ଅକ୍ଷର ।
Stereotype, *n.* ଛାଞ୍ଚରେ ଢଳା
Stereotyped, *a.* ଅପରିବର୍ତ୍ତିତ, ପୂର୍ବ ପ୍ରଚଳିତ, ଛାଞ୍ଚରେ ପଡ଼ିଥିବା ।
Sterile, *a.* ବନ୍ଧ୍ୟ, ନିଷ୍ଫଳ, ଅନୁର୍ବର ।
Sterilisation, *n.* ଉତ୍ପାଦନ ଶକ୍ତି ହରଣ । [ ଶୋଧନ କରିବା ।
Sterilise, Sterilize, *v.* ପରି-
Sterility, *n.* ବନ୍ଧ୍ୟାତ୍ୱ, ନିଷ୍ଫଳତା ।
Sterling, *n.* ଅକୃତ୍ରିମ, ବିଶୁଦ୍ଧ; *n.* ଇଂଲଣ୍ଡର ମୁଦ୍ରାବିଶେଷ ।
Stern, *n.* ନୌକାର ପଶ୍ଚାଦ୍‌ଭାଗ; *a.* ନିଷ୍ଠୁର, କଠୋର, ଉଗ୍ର ।
Sternly, *ad.* କଠୋର ଭାବରେ, ନିଷ୍ଠୁର ଭାବରେ ।
Sternness, *n.* କଠୋରତା, ନିଷ୍ଠୁରତା, ଉଗ୍ରତା ।
Sternum, *n.* ଉରୋସ୍ଥି, ବକ୍ଷସ୍ଥଳର ହାଡ଼ । [ ଯନ୍ତ୍ରବିଶେଷ ।
Stethoscope, *n.* ହୃତ୍‌ପରୀକ୍ଷାର୍ଥ
Stew, *n.* ଚନ୍ଧା, ମନସ୍ତାପ, ମୃଦୁତାପରେ ସିଝ ମାଂସ । [ କରିବ ।
Steward, *n.* କାର୍ଯ୍ୟାଧ୍ୟକ୍ଷ, ପରିଚାରକ,
Stewardess, *n.* ପରିଚାରିକା, ଗୃହର ପରିଚାଳିକା ବା ତତ୍ତ୍ୱାବଧାରିକା ।
Stewardship, *n.* କାର୍ଯ୍ୟାଧ୍ୟକ୍ଷତା ।
Stick, *n.* ଦଣ୍ଡ, ଯଷ୍ଟି, ଲଗୁଡ଼; *v.* ସଂଲଗ୍ନ ହେବା, ଲାଗିବା ।
Stickle, *v.* ପକ୍ଷ ଗ୍ରହଣ କରିବା, ପ୍ରତିଯୋଗିତା କରିବା ।
Sticky, *a.* ଅଠାଳିଆ, ସାନ୍ଦ୍ର, ଚକ୍‌କଣ ।
Stiff, *a.* କଠିନ, ଦୃଢ଼, ଘନ, କର୍କଶ, ଦୁର୍ବୋଧ । [ କରିବା ବା ହେବା ।
Stiffen, *v.* କଠିନ କରିବା, ଘନୀଭୂତ
Stiffness, *n.* କାଠିନ୍ୟ, ଦୃଢ଼ତା, ଦୁର୍ବୋଧତା । [ ବାକ୍‌ରୋଧ କରିବା ।
Stifle, *v.* ଶ୍ୱାସରୋଧ କରିବା,
Stigma, *n.* କଳଙ୍କ, ଦୂଷଣ, ନିନ୍ଦା, ଅପଖ୍ୟାତି ।
Stigmatise, Stigmatize, *v.* କଳଙ୍କିତ କରିବା, ଦୋଷ ଦେବା ।
Stile, *n.* ସୋପାନମାର୍ଗ, ସିଡ଼ି ।

**Still**, *a.* ନୀରବ, ନିଃଶବ୍ଦ, ନିଶ୍ଚଳ, ମୂକ; *ad.* ତଥାପି; *v.* ନିଃଶବ୍ଦ କରିବା ।
**Still-born**, *a.* ମୃତଜାତ, ଗର୍ଭରୁ ମୃତ ।
**Stilt**, *n.* ପାଦଯଷ୍ଟି, ରଣପା ।
**Stimulant**, *a.* ଉତ୍ତେଜକ; *n.* ଉତ୍ତେଜକ ଦ୍ରବ୍ୟ । [ ଉତ୍ସାହ ଦେବା ।
**Stimulate**, *v.* ଉତ୍ତେଜିତ କରିବା,
**Stimulating**, *a.* ଉତ୍ତେଜନାକାରୀ ।
**Stimulation**, *n.* ଉତ୍ତେଜନ, ଉଦ୍ଦୀପନ
**Stimulative**, *a.* ଉତ୍ତେଜକ, ଉଦ୍ଦୀପନକାରୀ । [ ଉତ୍ତେଜନାକାରୀ ।
**Stimulator**, *n.* ଉତ୍ସାହଦାତା,
**Stimulus**, *n.* ପ୍ରୋତ୍ସାହ, ଉଦ୍ଦୀପନା, ଉତ୍ତେଜନା । [ ଦେବା ।
**Sting**, *v.* ଦଂଶନ କରିବା, ପୀଡ଼ା
**Stingy**, *a* କୃପଣ, ବଦ୍ଧମୁଷ୍ଟି, ଅର୍ଥଗୃଧ୍ନୁ ।
**Stink**, *n.* ପୂତଗନ୍ଧ, ଦୁର୍ଗନ୍ଧ, ପଚ୍ଚଗନ୍ଧ ।
**Stipend**, *n.* ବୃତ୍ତି, ବେତନ ।
**Stipendiary**, *a.* ବୃତ୍ତିଭୋଗୀ, ବୈତନିକ । [ ଚୁକ୍ତିବଦ୍ଧ ହେବା ।
**Stipulate**, *v.* ପ୍ରତିଜ୍ଞା କରିବା,
**Stipulation**, *n.* ପଣ, ଚୁକ୍ତି, ସର୍ତ୍ତ ।
**Stipulator**, *n.* ଚୁକ୍ତିକାରୀ ।
**Stir**, *v.* ଘୂଞ୍ଚିବା, ଚଳିବା, ମନ୍ଥିବା; *n.* ସଂକ୍ଷୋଭ, ଚଳନ, ବିଶୃଙ୍ଖଳ ।
**Stirrup**, *n.* ପାଦଉନ୍ନୟନୀ, ଘୋଡ଼ା-ଚଢ଼ାରେ ବ୍ୟବହୃତ ରେକାବ ।
**Stitch**, *v.* ସୀଇଁବା; *n.* ସିଲେଇ, ଟାଙ୍କ ।
**Stock**, *n.* ମୂଳଧନ, ବୃକ୍ଷର ଗଣ୍ଡି, ସାମଗ୍ରୀ, ସମ୍ଭାର, ବଂଶ, କୁଳ; *v.* ସଞ୍ଚୟ କରିବା, ଗୋଦାମରେ ରଖିବା । [ ଖେଦା ।
**Stockade**, *n.* କାଷ୍ଠନିର୍ମିତ ବେଢ଼ା,
**Stocking**, *n.* ପାଦଚ୍ଛଦ, ପାଦାବରଣ, ମୋଜା ।
**Stocks**, *n.* (*pl.*) ହରିକାଠ, ହସ୍ତ-ପଦର ବନ୍ଧନାର୍ଥ କାଷ୍ଠନିର୍ମିତ ଯନ୍ତ୍ର ।
**Stoic**, *n.* ସନ୍ନ୍ୟାସୀ, ଅନାସକ୍ତ ପୁରୁଷ ।
**Stoic, Stoical**, *a.* ନିଃସ୍ପୃହ, ଜିତେନ୍ଦ୍ରିୟ, ଅନାସକ୍ତ, ଉଦାସୀନ ।
**Stoicism**, *n.* ଔଦାସୀନ୍ୟ, ଅନାସକ୍ତି, ବୈରାଗ୍ୟ, ଇନ୍ଦ୍ରିୟଦମନ, ସୁଖଦୁଃଖସମତା ।
**Stolen**, *a.* ଚୋର ଯାଇଥିବା, ଅପହୃତ ।
**Stolid**, *a.* ଜଡ଼, ନିର୍ବୋଧ, ବୋକା ।
**Stomach**, *n.* ଜଠର, ଉଦର, ପାକସ୍ଥଳୀ; *v.* ସହ୍ୟ କରିବା ।
**Stone**, *n.* ଶିଳା, ପାଷାଣ, ପ୍ରସ୍ତର; *v.* ପଥର ଫିଙ୍ଗିବା ।
**Stone-age**, *n.* ପ୍ରସ୍ତର-ଯୁଗ ।
**Stone-blind**, *a.* ଘନାନ୍ଧ, ପୂରା ଅନ୍ଧ ।
**Stone-cutter**, *n.* ପଥୁରିଆ ।
**Stoneware**, *n.* ପ୍ରସ୍ତରୋପକରଣ, ପଥର ବାସନ ।
**Stony**, *a.* ଶିଳାକୀର୍ଣ୍ଣ, ପ୍ରସ୍ତରମୟ ।
**Stool**, *n.* ପୀଠ, ଆସନ, ପୁରୀଷ, ବିଷ୍ଠା ।

Stoop, *v.* ନଇଁ ପଡ଼ିବା, ନତ ହେବା ।
Stop, *v.* ବନ୍ଦ କରିବା, ନିବୃତ୍ତ ହେବା; *n.* ବିରତ, ନିବୃତ୍ତି, ରହିବା ସ୍ଥାନ ।
Stoppage, *n.* ବିରତ, ପ୍ରତିବନ୍ଧ ।
Storage, *n.* ସଂଗ୍ରହ, ସମାହାର, କୋଷ, ଗୋଦାମଭଡ଼ା ।
Store, *v.* ସଂଗ୍ରହ କରିବା, ସଞ୍ଚୟ କରିବା; *n.* ସମ୍ଭାର, ଗୋଦାମ ।
Storehouse, *n.* କୋଷ, ଭଣ୍ଡାର, ଗୋଦାମଘର, କୋଠି ।
Storekeeper, *n.* ଭଣ୍ଡାରରକ୍ଷକ ।
Storey, *n.* ମହଲ, ଘରର ତାଲ ।
Stork, *n.* ସାରସ, ବକ, କ୍ରୌଞ୍ଚ ।
Storm, *n.* ବାତ୍ୟା, ପ୍ରଭଞ୍ଜନ, ଝଞ୍ଜା-ପବନ, ଝଡ଼ ।
Stormy, *a.* ବାତ୍ୟାକୁଳ, ପ୍ରଭଞ୍ଜନା- [ କୁଳିତ ।
Story, *n.* କଥା, ବୃତ୍ତାନ୍ତ, ଆଖ୍ୟାନ, ଉପାଖ୍ୟାନ, ଗଳ୍ପ ।
Stout, *a.* ମାଂସଳ, ସ୍ଥୂଳଶରୀର, ବଳବାନ୍ ।
Stoutly, *ad.* ସାହସପୂର୍ବକ, ଦୃଢ଼- [ ଭାବରେ, ବଳପୂର୍ବକ ।
Stoutness, *n.* ବଳବତ୍ତା, ମାଂସଳତା, ଶରୀରର ସ୍ଥୂଳତା ।
Stove, *n.* ଚୂଲି, ଅଗ୍ନିକୁଣ୍ଡ ।
Stow, *v.* ସ୍ଥାପନ କରିବା, ସଜ୍ଜିତ କରି [ ରଖିବା ।
Stowage, *n.* ସଜ୍ଜିତ ଭାବରେ ସ୍ଥାପନ, ସଜାଇ ରଖିବା ସ୍ଥାନ ।

Straddle, *v.* ଗୋଡ଼ ଫାରକଟା କରି ଚାଲିବା । [ ବାଟବଣା ହେବା ।
Straggle, *v.* ପଥଭ୍ରଷ୍ଟ ହେବା,
Straggler, *n.* ପଥଭ୍ରାନ୍ତ ପଥିକ ।
Straight, *a.* ଋଜୁ, ସରଳ, ସିଧା ।
Straighten, *v.* ସିଧା କରିବା ।
Straight forward, *a.* ସାଧାସିଧା, ନିଷ୍କପଟ, ସରଳ, ସାଧୁପ୍ରକୃତିକ ।
Straightway, *ad.* ତତ୍କ୍ଷଣାତ୍, ଅବିଳମ୍ବେ, ସଙ୍ଗେସଙ୍ଗେ ।
Strain, *n.* କଠୋର ଉଦ୍ୟମ, ଅତି-ଚେଷ୍ଟା, ସ୍ୱର, ଗୀତ; *v.* ପ୍ରଗାଢ଼ ଉଦ୍ୟମ କରିବା, ଛାଣିବା ।
Strainer, *n.* ଛାଣିବାର ଯନ୍ତ୍ର ।
Strait, *n.* ପ୍ରଣାଳୀ, ଆପଦ, ଦୁରବସ୍ଥା; *a.* ସଙ୍କୀର୍ଣ୍ଣ, କଠିନ । [ କଷ୍ଟ ଦେବା ।
Straiten, *a.* ସଙ୍କୁଚିତ କରିବା,
Straitly, *ad.* ଦୃଢ଼ଭାବରେ ।
Strand, *n.* ତଟ, ଧାର; *v.* ସମୁଦ୍ର କୂଳରେ ଲଗିବା । [ ଲଗିଥିବା ।
Stranded, *a.* ସମୁଦ୍ର କୂଳରେ
Strange, *a.* ଅପରିଚିତ, ଅଜ୍ଞାତ, ଅଦ୍ଭୁତ, ଆଶ୍ଚର୍ଯ୍ୟଜନକ ।
Strangely, *ad.* ଅଦ୍ଭୁତଭାବରେ ।
Strangeness, *n.* ବିଚିତ୍ରତା, ଅପରୂପତ୍ୱ
Stranger, *n.* ଆଗନ୍ତୁକ, ଅତିଥି, ଅପରିଚିତ ବ୍ୟକ୍ତି ।

Strangle, Strangulate, *v.* ଗଳାରୋଧ କରିବା,ଶ୍ୱାସରୋଧ କରି ମାରିବା ।
Strangulation, *n.* ଶ୍ୱାସରୋଧ-କରଣ, ଗଳା ଚପି ହତ୍ୟା ।
Strangury, *n.* ମୂତ୍ରକୃଚ୍ଛ୍ର ରୋଗ, ବିନ୍ଦୁବିନ୍ଦୁ ପ୍ରସ୍ରାବ ।
Strap, *n.* ଚର୍ମପଟୀ, ଚମଡ଼ାର ବନ୍ଧନ, ନାପିତର ଚଟପଟି; *v.* ଚମଡ଼ାରେ ଦାଢ଼ କରିବା ।
Strapping, *a.* ଦୀର୍ଘକାୟ, ଉନ୍ନତ ।
Stratagem, *n.* ଉପାୟ, କୌଶଳ, ଚାତୁରୀ, ରଣକୌଶଳ ।
Strategic, Strategical, *a.* ରଣକୌଶଳ ଦୃଷ୍ଟିରୁ ଗୁରୁତ୍ୱପୂର୍ଣ୍ଣ ।
Strategy, *n.* ଯୁଦ୍ଧକୌଶଳ, ବ୍ୟୂହ-ନୈପୁଣ୍ୟ, ସମରପାଟବ ।
Stratify, *v.* ପରସ୍ତ ପରସ୍ତ କରି ସଜାଇବା, ସ୍ତରୀଭୂତ ହେବା ।
Stratum, *n.* ସ୍ତର, ପରସ୍ତ, ଥାକ (*pl.* Strata) । [ ବସ୍ତୁ ।
Straw, *n.* ତୃଣ, ନଡ଼ା, କୁଟା, ନଗଣ୍ୟ
Strawboard, *n.* କାଗଜପଟା ।
Stray, *v.* ଇତସ୍ତତଃ ଭ୍ରମଣ କରିବା, ବିପଥଗାମୀ ହେବା; *a.* ଇତସ୍ତତଃ ଭ୍ରମଣକାରୀ ।
Streak, *n.* ରେଖା, ଗାର, କିରଣ ।
Stream, *n.* ଜଳସ୍ରୋତ, କ୍ଷୁଦ୍ର ନଦୀ, ଧାରା; *v.* ପ୍ରବାହିତ ହେବା ।
Streamer, *n.* ଧ୍ୱଜା, ପତାକା ।
Streamlet, *n.* କ୍ଷୁଦ୍ର ଜଳସ୍ରୋତ, ଜଳଧାରା । [ ନଗରର ରାସ୍ତା ।
Street, *n.* ରାଜପଥ, ସଡ଼କ, ଦାଣ୍ଡ,
Strength, *n.* ଶକ୍ତି, ସାମର୍ଥ୍ୟ, ବଳ, ତେଜ । [ ଉତ୍ସାହିତ କରିବା, ବଳ ଦେବା ।
Strengthen, *v.* ଦୃଢ଼ କରିବା,
Strenuous, *a.* ଉଦ୍ୟୋଗଶୀଳ, ଉତ୍ସୁକ, ଉତ୍ସାହପୂର୍ଣ୍ଣ । [ *v.* ଚାପ ଦେବା ।
Stress, *n.* ଭାର, ଚାପ, ଜୋର;
Stretch, *v.* ବିସ୍ତାର କରିବା, ଲମ୍ବ କରିବା; *n.* ବିସ୍ତାର, ପ୍ରସାର, ଚେଷ୍ଟା ।
Stretcher, *n.* ରୋଗୀ ଆଦିଙ୍କୁ ବୋହି ନେବା ପାଇଁ ଖଟିଆ ବା ଦୋଳା ।
Strew, *v.* ବୁଣିବା, ବିକୀର୍ଣ୍ଣ କରିବା ।
Stricken, *a.* ଆହତ, ପ୍ରହୃତ ।
Strict, *a.* କଠୋର, କଠିନ, ଠିକ୍, ଦୃଢ଼ ।
Strictly, *ad.* ଦୃଢ଼ରୂପେ, କଠୋର ଭାବରେ ।
Strictness, *n.* ଦୃଢ଼ତା, କଠୋରତା ।
Stricture, *n.* ପ୍ରତିକୂଳ ମନ୍ତବ୍ୟ, ନିନ୍ଦା ।
Stride, *n.* ଦୀର୍ଘ ପଦକ୍ଷେପ; *v.* ଲମ୍ବ ପାହୁଣ୍ଡ ପକାଇ ଚାଲିବା ।
Strife, *n.* ବିବାଦ, କଳହ ।
Strike, *v.* ଆଘାତ କରିବା, ପ୍ରହାର କରିବା, ଧର୍ମଘଟ କରିବା; *n.* ଆଘାତ, ପ୍ରହାର, ଧର୍ମଘଟ । [ ଜନକ ।
Striking, *a.* ଚମତ୍କାର, ଆଶ୍ଚର୍ଯ୍ୟ-

String, *n.* ମୋଟ ସୂତା, ରଜ୍ଜୁ, ଦଉଡ଼ି, ତାର ।
Stringed, *a.* ତାରଯୁକ୍ତ ।
Stringency, *n.* ଦୃଢ଼ତା, କଠୋରତା
Stringent, *a.* ଦୃଢ଼, କଠୋର, ବନ୍ଧନକାରୀ । [ ଆଂଶୁବିଶିଷ୍ଟ ।
Stringy, *a.* ସୂତ୍ରସଦୃଶ, ତନ୍ତୁମୟ,
Strip, *n.* ପଟି, ଟୁକୁରା; *v.* ବିଚ୍ୟୁତ କରିବା । [ ପ୍ରହାର ।
Stripe, *n.* ରେଖା, ପଟାପଟା ଦାଗ,
Striped, *a.* ପଟାପଟା ଦାଗଯୁକ୍ତ ।
Stripling, *n.* ଯୁବକ, କିଶୋର ।
Strive, *v.* ଉଦ୍ୟମ କରିବା, ଯତ୍ନ କରିବା ।
Stroke, *n.* ଆଘାତ, ପ୍ରହାର, ରେଖା, ଘଣ୍ଟାର ଶବ୍ଦ; *v.* ଆଉଁଷିବା ।
Stroll, *n.* ଇତସ୍ତତଃ ଭ୍ରମଣ, ପର୍ଯ୍ୟଟନ; *v.* ଇତସ୍ତତଃ ଭ୍ରମଣ କରିବା, ପାଦଚାରଣା କରିବା ।
Strong, *a.* ବଳବାନ୍, ଦୃଢ଼, ଶକ୍ତ ।
Stronghold, *n.* ଦୁର୍ଗ, ଗଡ଼, ନିରାପଦ ସ୍ଥାନ । [ ଚର୍ମପଟ ।
Strop, *n.* କ୍ଷୁର ପ୍ରଭୃତି ଦାଢ଼ କରିବାର
Structural, *a.* ଗଠନ ବା ନିର୍ମାଣ ସମ୍ବନ୍ଧୀୟ । [ ପ୍ରାସାଦ ।
Structure, *n.* ଗଠନ, ନିର୍ମାଣ,
Struggle, *n.* ଉଦ୍‌ଯୋଗ, ଯତ୍ନ; *v.* ଉଦ୍ୟମ କରିବା, କଷ୍ଟ ସହିବା ।
Strumpet, *n.* ବେଶ୍ୟା, ବାରାଙ୍ଗନା ।
Strychnia, Strychnine, *n.* କୋଚିଲାରୁ ପ୍ରସ୍ତୁତ ଔଷଧବିଶେଷ ।
Stubble, *n.* ନଡ଼ା, ଛଣ, ଶସ୍ୟର ମୂଳଅଂଶ ।
Stubborn, *a.* ଅବାଧ୍ୟ, ଜିଦ୍‌ଖୋର ।
Stud, *n.* ଛଡ଼କଣ୍ଟା, ବଂଶବୃଦ୍ଧି ନିମନ୍ତେ ରଖାଯାଇଥିବା ଘୋଡ଼ା ଓ ଘୋଡ଼ୀସମୂହ ।
Stud-bull, *n.* ପ୍ରଜନନ ନିମନ୍ତେ ପାଳିତ ବୃଷ, ଷଣ୍ଢ ।
Student, *n.* ବିଦ୍ୟାର୍ଥୀ, ଶିଷ୍ୟ, ଛାତ୍ର ।
Studied, *a.* ପୂର୍ବକଳ୍ପିତ, ବିବେଚନା-ପ୍ରସୂତ । [ କର୍ମଶାଳା, ଶିଳ୍ପାଳୟ ।
Studio, *n.* ଚିତ୍ରକର ବା ସ୍ଥପତିର
Studious, *a.* ପିପଠିଷୁ, ଅଧ୍ୟୟନଶୀଳ, ମନୋଯୋଗୀ । [ ସହକାରେ ।
Studiously, *ad.* ମନୋଯୋଗ
Study, *n.* ଅଧ୍ୟୟନ, ପଠନ, ପାଠଗୃହ; *v.* ଅଧ୍ୟୟନ କରିବା । [ କରିବା ।
Stuff, *n.* ପଦାର୍ଥ, ସାମଗ୍ରୀ; *v.* ଭର୍ତ୍ତି
Stuffy, *a.* ପବନଶୂନ୍ୟ, ଶ୍ୱାସରୋଧକାରୀ ।
Stultify, *v.* ବୋକା ବନେଇବା, ଅନ୍ୟର ଅଜ୍ଞତା ପ୍ରମାଣ କରିବା ।
Stumble, *v.* ଝୁଣ୍ଟି ପଡ଼ିବା ।
Stumbling-block, *n.* ଅନ୍ତରାୟ, ପ୍ରତିବନ୍ଧକ । [ ଅଂଶ ।
Stump, *n.* ଗଛର ଥୁଣ୍ଟା, ଗଛର ମୂଳ

**Stun**, *v*. ମୂର୍ଚ୍ଛିତ କରିବା, ଆଘାତଦ୍ୱାରା ଅଚେତନ କରିବା ।

**Stunning**, *a*. ମୂର୍ଚ୍ଛାକାରୀ ।

**Stunt**, *v*. ବୃଦ୍ଧିରୋଧ କରିବା ।

**Stunted**, *a*. ଯାହାର ବୃଦ୍ଧି ବାଧାପ୍ରାପ୍ତ ହୋଇଅଛି । [ ଅବସ୍ଥା ।

**Stupefaction**, *n*. ହତଚେତନ

**Stupefy**, *v*. ମୂର୍ଚ୍ଛିତ କରିବା, ହତବୁଦ୍ଧି କରିବା । [ ଅତିଶୟ ।

**Stupendous**, *a*. ଅଦ୍ଭୁତ, ବିରାଟ,

**Stupid**, *a*. ମୂର୍ଖ, ନିର୍ବୋଧ, ଜଡ଼ ।

**Stupidity**, *n*. ମୂର୍ଖତା, ନିର୍ବୋଧତା ।

**Stupor**, *n*. ଅଚୈତନ୍ୟ ଅବସ୍ଥା ।

**Sturdiness**, *n*. ଶକ୍ତି, ସବଳତା, ହୃଷ୍ଟପୁଷ୍ଟ ଅବସ୍ଥା ।

**Sturdy**, *a*. ବଳବାନ୍, ହୃଷ୍ଟପୁଷ୍ଟ ।

**Stutter**, *v*. ଝେନେଇବା, ରହି ରହି କହିବା ।

**Stutterer**, *n*. ଖନା, ଥୋଡା ।

**Sty**, *n*. ଘୁଷୁରି ରହିବା ଘର ।

**Sty, Stye**, *n*. ଆଖିପତାର ବ୍ରଣ ।

**Stygian**, *n*. ନାରକୀୟ, ବୈତରଣୀ ସମ୍ବନ୍ଧୀୟ ।

**Style**, *n*. ଧାରା, ଢଙ୍ଗ, ଶୈଳୀ, ଉପାଧି, ନାମ, *v*. ନାମ ଦେବା, ଉପାଧି ଦେବା ।

**Stylish**, *a*. ସୁଶ୍ରୀ, ସୁନ୍ଦର, ସୌଖିନ ।

**Styx**, *n*. ନରକପୁରର ନଦୀ, ବୈତରଣୀ ।

**Suasion**, *n*. ପ୍ରେରଣା, ପ୍ରବୋଚନା, ପରାମର୍ଶ । [ ଦାୟକ ।

**Suasive**, *a*. ପ୍ରବର୍ତ୍ତନାମୂଳକ, ପ୍ରେରଣା-

**Suave**, *a*. ମଧୁର, ମୃଦୁ, ପ୍ରୀତିକର ।

**Suavity**, *n*. ମିଷ୍ଟତା, ମୃଦୁତା, ନମ୍ରତା ।

**Subaltern**, *n*. ସେନାବିଭାଗର କର୍ମଚାରୀବିଶେଷ; *a*. ଅଧସ୍ତନ ।

**Subconscious**, *a*. ଅବଚେତନ ।

**Subdivide**, *v*. ପୁନର୍ବିଭାଗ କରିବା, କ୍ଷୁଦ୍ର ଅଂଶରେ ବିଭାଗ କରିବା ।

**Subdivision**, *n*. ଉପବିଭାଗ, ମହକୁମା, ଜିଲ୍ଲାର ଅଂଶବିଶେଷ ।

**Subdue**, *v*. ବଶୀଭୂତ କରିବା, ପରାଜିତ କରିବା, ପଦାନତ କରିବା ।

**Subdued**, *a*. ବଶୀଭୂତ, ପରାସ୍ତ ।

**Subject**, *n*. ପ୍ରଜା, ବିଷୟ, ପ୍ରସଙ୍ଗ; *a*. ପରାଧୀନ; *v*. ବଶୀଭୂତ କରିବା ।

**Subjection**, *n*. ଅଧୀନତା, ଆୟତ୍ତୀକରଣ । [ ଆଧ୍ୟାତ୍ମିକ ।

**Subjective**, *a*. ଆତ୍ମନିଷ୍ଠ, ମାନସିକ,

**Subjoin**, *v*. ଶେଷରେ ଯୋଗ କରିବା ।

**Subjudice**, *a*. ବିଚାରାଧୀନ ।

**Subjugate**, *v*. ପରାସ୍ତ କରିବା, ଦମନ କରିବା, ବଶ କରିବା । [ ବଶୀକରଣ ।

**Subjugation**, *n*. ଦମନ, ପରାଜୟ,

**Subjugator**, *n*. ଦମନକାରୀ, ବଶକାରକ ।

**Sub-lease,** *n.* ସିକମି ପଟ୍ଟା; *v.* ସିକମି ପଟ୍ଟା ଦେବା ।

**Sublet,** *v.* ନିଜେ ଭଡ଼ାନେଇ ଅନ୍ୟକୁ ଭଡ଼ା ଦେବା, ଦରପଟ୍ଟା କରିଦେବା ।

**Sublimate,** *v.* ତାପଦ୍ୱାରା ସାର ବାହାର କରିବା, ତାପଦ୍ୱାରା ଶୋଧନ କରିବା; *n.* ରସକର୍ପୂର । [ ମହାନ୍ ।

**Sublimation,** *n.* ତାପଦ୍ୱାରା ସାର ବାହାର କରିବା ପ୍ରକ୍ରିୟା, ଊର୍ଦ୍ଧ୍ୱ-ପାତନ ।

**Sublime,** *a.* ଉନ୍ନତ, ଉତ୍କୃଷ୍ଟ, ଉଦାତ୍ତ,

**Sublimeness, Sublimity,** *n.* ଶ୍ରେଷ୍ଠତା, ଅତ୍ୟୁତ୍କର୍ଷ, ଗୌରବ, ମହାଭାବ ।

**Submarine,** *a.* ସମୁଦ୍ରର ଅଧଃସ୍ଥିତ; *n.* ବୁଡ଼ାଜାହାଜ ।

**Submerge,** *v.* ଜଳମଗ୍ନ କରିବା, ବୁଡ଼ାଇ ଦେବା, ନିମଗ୍ନ ହେବା ।

**Submersion,** *n.* ନିମଜ୍ଜନ ।

**Submission,** *n.* ଆଜ୍ଞାବହତା, ସହିଷ୍ଣୁତା, ଅଧୀନତା, ବିନୟ, ନମ୍ରତା, ଅନୁରୋଧ, ନିବେଦନ ।

**Submissive,** *a.* ଶାନ୍ତଶୀଳ, ବିନୀତ, ସହିଷ୍ଣୁ, ନମ୍ର, ବଶ୍ୟ, ଆଜ୍ଞାଧୀନ ।

**Submit,** *v.* ବଶ୍ୟତା ସ୍ୱୀକାର କରିବା, ସ୍ୱୀକୃତ ହେବା, ସମର୍ପଣ କରିବା, ଅନୁରୋଧ କରିବା । [ ନ୍ୟୂନ ।

**Subnormal,** *a.* ସ୍ୱାଭାବିକ ଅବସ୍ଥାରୁ

**Subordinate,** *a.* ଅଧୀନ, ନିମ୍ନସ୍ଥ, ଅପ୍ରଧାନ, ଗୌଣ । [ ବାଧ୍ୟତା, ଗୌଣତା

**Subordination,** *n.* ଆଧୀନ୍ୟ,

**Subscribe,** *v.* ସ୍ୱାକ୍ଷର କରିବା, ସ୍ୱୀକାର କରିବା, ଚାନ୍ଦା ଦେବା । [ ଚାନ୍ଦାଦାତା ।

**Subscriber,** *n.* ସ୍ୱାକ୍ଷରକାରୀ,

**Subscription,** *n.* ସ୍ୱାକ୍ଷର, ସ୍ୱୀକୃତ, ଚାନ୍ଦା । [ ଉପବିଭାଗ ।

**Sub-section,** *n.* ଉପବିଧି,

**Subsequent,** *a.* ପରବର୍ତ୍ତୀ, ପଶ୍ଚାଦ୍‌ବର୍ତ୍ତୀ, ଉତ୍ତରକାଳୀନ । [ ଉତ୍ତାରେ ।

**Subsequently,** *ad.* ପରେ,

**Subserve,** *v.* ସେବା କରିବା, ଅଧୀନ ହେବା, ସାହାଯ୍ୟ କରିବା ।

**Subservience, Subserviency,** *n.* ପରାଧୀନତା, ସହକାରିତା, ଉପକାରିତା, ଆନୁଗତ୍ୟ ।

**Subservient,** *a.* ସେବାକାରୀ, ପରାଧୀନ, ସହାୟକ, ଉପକାରୀ ।

**Subside,** *v.* ନିବୃତ୍ତ ହେବା, ସ୍ଥିର ହେବା, ଅଧୋଗାମୀ ହେବା ।

**Subsidiary,** *a.* ସାହାଯ୍ୟକାରୀ, ଅପ୍ରଧାନ, ଆନୁଷଙ୍ଗିକ । [ ଦେବା ।

**Subsidise,** *v.* ଆର୍ଥିକ ସାହାଯ୍ୟ

**Subsidy,** *n.* ସହାୟତା, ଆର୍ଥିକ ସାହାଯ୍ୟ । [ ବଞ୍ଚିବା, ରହିବା ।

**Subsist,** *v.* ପ୍ରାଣଧାରଣ କରିବା,

**Subsistence**, *n.* ଅସ୍ତିତ୍ୱ, ବୃତ୍ତି, ଜୀବିକା, ଜୀବନୋପାୟ । [ ଅଧଃସ୍ତର ।

**Subsoil**, *n.* ଭୂପୃଷ୍ଠର ନିମ୍ନସ୍ଥ ମୃତ୍ତିକା,

**Substance**, *n.* ସାରାଂଶ, ନିଷ୍କର୍ଷ, ପଦାର୍ଥ, ଉପାଦାନ । [ ବାସ୍ତବିକ ।

**Substantial**, *a.* ପ୍ରକୃତ, ଯଥାର୍ଥ,

**Substantially**, *ad* ଯଥାର୍ଥରୂପେ, ପ୍ରକୃତରେ । [ ପ୍ରମାଣ କରିବା ।

**Substantiate**, *v.* ସାବ୍ୟସ୍ତ କରିବା,

**Substitute**, *n.* ପ୍ରତିନିଧି, ବଦଳ; *v.* ବଦଳରେ ସ୍ଥାପନ କରିବା ।

**Substitution**, *n.* ଏକର ପରିବର୍ତ୍ତରେ ଅନ୍ୟର ଉପସ୍ଥାପନ, ବଦଳ, ପାଲଟ । [ ପରସ୍ତ ।

**Substratum**, *n.* ନିମ୍ନ ସ୍ତର, ତଳ

**Subtenant**, *n.* ସିକମି ରୟତ ।

**Subterfuge**, *n.* ପ୍ରବଞ୍ଚନା, ବ୍ୟପଦେଶ, ଛଳନା, ବାହାନା, କୂଟକୌଶଳ ।

**Subterranean**, *a.* ଭୂମିର ନିମ୍ନସ୍ଥିତ, ପୃଥିବୀର ଅଭ୍ୟନ୍ତରସ୍ଥ, ଆନ୍ତର୍ଭୌମ ।

**Subtle**, *a.* ଧୂର୍ତ୍ତ, ଖଳ, ଗୁରୁତ୍ୱପୂର୍ଣ୍ଣ, ଅତଳସ୍ପର୍ଶୀ, ସୂକ୍ଷ୍ମ ।

**Subtleness, Subtlety**, *n.* ପ୍ରବଞ୍ଚନା, ଗୁରୁତ୍ୱ, ଧୂର୍ତ୍ତତା, ସୂକ୍ଷ୍ମତା ।

**Subtract**, *v.* ବିୟୋଗ କରିବା, ଫେଡ଼ିବା । [ ବ୍ୟବକଳନ, ଫେଡ଼ାଣ ।

**Subtraction**, *n.* ବିୟୋଗକରଣ,

**Subtrahend**, *n.* ବିୟୋଜ୍ୟ ରାଶି ।

**Suburb**, *n.* ସହରତଳି, ନଗରର ପ୍ରାନ୍ତଭାଗ, ନଗରୋପକଣ୍ଠ ।

**Suburban**, *a.* ନଗରପ୍ରାନ୍ତସ୍ଥିତ, ସହରତଳି ସମ୍ବନ୍ଧୀୟ । [ ଆନୁକୂଲ୍ୟ ।

**Subvention**, *n.* ଆର୍ଥିକ ସାହାଯ୍ୟ,

**Subversion**, *n.* ଧ୍ୱଂସ, ଉଚ୍ଛେଦ, ବିନାଶ । [ ବିନାଶକାରୀ ।

**Subversive**, *a.* ଧ୍ୱଂସମୂଳକ,

**Subvert**, *v.* ଧ୍ୱଂସ କରିବା, ବିନାଶ କରିବା, ଉଜାଡ଼ିବା । [ଆନ୍ତର୍ଭୌମ ମାର୍ଗ ।

**Subway**, *n.* ଭୂଗର୍ଭସ୍ଥ ପଥ,

**Succeed**, *v.* କୃତକାର୍ଯ୍ୟ ହେବା, ସଫଳ ହେବା, ଉତ୍ତରାଧିକାରୀ ହେବା ।

**Succeeding**, *a.* ପରବର୍ତ୍ତୀ, ଆଗାମୀ, ଅନୁଗାମୀ । [ ସିଦ୍ଧି ।

**Success**, *n.* ସାଫଲ୍ୟ, କୃତକାର୍ଯ୍ୟତା,

**Successful**, *a.* ସଫଳ, କୃତକାର୍ଯ୍ୟ, କୃତାର୍ଥ, ସୌଭାଗ୍ୟଶାଳୀ ।

**Successfully**, *ad.* ସଫଳଭାବରେ ।

**Succession**, *n.* ଅନୁକ୍ରମ, ପରମ୍ପରା, ବଂଶ, ଉତ୍ତରାଧିକାର, ପରବର୍ତ୍ତିତା ।

**Successive**, *a.* ଆନୁକ୍ରମିକ, କ୍ରମାଗତ । [ ଯଥାକ୍ରମେ, କ୍ରମାନୁସାରେ ।

**Successively**, *ad.* ପରମ୍ପରାକ୍ରମେ,

**Successor**, *n.* ଉତ୍ତରାଧିକାରୀ ।

**Succinct**, *a.* ସଂକ୍ଷିପ୍ତ, କ୍ଷୁଦ୍ର, ଲଘୁ ।

**Succinctly**, *ad.* ସଂକ୍ଷେପରେ ।
**Succour**, *n.* ସାହାଯ୍ୟ, ଉପକାର, ଆଶ୍ରୟ । [ ରସାଳତା ।
**Succulence**, *n.* ସରସତା,
**Succulent**, *a.* ସରସ, ରସମୟ ।
**Succumb**, *v.* ପରାଜିତ ହେବା, ବଶ୍ୟତା ମାନିବା, ଅବସନ୍ନ ହେବା ।
**Such**, *a.* ଈଦୃଶ, ଏମନ୍ତ, ଏପରି, ଏତାଦୃଶ । [ ସ୍ତନ୍ୟପାନ କରିବା ।
**Suck**, *v.* ଶୋଷଣ କରିବା, ଚୋଷିବା,
**Sucker**, *n.* ପଲ୍ଲବ, ଅଙ୍କୁର, ଯେ ଶୋଷଣ କରେ । [ ସ୍ତନ୍ୟପାନ କରିବା ।
**Suckle**, *v.* ସ୍ତନରୁ ଦୁଗ୍ଧ ପିଆଇବା,
**Suckling**, *n.* ସ୍ତନନ୍ଧୟ ଶିଶୁ, ସ୍ତନ୍ୟଦାନ; *a.* ସ୍ତନ୍ୟପାୟୀ ।
**Suction**, *n.* ଶୋଷଣ, ଚୂଷଣ ।
**Sudden**, *a.* ଆକସ୍ମିକ, ଅପ୍ରତ୍ୟାଶିତ, ଅତର୍କିତ । [ ଅତର୍କିତଭାବରେ ।
**Suddenly**, *ad.* ହଠାତ୍, ଅକସ୍ମାତ୍,
**Suds**, *n.* (*pl.*) ସାବୁନର ଫେଣ ।
**Sue**, *v.* ନିବେଦନ କରିବା, ପ୍ରାର୍ଥନା କରିବା, ନାଲିଶ କରିବା ।
**Suet**, *n.* ବସା, ମେଦ, ଚର୍ବି ।
**Suffer**, *v.* ସହିବା, କଷ୍ଟ ଭୋଗିବା, ଅନୁମତି ଦେବା । [ କ୍ଷମା, ସହିଷ୍ଣୁତା ।
**Sufferance**, *n.* ଅନୁମତି, ଧୈର୍ଯ୍ୟ,
**Sufferer**, *n.* ଦୁଃଖଭୋଗକାରୀ, ପୀଡ଼ିତ ବ୍ୟକ୍ତି । [ ପୀଡ଼ା, କ୍ଳେଶ ।
**Suffering**, *n.* ଦୁଃଖ, ଯନ୍ତ୍ରଣା,
**Suffice**, *v.* ଯଥେଷ୍ଟ ହେବା, ଅଣ୍ଟିବା ।
**Sufficiency**, *n.* ପ୍ରଚୁରତା, ବାହୁଲ୍ୟ, ପର୍ଯ୍ୟାପ୍ତି । [ ପର୍ଯ୍ୟାପ୍ତ, ପ୍ରଚୁର ।
**Sufficient**, *a.* ଯଥେଷ୍ଟ, ବହୁଳ,
**Suffix**, *n.* ଧାତୁ ବା ଶବ୍ଦରେ ଯାହା ଯୋଗ କରାଯାଏ, ପ୍ରତ୍ୟୟ; *v.* ପ୍ରତ୍ୟୟ ଯୋଗ କରିବା । [ ଗଳା ଚିପି ମାରିବା ।
**Suffocate**, *v.* ଶ୍ୱାସରୋଧ କରିବା,
**Suffocation**, *n.* ଶ୍ୱାସରୋଧ ।
**Suffrage**, *n.* ମତ, ସମ୍ମତି, ଭୋଟ-ଦେବା ଅଧିକାର । [ କରିବା ।
**Suffuse**, *v.* ବ୍ୟାପ୍ତ କରିବା, ଆପ୍ଳୁତ
**Sugar**, *n.* ଶର୍କରା, ଚିନି; *v.* ଚିନିର ବୋଳ ଦେବା । [ ମିଠାଖଣ୍ଡ ।
**Sugarcandy**, *n.* ମିଶିରି,
**Sugarcane**, *n.* ଇକ୍ଷୁ, ଆଖୁ ।
**Sugary**, *a.* ଚିନିପରି ମଧୁର, ମଧୁମୟ ।
**Suggest**, *v.* ସୂଚନା ଦେବା, ପ୍ରସ୍ତାବ କରିବା । [ ପରାମର୍ଶ ।
**Suggestion**, *n.* ସୂଚନା, ପ୍ରସ୍ତାବ,
**Suggestive**, *a.* ସୂଚନାପୂର୍ଣ୍ଣ, ପରାମର୍ଶମୂଳକ, ଇଙ୍ଗିତଗର୍ଭକ ।
**Suicidal**, *a.* ଆତ୍ମଘାତୀ, ସ୍ୱନାଶାବହ ।
**Suicide**, *n.* ଆତ୍ମହତ୍ୟା, ନିଜର ପ୍ରାଣନାଶ

**Suit**, *n.* ମୋକଦମା, ପ୍ରଣୟ ପ୍ରାର୍ଥନା, ଏକ ସାର ପୋଷାକ; *v.* ଉପଯୁକ୍ତ ହେବା ।
**Suitability**, *n.* ଉପଯୋଗିତା, ଔଚିତ୍ୟ । [ ଅନୁରୂପ, ଯୋଗ୍ୟ ।
**Suitable**, *a.* ଉପଯୁକ୍ତ, ଯଥାଯୋଗ୍ୟ,
**Suitably**, *ad.* ଉପଯୁକ୍ତଭାବରେ, ଯଥାଯୋଗ୍ୟରୂପେ ।
**Suitcase**, *n.* ଚ୍ଲେଟ ପେଡ଼ି, ହାତରେ ନେବା ଆଣିବାର ବାକ୍ସ ।
**Suite**, *n.* ପ୍ରକୋଷ୍ଠଶ୍ରେଣୀ, ପରିଜନ, ବିଶିଷ୍ଟ ବ୍ୟକ୍ତିଙ୍କ ଗହଣରେ ଥିବା ଲୋକ ।
**Suited**, *a.* ଉପଯୋଗୀ । [ ପ୍ରାର୍ଥୀ ।
**Suitor**, *n.* ଆବେଦନକାରୀ, ବିବାହ-
**Sulk**, *v.* ବିଷଣ୍ଣ ହେବା, ଉଦ୍‌ବିଗ୍ନ ହେବା ।
**Sulkily**, *ad.* ବିଷଣ୍ଣଭାବରେ, ବିରକ୍ତି ସହକାରେ । [ ଉଦ୍‌ବେଗ, ବିଷଣ୍ଣତା ।
**Sulkiness**, *n.* ଔଦାସୀନ୍ୟ,
**Sulky**, *a.* ରୁଷ୍ଟ, ବିଷଣ୍ଣ, ଉଦାସୀନ, ଉଦ୍‌ବିଗ୍ନ, ଅପ୍ରସନ୍ନ । [ ରୁଷ୍ଟ ।
**Sullen**, *a.* ବିଷାଦଗ୍ରସ୍ତ, ଉଦାସୀନ,
**Sullenly**, *ad.* ବିଷଣ୍ଣ ଭାବରେ, ଉଦ୍‌ବେଗ ସହକାରେ । [ ଉଦ୍‌ବେଗ ।
**Sullenness**, *n.* ବିଷାଦ, ଔଦାସୀନ୍ୟ,
**Sully**, *v.* କଳଙ୍କିତ କରିବା, ଦୂଷିତ କରିବା । [ ଲବଣ ।
**Sulphate**, *n.* ଗନ୍ଧକାମ୍ଳଦ୍ୱାରା ପ୍ରସ୍ତୁତ
**Sulphate of copper**, *n.* ତୁତିଆ, ତୁତିଆ ।
**Sulphate of iron**, *n.* ହୀରାକଷ ।
**Sulphur**, *n.* ଗନ୍ଧକ । [ କରିବା ।
**Sulphurate**, *v.* ଗନ୍ଧକ ସହିତ ମିଶ୍ରିତ
**Sulphureous**, *a.* ଗନ୍ଧକମିଶ୍ରିତ, ଗନ୍ଧକଗୁଣବିଶିଷ୍ଟ ।
**Sulphuric**, *a.* ଗନ୍ଧକଜାତ ।
**Sulphurous**, *a.* ଗନ୍ଧକତୁଲ୍ୟ, ଗନ୍ଧକ-ଘଟିତ, ଗନ୍ଧକସମ୍ବନ୍ଧୀୟ ।
**Sultry**, *a.* ଗୁଳଗୁଳିଆ, ପବନ ନଥାଇ ଗରମ, ପ୍ରଖର । [ *v.* ଯୋଗ କରିବା ।
**Sum**, *n.* ସମଷ୍ଟି, ମୋଟ, ଯୋଗ, ଅଙ୍କ;
**Summarily**, *ad.* ସଂକ୍ଷେପରେ, ସରସର ଭାବରେ ।
**Summarise**, *v.* ସାରାଂଶ ପ୍ରକାଶ କରିବା, ସଂକ୍ଷେପଣ କରିବା ।
**Summary**, *n.* ସାରାଂଶ, ସାରକଥା; *a.* ସଂକ୍ଷିପ୍ତ, ସଂକ୍ଷିପ୍ତ ପ୍ରଣାଳୀରେ ସମ୍ପାଦିତ ।
**Summation**, *n.* ସମଷ୍ଟି, ଯୋଗକରଣ ।
**Summer**, *n.* ଗ୍ରୀଷ୍ମଋତୁ । [ ଚୂଡ଼ା ।
**Summit**, *n.* ଶିଖର, ଶୀର୍ଷ, ଶୃଙ୍ଗ,
**Summon**, *v.* ତଲବ କରିବା, ଉପସ୍ଥିତ ହେବାକୁ ଆଦେଶ ଦେବା ।
**Summons**, *n.* ତଲବ ପରବାନା, କଚେରିରେ ହାଜର ହେବାପାଇଁ ଆଦେଶ (*pl.* Summonses) । [ ପୂର୍ଣ୍ଣ ।
**Sumptuous**, *a.* ବହୁମୂଲ୍ୟ, ଆଡ଼ମ୍ବର-
**Sun**, *n.* ସୂର୍ଯ୍ୟ, ସୂର୍ଯ୍ୟକିରଣ; *v.* ଖରାରେ ଶୁଖାଇବା ।

Sunbeam, *n.* ସୂର୍ଯ୍ୟରଶ୍ମି ।
Sunburnt, *a.* ସୂର୍ଯ୍ୟରଶ୍ମିରେ ଦଗ୍ଧ, ଖରାରେ ସିଝି ଯାଇଥିବା ।
Sunday, *n.* ରବିବାର । [ କରିବା ।
Sunder, *v.* ପୃଥକ୍ କରିବା, ବିଚ୍ଛିନ୍ନ
Sun-dial, *n.* ସୂର୍ଯ୍ୟଘଡ଼ି ।
Sundries, *n.* (*pl.*) ବିବିଧ ଦ୍ରବ୍ୟ ।
Sundry, *a.* ବିବିଧ, ବହୁବିଧ, ଅନେକ ।
Sun-flower, *n.* ସୂର୍ଯ୍ୟମୁଖୀ ଫୁଲ ।
Sunny, *a.* ସୂର୍ଯ୍ୟୋପମ, ସୂର୍ଯ୍ୟାଗତ ।
Sunrise, *n.* ସୂର୍ଯ୍ୟୋଦୟ ।
Sunset, *n.* ସୂର୍ଯ୍ୟାସ୍ତ ।
Sunshade, *n.* ନାରୀମାନଙ୍କର ବ୍ୟବହାର୍ଯ୍ୟ କ୍ଷୁଦ୍ର ଛତା ।
Sunshine, *n.* ସୂର୍ଯ୍ୟାଲୋକ, ଉଷ୍ଣତା ।
Sup, *v.* ଜଳୀୟ ପଦାର୍ଥ ପାଟିକୁ ନେବା, ରାତ୍ରିଭୋଜନ କରିବା ।
Superable, *a.* ଅତିକ୍ରମଣୀୟ ।
Superabound, *v.* ପ୍ରୟୋଜନାତିରିକ୍ତ ହେବା । [ ଆତିଶଯ୍ୟ ।
Superabundance, *n.* ଅତିବାହୁଲ୍ୟ,
Superabundant, *a.* ଅତିବହୁଳ, ଅତ୍ୟଧିକ । [ କର୍ମରୁ ଅବସର ଦେବା ।
Superannuate, *v.* ବାର୍ଦ୍ଧକ୍ୟ ହେତୁ
Superannuated, *a.* ବାର୍ଦ୍ଧକ୍ୟ ହେତୁ କର୍ମରୁ ଅବସରପ୍ରାପ୍ତ ।
Superannuation, *n.* ବାର୍ଦ୍ଧକ୍ୟ ହେତୁ କର୍ମରୁ ଅବସର ପ୍ରଦାନ ।
Superb, *a.* ଅତି ମନୋହର, ଉତ୍କୃଷ୍ଟ, ମହାନ୍ । [ ଅତିରିକ୍ତ, କର୍ତ୍ତବ୍ୟବହିର୍ଭୂତ ।
Supererogatory, *a.* ନିୟମା-
Superficial, *a.* ପଲ୍ଲବଗ୍ରାହୀ, ବାହ୍ୟ, ଅଗଭୀର, ଲୋକଦେଖାଣିଆ ।
Superficiality, *n.* ପଲ୍ଲବଗ୍ରାହିତା, ବାହ୍ୟତା, ଲୋକଦେଖାଣିଆ ଭାବ ।
Superficially, *ad.* ବାହ୍ୟତଃ, ଲୋକଦେଖାଣିଆ ଭାବରେ ।
Superfine, *a.* ଅତିସୂକ୍ଷ୍ମ, ଅତ୍ୟୁତ୍କୃଷ୍ଟ ।
Superfluity, *n.* ଆଧିକ୍ୟ, ଅତିରେକ, ପ୍ରୟୋଜନାତିରିକ୍ତ ପଦାର୍ଥ ।
Superfluous, *a.* ପ୍ରୟୋଜନାତିରିକ୍ତ, ଅନାବଶ୍ୟକ । [ ଅତିମାନୁଷ ।
Superhuman, *a.* ଅଲୌକିକ,
Superintend, *v.* ତତ୍ତ୍ୱ ନେବା, ତଦାରଖ କରିବା, ପର୍ଯ୍ୟବେକ୍ଷଣ କରିବା ।
Superintendence, *n.* ତତ୍ତ୍ୱାବଧାନ, ପର୍ଯ୍ୟବେକ୍ଷଣ, ତଦାରଖି ।
Superintendent, *n.* ତତ୍ତ୍ୱାବଧାରକ, ପର୍ଯ୍ୟବେକ୍ଷକ, ଅଧ୍ୟକ୍ଷ ।
Superior, *a.* ଉପରିସ୍ଥ, ଉଚ୍ଚତର, ଅତ୍ୟୁତ୍ତମ, ଶ୍ରେଷ୍ଠ । [ ଉତ୍କର୍ଷ, ବରିଷ୍ଠତା ।
Superiority, *n.* ଶ୍ରେଷ୍ଠତା, ପ୍ରାଧାନ୍ୟ,
Superlative, *a.* ସର୍ବୋତ୍ତମ, ସର୍ବଶ୍ରେଷ୍ଠ, ପରମ । [ ଆଦର୍ଶ ପୁରୁଷ ।
Superman, *n.* ଅତିମାନବ,

Supernatural, *a.* ଅତିମାନୁଷ, ଅଲୌକିକ, ମାନୁଷାତୀତ ।

Supernumerary, *a.* ଅତିରିକ୍ତ, ଅତ୍ୟଧିକ, ସଂଖ୍ୟାତିରିକ୍ତ । [ କରିବା ।

Superpose, *v.* ଉପରେ ସ୍ଥାପନ

Superscribe, *v.* (ପତ୍ରାଦିଉପରେ) ଶିରୋନାମା ଲେଖିବା ।

Superscription, *n.* ଶିରୋନାମା ।

Supersede, *v.* ରଦ୍ଦ କରିବା, ଖଣ୍ଡନ କରିବା, ଅତିକ୍ରମ କରିବା ।

Superstition, *n.* କୁସଂସ୍କାର, ଅନ୍ଧ-ବିଶ୍ୱାସ, ମିଥ୍ୟାଧର୍ମ । [ ଅନ୍ଧବିଶ୍ୱାସୀ ।

Superstitious, *a.* କୁସଂସ୍କାରାଚ୍ଛନ୍ନ,

Superstructure, *n.* ମୂଳଦୁଆର ଉପର ଗଠନ, ଗୃହ, ପ୍ରାସାଦ ।

Supervise, *v.* ତଦାରଖ କରିବା, ତତ୍ତ୍ୱାବଧାନ କରିବା ।

Supervision, *n.* ପରିଦର୍ଶନ, ସମୀକ୍ଷଣ, ତତ୍ତ୍ୱାବଧାନ । [ ପରିଦର୍ଶକ ।

Supervisor, *n.* ତତ୍ତ୍ୱାବଧାରକ,

Supine, *a.* ଉପରକୁ ମୁହଁକରି ଶୋଇ-ଥିବା, ଅଳସ, ନିଶ୍ଚେଷ୍ଟ, ଉଦାସୀନ ।

Supineness, *n.* ଆଳସ୍ୟ, ତନ୍ଦ୍ରା ।

Supper, *n.* ରାତ୍ରିଭୋଜନ, ନୈଶାହାର ।

Supplant, *v.* ନିଷ୍କାସନ କରିବା, ଅପସୃତ କରିବା, ଅନ୍ୟର ସ୍ଥାନ ଅଧିକାର କରିବା ।

Supple, *a.* ନରମ, କୋମଳ, ଲଘୁ, ନମନଶୀଳ; *v.* ବଶ୍ୟ କରିବା ।

Supplement, *n.* ପରିଶିଷ୍ଟ, ଯୋଡ଼-ପତ୍ର, ପୂରଣକାରୀ ଅଂଶ; *v.* ଅଭାବ ପୂରଣ କରିବା । [ ଅତିରିକ୍ତ ।

Supplementary, *a.* ପରିପୂରକ,

Suppliant, Supplicant, *n.* ଯାଚକ, ଶରଣାଗତ ବ୍ୟକ୍ତି; *a.* ପ୍ରାର୍ଥୀ, ଶରଣାର୍ଥୀ । [ ପ୍ରାର୍ଥନା କରିବା ।

Supplicate, *v.* ଅନୁନୟ କରିବା,

Supplication, *n.* ପ୍ରାର୍ଥନା, ଅନୁନୟ, ବିନତି । [ ସବିନୟ ।

Supplicatory, *a.* ସାନୁନୟ,

Supplier, *n.* ଯୋଗାଣକାରୀ, ସରବରାହକାରୀ ।

Supply, *n.* ଯୋଗାଣ, ସରବରାହ; *v.* ଯୋଗାଇବା, ସରବରାହ କରିବା ।

Support, *v.* ଆଶ୍ରୟ କରିବା, ପ୍ରତି-ପାଳନ କରିବା, ଧାରଣ କରିବା; *n.* ଅବଲମ୍ବନ, ଆଶ୍ରୟ । [ ପାଳନକର୍ତ୍ତା ।

Supporter, *n.* ସମର୍ଥକ, ଆଶ୍ରୟଦାତା,

Suppose, *v.* ସମ୍ଭାବନା କରିବା, କଳ୍ପନା କରିବା, ଅନୁମାନ କରିବା ।

Supposition, *n.* ସମ୍ଭାବନା, କଳ୍ପନା, ଅନୁମାନ । [ ମୂଳକ ।

Suppositional, *a.* ଅନୁମାନ-

Supposititious, *a.* ଅପ୍ରକୃତ, କୃତ୍ରିମ, ନକଲ, କାଳ୍ପନିକ ।

**Suppress**, *v.* ନିରୋଧ କରିବା, ଦମନ କରିବା, ଗୋପନ କରିବା ।
**Suppression**, *n.* ନିରୋଧ, ଦମନ, ନିଗ୍ରହ, ଗୋପନ ।
[ ନିଗ୍ରହସୂଚକ ।
**Suppressive**, *a.* ଦମନମୂଳକ,
**Suppurate**, *v.* ପଚିବା, ପୂଜ ହେବା ।
**Suppuration**, *n.* ପଚନ, ପୂଯୋତ୍ପତ୍ତି ।
[ ପ୍ରାଧାନ୍ୟ, ଶ୍ରେଷ୍ଠତା ।
**Supremacy**, *n.* ଆଧିପତ୍ୟ, ପ୍ରଭୁତ୍ୱ,
**Supreme**, *a.* ପରମ, ପ୍ରଧାନ, ଅତି ମହାନ୍ ।
[ ଭାବରେ ।
**Supremely**, *ad.* ଅତ୍ୟନ୍ତ, ଶ୍ରେଷ୍ଠ-
**Surcharge**, *v.* ଅଧିକ ଭାର ଲଦିବା, ଅଧିକ ଦାବି କରିବା; *n.* ଅତିରିକ୍ତ ଭାର, ଅତିରିକ୍ତ ଦାବି ।
[ ନିଃସଂଶୟ ।
**Sure**, *a.* ନିଶ୍ଚିତ, ନିଃସନ୍ଦେହ, ଧ୍ରୁବ,
**Surely**, *ad.* ନିଶ୍ଚିତରୂପେ, ନିଃସନ୍ଦେହରେ ।
**Sureness**, *n.* ନିଶ୍ଚୟତା, ନିଃସନ୍ଦିଗ୍ଧତା
**Surety**, *n.* ପ୍ରତିଭୂ, ବନ୍ଧକ, ଜାମିନ୍, ନିଶ୍ଚୟତା ।
**Surf**, *n.* ସମୁଦ୍ରର ଲହରୀ, ତରଙ୍ଗ ।
**Surface**, *n.* ତଳ, ପୃଷ୍ଠ, ଉପରିଭାଗ ।
**Surfeit**, *n.* ଅତିଭୋଜନଜନିତ ଅରୁଚି ବା ରୋଗ; *v.* ଅତିଭୋଜନ କରିବା ।
**Surge**, *v.* ସ୍ଫୀତ ହେବା; *n.* ଲହରୀ ।
**Surgeon**, *n.* ଅସ୍ତ୍ରଚିକିତ୍ସକ ।
**Surgery**, *n.* ଅସ୍ତ୍ରଚିକିତ୍ସା, ଶଲ୍ୟତନ୍ତ୍ର ।
**Surgical**, *a.* ଅସ୍ତ୍ରଚିକିତ୍ସା ସମ୍ବନ୍ଧୀୟ ।
**Surliness**, *n.* ରୁକ୍ଷସ୍ୱଭାବ, କର୍କଶତା ।
**Surly**, *a.* ରୁକ୍ଷ, କର୍କଶ, ପରୁଷ ।
**Surmise**, *v.* ସମ୍ଭାବନା କରିବା, ଅନୁମାନ କରିବା; *n.* ସମ୍ଭାବନା, ଅନୁମାନ ।
**Surmount**, *v.* ଅତିକ୍ରମ କରିବା ।
**Surname**, *n.* ଉପନାମ, କୁଳୋପାଧି ।
**Surpass**, *v.* ଅତିକ୍ରମ କରିବା, ବଳିଯିବା ।
**Surpassing**, *a.* ଅତିଶୟ, ଅତ୍ୟଧିକ ।
**Surplus**, *a.* ଉଦ୍‌ବୃତ୍ତ, ବଳକା; *n.* ବଳକା ଜିନିଷ ।
**Surprise**, *v.* ବିସ୍ମିତ କରିବା, ଆଶ୍ଚର୍ଯ୍ୟ କରିବା; *n.* ବିସ୍ମୟ, ଆଶ୍ଚର୍ଯ୍ୟ ।
**Surprising**, *a.* ବିସ୍ମୟକର, ଆଶ୍ଚର୍ଯ୍ୟଜନକ, ଅଦ୍ଭୁତ ।
**Surrender**, *v.* ସମର୍ପଣ କରିବା, ତ୍ୟାଗକରିବା; *n.* ସମର୍ପଣ, ବଶ୍ୟତା ସ୍ୱୀକାର
**Surreptitious**, *a.* ଗୋପନରେ କରା ଯାଇଥିବା, ଲୁଚ୍‌ଚୋରା ।
**Surreptitiously**, *ad.* ଗୋପନରେ, ଲୁଚ୍‌ଚୋରାରେ ।
[ ଘେରିବା ।
**Surround**, *v.* ବେଷ୍ଟନ କରିବା,
**Surrounding**, *a.* ବେଷ୍ଟନକାରୀ, ଚତୁଷ୍ପାର୍ଶ୍ୱବର୍ତ୍ତୀ, ବେଢ଼ିଥିବା ।
**Surveillance**, *n.* ନଜରବନ୍ଦି, ତତ୍ତ୍ୱାବଧାନ ।
[ ମାପଚୁପ କରିବା
**Survey**, *v.* ନିରୀକ୍ଷଣ କରିବା

**Surveyor**, *n.* ପର୍ଯ୍ୟବେକ୍ଷକ, କ୍ଷେତ୍ର-ପରିମାପକାରୀ । [ ପ୍ରାଣଧାରଣ, ଉଦ୍‌ବର୍ତ୍ତନ ।
**Survival**, *n.* ଅନ୍ୟଠାରୁ ଅଧିକକାଳ
**Survive**, *v.* ଅନ୍ୟ ଅପେକ୍ଷା ଅଧିକ କାଳ ବଞ୍ଚିବା, ଆପଦରୁ ପାର ହେବା ।
**Susceptibility**, *n.* ପ୍ରବଣତା, ଅନୁଭବକ୍ଷମତା, ଗ୍ରହଣଶୀଳତା ।
**Susceptible**, *a.* ପ୍ରବଣ, ଅନୁଭବକ୍ଷମ, ଗ୍ରହଣକ୍ଷମ । [ କରିବା; *n.* ଦାଗୀ ।
**Suspect**, *v.* ଶଙ୍କା କରିବା, ସନ୍ଦେହ
**Suspend**, *v.* ଝୁଲାଇବା, ବିଳମ୍ବ କରିବା, ସାମୟିକଭାବରେ ପଦଚ୍ୟୁତ କରିବା ।
**Suspense**, *n.* ଅନିଶ୍ଚିତତା, ସଂଶୟ, ଦୋଳାୟମାନ ଅବସ୍ଥା ।
**Suspension**, *n.* ସାମୟିକ ପଦଚ୍ୟୁତି, ନିବୃତ୍ତି, ଝୁଲିବା ଅବସ୍ଥା ।
**Suspicion**, *n.* ଅବିଶ୍ୱାସ, ସନ୍ଦେହ, ସଂଶୟ, ଆଶଙ୍କା । [ ଜନକ, ଶଙ୍କିତ ।
**Suspicious**, *n.* ସଂଶୟୀ, ସନ୍ଦେହ-
**Sustain**, *v.* ବହନ କରିବା, ସହିବା, ସମର୍ଥନ କରିବା, ପୋଷଣ କରିବା ।
**Sustenance**, *n.* ଜୀବନୋପାୟ, ବୃତ୍ତି, ଆହାର, ପୋଷଣ ।
**Suzerain**, *n.* ଅଧୀଶ୍ୱର, ଅଧିପତି ।
**Suzerainty**, *n.* ଆଧିପତ୍ୟ, ପ୍ରଭୁତ୍ୱ ।
**Swaddle**, *v.* ବସ୍ତ୍ରଦ୍ୱାରା ଆବୃତ କରିବା ।
**Swagger**, *v.* ଗର୍ବ କରିବା, ଆସ୍ଫାଳନ କରିବା; *n.* ଦମ୍ଭୋକ୍ତି ।

**Swain**, *n.* କୃଷକ, ଗ୍ରାମ୍ୟଲୋକ, ପ୍ରେମୀ ।
**Swallow**, *v.* ଗ୍ରାସ କରିବା, ଗିଳିବା; *n.* ପକ୍ଷୀବିଶେଷ । [ ସନ୍ତସନ୍ତିଆ ସ୍ଥାନ ।
**Swamp**, *n.* କଚ୍ଛଭୂମି, ଅନୂପ ପ୍ରଦେଶ,
**Swampy**, *a.* ସନ୍ତସନ୍ତିଆ, ଆର୍ଦ୍ର ।
**Swan**, *n.* ମରାଳ, ରାଜହଂସ ।
**Sward**, *n.* ତୃଣଭୂମି, ତୃଣପ୍ରାନ୍ତର, ଘାସପଡ଼ିଆ । [ ଦଳ; *v.* ଦଳବଦ୍ଧ ହେବା ।
**Swarm**, *n.* (କୀଟପତଙ୍ଗାଦିର) ଦଳ,
**Swarthy**, *a.* କୃଷ୍ଣବର୍ଣ୍ଣ । [ ବାନ୍ଧିବା ।
**Swathe**, *n.* କନାପଟି; *v.* କନାପଟି
**Sway**, *v.* ଦୋଳାୟିତ ହେବା ବା କରିବା, ପ୍ରବର୍ତ୍ତାଇବା, ଶାସନ କରିବା; *n.* ରାଜତ୍ୱ, ଶାସନ, ପ୍ରଭୁତ୍ୱ, ଆଧିପତ୍ୟ ।
**Swear**, *v.* ଶପଥ କରିବା ବା କରାଇବା, ଅଭିଶାପ ଦେବା । [ *v.* ସ୍ୱେଦ ବହିବା ।
**Sweat**, *n.* ଘର୍ମ, ସ୍ୱେଦ, ଝାଳ;
**Sweaty**, *a.* ଘର୍ମାକ୍ତ, ଝାଳରେ ବୁଡ଼ିଥିବା
**Sweep**, *v.* ଝାଡ଼ୁ କରିବା, ପ୍ରବଳ ବେଗରେ ବହିବା ।
**Sweeper**, *n.* ଝାଡ଼ୁଦାର, ମେହେନ୍ତର ।
**Sweeping**, *a.* ବ୍ୟାପକ ।
**Sweepings**, *n.* (*pl.*) ମଇଳା, ଅସକର, ଝାଡ଼ୁଆ । [ ପ୍ରୀତିପ୍ରଦ ।
**Sweet**, *n.* ମଧୁର, ମନୋରମ, ଲଳିତ,
**Sweeten**, *v.* ମଧୁର କରିବା, ସୁମିଷ୍ଟ କରିବା । [ ପ୍ରେମିକା ।
**Sweetheart**, *n.* ପ୍ରେମିକ ବା

Sweetly, *ad.* ମଧୁରଭାବରେ, ସୁନ୍ଦର ଭାବରେ । [ ମିଠେଇ ।
Sweetmeat, *n.* ମିଷ୍ଟାନ୍ନ, ମୋଦକ,
Sweetness, *n.* ମଧୁରତା, ମାଧୁର୍ଯ୍ୟ, ସ୍ୱାଦୁଗୁଣ । [ ବୃଦ୍ଧି ।
Swell, *v.* ଫୁଲିବା, ବଢ଼ିବା; *n.* ସ୍ଫୀତ,
Swelling, *n.* ସ୍ଫୀତ, ଫୁଲା ।
Swelter, *v.* ଘର୍ମରେ ଅଭିଭୂତ ହେବା, ଝାଳ ଗମ୍‌ଗମ୍ ହେବା ।
Swerve, *v.* ଗନ୍ତବ୍ୟପଥ ତ୍ୟାଗ କରିବା, ପୂର୍ବ ପନ୍ଥା ଛାଡ଼ିବା, ବାଟ ଭାଙ୍ଗିବା ।
Swift, *a.* ଦ୍ରୁତଗାମୀ, ବେଗବାନ୍, ତ୍ୱରିତ । [ ସନ୍ତର ।
Swiftly, *ad.* ଦ୍ରୁତବେଗରେ, ଶୀଘ୍ର,
Swiftness, *n.* ବେଗ, ଶୀଘ୍ରତା, ତ୍ୱରା ।
Swim, *v.* ସନ୍ତରଣ କରିବା, ପହଁରିବା; *n.* ସନ୍ତରଣ, ପହଁରା । [ପହଁରିବା ଲୋକ ।
Swimmer, *n.* ସନ୍ତରଣକାରୀ,
Swimming, *n.* ସନ୍ତରଣ, ପହଁରା ।
Swindle, *v.* ଠକିବା, ଜୁଆଚୋରି କରିବା । [ ପ୍ରତାରକ ।
Swindler, *n.* ଠକ, ଜୁଆଚୋର,
Swine, *n.* ଘୁଷୁରି, ଶୂକର, ବରାହ ।
Swineherd, *n.* ଘୁଷୁରିଆ, ଶୂକରପାଳକ । [ ଝୁଲିବା; *n.* ଝୁଲଣ, ଦୋଳି ।
Swing, *v.* ଦୋଳାୟମାନ ହେବା,
Swinish, *a.* ଘୁଷୁରିଭଳି, ଶୂକରତୁଲ୍ୟ ।

Switch, *v.* ଚାବୁକ ବା ଛଡ଼ିରେ ପିଟିବା; *n.* ବିଦ୍ୟୁତ୍‌ଯନ୍ତ୍ରର ନିୟାମକ ବୋତାମ, ଚାବୁକ, ଛଡ଼ି ।
Switch on, *v.* ବିଦ୍ୟୁତ୍‌ଯନ୍ତ୍ରର ବୋତାମ ଟିପି ବୈଦ୍ୟୁତିକ ପ୍ରବାହର ସଂଯୋଗ କରିବା ।
Switch off, *v.* ବିଦ୍ୟୁତ୍‌ଯନ୍ତ୍ରର ବୋତାମ ଟିପି ବୈଦ୍ୟୁତିକ ପ୍ରବାହ ବିଚ୍ଛିନ୍ନ କରିବା । [ ମୋହ ।
Swoon, *v.* ମୂର୍ଚ୍ଛିତ ହେବା; *n.* ମୂର୍ଚ୍ଛା,
Swoop, *v.* ଝାମ୍ପିବା; *n.* ଝାମ୍ପ ।
Sword, *n.* ଅସି, ଖଡ୍‌ଗ, ତରବାରି ।
Swordsman, *n.* ଅସିଚାଳକ ଯୋଦ୍ଧା । [ ଖୋସାମତ ।
Sycophancy, *n.* ଚାଟୁବୃତ୍ତି,
Sycophant, *n.* ଚାଟୁକାର, ଖୋସାମତିଆ ।
Syllable, *n.* ପଦାଂଶ ।
Syllabus, *n.* ପାଠ୍ୟନିର୍ଘଣ୍ଟ, ପାଠ୍ୟକ୍ରମ (*pl.* Syllabi) ।
Syllogism, *n.* ନ୍ୟାୟ, ନ୍ୟାୟଶାସ୍ତ୍ରାନୁମୋଦିତ ପୂର୍ବପକ୍ଷ, ଉତ୍ତରପକ୍ଷ ଓ ସିଦ୍ଧାନ୍ତ ଏହି ତିନି ଅଂଶସମ୍ବଳିତ ତର୍କ ।
Sylph, *n.* ବିଦ୍ୟାଧରୀ, ଅପ୍‌ସରୀ ।
Sylvan, *a.* ଆରଣ୍ୟକ, ବନ୍ୟ ।
Symbol, *n.* ଚିହ୍ନ, ସଙ୍କେତ, ନିଦର୍ଶନ ।
Symbolic, Symbolical, *a.* ସାଙ୍କେତିକ, ଲାକ୍ଷଣିକ, ନିଦର୍ଶନରୂପେ ଚିହ୍ନିତ ।

**Symbolise,** *v.* ସଙ୍କେତଦ୍ୱାରା ପ୍ରକାଶ କରିବା ।

**Symmetrical,** *a.* ଯଥାପରିମାଣ, ସୌଷ୍ଠବାନ୍ୱିତ, ଯଥାନୁପାତବିଶିଷ୍ଟ ।

**Symmetry,** *n.* ସୌଷ୍ଠବ, ଯଥାନୁପାତ

**Sympathetic, Sympathetical,** *a.* ସହୃଦୟ, ସହାନୁଭୂତଶୀଳ ।

**Sympathise,** *v.* ସହାନୁଭୂତ ପ୍ରକାଶ କରିବା, ସମଦୁଃଖୀ ହେବା ।

**Sympathy,** *n.* ସହୃଦୟତା, ସହାନୁଭୂତ, ସମ୍ବେଦନଶୀଳତା ।

**Symphony,** *n.* ସ୍ୱରର ଐକ୍ୟ ।

**Symposium,** *n.* ଗୋଷ୍ଠୀଗତ ପାନ, ଭୋଜନ ବା ଆଲୋଚନା ।

**Symptom,** *n.* ଲକ୍ଷଣ, ଚିହ୍ନ, ସଙ୍କେତ, ଉପସର୍ଗ । [ ଉପସର୍ଗ ସମ୍ବନ୍ଧୀୟ ।

**Symptomatic,** *a.* ଲକ୍ଷଣିକ,

**Synagogue,** *n.* ଭଜନାଳୟ, ମନ୍ଦିର ।

**Synchronise,** *v.* ଏକକାଳରେ ଘଟିବା, ସମକାଳୀନ ହେବା ।

**Synchronism,** *n.* ସମକାଳୀନତା ।

**Syndicate,** *n.* ବିଶ୍ୱବିଦ୍ୟାଳୟର କାର୍ଯ୍ୟକାରୀ ସଭା, ସମାନଉଦ୍ଦେଶ୍ୟବିଶିଷ୍ଟ ବ୍ୟକ୍ତିମାନଙ୍କର ସମିତ । [ ବୋଧକ ଶବ୍ଦ ।

**Synonym,** *n.* ପ୍ରତିଶବ୍ଦ, ଏକାର୍ଥ-

**Synonymous,** *a.* ଏକାର୍ଥବୋଧକ, ତୁଲ୍ୟାର୍ଥକ, ସମାନ ଅର୍ଥପ୍ରକାଶକ ।

**Synopsis,** *n.* ସାରସଂଗ୍ରହ,ସଂକ୍ଷିପ୍ତସାର ।

**Syntax,** *n.* ପଦଯୋଜନା, ବାକ୍ୟରଚନାବିଧିର ।

**Synthesis,** *n.* ସଂଶ୍ଳେଷଣ, ସଙ୍କଳନ, ଯୋଗକରଣ (*opp.* Analysis) ।

**Synthetic, Synthetical,** *a.* କୃତ୍ରିମ ଉପାୟରେ ପ୍ରସ୍ତୁତ, ସଂଶ୍ଳେଷଣ-ସମ୍ବନ୍ଧୀୟ ।

**Syphilis,** *n.* ଉପଦଂଶ ରୋଗ ।

**Syphon, Siphon,** *n.* ଏକ ପାତ୍ରରୁ ଅନ୍ୟ ପାତ୍ରକୁ ତରଳଦ୍ରବ୍ୟ ଆକର୍ଷଣ କରି ନେବାପାଇଁ ବକ୍ରଯନ୍ତ୍ରବିଶେଷ; *v.* ବକ୍ରଯନ୍ତ୍ର ଦ୍ୱାରା ଏକ ପାତ୍ରରୁ ଅନ୍ୟ ପାତ୍ରକୁ ତରଳ ଦ୍ରବ୍ୟ ନେବା ।

**Syren, Siren,** *n.* ବିପଦସୂଚକ ଧ୍ୱନି, ସତର୍କଘଣ୍ଟି, ମାୟାବିନୀ ରମଣୀ । [ ଦେବା

**Syringe,** *n.* ପିଚକାରି; *v.* ପିଚକାରି

**Syrup,** *n.* ସିରା, ଚିନିମିଶ୍ରିତ ଫଳରସ ।

**System,** *n.* ଶୃଙ୍ଖଳା, ପ୍ରଣାଳୀ, ପଦ୍ଧତି, ରୀତି ।

**Systematic,Systematical,** *a.* ଶୃଙ୍ଖଳାବଦ୍ଧ, ବିଧିସଙ୍ଗତ, ଯଥାକ୍ରମ ।

**Systematisation, Systematization,** *n.* ଶୃଙ୍ଖଳାବଦ୍ଧକରଣ, ସୁବ୍ୟବସ୍ଥା ।

**Systematise,Systematize,** *v.* ଶୃଙ୍ଖଳିତ କରିବା, ବ୍ୟବସ୍ଥିତ କରିବା ।

**Sythe, Scythe,** *n.* ଦାଆ, ଶସ୍ୟ କାଟିବାର ହତିଆର ।

# T

**Tab**, *n.* ଅନ୍ୟ ପଦାର୍ଥରେ ଲଗିଥିବା ଛୋଟ ଫିତା, ମେଲ ।

**Tabby**, *n.* ମାଇ ବିଲେଇ, ମୋଟ ରେଶମୀ ବସ୍ତ୍ର; *a.* ଚିକ୍‌ବିଚିତ୍ର; *v.* ତରଙ୍ଗାଙ୍କିତ କରିବା ।

**Tabernacle**, *n.* ପଟମଣ୍ଡପ, ଅସ୍ଥାୟୀ ଆବାସ; *v.* ବିଦେଶ କରିବା ।

**Table**, *n.* ମଞ୍ଚ, ମେଜ, ଟେବୁଲ, ତାଲିକା, ନିର୍ଘଣ୍ଟ; *v.* ନିର୍ଘଣ୍ଟ ପ୍ରସ୍ତୁତ କରିବା । [ ପ୍ରତିକୃତି ।

**Tableau**, *n.* ଚିତ୍ର, ହୃଦୟଗ୍ରାହୀ

**Table-cloth**, *n.* ଟେବୁଲର ଆଚ୍ଛାଦନବସ୍ତ୍ର ।

**Tableland**, *n.* ଅଧିତ୍ୟକା, ଉଚ୍ଚଭୂମି ।

**Table-spoon**, *n.* ଖାଇବାରେ ବ୍ୟବହୃତ ବଡ଼ ଚାମଚ ।

**Tablet**, *n.* କାଠ, ପଥର ବା ଧାତୁର ଫଳକ, ବଟିକା । [ ଆଳାପ ।

**Table-talk**, *n.* ଭୋଜନକାଳୀନ

**Taboo**, *n.* ନିଷିଦ୍ଧ ବା ଅପବିତ୍ର ବସ୍ତୁ, ନିଷେଧ; *v.* ନିଷେଧ କରିବା ।

**Tabor, Tabour**, *n.* ମୁରଜ, ମୃଦଙ୍ଗ, ଢୋଲ । [ ଆକାରରେ ସଜ୍ଜିତ ।

**Tabular**, *a.* ଶ୍ରେଣୀବଦ୍ଧ, ଧାଡ଼ି

**Tabulate**, *v.* ଧାଡ଼ି ଆକାରରେ ସଜାଇବା, ତାଲିକା କରିବା ।

**Tabulator**, *n.* ଯେ ତାଲିକା କରନ୍ତି, ଯେ ଧାଡ଼ି ଆକାରରେ ସଜାନ୍ତି ।

**Tacit**, *a.* ମୌନ, ଅବ୍ୟକ୍ତ, ଉହ୍ୟ, ଅପ୍ରକାଶିତ । [ ଅବ୍ୟକ୍ତଭାବରେ ।

**Tacitly**, *ad.* ମୌନ ସ୍ୱୀକୃତିପୂର୍ବକ,

**Taciturn**, *a.* ମୌନାବଲମ୍ବୀ, ନୀରବ, ମିତଭାଷୀ । [ ନୀରବତା ।

**Taciturnity**, *n.* ମୌନାବସ୍ଥା,

**Tack**, *n.* ଛୋଟ ଛିଦ୍ରକଣ୍ଟା, ଲମ୍ବା ଟାଙ୍କ ସିଲେଇ; *v.* ଟାଙ୍କ ସିଲେଇ କରିବା, ଜାହାଜର ଗତିପଥ ଫେରାଇବା ।

**Tackle**, *v.* ସମସ୍ୟାର ସମ୍ମୁଖୀନ ହେବା, ଧସ୍ତାଧସ୍ତି ହେବା; *n.* ଜାହାଜର ରଜ୍ଜୁ ଆଦି ।

**Tact**, *n.* କୌଶଳ, ଚତୁରତା, ନୈପୁଣ୍ୟ, ଦକ୍ଷତା । [ ନିପୁଣ ।

**Tactful**, *a.* କୌଶଳୀ, ଚତୁର,

**Tactfully**, *ad* ଚତୁରତା ସହକାରେ ।

**Tactical**, *a.* ଚତୁରତାଗତ, ରଣଚାତୁରୀ ବିଷୟକ । [ ବ୍ୟୂହପଣ୍ଡିତ ।

**Tactician**, *n.* ରଣକୁଶଳ ବ୍ୟକ୍ତି,

**Tactics**, *n.* (*pl.*) କର୍ମକୁଶଳତା, ରଣଚାତୁରୀ ।

**Tadpole**, *n.* ବେଙ୍ଗଫୁଲ ।

**Tag**, *n.* ପ୍ରାନ୍ତରେ ଧାତୁଖଣ୍ଡଯୁକ୍ତ ଫିତା, ସଂଯୁକ୍ତ ବସ୍ତୁ; *v.* ସଂଯୋଗ କରିବା ।

**Tail**, *n.* ଲାଙ୍ଗୁଳ, ଲାଞ୍ଜ, ପୁଚ୍ଛ ।

**Tailor**, *n.* ଦରଜି, ସୂଚୀକର୍ମକାର ।
**Taint**, *n.* କଳଙ୍କ, ଦୋଷ; *v.* କଳଙ୍କିତ
କରିବା । [ ବନ୍ଧନ କରିବା ।
**Take**, *v.* ଗ୍ରହଣ କରିବା, ନେବା,
**Take away**, *v.* ଅପହରଣ କରିବା,
ଦୂର କରିବା । [ ନିମ୍ନକୁ ନେବା ।
**Take down**, *v.* ଲେଖି ରଖିବା,
**Take effect**, *v.* ସଫଳ ହେବା,
କାର୍ଯ୍ୟକାରୀ ହେବା । [ କରିବା ।
**Take exception**, *v.* ଆପତ୍ତି
**Take for**, *v.* ମନେ କରିବା ।
**Take heed**, *v.* ସାବଧାନ ହେବା ।
**Take in**, *v.* ଗ୍ରହଣ କରିବା, ଭଳିଯିବା,
ଠକିବା । [ ଉନ୍ମୋଚନ କରିବା ।
**Take off**, *v.* ଅପନୀତ କରିବା,
**Take out**, *v.* ବାହାରକୁ ନେବା ।
**Take steps**, *v.* ପ୍ରତିକାର କରିବା ।
**Take to**, *v.* ଉଦ୍ୟତ ହେବା, ଅବଲମ୍ବନ
କରିବା । [ ନିଯୁକ୍ତ ରହିବା ।
**Take up**, *v.* ଉତ୍ତୋଳନ କରିବା,
**Tale**, *n.* ଗଳ୍ପ, ବିବରଣ, କଥା, ଆଖ୍ୟାନ ।
**Tale-bearer**, *n.* କର୍ଣ୍ଣେଜପ, କାନ-
କୁହା, ଖଚୁଆ । [ ତୀକ୍ଷ୍ଣ ବୁଦ୍ଧି, ଧୀଶକ୍ତି ।
**Talent**, *n.* ଉଚ୍ଚ ମନୋବୃତ୍ତି, ପ୍ରତିଭା,
**Talented**, *a.* ପ୍ରତିଭାଶାଳୀ, ଧୀମାନ୍,
ତୀକ୍ଷ୍ଣବୁଦ୍ଧିସମ୍ପନ୍ନ । [ କବଚ ।
**Talisman**, *n.* ତାବିଜ, ତେଉଁରିଆ,
**Talk**, *v.* କହିବା, କଥାବାର୍ତ୍ତା କରିବା;
*n.* କଥା, ଭାଷଣ, ଆଳାପ । [ କୁହାକହି
**Talkative**, *a.* ବହୁଭାଷୀ, ଗପଡ଼ି
**Talkies**, *n.* ସବାକ୍ ଚଳଚ୍ଚିତ୍ର ।
**Tall**, *a.* ତୁଙ୍ଗ, ଉଚ୍ଚ, ଡେଙ୍ଗା, ବଡ଼ ।
**Tallness**, *n.* ଉଚ୍ଚତା, ଦୀର୍ଘତା ।
**Tallow**, *n.* ବସା, ଚର୍ବି ।
**Tally**, *v.* ମେଳ ଖାଇବା, ଅନୁରୂପ
ହେବା; *n.* ହିସାବର ମେଳ ।
**Talon**, *n.* ଶିକାରୀ ପକ୍ଷୀର ନଖ ।
**Tamable, Tameable**, *a.*
ପୋଷିବାର ଯୋଗ୍ୟ ।
**Tamarind**, *n.* ତେନ୍ତୁଳି, କଇଁଆ ।
**Tame**, *a.* ପୋଷା, ପାଳିତ, ନିରୀହ;
*v.* ପୋଷିବା, ପାଳିବା, ବଶ କରିବା ।
**Tamely**, *ad.* ବଶ୍ୟଭାବରେ,
କାପୁରୁଷଭଳି । [ ନିରୀହତା
**Tameness**, *n.* ବଶତା, କାପୁରୁଷତା,
**Tamper**, *v.* ଅଯଥା ହସ୍ତକ୍ଷେପ କରିବା,
ଗୋପନରେ ଅପବ୍ୟବହାର କରିବା ।
**Tan**, *n.* ତାମ୍ରବର୍ଣ୍ଣ, ଚମଡ଼ା କଷ
କରିବାର ଏକ ପ୍ରକାର ରଙ୍ଗ; *v.* ଚମଡ଼ା
କଷ କରିବା, ତାମ୍ରବର୍ଣ୍ଣ କରିବା ।
**Tangent**, *n.* ସ୍ପର୍ଶକ, ବୃତ୍ତକୁ ଏକମାତ୍ର
ବିନ୍ଦୁରେ ସ୍ପର୍ଶ କରୁଥିବା ସରଳରେଖା ।
**Tangibility**, *n.* ସ୍ପର୍ଶବେଦ୍ୟତା,
ସୁସ୍ପଷ୍ଟତା । [ ଅନୁଭବନୀୟ, ବାସ୍ତବ ।
**Tangible**, *a.* ସୁସ୍ପଷ୍ଟ, ସ୍ପର୍ଶବେଦ୍ୟ,

**Tangibly**, *ad.* ସୁସ୍ପଷ୍ଟଭାବରେ ।
**Tangle**, *n.* ଜଟିଳ ପଣ୍ଡିତ; *v.* ଜଡ଼ିତ କରିବା ।
**Tangled**, *a.* ଜଟିଳ, ସମାକୁଳ ।
**Tank**, *n.* ପୁଷ୍କରିଣୀ, ଜଳାଶୟ, ଯୁଦ୍ଧରେ ବ୍ୟବହୃତ ସଶସ୍ତ୍ର ମୋଟର ଗାଡ଼ିବିଶେଷ ।
**Tankard**, *n.* ଆବରଣବିଶିଷ୍ଟ ପାନପାତ୍ର ।
**Tanker**, *n.* ତୈଳବାହୀ ଜାହାଜ ।
**Tanner**, *n.* ଚର୍ମକାର, ଚର୍ମଶୋଧନକାର
**Tannery**, *n.* ଚମଡ଼ା କାରଖାନା ।
**Tantalise**, *v.* ବିଡ଼ମ୍ବିତ କରିବା, ଆଶା ଦେଖାଇ ପ୍ରତାରଣ କରିବା । [ ତୁଲ୍ୟାର୍ଥକ ।
**Tantamount**, *a.* ସମମୂଲ୍ୟ, ସମାନ,
**Tantrum**, *n.* ବିନାକାରଣରେ କ୍ରୋଧର ଆବେଶ ।
**Tap**, *n.* ପାଣିକଳର ଠିପି; *v.* ଧୀରେ ଧୀରେ ଆଘାତ କରିବା, ଛିଦ୍ର କରିବା ।
**Tape**, *n.* ସରୁ ଫିତା, ମାପିବାର ଫିତା ।
**Taper**, *n.* କ୍ଷୁଦ୍ର ମହମବତୀ; *v.* କ୍ରମଶଃ ସୂକ୍ଷ୍ମ ହେବା ।
**Tapering**, *a.* କ୍ରମସୂକ୍ଷ୍ମ, ଗୋଜିଆ ।
**Tapestry**, *n.* କାରୁଗିରିବିଶିଷ୍ଟ କନା, ଚିତ୍ରିତ ପରଦା, ଗିଲ୍ପ ଆ ପ୍ରଭୃତି ।
**Tape-worm**, *n.* ଫିତାକୃମି, ଅନ୍ତ୍ରକୀଟ । [ ଦ୍ରବ୍ୟ ବିଶେଷ ।
**Tapioca**, *n.* ସାଗୁଦାନା ଭଳି ଖାଦ୍ୟ-
**Tar**, *n.* ଅଲକାତରା; *v.* ଅଲକାତରା ବୋଳିବା ।
**Tardily**, *ad.* ଧୀରେ ଧୀରେ, ଅଳସ ଭାବରେ । [ ଅଳସୁଆ ।
**Tardy**, *a.* ମନ୍ଥର, ଦୀର୍ଘସୂତ୍ରୀ, ମଠୁଆ,
**Tare**, *n.* ମାଲବାହୀ ଗାଡ଼ି, ଜାହାଜ ପ୍ରଭୃତିର ଓଜନ, ଯହିଁରେ ମାଲ ରଖି ଓଜନ କରାଯାଏ, ସେଥିପାଇଁ ଛାଡ଼ ।
**Target**, *n.* ଲକ୍ଷ୍ୟ, ଲକ୍ଷ୍ୟସ୍ଥଳ, ଚାନ୍ଦମାରି, ଗ୍ରେଟ ଢାଲ । [ ଶୁଳ୍କ ।
**Tariff**, *n.* ଶୁଳ୍କ, ପଣ୍ୟକର, ବାଣିଜ୍ୟ-
**Tarnish**, *v.* ଦୋଷଯୁକ୍ତ କରିବା, କଳଙ୍କିତ କରିବା ।
**Tarpaulin**, *n.* ଜଳରୋଧକ ବସ୍ତ୍ର ।
**Tarry**, *v.* ବିଳମ୍ବ କରିବା, ଅପେକ୍ଷା କରିବା ।
**Tart**, *n.* ଅମ୍ଳ, ଚଟଣି, ଖଟା ।
**Task**, *n.* କାର୍ଯ୍ୟ, କର୍ତ୍ତବ୍ୟ, କର୍ମଭାର; *v.* କାର୍ଯ୍ୟଭାର ନ୍ୟସ୍ତ କରିବା, କାର୍ଯ୍ୟରେ ନିଯୁକ୍ତ ରଖିବା ।
**Taskmaster**, *n.* ଯେ କାର୍ଯ୍ୟ ଆଦାୟ କରନ୍ତି, କର୍ମର ନିର୍ଦ୍ଦେଶକ ।
**Tassel**, *n.* ପାଟସୂତାର ଗୁଚ୍ଛ, ଥୋପା ।
**Taste**, *n.* ଆସ୍ୱାଦ, ରସ, ରୁଚି; *v.* ଆସ୍ୱାଦନ କରିବା, ଚାଖିବା । [ ସରସ ।
**Tasteful**, *a.* ସ୍ୱାଦୁ, ରୁଚିକର, ମିଷ୍ଟ,
**Tastefully**, *ad.* ସୁରୁଚି ସହକାରେ, ସୁସ୍ୱାଦୁରୂପେ । [ ରସହୀନ ।
**Tasteless**, *a.* ବିସ୍ୱାଦ, ଅରୁଚିକର,
**Tasty**, *a.* ସ୍ୱାଦୁ, ରୁଚିକର, ପସନ୍ଦଯୋଗ୍ୟ ।

**Tatter,** *n.* ଛିଣ୍ଡାକନା, ଜୀର୍ଣ୍ଣବସ୍ତ୍ର; *v.* ଚିକ ଚିକ କରିବା ।

**Tattered,** *a.* ଜୀର୍ଣ୍ଣ, ଜର୍ଜରିତ ।

**Tattle,** *v.* ବୃଥା ଗଳ୍ପ କରିବା; *n.* ବୃଥାଗଳ୍ପ । [ ଗପୁଡ଼ି ।

**Tattler,** *n.* ବାବଦୂକ, ବହୁଭାଷୀ,

**Tatoo,** *n.* ଚିତା; *v.* ଦେହରେ ଚିତା କୁଟିବା ।

**Taunt,** *v.* ଆକ୍ଷେପ କରିବା, ଉପହାସ କରିବା; *n.* ଅଣ୍ଟା, ଉପହାସ, ଭର୍ତ୍ସନା ।

**Taunting,** *a.* ସାକ୍ଷେପ, ଉପହାସପୂର୍ଣ୍ଣ ।

**Taurus,** *n.* ବୃଷରାଶି ।

**Tautological, Tautologous,** *a.* ପୁନରୁକ୍ତ, ବାରମ୍ବାର କଥିତ ।

**Tautology,** *n.* ପୁନରୁକ୍ତି, ଦ୍ୱିରୁକ୍ତି ।

**Tavern,** *n.* ମଦ୍ୟଶାଳା, ପଥିକାଶ୍ରମ, ଚଟିଘର । [ ଚକ୍‌ଚକିଆ ।

**Tawdry,** *a.* ବାହାରୁ ସୁନ୍ଦର,

**Tawny,** *a.* ପିଙ୍ଗଳ, ପାଣ୍ଡୁର ।

**Tax,** *n.* କର, ଶୁଳ୍କ, ରାଜସ୍ୱ; *v.* କର ବସାଇବା, ନିନ୍ଦା କରିବା । [ ଯୋଗ୍ୟ ।

**Taxable,** *a.* କର ଧାର୍ଯ୍ୟ କରିବାର

**Taxation,** *n.* କର ନିର୍ଦ୍ଧାରଣ, ଶୁଳ୍କନିରୂପଣ ।

**Taxi,** *n.* ଭଡ଼ା ମୋଟର ଗାଡ଼ି ।

**Taxidermy,** *n.* ମୃତ ପଶୁର ଚର୍ମରେ ଅନ୍ୟ ଜିନିଷ ଭର୍ତ୍ତି କରି ଜୀବନ୍ତ ପଶୁପରି କରିବା କୌଶଳ ।

**Tax-payer,** *n.* କରଦାତା ।

**Tea,** *n.* ଚାହାପତ୍ର, ପିଇବାର ଚାହା ।

**Teach,** *v.* ଅଧ୍ୟାପନା କରିବା, ଶିକ୍ଷା ଦେବା, ପଢ଼ାଇବା । [ ଆଚାର୍ଯ୍ୟ,ଉପଦେଷ୍ଟା ।

**Teacher,** *n.* ଶିକ୍ଷକ, ଅଧ୍ୟାପକ,

**Teachership,** *n.* ଶିକ୍ଷକତା, ଅଧ୍ୟାପକତ୍ୱ । [ ଉପଦେଶ ।

**Teaching,** *n.* ଶିକ୍ଷାଦାନ, ଅଧ୍ୟାପନା,

**Tea-cup,** *n.* ଚାହାପିଆଲି, ଚାହାପାତ୍ର ।

**Teak,** *n.* ଶାଗୁଆନ ଗଛ ଓ ତାର କାଠ ।

**Team,** *n.* ଯୋଡ଼ି, ଦଳ, ସଙ୍ଘ ।

**Tea-pot,** *n.* ଚାହା ପାତ୍ର ।

**Teapoy,** *n.* ତ୍ରିପଦୀ, କ୍ଷୁଦ୍ର ମେଜ ।

**Tear,** *n.* ଅଶ୍ରୁ, ନେତ୍ରଜଳ, ଲୁହ; *v.* ବିଦାରଣ କରିବା, ଚିରିବା, ଛିଣ୍ଡାଇବା ।

**Tearful,** *a.* ସାଶ୍ରୁ, ନେତ୍ରଜଳପୂର୍ଣ୍ଣ, ଅଶ୍ରୁପରିପ୍ଲୁତ ।

**Tear-gas,** *n.* ଲୁହବୁହା ଗ୍ୟାସ ।

**Tease,** *v.* ବିରକ୍ତ କରିବା, ପୀଡ଼ା ଦେବା

**Tea-set,** *n.* ଚାହା ପରିବେଷଣର ସାମଗ୍ରୀ । [ ପରିମାଣ ।

**Teaspoonful,** *n.* ଚାହାଚାମଚ

**Teat,** *n.* ଚୂଚୁକ, ସ୍ତନର ଅଗ୍ରଭାଗ ।

**Technic, Technical,** *a.* ପାରିଭାଷିକ, ଶିଳ୍ପବିଦ୍ୟାବିଷୟକ ।

**Technician,** *n.* ଶିଳ୍ପବିଦ୍, କାରିଗର, ଶିଳ୍ପୀ ।

Technique, *n.* ଶିଳ୍ପକୌଶଳ, କୌଣସି ଶିଳ୍ପ ବିଷୟରେ ବିଶିଷ୍ଟ ଜ୍ଞାନ ।

Technological, *a.* ଶିଳ୍ପବିଜ୍ଞାନ-ସଙ୍କ୍ରାନ୍ତ । [ ନିପୁଣ ବ୍ୟକ୍ତି ।

Technologist, *n.* ଶିଳ୍ପବିଦ୍ୟାରେ

Technology, *n.* ଶିଳ୍ପବିଜ୍ଞାନ, ଶିଳ୍ପଶାଳା, ପରିଭାଷା । [ ଅବସାଦକର ।

Tedious, *a.* ଅତିଦୀର୍ଘ, କ୍ଲାନ୍ତିଜନକ,

Tediousness, *n.* ଶ୍ରମାବହତା, ଅବସାଦ ।

Tedium, *n.* କ୍ଲାନ୍ତି, ଅବସାଦ ।

Teem, *v.* ଫଳ ଉତ୍ପାଦନ କରିବା, ପରିପୂର୍ଣ୍ଣ ହେବା ।

Teeming, *a.* ପରିପୂର୍ଣ୍ଣ, ବହୁଳ, ପ୍ରଚୁର ।

Teens, *n.* (*pl.*) ୧୩ ଠାରୁ ୧୯ ବର୍ଷ ବୟସ ।

Teething, *n.* ପ୍ରଥମ ଦନ୍ତୋଦ୍‌ଗମ ।

Teetotaler, Teetotaller, *n.* ମଦ୍ୟପାନରୁ ବିରତ ବ୍ୟକ୍ତି ।

Telegram, *n.* ବିଦ୍ୟୁତ୍‌ପ୍ରେରିତ ବାର୍ତ୍ତା, ତାରସମ୍ବାଦ ।

Telegraph, *n.* ବିଦ୍ୟୁଦ୍‌ବାର୍ତ୍ତାବହ ଯନ୍ତ୍ର; *v.* ଉକ୍ତ ଯନ୍ତ୍ରରେ ସମ୍ବାଦ ପଠାଇବା

Telegraphic, Telegraphical, *a.* ତାରବାର୍ତ୍ତା ସମ୍ବନ୍ଧୀୟ ।

Telegraphist, *n.* ବୈଦ୍ୟୁତିକ ବାର୍ତ୍ତାବହ ଯନ୍ତ୍ରର ଚାଳକ ।

Telegraphy, *n.* ତାରବାର୍ତ୍ତା ପ୍ରେରଣ ଓ ଗ୍ରହଣ ବିଦ୍ୟା ।

Telepathy, *n.* ଇନ୍ଦ୍ରିୟାତୀତ ଶକ୍ତି ଦ୍ୱାରା ଦୂରସ୍ଥିତ ଦୁଇ ବ୍ୟକ୍ତି ମଧ୍ୟରେ ମନୋଭାବର ବିନିମୟ ।

Telephone, *n.* ଦୂରଭାଷଣ ଓ ଦୂରଶ୍ରବଣ ଯନ୍ତ୍ର; *v.* ଉକ୍ତ ଯନ୍ତ୍ରଦ୍ୱାରା ଦୂରରୁ କହିବା । [ ଶ୍ରବଣ ଯନ୍ତ୍ର ସମ୍ବନ୍ଧୀୟ ।

Telephonic, *a.* ଦୂରଭାଷଣ ଓ ଦୂର-

Telephony, *n.* ଦୂରକୁ ଶବ୍ଦପ୍ରେରଣ ବିଦ୍ୟା ।

Teleprinter, *n.* ଦୂରମୁଦ୍ରକ, ଯେଉଁ ଯନ୍ତ୍ରଦ୍ୱାରା ଦୂର ସ୍ଥାନରୁ ଅକ୍ଷର ଛାପିହୁଏ ।

Telescope, *n.* ଦୂରବୀକ୍ଷଣ ଯନ୍ତ୍ର, ଦୂରଦର୍ଶନ ଯନ୍ତ୍ର ।

Telescopic, Telescopical, *a.* ଦୂରବୀକ୍ଷଣ ଯନ୍ତ୍ର ସମ୍ବନ୍ଧୀୟ ।

Television, *n.* ଯେଉଁ ଯନ୍ତ୍ରରେ ଦୂରସ୍ଥିତ ଚିତ୍ର ପ୍ରକୃତ ଦେଖିହୁଏ ।

Tell, *v.* କହିବା, ନିବେଦନ କରିବା, ଗଣିବା । [ ଖଚୁଆ ।

Tell-tale, *n.* ସୂଚକ, କାନକୁହା,

Temerity, *n.* ଦୁଃସାହସ, ଅବିମୃଷ୍ୟ-କାରିତା । [ ଅବିମୃଷ୍ୟକାରୀ, ଉଦ୍ଧତ ।

Temerous, *a.* ଦୁଃସାହସିକ,

**Temper**, *n.* ସ୍ୱଭାବ, ପ୍ରକୃତି, ମିଜାଜ; *v.* ମୃଦୁ କରିବା, ଶାନ୍ତ କରିବା, ସ୍ନିଗ୍ଧ କରିବା ।

**Temperament**, *n.* ପ୍ରକୃତି, ସ୍ୱଭାବ ।

**Temperamental**, *a.* ପ୍ରକୃତିଗତ, ମନୋବୃତ୍ତିବିଷୟକ ।

**Temperance**, *n.* ସଂଯମ, ନିୟମ, ମିତାହାର, ପାନଭୋଜନରେ ମିତାଚାର ।

**Temperate**, *a.* ଧୀର, ଅକୋପନ, ସଂଯତ, ମିତାଚାରୀ, ସମଶୀତୋଷ୍ଣ ।

**Temperature**, *n.* ତାପ ପରିମାଣ, ଶୀତାତପ ସମ୍ବନ୍ଧୀୟ ଅବସ୍ଥା ।

**Tempest**, *n.* ଝଟିକା, ଝଡ଼, ବାତ୍ୟା, ତୋଫାନ । [ ପ୍ରଚଣ୍ଡ, ଝଡ଼ପରି ।

**Tempestuous**, *a.* ଝଟିକାପୂର୍ଣ୍ଣ,

**Temple**, *n.* ଦେବାଳୟ, ଦେବମନ୍ଦିର, କପୋଳ ।

**Temporal**, *a.* ଐହିକ, ଲୌକିକ, ପାର୍ଥିବ, ସାଂସାରିକ, ଅଳ୍ପକାଳସ୍ଥାୟୀ ।

**Temporarily**, *ad.* ଅସ୍ଥାୟୀଭାବରେ, କିଛିକାଳ ପାଇଁ ।

**Temporary**, *a* ଅସ୍ଥାୟୀ, ଅଳ୍ପକାଳ ସ୍ଥାୟୀ, ଅନିତ୍ୟ, ସାମୟିକ, କ୍ଷଣିକ ।

**Temporise, Temporize**, *v.* ଦେଶକାଳାନୁଯାୟୀ କାର୍ଯ୍ୟ କରିବା ।

**Tempt**, *v.* ପ୍ରଲୋଭିତ କରିବା, ଭୁଲାଇବା । [ ଲାଲସା, ପ୍ରବର୍ତ୍ତନା ।

**Temptation**, *n.* ପ୍ରଲୋଭନ,

**Tempter**, *n.* ପ୍ରଲୋଭକ, ମୋହକାରକ । [ ଜନକ ।

**Tempting**, *a.* ବଶୀଭୂତକାରୀ, ଲୋଭ-

**Ten**, *a.* ଦଶସଂଖ୍ୟକ, ଦଶ ।

**Tenability**, *n.* ଯଥାର୍ଥତା, ସମର୍ଥନୀୟତା । [ ସମର୍ଥନୀୟ ।

**Tenable**, *a.* ରକ୍ଷଣୀୟ, ପ୍ରତିପାଦନୀୟ,

**Tenacious**, *a.* ସଂଲଗ୍ନଶୀଳ, ଦୃଢ଼, ଦୃଢ଼ସଂକଳ୍ପ । [ ନିବେଶ, ଦୃଢ଼ତା ।

**Tenacity**, *n.* ଧାରଣଶକ୍ତି, ଅଭି-

**Tenancy**, *n.* ରୟତି, ପ୍ରଜାର ସ୍ୱତ୍ୱ ।

**Tenant**, *n.* ରୟତ, ପ୍ରଜା, ଭଡ଼ାଟିଆ, ଅନ୍ୟର ଭୂମିର ଅଧିବାସୀ । [ ସମୂହ ।

**Tenantry**, *n.* ରୟତକୁଳ, ପ୍ରଜା-

**Tend**, *v.* ଜଗାରଖା କରିବା, କୌଣସି ଦିଗରେ ଚାଳିତ ହେବା, ପ୍ରବଣତା ପ୍ରକାଶ କରିବା । [ ପ୍ରବଣତା ।

**Tendency**, *n.* ପ୍ରବୃତ୍ତି, ସ୍ୱଭାବ,

**Tender**, *a.* ସୁକୁମାର, କୋମଳ; ନବୀନ; *v.* ଯାଚିବା, ନିବେଦନ କରିବା; *n.* ପ୍ରସ୍ତାବ । [ ସ୍ନେହସହକାରେ ।

**Tenderly**, *ad.* କୋମଳଭାବରେ,

**Tenderness**, *n.* କୋମଳତା, ଦୟା, ସ୍ନେହ । [ଅସ୍ଥି ସହିତ ସଂଯୁକ୍ତ କରୁଥିବା ତନ୍ତୁ

**Tendon**, *n.* ଶିରା, ସ୍ନାୟୁ, ପେଶୀକୁ

**Tendril**, *n.* ଅଙ୍କ, ଲତାକୁ ବାନ୍ଧିବା ସୂତାଭଳି ଗୋଡ଼ ।

**Tenement**, *n.* ପରିବାରର ଉପଯୋଗୀ ଗୃହ, ଆବାସ, ଭଡ଼ାଘର ।

**Tenet**, *n.* ମତ, ମତବାଦ, ନିଜର ପ୍ରତିଷ୍ଠିତ ବିଶ୍ୱାସ ।

**Tenfold**, *a.* ଦଶଗୁଣ, ଦଶପ୍ରସ୍ଥ ।

**Tennis**, *n.* ଏକ ପ୍ରକାର ପେଣ୍ଡୁ ଖେଳ, ଟେନିସ ଖେଳ । [ ପଡ଼ିଆ ।

**Tennis court**, *n.* ଟେନିସ ଖେଳର

**Tenor**, *n.* ଅଭିପ୍ରାୟ, ତାତ୍ପର୍ଯ୍ୟ, ଭାବଧାରା, ଅବସ୍ଥାର ଗତି ।

**Tense**, *n.* କ୍ରିୟାର କାଳ; *a.* ଦୃଢ଼, ପ୍ରସାରିତ, ବିସ୍ତୃତ ।

**Tensity**, *n.* ବିସ୍ତୃତି, ଦୃଢ଼ତା ।

**Tension**, *n.* ସମ୍ପ୍ରସାରଣ, ଉତ୍ତେଜନା, ଉଦ୍ୟମ, ଟଣାଓଟରା ।

**Tent**, *n.* ତମ୍ବୁ, ଡେରା, ବସ୍ତ୍ରାବାସ ।

**Tentacle**, *n.* କୀଟପତଙ୍ଗାଦିର ଶୁଙ୍ଗ ।

**Tentative**, *a.* ପରୀକ୍ଷାମୂଳକ, ତର୍କାଲୋପଯୁକ୍ତ । [ପରୀକ୍ଷାମୂଳକ ଭାବରେ ।

**Tentatively**, *ad.* ପରୀକ୍ଷାସ୍ୱରୂପ,

**Tenter**, *n.* ଲୁଗାର ଆଙ୍କୁଡ଼ି, ନ୍ୟାସ-ରକ୍ଷୀତା; *v.* ଆଙ୍କୁଡ଼ିରେ ଲଗାଇ ବିସ୍ତୃତ କରିବା ।

**Tenth**, *a.* ଦଶମ ।

**Tenuity**, *n.* ସୂକ୍ଷ୍ମତା, କ୍ଷୀଣତା, କୃଶତା ।

**Tenuous**, *a.* ସୂକ୍ଷ୍ମ, କ୍ଷୀଣ, କୃଶ, ସରୁ ।

**Tenure**, *n.* ପଟ୍ଟା ଦେବାର ସର୍ତ୍ତ, ରୟତର ଅଧିକାର ପ୍ରଭୃତି ।

**Tepid**, *a.* ଈଷଦୁଷ୍ଣ, ସାମାନ୍ୟ ଗରମ ।

**Term**, *n.* ନିର୍ଦ୍ଦିଷ୍ଟ କାଳ, ଅବଧି, ସୀମା, ସଂଜ୍ଞା, ପଦ; *v.* ଆଖ୍ୟା ବା ନାମ ଦେବା ।

**Termagancy**, *n.* କଳିହୁଡ଼ୀପଣ, ଉଗ୍ରଚଣ୍ଡୀ ସ୍ୱଭାବ । [ ଉଗ୍ରଚଣ୍ଡୀ ।

**Termagant**, *a.* କଳିହୁଡ଼ୀ,

**Terminable**, *a.* ଅନ୍ତ୍ୟ, ସମାପ୍ୟ, ଶେଷ କରିବାର ଯୋଗ୍ୟ । [ ଶେଷରେ ସ୍ଥିତ ।

**Terminal**, *a.* ଅନ୍ତିମ, ଅନ୍ତ୍ୟ,

**Terminate**, *v.* ଶେଷ କରିବା ବା ହେବା, ସମାପ୍ତ କରିବା ।

**Termination**, *n.* ସମାପ୍ତି, ଶେଷ, ଅବସାନ, ନିବୃତ୍ତି । [ ପାରିଭାଷିକ ସଂଜ୍ଞା ।

**Terminology**, *n.* ପରିଭାଷା,

**Terminus**, *n.* ରେଳପଥର ଏକ ଶେଷସୀମା, ପ୍ରାନ୍ତ, ସୀମା (*pl.* Termini) ।

**Terrace**, *n.* ଘରର ଛାତ, ମଞ୍ଚ; *v.* ଛାତ ପକାଇବା । [ ଗିରିମାଳା ।

**Terrain**, *n.* ପରସ୍ପର ସନ୍ନିହିତ

**Terraneous**, *a.* ଭୂମିଜ, ସ୍ଥଳଜାତ ।

**Terrene**, *a.* ପାର୍ଥିବ, ପୃଥିବୀସମ୍ବନ୍ଧୀୟ ।

**Terrestrial**, *a.* ପାର୍ଥିବ, ସାଂସାରିକ, ପୃଥିବୀସ୍ଥ, ଭୂଚର । [ ଭୟଙ୍କର, ଦାରୁଣ ।

**Terrible**, *a.* ଭୟାନକ, ଭୀଷଣ,

**Terribly**, *ad.* ଦାରୁଣ ଭାବରେ, ଭୀଷଣରୂପେ ।

**Terrier**, *n*. କ୍ଷୁଦ୍ରକାୟ କୁକ୍କୁରବିଶେଷ ।
**Terrific**, *a*. ଦାରୁଣ, ଭୀଷଣ, ଘୋର, ଭୟଙ୍କର । [ ଦେଖାଇବା ।
**Terrify**, *v*. ଭୀତ କରିବା, ଭୟ
**Territorial**, *a*. ରାଷ୍ଟ୍ରୀୟ, ରାଜ୍ୟ-ସମ୍ବନ୍ଧୀୟ । [ ଭୂମି ।
**Territory**, *n*. ଦେଶ, ରାଜ୍ୟ, ରାଷ୍ଟ୍ର,
**Terror**, *n*. ଭୟ, ସନ୍ତ୍ରାସ, ଶଙ୍କା ।
**Terrorise**, *v*. ତ୍ରସ୍ତ କରିବା, ଶଙ୍କା ଜନ୍ମାଇବା ।
**Terrorism**, *n*. ସନ୍ତ୍ରାସବାଦ ।
**Terrorist**, *n*. ସନ୍ତ୍ରାସବାଦୀ ।
**Terse**, *a*. ସଂକ୍ଷିପ୍ତ, ଅଳ୍ପପଦବିଶିଷ୍ଟ ।
**Terseness**, *n*. ଲାଘବ, ସଂକ୍ଷେପ ।
**Tertian**, *a*. ତୈାହ୍ନିକ, ତୃତୀୟଦିନରେ ସଂଘଟିତ; *n*. ତୈାହ୍ନିକ ଜ୍ୱର, ପାଳିଜର ।
**Tertiary**, *a*. ତୃତୀୟ ସ୍ଥାନୀୟ ।
**Test**, *n*. ପରୀକ୍ଷା, କଷଟିପଥର; *v*. ପରୀକ୍ଷା କରିବା ।
**Testament**, *n*. ଇଚ୍ଛାପତ୍ର, ଉଇଲ, ଖ୍ରୀଷ୍ଟିଆନ ଧର୍ମଗ୍ରନ୍ଥବିଶେଷ । [ ସମ୍ବନ୍ଧୀୟ ।
**Testamental**, *a*. ଇଚ୍ଛାପତ୍ର
**Testamentary**, *a*. ଇଚ୍ଛାପତ୍ର ସମ୍ବନ୍ଧୀୟ, ଉଇଲଦ୍ୱାରା ପ୍ରଦତ୍ତ । [ସମ୍ପାଦକ ।
**Testator**, *n*. ଇଚ୍ଛାପତ୍ର ବା ଉଇଲର
**Testatrix**, *n*. ଉଇଲସମ୍ପାଦନକାରିଣୀ ମହିଳା ।
**Tester**, *n*. ବିଛଣାର ଉପରିସ୍ଥ ଆବରଣ ।
**Testicle**, *n*. କୋଷ, ଅଣ୍ଡ, ମୁଷ୍କ ।
**Testify**, *v*. ସାକ୍ଷ୍ୟ ଦେବା, ପ୍ରମାଣିତ କରିବା । [ ଭାବରେ ।
**Testily**, *ad*. କ୍ରୋଧପୂର୍ବକ, କର୍କଶ-
**Testimonial**, *n*. ପ୍ରମାଣପତ୍ର, ପ୍ରଶଂସାପତ୍ର ।
**Testimony**, *n*. ସାକ୍ଷ୍ୟ, ପ୍ରମାଣ ।
**Testiness**, *n*. ବିରକ୍ତି, କ୍ରୋଧ, ରାଗ ।
**Testy**, *a*. କୋପନ, କ୍ରୋଧୀ, ରାଗୀ ।
**Tetanus**, *n*. ଧନୁଷ୍ଟଙ୍କାର ରୋଗ ।
**Tete-a-tete**, *n*. ଦୁଇ ଜଣଙ୍କ ମଧ୍ୟରେ ଗୋପନ କଥାବାର୍ତ୍ତା । [ ବନ୍ଧନ କରିବା ।
**Tether**, *n*. ବନ୍ଧନରଜ୍ଜୁ; *v*. ରଜ୍ଜୁରେ
**Text**, *n*. ମୂଳଗ୍ରନ୍ଥ । [ ପାଠ୍ୟପୁସ୍ତକ ।
**Text-book**, *n*. ନିର୍ଦ୍ଧାରିତ
**Textile**, *a*. ସୂତ୍ରନିର୍ମିତ, ସୂତ୍ରସମ୍ବନ୍ଧୀୟ, ବୁଣାଯାଇଥିବା ।
**Textual**, *a*. ମୌଳିକ, ଗ୍ରନ୍ଥନିହିତ ।
**Texture**, *n*. ବିନ୍ୟାସ, ରଚନା, ବୟନ
**Than**, *con*. ଅପେକ୍ଷା, ଠାରୁ; *pre*. ରୁ, ଠାରୁ । [ ଜଣାଇବା ।
**Thank**, *v*. ଧନ୍ୟବାଦ ଦେବା, କୃତଜ୍ଞତା
**Thankful**, *a*. କୃତଜ୍ଞ । [ସହକାରେ ।
**Thankfully**, *ad*. କୃତଜ୍ଞତା
**Thankfulness**, *n*. କୃତଜ୍ଞତା ।
**Thankless**, *a*. ଅକୃତଜ୍ଞ, କୃତଘ୍ନ ।

**Thanks**, *n.* (*pl.*) ଧନ୍ୟବାଦ, କୃତଜ୍ଞତାସ୍ୱୀକାର ।

**Thanksgiving**, *n.* ଧନ୍ୟବାଦାର୍ପଣ, କୃତଜ୍ଞତାଜ୍ଞାପନ, ଖ୍ରୀଷ୍ଟିଆନମାନଙ୍କର ପର୍ବବିଶେଷ । [ ବୋଲ୍, ଯେ, ଯେପରିକି ।

**That**, *a.* & *pr.* ସେ, ସେହି; *con.*

**Thatch**, *n* ଛପର, ଗୁଡ଼ିଶି; *v.* ଛପର କରିବା ।

**Thaw**, *v.* ଦ୍ରବୀଭୂତ କରିବା, ତରଳ କରିବା; *n.* ଦ୍ରବକରଣ, ତୁଷାରସ୍ରାବ ।

**The**, *art.* ଏହି, ଟି, ଟା, ଟାଏ ।

**Theatre**, *n.* ରଙ୍ଗମଞ୍ଚ, ଅଭିନୟଶାଳା

**Theatrical**, *a.* ନାଟକୀୟ, ରଙ୍ଗମଞ୍ଚ ସମ୍ବନ୍ଧୀୟ ।

**Thee**, *pr.* ତୋତେ, ତୁମ୍ଭଙ୍କୁ, ଆପଣଙ୍କୁ

**Theft**, *n.* ଚୌର୍ଯ୍ୟ, ପରଦ୍ରବ୍ୟହରଣ, ଚୋରି ।

**Their, Theirs**, *pr.* ସେମାନଙ୍କର

**Theism**, *n.* ଆସ୍ତିକ୍ୟବାଦ,ଈଶ୍ୱରବାଦ

**Theist**, *n.* ଆସ୍ତିକ୍ୟବାଦୀ, ଈଶ୍ୱରବାଦୀ

**Theistic**, *n.* ଆସ୍ତିକ୍ୟବାଦମୂଳକ ।

**Them**, *pr.* ସେମାନଙ୍କୁ । [ ପ୍ରକରଣ ।

**Theme**, *n.* ବିଷୟ, ପ୍ରବନ୍ଧ, ପ୍ରସଙ୍ଗ,

**Themselves**, *pr.* ସେମାନେ ନିଜେ ନିଜେ ।

**Then**, *a.* ତତ୍କାଳୀନ; *ad.* & *con.* ତତ୍ପରେ, ସେତେବେଳେ, ତାହାହେଲେ, ତଦନନ୍ତର ।

**Thence**, *ad.* ସେଠାରୁ, ସେହି ସମୟରୁ, ତତ୍ପରେ ।

**Thenceforth, Thenceforward**, *ad.* ତତ୍କାଳାବଧି, ସେହି ସମୟରୁ, ତତ୍ପରେ ।

**Theocracy**, *n.* ଯେଉଁ ଶାସନପଦ୍ଧତିରେ ଈଶ୍ୱର ସାର୍ବଭୌମ ଅଧିକାରୀ ରୂପେ ସ୍ୱୀକୃତ, ପୁରୋହିତଶାସନ ।

**Theodolite**,*n.*ଭୂମିମାପରେ ବ୍ୟବହୃତ ଯନ୍ତ୍ରବିଶେଷ । [ ଶାସ୍ତ୍ରବିଦ୍, ଅଧ୍ୟାତ୍ମବାଦୀ ।

**Theologian**, *n.* ବ୍ରହ୍ମଜ୍ଞାନୀ, ଧର୍ମ-

**Theological**, *a.* ଆଧ୍ୟାତ୍ମିକ, ଧର୍ମଶାସ୍ତ୍ର ସମ୍ବନ୍ଧୀୟ ।

**Theologist**, *n.* ଧର୍ମଶାସ୍ତ୍ରବେତ୍ତା, ଅଧ୍ୟାତ୍ମଶକ୍ତିରେ ବିଶ୍ୱାସୀ ।

**Theology**, *n.* ବ୍ରହ୍ମବିଦ୍ୟା, ଅଧ୍ୟାତ୍ମଜ୍ଞାନ, ଈଶ୍ୱର ଓ ତାଙ୍କପ୍ରତି ମାନବର କର୍ତ୍ତବ୍ୟବିଷୟକ ବିଦ୍ୟା ।

**Theorem**, *n.* ପ୍ରମେୟ, ଉପପାଦ୍ୟ ।

**Theoretic, Theoretical**, *a.* କଳ୍ପନାମୂଳକ, ତାତ୍ତ୍ୱିକ, କାର୍ଯ୍ୟକ୍ଷେତ୍ରରେ ଅନୁପଯୋଗୀ, ଆନୁମାନିକ ।

**Theorise**, *v.* ମତ କଳ୍ପନା କରିବା ।

**Theorist**, *n.* କଳ୍ପନାପ୍ରବଣ ବ୍ୟକ୍ତି ।

**Theory**, *n.* ମତ, ସିଦ୍ଧାନ୍ତ, ବାଦ, କଳ୍ପନା, ଆଗମ, ଉପପତ୍ତି ।

**Theosophical**, *a.* ଦୈବୀଶକ୍ତିବିଷୟକ, ବ୍ରହ୍ମବିଦ୍ୟାସମ୍ବନ୍ଧୀୟ ।

**Theosophist**, *n.* ବ୍ରହ୍ମବାଦୀ, ଅଧ୍ୟାତ୍ମବାଦୀ ।
**Theosophy**, *n.* ଦୈବୀଶକ୍ତିରେ ବିଶ୍ୱାସ, ଦିବ୍ୟଜ୍ଞାନ, ବ୍ରହ୍ମବିଦ୍ୟା ।
**Therapeutic**, *a.* ରୋଗନାଶକ, ଆରୋଗ୍ୟବିଷୟକ ।
**Therapeutics**, *n.* ଭେଷଜଶାସ୍ତ୍ର, ଆୟୁର୍ବେଦଶାସ୍ତ୍ର, ଚିକିତ୍ସାବିଦ୍ୟା ।
**There**, *ad.* ସେଠାରେ ।
**Thereabout**, *ad.* ସେହିଠାରେ କେଉଁଠି, ତାହାର ନିକଟରେ ।
**Thereafter**, *ad.* ତାହାପରେ, ତତ୍ପରେ, ତଦନନ୍ତର ।
**Thereat**, *ad.* ସେହି ହେତୁରୁ ।
**Thereby**, *ad.* ତଦ୍ଦ୍ୱାରା, ସେହି କାରଣରୁ । [ ହେତୁରୁ ।
**Therefor**, *ad.* ସେଥିପାଇଁ, ସେହି
**Therefore**, *ad.* & *con.* ଅତଏବ, ସୁତରାଂ, ତେଣୁ । [ ସେଥିରୁ ।
**Therefrom**, *ad.* ତହିଁରୁ, ତାହାଠାରୁ,
**Therein**, *ad.* ତହିଁରେ, ତାହାମଧ୍ୟରେ, ସେଥିରେ ।
**Thereof**, *ad.* ତାହାର । [ ଉପରେ ।
**Thereon**, *ad.* ତଦୁପରି, ତାହା-
**Thereto**, *ad.* ତତ୍ସଙ୍ଗେ, ତାହାସହିତ
**Thereupon**, *ad.* ତହୁଁ, ତଦନନ୍ତର, ସୁତରାଂ । [ ତାହାଦ୍ୱାରା, ତତ୍ସଙ୍ଗେ ।
**Therewith**, *ad.* ତାହାସହିତ,
**Thermal**, *a.* ଉଷ୍ଣତାସମ୍ବନ୍ଧୀୟ, ତାପ-ବିଷୟକ । [ ଉଷ୍ଣପ୍ରସ୍ରବଣ ।
**Thermal spring**, *n.* ପ୍ରାକୃତିକ
**Thermometer**, *n.* ତାପମାନ ଯନ୍ତ୍ର ।
**Thermos flask**, *n.* ଜଳୀୟ ପଦାର୍ଥକୁ ଉଷ୍ଣ ବା ଶୀତଳ ରଖିବାର ବୋତଲ୍ ।
**These**, *pr.* ଏଗୁଡ଼ିକ, ଏହିସମସ୍ତ ।
**Thesis**, *n.* ପ୍ରବନ୍ଧ, ନିବନ୍ଧ (*pl.* Theses) ।
**They**, *pr.* ସେମାନେ ।
**Thick**, *a.* ଘନ, ନିବିଡ଼, ସ୍ଥୂଳ, ସାନ୍ଦ୍ର, ଗହଳିଆ; *n.* ନିବିଡ଼ ପ୍ରଦେଶ । [ କରିବା ।
**Thicken**, *v.* ଘନୀଭୂତ କରିବା, ନିବିଡ଼
**Thicket**, *n.* ଗୁଳ୍ମ, କ୍ଷୁଦ୍ର ବନ, ଗଛଗହଳି
**Thickheaded**, *a.* ଅଳ୍ପବୁଦ୍ଧି, ବୋକା
**Thickly**, *ad.* ନିବିଡ଼ରୂପେ, ଘନଭାବରେ । [ ସାନ୍ଦ୍ରତା, ବେଧ ।
**Thickness**, *n.* ନିବିଡ଼ତା, ଘନତା,
**Thickskinned**, *a.* କଠିନ, ସହିଷ୍ଣୁ, ଜଡ଼ବୁଦ୍ଧି । [ ବୁଦ୍ଧିଆ ।
**Thickskulled**, *a.* ବୋକା, ମୋଟା-
**Thief**, *n.* ଚୋର, ଦସ୍ୟୁ, ତସ୍କର ।
**Thieve**, *v.* ଚୋରି କରିବା ।
**Thievery**, *n.* ଚୌର୍ଯ୍ୟ, ଚୋରି ।
**Thievish**, *a.* ଚୌର୍ଯ୍ୟପରାୟଣ, ଶଠ ।
**Thigh**, *n.* ଉରୁ, ଜଙ୍ଘ ।
**Thimble**, *n.* ଅଙ୍ଗୁଷ୍ଠନା, ଅଙ୍ଗୁଳିତ୍ରାଣ ।
**Thin**, *a.* ସୂକ୍ଷ୍ମ, ସରୁ, ବିରଳ, କୃଶ ।

Thine, *pr.* ତୁମ୍ଭର, ଆପଣଙ୍କର, ତ୍ୱଦୀୟ ।
Thing, *n.* ପଦାର୍ଥ, ଦ୍ରବ୍ୟ, ବସ୍ତୁ, ବିଷୟ ।
Think, *v.* ଚିନ୍ତା କରିବା, ଆଲୋଚନା କରିବା ।
Thinkable, *a.* ଚିନ୍ତନୀୟ ।
Thinker, *n.* ଚିନ୍ତାଶୀଳ ବ୍ୟକ୍ତି ।
Thinking, *n.* ଚିନ୍ତା, ଭାବନା; *a.* ଚିନ୍ତାଶୀଳ । [ କୃଶତା, କ୍ଷୀଣତା ।
Thinness, *n.* ସୂକ୍ଷ୍ମତା, ବିରଳତା,
Thinskinned, *a.* ଅସହିଷ୍ଣୁ, ଅଭିମାନୀ
Third, *a.* ତୃତୀୟ ।
Thirdly, *ad.* ତୃତୀୟତଃ ।
Thirst, *n.* ତୃଷା, ଶୋଷ ।
Thirsty, *a.* ତୃଷାର୍ତ୍ତ, ଶୋଷୀ ।
Thirteen, *a.* ତ୍ରୟୋଦଶ, ତେର ।
Thirteenth, *a.* ତ୍ରୟୋଦଶ ।
Thirtieth, *a.* ତ୍ରିଂଶ, ତ୍ରିଂଶତ୍ତମ ।
Thirty, *a.* ତ୍ରିଂଶ, ତିରିଶ ।
This, *a.* & *pr.* ଏହା, ଏହି ।
Thistle, *n.* କଣ୍ଟକ ଗୁଳ୍ମବିଶେଷ, ଗୋକ୍ଷୁର ।
Thither, *ad* ସେଠାରେ, ସେଠାକୁ ।
Thong, *n.* ଚର୍ମନିର୍ମିତ ରଜ୍ଜୁ, ଚମର ଦଉଡ଼ି । [ ବକ୍ଷୋଦେଶ ।
Thorax, *n.* ବକ୍ଷସ୍ଥଳ, ଛାତି,
Thorn, *n.* କଣ୍ଟକ, କଣ୍ଟା ।
Thorn-apple, *n.* ଧୁଦୁରାଫଳ ।

Thornless, *a.* ନିଷ୍କଣ୍ଟକ, କଣ୍ଟକଶୂନ୍ୟ
Thorny, *a.* କଣ୍ଟକାକୀର୍ଣ୍ଣ, କଣ୍ଟକମୟ,
Thorough, *a.* ସମ୍ୟକ୍, ସମ୍ପୂର୍ଣ୍ଣ, ନିପୁଣ, ପାରଗ ।
Thoroughly, *ad.* ସମ୍ୟକ୍‌ରୂପେ ସମ୍ପୂର୍ଣ୍ଣଭାବରେ, ଆମୂଳଚୂଳ ।
Thoroughnees, *n.* ପରିପକ୍ୱ, ନିଃଶେଷତା, ପାରଗତା । [ ପଲ୍ଲୀ ।
Thorp, Thorpe, *n.* କ୍ଷୁଦ୍ର ଗ୍ରାମ,
Those, *pr.* & *a.* ସେମାନେ, ସେଗୁଡ଼ିକ ।
Thou, *pr.* ତୁମ୍ଭେ, ତୁ, ଆପଣ ।
Thou and thee, *v.* ତୁ ତା କରିବା
Though, *con.* ଯଦି, ଯଦ୍ୟପି, ଯଦିଓ । [ ଆଲୋଚନା, ମତ, ବିଚାର ।
Thought, *n.* ଚିନ୍ତା, ଧ୍ୟାନ,
Thoughtful, *a.* ଚିନ୍ତାଶୀଳ, ବିଚାରବନ୍ତ, ସାବଧାନ, ଚିନ୍ତାକୁଳ ।
Thoughtfully, *ad.* ଚିନ୍ତା କରି, ବିଚାରପୂର୍ବକ, ଆଲୋଚନା ସହକାରେ ।
Thoughtless, *a.* ଅସାବଧାନ, ବିଚାରହୀନ, ମୂଢ଼, ଅବିବେକ ।
Thousand, *n.* ସହସ୍ର, ହଜାର ।
Thousandth, *a.* ସହସ୍ରାଂଶ ପରିମିତ, ସହସ୍ରତମ ।
Thraldom, Thralldom, *n.* ଦାସତ୍ୱ, ଦାସବୃତ୍ତି, ବଶତା, ଅଧୀନତା ।
Thrall, *n.* ଦାସ, ଭୃତ୍ୟ ।

Thrash, Thresh, *v.* ପିଟିବା, ମାଡ଼ ଦେବା, ବେଙ୍ଗଲା ପକାଇବା ।
Thrashing floor, Threshing floor, *n.* ଖଳା, ଫସଲ ଅମଳ ସ୍ଥାନ ।
Thread, *n.* ସୂତ୍ର, ତନ୍ତୁ, ସୂତା; *v.* ସୂତାରେ ଗୁନ୍ଥିବା, ଧୀରେ ଧୀରେ ଗତି କରିବା । [ ଶେଷପର୍ଯ୍ୟନ୍ତ ବ୍ୟବହୃତ ।
Threadbare, *a.* ଜୀର୍ଣ୍ଣଶୀର୍ଣ୍ଣ, ପୁରାତନ,
Thread-worm, *n.* ସୂତ୍ରକୃମି ।
Threat, *n.* ତର୍ଜନ, ଭର୍ତ୍ସନା, ଭୟପ୍ରଦର୍ଶନ । [ ଭୟପ୍ରଦର୍ଶନ କରିବା ।
Threaten, *v.* ଭର୍ତ୍ସନା କରିବା,
Three, *a.* ତିନି ।
Threefold, *n.* ତ୍ରିଗୁଣ, ତିନିଗୁଣ ।
Threescore, *n.* ତିନିକୋଡ଼ି, ଷାଠିଏ ।
Thresh, *v.* 'Thrash' ଦେଖ ।
Threshold, *n.* ଦେହଳୀ, ଏରୁଣ୍ଡିବନ୍ଧ ।
Thrice, *ad.* ତ୍ରିବାର, ତିନିଥର, ତିନିଗୁଣ
Thrift, *n.* ମିତବ୍ୟୟିତା ।
Thriftily, *ad.* ବ୍ୟୟସଙ୍କୋଚପୂର୍ବକ ।
Thriftless, *a.* ଅମିତବ୍ୟୟୀ ।
Thrifty, *a.* ମିତବ୍ୟୟୀ, ସଞ୍ଚୟଶୀଳ ।
Thrill, *n.* ହର୍ଷ, ପୁଲକ, ରୋମାଞ୍ଚ; *v.* ରୋମାଞ୍ଚିତ କରିବା ।
Thrilling, *a.* ରୋମାଞ୍ଚକର, ହର୍ଷଜନକ
Thrive, *v.* ବୃଦ୍ଧିପାଇବା, ଉନ୍ନତ କରିବା
Thriving, *a.* ଉନ୍ନତଶୀଳ, ବର୍ଦ୍ଧିଷ୍ଣୁ ।
Throat, *n.* କଣ୍ଠ, ଗଳା ।
Throb, *v.* ସ୍ଫୁରିବା, ସ୍ପନ୍ଦିତ ହେବା; *n.* ସ୍ଫୁରଣ, ସ୍ପନ୍ଦନ ।
Throbbing, *a.* ସ୍ଫୁରିତ, ସ୍ପନ୍ଦିତ ।
Throe, *n.* ବ୍ୟଥା, ଯନ୍ତ୍ରଣା, ବେଦନା, କ୍ଲେଶ । [ ରକ୍ତ ଜମାଟ ବାନ୍ଧିବା ରୋଗ ।
Thrombosis, *n.* ଶିରା ବା ଧମନୀରେ
Throne, *n.* ସିଂହାସନ, ରାଜପଦ ।
Throng, *n.* ଜନତା, ଲୋକଗହଳ; *v.* ଗହଳି କରିବା, ଜନାକୀର୍ଣ୍ଣ କରିବା ।
Throttle, *v.* ଗଳା ଚିପିବା, ତଣ୍ଟି ଚିପି ମାରିବା ।
Through, *pre.* ମଧ୍ୟରେ, ଦ୍ୱାରା, ଜରିଆରେ, ବାଟେ; *ad.* ସମ୍ପୂର୍ଣ୍ଣରୂପେ ।
Throughout, *pre. & con.* ସର୍ବାଂଶରେ, ଆମୂଳଚୂଳ, ବରାବର ।
Throw, *v.* ଫିଙ୍ଗିବା, ନିକ୍ଷେପ କରିବା ।
Thrush, *n.* ଗାୟକ ପକ୍ଷୀବିଶେଷ, ଘାଘ ।
Thrust, *v.* ଠେଲିବା, ଧକ୍କାଦେବା, ଜବରଦସ୍ତି ପୂରାଇବା; *n.* ଠେଲା, ଧକ୍କା, ଆଘାତ ।
Thud, *n.* ପତନଜନିତ ଶବ୍ଦ ।
Thumb, *n.* ଅଙ୍ଗୁଷ୍ଠ, ବୁଢ଼ାଆଙ୍ଗୁଠି; *v.* ଆଙ୍ଗୁଠିରେ ଏଣେତେଣେ କରିବା, ଆଙ୍ଗୁଠି ମାରିବା । [ ଆଘାତ କରିବା ।
Thump, *n.* ଗୁରୁ ଆଘାତ; *v.* ଗୁରୁ
Thumping, *a.* ଅତବଡ଼, ଅତ୍ୟଧିକ ।

**Thunder,** *n.* ମେଘଗର୍ଜନ, ଘଡ଼ଘଡ଼ି; *v.* ମେଘଗର୍ଜନ କରିବା, ଉଚ୍ଚ ଶବ୍ଦ କରିବା ।

**Thunderbolt,** *n.* ବଜ୍ର, କୁଳିଶ ।

**Thunderclap,** *n.* ବଜ୍ରଧ୍ୱନି, ବଜ୍ରନିର୍ଘୋଷ । [ ଘର୍ଘରଶବ୍ଦପୂର୍ଣ୍ଣ ।

**Thundering,** *n.* ବଜ୍ରଧ୍ୱନି; *a.* ଭୀଷଣ,

**Thunderous,** *a.* ବଜ୍ରଧ୍ୱନିତୁଲ୍ୟ, ଭୟାବହ । [ ବଜ୍ରପାତ ସହ ଝଡ଼ିକା ।

**Thunderstorm,** *n.* ଅଶନିପାତ,

**Thunderstruck,** *a.* ବଜ୍ରାହତ, ସ୍ତମ୍ଭୀଭୂତ । [ ବାସର ।

**Thursday,** *n.* ଗୁରୁବାର, ବୃହସ୍ପତି

**Thus,** *ad.* ଏହିପରି, ଏହିରୂପେ, ଏମନ୍ତ ପ୍ରକାରେ । [ *v.* ଆଘାତ କରିବା ।

**Thwack,** *n.* ଗୁରୁ ଆଘାତ, ପ୍ରହାର;

**Thwart,** *v.* ପ୍ରତିହତ କରିବା, ନିଷ୍ଫଳ କରିବା, ବିରୋଧ କରିବା ।

**Thy,** *pr.* ତୋର, ତୁମ୍ଭର, ଆପଣଙ୍କର ।

**Thyroid,** *n.* କଣ୍ଠଦେଶର ଉପଗ୍ରନ୍ଥି-ବିଶେଷ । [ ଆପଣ ସ୍ୱୟଂ ।

**Thyself,** *pr.* ତୁ ନିଜେ, ତୁମ୍ଭେ ହିଁ,

**Tiara,** *n.* ମୁକୁଟ, କିରୀଟ, ଉଷ୍ଣୀଷ ।

**Tick,** *n.* ଟିଙ୍କ, ଟିକ୍‌ଟିକ୍ ଶବ୍ଦ, ଚିହ୍ନ ବିଶେଷ (✓); *v.* ✓ ଚିହ୍ନ ଦେବା ।

**Ticket,** *n.* ପ୍ରବେଶପତ୍ର, ନିଦର୍ଶନ ପତ୍ରିକା

**Tickle,** *v.* କୁତୁକୁତୁ କରିବା, ସଳସଳ କରିବା ।

**Ticklish,** *a.* ଅଭିମାନୀ, ଭାବପ୍ରବଣ ।

**Tidal,** *a.* ଜୁଆରିଆ, ଜୁଆରଭଟ୍ଟା ସମ୍ବନ୍ଧୀୟ । [ *v.* ସ୍ରୋତରେ ଚାଳିତ ହେବା ।

**Tide,** *n.* ସ୍ରୋତ, ଜୁଆର ଓ ଭଟ୍ଟା;

**Tidily,** *ad.* ପରିଚ୍ଛନ୍ନଭାବରେ, ପରିପାଟୀ ସହକାରେ ।

**Tidiness,** *n.* ପରିଚ୍ଛନ୍ନତା, ପରିପାଟୀ ।

**Tidings,** *n.* (*pl.*) ବାର୍ତ୍ତା, ସମ୍ବାଦ, ଖବର । [ ସମ୍ପନ୍ନ ।

**Tidy,** *a.* ପରିଚ୍ଛନ୍ନ, ସୁସଜ୍ଜିତ, ପରିପାଟୀ-

**Tie,** *v.* ବାନ୍ଧିବା, ଯୋଡିବା, ବନ୍ଧନ କରିବା; *n.* ବନ୍ଧନ, ଗ୍ରନ୍ଥି, ସମ୍ବନ୍ଧ, ଗଳାବନ୍ଧ, ଖେଳରେ ସମତା ।

**Tier,** *n.* ପଙ୍କ୍ତି, ଶ୍ରେଣୀ, ପର୍ବତଶ୍ରେଣୀ ।

**Tiff,** *n.* ବିରକ୍ତି, ଅସନ୍ତୁଷ୍ଟିପ୍ରକାଶ ।

**Tiffin,** *n.* ଜଳଖିଆ, ଜଳଯୋଗ ।

**Tiger,** *n.* ବ୍ୟାଘ୍ର, ଶାର୍ଦ୍ଦୂଳ ।

**Tight,** *a.* ଶକ୍ତ, କଠିନ, ଗାଢ଼, ଦୃଢ଼ ।

**Tighten,** *v.* ଦୃଢ଼ କରିବା, କଷିବା ।

**Tightly,** *ad.* ଦୃଢ଼ଭାବରେ । [ ସହିତ ।

**Tightness,** *n.* ଦୃଢ଼ତା, ଘନତା,

**Tigress,** *n.* ବ୍ୟାଘ୍ରୀ, ବାଘୁଣୀ ।

**Tile,** *n.* ଖପରଲି, ଟିଙ୍କର, ଟାଇଲ୍; *v.* ଟାଇଲ୍ ଛପର କରିବା ।

**Tiling,** *n.* ଟାଇଲ୍‌ଛପର, ଟାଇଲ୍‌ଗୁଡ଼ିକ ।

**Till,** *pre. & con.* ଯାବତ୍‌, ପର୍ଯ୍ୟନ୍ତ, ଯେତିକିଯାଏ; *v.* କର୍ଷଣ କରିବା, ଚାଷ କରିବା ।

**Tillage,** *n.* କୃଷିକର୍ମ, ଚାଷ ।

**Tiller**, *n.* କୃଷକ, କୃଷୀ, କୃଷୀବଳ ।

**Till now**, *ad.* ଏଯାବତ୍, ଏପର୍ଯ୍ୟନ୍ତ, ଏତେବେଳଯାଏ । [ ବେଳଯାଏ ।

**Till then**, *a.* ସେ ପର୍ଯ୍ୟନ୍ତ, ସେତେ-

**Tilt**, *v.* ଘୋଡ଼ାରେ ବସି ଅନ୍ୟକୁ ବର୍ଚ୍ଛା ଦ୍ୱାରା ଆକ୍ରମଣ କରିବା, ଆନତ ହେବା, ଢଳିପଡ଼ିବା; *n.* ଧକ୍କା ।

**Tilth**, *n.* କୃଷି, ଭୂମିକର୍ଷଣ ।

**Timber**, *n.* ଦାରୁ, କାଷ୍ଠ, ବୃକ୍ଷର ଗଣ୍ଡି ।

**Timbrel**, *n.* ପ୍ରାଚୀନ ବାଦ୍ୟବିଶେଷ, ମୃଦଙ୍ଗ, ମର୍ଦ୍ଦଳ ।

**Time**, *n.* କାଳ, ସମୟ, ନିର୍ଦ୍ଦିଷ୍ଟ ସମୟ, ଥର; *v.* ଯଥାସମୟରେ କାର୍ଯ୍ୟ କରିବା, ତାଳ ଦେବା । [ ସମୟାତିକ୍ରାନ୍ତ ।

**Time-barred**, *a.* ତମାଦି,

**Time-honoured**, *a.* ଚିରଚରିତ, ଚିରସମ୍ମାନିତ ।

**Time-keeper**, *n.* ଘଣ୍ଟା, ଘଡ଼ି, ଯେ ଶ୍ରମିକମାନଙ୍କର କାର୍ଯ୍ୟସମୟର ହିସାବ ରଖେ । [ ସମୟୋଚିତ, କାଳୋପଯୋଗୀ ।

**Timely**, *a.* ଯଥାସମୟରେ କୃତ,

**Time-piece**, *n.* ଘଡ଼ି, ଘଣ୍ଟା ।

**Time-server**, *n.* ସୁବିଧାବାଦୀ, ବେଳଭଣ୍ଡି କାର୍ଯ୍ୟ କରିବା ଲୋକ ।

**Time-table**, *n.* ସମୟନିର୍ଘଣ୍ଟ, ରେଳ-ଜାହାଜଆଦି ଯିବାଆସିବାର ସମୟ ତାଲିକା ।

**Timid**, *a.* ଭୀରୁ, ଭୟାଳୁ ।

**Timidity**, *n.* ଭୀରୁତା, ଭୟଶୀଳତା ।

**Timorous**, *a.* ଭୟାର୍ତ୍ତ, ଭୀତ ।

**Tin**, *n.* ଧାତୁବିଶେଷ, ଟିଣ, ଟିଣପାତ୍ର; *a.* ଟିଣନିର୍ମିତ; *v.* ଟିଣଦ୍ୱାରା ଆବୃତ କରିବା, ଟିଣଧାତୁରେ ରଞ୍ଜିତ କରିବା । (

**Tincture**, *n.* ବର୍ଣ୍ଣର ଆଭାସ, ସୁରସାର-ମିଶ୍ରିତ ପଦାର୍ଥ; *v.* ରଞ୍ଜିତ କରିବା, ମିଶ୍ରିତ କରିବା । [ ନିମ୍ନକର୍ମଚାରୀବିଶେଷ ।

**Tindal**, *n.* ଟଣ୍ଡେଲ୍, ଜାହାଜର

**Tinder**, *n.* ଝକମକରୁ ଯହିଁରେ ନିଆଁ ଧରିଯାଏ (ସୋଲା ଶୋଳ ପ୍ରଭୃତି) ।

**Tinge**, *n.* ରଙ୍ଗ, ବର୍ଣ୍ଣାଭାସ; *v.* ରଞ୍ଜିତ କରିବା, ମିଶ୍ରିତ କରିବା । [ କଣ୍ଟୁ ହେବା ।

**Tingle**, *v.* ଝିଣ୍‌ଝିଣ୍ ଶବ୍ଦ କରିବା, କର୍ଣ୍ଣ-

**Tinker**, *n.* ଟିଣ-ପିତଳ ବାସନ ମରାମତିବାଲା, ଅଠାରି, କଂସାରି; *v.* ମରାମତି କରିବା, ଗୋଳମାଳିଆ କରିଦେବା ।

**Tinkle**, *v.* ରୁଣୁଝୁଣୁ ଶବ୍ଦ କରିବା ।

**Tinkling**, *n.* ନିକ୍ୱଣ, ରୁଣୁଝୁଣୁ ଶବ୍ଦ ।

**Tinman, Tinner**, *n.* ଯେ ଟିଣରେ କାମ କରେ ।

**Tinsel**, *n.* ଚକଚକ ଦିଶୁଥିବା ସ୍ୱଳ୍ପ ମୂଲ୍ୟର ଦ୍ରବ୍ୟ; *v.* ଚକଚକିଆ ପଦାର୍ଥରେ ସଜାଇବା । [ କରେ ।

**Tinsmith**, *n.* ଟିଣରି, ଯେ ଟିଣକାମ

**Tint**, *n.* ରଙ୍ଗର ଆଭାସ; *v.* ଈଷତ୍ ରଞ୍ଜିତ କରିବା ।

**Tiny**, *a.* ଅତିକ୍ଷୁଦ୍ର, ଖୁବ୍ ଛୋଟ ।

**Tip**, *n.* ମୃଦୁ ସ୍ପର୍ଶ, ଅଗ୍ରଭାଗ, ଶିଖର, ବକ୍‌ସିସ; *v.* ଗୋଳିଆ କରିବା, ବକ୍‌ସିସ ଦେବା ।

**Tippet**, *n.* ଗ୍ରୀବାର ଆଚ୍ଛାଦନ ।

**Tipple**, *v.* ବାରମ୍ବାର ମଦ୍ୟପାନ କରିବା ।

**Tippler**, *n.* ମଦ୍ୟପ, ଅତିପାନାସକ୍ତ ବ୍ୟକ୍ତି, ମାତାଲ । [ ଲଠିଧାରୀ ପୁଲିସ ।

**Tipstaff**, *n.* ଅଗୁଆ ଥିବା ଲଠି,

**Tipsy**, *a.* ମାତାଲ, ମଦ ପିଇ ଟଳମଳ ।

**Tiptoe**, *n.* ପାଦାଙ୍ଗୁଳିର ଅଗ୍ରଭାଗ; *v.* ପାଦର ଅଙ୍ଗୁଳିରେ ଭର ଦେଇ ଚାଲିବା; *ad.* ନିଃଶବ୍ଦରେ । [ *a.* ଉତ୍କୃଷ୍ଟ ।

**Tiptop**, *n.* ସର୍ବୋଚ୍ଚ ସୀମା, ଉତ୍କର୍ଷ;

**Tirade**, *n.* ଦୀର୍ଘ ଓଜସ୍ୱିନୀ ବକ୍ତୃତା ବା ଲେଖା, ଭର୍ତ୍ସନା, ନିନ୍ଦାବାଦ ।

**Tire**, *n.* ଶିରୋଭୂଷଣ, ପଗଡ଼ି; *v.* କ୍ଲାନ୍ତ କରିବା, ବିରକ୍ତ କରିବା ।

**Tired**, *a.* କ୍ଲାନ୍ତ, ଶ୍ରାନ୍ତ, ଅବସନ୍ନ ।

**Tireless**, *a.* ଅକ୍ଲାନ୍ତ । [ ବିରକ୍ତିକର ।

**Tiresome**, *a.* କ୍ଲାନ୍ତିଜନକ,

**Tissue**, *n.* ଜରିକାମଯୁକ୍ତ ବସ୍ତ୍ର, ଶ୍ରେଣୀବଦ୍ଧ ବିଷୟ, ଶରୀରଗଠନର ଉପାଦାନ ।

**Tissue-paper**, *n.* ଅତିଶୟ ସ୍ୱଚ୍ଛ ପତଳା କାଗଜ । [ବିରାଟକାୟ ଜୀବ ବା ବସ୍ତୁ ।

**Titan**, *n.* ଦାନବବିଶେଷ, ଦୈତ୍ୟ,

**Titanic**, *a.* ବିରାଟକାୟ, ଦାନବତୁଲ୍ୟ ।

**Titbit**, *n.* ଉତ୍କୃଷ୍ଟ ଅଂଶ ।

**Tithe**, *n.* ଦଶମାଂଶ କର, ଦଶଭାଗରୁ ଏକ ଭାଗ, ଅତ୍ୟଳ୍ପ ଅଂଶ ।

**Titillate**, *v.* କୁତୁକୁତୁ କରିବା ।

**Titillation**, *n.* କୁତୁକୁତୁ, ସଲସଲ ।

**Title**, *n.* ପଦବୀ, ଉପାଧି, ନାମ, ଅଧିକାର; *v.* ନାମ ବା ପଦବୀ ଦେବା । [ ଦଲିଲ ।

**Title-deed**, *n.* ସ୍ୱତ୍ୱାଧିକାରସୂଚକ

**Title-page**, *n.* ପୁସ୍ତକର ନାମାଦି-ସମ୍ବଳିତ ପୃଷ୍ଠା । [ *v.* ଦାନ୍ତ ଚିପି ହସିବା ।

**Titter**, *n.* ରୁଦ୍ଧ ହାସ୍ୟ, ଚପା ହସ;

**Tittle**, *n.* ଲବ, ବିନ୍ଦୁ, ଲେଶ, ସ୍ୱଳ୍ପ ପରିମାଣ ।

**Tittle-tattle**, *n.* ଗପସପ, ସୁଖାଲାପ; *v.* ବାଜେ ଗପ କରିବା ।

**Titular**, *a.* ନାମମାତ୍ର ।

**Titulary**, *a.* ନାମମାତ୍ରାବଶିଷ୍ଟ, ନାମ ବା ଉପାଧିବିଷୟକ । [ ଆଡ଼କୁ, ବାଗରେ ।

**To**, *pre.* ପ୍ରତି, କୁ, ଠାରୁ, ପର୍ଯ୍ୟନ୍ତ,

**Toad**, *n.* ମଣ୍ଡୁକ, ଭେକ, କାଠବେଙ୍ଗ ପ୍ରଭୃତି ।

**Toadstool**, *n.* କାଠଛତୁ ।

**To and fro**, *ad.* ଏଣେତେଣେ, ଆଗକୁ ପଛକୁ ।

**Toast**, *n.* ସେକା ରୁଟି; ଶୁଭକାମନା, ପ୍ରାର୍ଥନା; *v.* ଶୁଭକାମନା ସହ ପାନ କରିବା, (ରୁଟି) ସେକିବା ।

**Tobacco**, *n.* ତମାଖୁ, ଧୂଆଁପତ୍ର ।

Tobacconist, *n.* ତମାଖୁବ୍ୟବସାୟୀ ।
Tobacco-pipe, *n.* ଚିଲମ, ହୁକା ।
To-day, *n.* & *ad.* ଅଦ୍ୟ, ଆଜି, ଆଜିକାଲି । [ *n.* ପିଲଙ୍କ ଟଳଟଳ ଚାଲି ।
Toddle, *v.* ଟଳି ଟଳି ଚାଲିବା;
Toddler, *n.* ଚାଲି ଶିଖୁଥିବା ପିଲା ।
Toddy, *n.* ତାଡ଼ି, ତାଳ ବା ଖଜୁରି ରସର ମଦ୍ୟ । [ ସ୍ପର୍ଶ କରିବା ।
Toe, *n.* ପାଦର ଅଙ୍ଗୁଳି; *v.* ପାଦାଙ୍ଗୁଳିରେ
Toffee, Toffy, *n.* ଚିନି ଓ ଲହୁଣୀରେ ତିଆରି ଏକ ପ୍ରକାର ମିଠେଇ ।
Together, *ad.* ଏକତ୍ର, ଏକାଠି, ଏକସଙ୍ଗରେ, ଏକସ୍ଥାନରେ ।
Toil, *n.* ଶ୍ରମ, ପରିଶ୍ରମ, ଯତ୍ନ; *v.* କଠିନ ଶ୍ରମ କରିବା ।
Toiler, *n.* ଶ୍ରମିକ, ମଜୁରିଆ, ଯେ ଶ୍ରମସ୍ୱୀକାର କରେ ।
Toilet, Toilette, *n.* ପ୍ରସାଧନ ସାମଗ୍ରୀ, ବେଶଭୂଷା, ପ୍ରସାଧନ କର୍ମ ବା ପଦ୍ଧତି । [ ଆୟାସସାଧ୍ୟ ।
Toilsome, *a.* ଶ୍ରମସାଧ୍ୟ, କଷ୍ଟକର,
Toilworn, *a.* ଶ୍ରମକ୍ଳାନ୍ତ ।
Token, *n.* ସଙ୍କେତ, ଚିହ୍ନ, ଲକ୍ଷଣ, ସ୍ମାରକବସ୍ତୁ । [ ମଧ୍ୟମଶ୍ରେଣୀର ।
Tolerable, *a.* ସହନୀୟ, ଚଳନୀୟ,
Tolerance, *n.* ସହିଷ୍ଣୁତା, ଅନୁମତି ।
Tolerant, *n.* ସହିଷ୍ଣୁ, ପ୍ରଶ୍ରୟଶୀଳ ।
Tolerate, *v.* ସହ୍ୟ କରିବା,ବରଦାସ୍ତ କରିବା, ଅନୁମତି ଦେବା ।
Toleration, *n.* ସହ୍ୟକରଣ, ପରଧର୍ମ ପ୍ରତି ଉଦାରତା ।
Toll, *n.* କର, ମାଶୁଲ, ଶୁଳ୍କ, ଖଜଣା, ଘଣ୍ଟାଧ୍ୱନି; *v.* ଘଣ୍ଟା ବଜାଇବା ।
Toll-bar, *n.* ଶୁଳ୍କ ଆଦାୟ ନିମନ୍ତେ ପଥରୋଧ କରିବାର ଅଡ଼ା ।
Toll-gate, *n.* ଶୁଳ୍କ ଆଦାୟ ନିମନ୍ତେ ସ୍ଥାପିତ ଫାଟକ । [ ପରଶୁ ।
Tomahawk, *n.* ଟାଙ୍ଗିଆ, କୁଠାର,
Tomato, *n.* ବିଲାତିବାଇଗଣ ।
Tomb, *n.* ସମାଧି, କବର ।
Tomboy, *n.* ଉଦ୍ଧତ ସ୍ୱଭାବର ବାଳିକା ।
Tombstone, *n.* ସ୍ମୃତିରକ୍ଷାର୍ଥ ସମାଧିରେ ସ୍ଥାପିତ ପ୍ରସ୍ତର ।
Tomcat, *n.* ଭୁଆବିରାଡ଼ି ।
Tomfool, *n.* ନିହାତି ବୋକା ମଣିଷ; *v.* ବୋକାମି କରିବା । [ କାଲି ।
Tomorrow, *n.* & *ad.* ଆସନ୍ତା-
Ton, *n.* ଓଜନପରିମାଣବିଶେଷ (ପ୍ରାୟ ୧୦୦୦ କିଲୋଗ୍ରାମ) । [ *v.* ମୃଦୁ କରିବା ।
Tone, *n.* ସ୍ୱର, ଶବ୍ଦ, ଧ୍ୱନି, ସ୍ୱନ;
Tongs, *n.* (*pl.*) ଚିମୁଟା, ସଣ୍ଡାଶି ।
Tongue, *n.* ରସନା, ଜିହ୍ୱା, ଜିଭ, ଭାଷା ।
Tongueless, *a.* ଜିହ୍ୱାହୀନ, ନିର୍ବାକ୍, ମୂକ ।

**Tongue-scraper**, *n.* ଜଭଛେଲା ।
**Tonguetied**, *a.* କହିବାକୁ ଅକ୍ଷମ, ବଦ୍ଧଜିହ୍ୱ । [ ଔଷଧ; *a.* ବଳବର୍ଦ୍ଧକ ।
**Tonic**, *n.* ବାଜୀକରଣ, ବଳବର୍ଦ୍ଧକ
**Tonight**, *n.* & *ad.* ଆଜରାତ, ଅଦ୍ୟରଜନୀ ।
**Tonnage**, *n.* ଟନ୍ ଦ୍ୱାରରେ ଜାହାଜର ମାଲ ଉପରେ ଧାର୍ଯ୍ୟ ଶୁଳ୍କ, ଜାହାଜର ମାଲ ପରିମାଣ ।
**Tonne**, *n.* ମେଟ୍ରିକ୍ ପଦ୍ଧତିରେ ଏକ ଟନ୍ ଅର୍ଥାତ୍ ୧୦୦୦ କିଲୋଗ୍ରାମ ।
**Tonsil**, *n.* ଉପଜିହ୍ୱା, ଜିହ୍ୱାମୂଳରେ ଥିବା ମାଂସଗ୍ରନ୍ଥି, ଘଣ୍ଟିକା । [ ରୋଗ ।
**Tonsilitis**, *n.* ଉପଜିହ୍ୱା ପ୍ରଦାହ
**Tonsor**, *n.* ନାପିତ, କ୍ଷୌରକାର ।
**Tonsure**, *n.* ଶିରୋମୁଣ୍ଡନ, କ୍ଷୌର; *v.* ମସ୍ତକ ମୁଣ୍ଡନ କରିବା । [ ଅତ୍ୟଧିକ ।
**Too**, *ad.* ମଧ୍ୟ, ଆହୁରି, ଏବଂ, ଅତ୍ୟନ୍ତ,
**Tool**, *n.* ଅସ୍ତ୍ର, ହତିଆର, ଉପକରଣ ।
**Tooth**, *n.* ଦନ୍ତ, ଦାନ୍ତ (*pl.* Teeth) ।
**Toothache**, *n.* ଦନ୍ତଶୂଳ, ଦନ୍ତବେଦନା ।
**Tooth-brush**, *n.* ଦାନ୍ତକାଠି ।
**Toothless**, *a.* ଦନ୍ତହୀନ, ପାକୁଆ ।
**Tooth-pick**, *n.* ଦାନ୍ତଖୁଣ୍ଟା ।
**Tooth-powder**, *n.* ଦନ୍ତମଞ୍ଜନ, ଦାନ୍ତ ଘଷିବାର ଚୂର୍ଣ୍ଣ ।
**Top**, *n.* ଶୀର୍ଷ, ଶିଖର, ଚୂଡ଼ା, ଅଗ୍ରଭାଗ; *a.* ଉଚ୍ଚତମ, ସର୍ବୋଚ୍ଚ; *v.* ଶୀର୍ଷସ୍ଥାନ ଅଧିକାର କରିବା ।
**Topaz**, *n.* ପଦ୍ମରାଗ ମଣି । [ କରିବା ।
**Tope**, *n.* ସ୍ତୂପ; *v.* ଅତିରିକ୍ତ ମଦ୍ୟପାନ
**Toper**, *n.* ମଦ୍ୟପ, ପାନାସକ୍ତ ବ୍ୟକ୍ତି ।
**Topheavy**, *a.* ମୁଣ୍ଡଭାରି । [ ପ୍ରକରଣ ।
**Topic**, *n.* ପ୍ରସଙ୍ଗ, ବିଷୟ, କଥା,
**Topical**, *a.* ପ୍ରାସଙ୍ଗିକ, ସ୍ଥାନୀୟ ।
**Top-knot**, *n.* ଚୂଡ଼ା, ଶିଖା, ମୁଣ୍ଡବାଳର ଖୋସା । [ ମାସ୍ତୁଲ ।
**Top-mast**, *n.* ଜାହାଜର ଦ୍ୱିତୀୟ
**Topmost**, *a.* ସର୍ବୋଚ୍ଚ, ସର୍ବୋପରିସ୍ଥ ।
**Topographic, Topographical**, *a.* କୌଣସି ସ୍ଥାନର ବିଶଦବିବରଣ-ସମ୍ବଳିତ ।
**Topography**, *n.* କୌଣସି ସ୍ଥାନର ବର୍ଣ୍ଣନା ବା ତାହାର ବାହ୍ୟ ଆକାରର ବିଶଦ ବିବରଣ ।
**Topple**, *v.* ହଠାତ୍ ଉପରୁ ତଳେ ପଡ଼ିବା, ଉଚ୍ଚ ସ୍ଥାନରୁ ତଳକୁ ପକାଇ ଦେବା । [ ମାସ୍ତୁଲର ପାଲ ।
**Topsail**, *n.* ଜାହାଜର ଦ୍ୱିତୀୟ
**Topsyturvy**, *ad.* ତଳ ଅଂଶ ଉପରକୁ ରଖି; *a.* ବିପର୍ଯ୍ୟସ୍ତ, ଯାହାର ଉପର ଅଂଶ ତଳେ ଥାଏ; *n.* ବିପର୍ଯ୍ୟୟ, ଓଲଟ-ପାଲଟ; *v.* ଓଲଟପାଲଟ କରିବା ।
**Torch**, *n.* ମଶାଲ, ଦିହୁଡ଼ି, ବୈଦ୍ୟୁତିକ ବତୀ ।

Torch-bearer, *n.* ମଶାଲବାହକ, ଆଲୋକପ୍ରଦର୍ଶକ । [ ଗ୍ରେଶ୍ବବଟାର ଆଲୁଅ ।
Torch-light, *n.* ମଶାଲର ଆଲୁଅ,
Torment, *n.* ଘୋର ଯନ୍ତ୍ରଣା, ଯାତନା, ପୀଡ଼ା; *v.* ଯନ୍ତ୍ରଣା ଦେବା, ପୀଡ଼ା ଦେବା ।
Tormentor, *n.* ପୀଡ଼କ, ଯନ୍ତ୍ରଣାଦାତା
Torn, *a.* ଛିନ୍ନ, ଜୀର୍ଣ୍ଣ, ଛିଣ୍ଡା ।
Tornado, *n.* ପ୍ରଚଣ୍ଡ ବାତ୍ୟା, ଝଟିକା, ଘୂର୍ଣ୍ଣିବାୟୁ ।
Torpedo, *n.* ଏକଜାତୀୟ ସାମୁଦ୍ରିକ ମତ୍ସ୍ୟ, ଜାହାଜଧ୍ୱଂସକାରୀ ଜଳଗାମୀ ଯନ୍ତ୍ରବିଶେଷ; *v.* ଏହି ଯନ୍ତ୍ରଦ୍ୱାରା ଆକ୍ରମଣ କରିବା । [ ନିଶ୍ଚେଷ୍ଟ ।
Torpid, *a.* ଅଚଳ, ସୁପ୍ତ, ଅଚେତନ,
Torpidity, Terpitude, Torpor, *n.* ଜଡ଼ତା, ଅଚେତନ ଅବସ୍ଥା, ନିଶ୍ଚେଷ୍ଟତା ।
Torrent, *n.* ନିର୍ଝର, ଜଳପ୍ରବାହ, ପ୍ରବଳ ସ୍ରୋତ । [ ଜଳସ୍ରୋତଦ୍ୱାରା ଉତ୍ପନ୍ନ ।
Torrential, *a.* ପ୍ରଚଣ୍ଡ ସ୍ରୋତ ସଦୃଶ,
Torrid, *a.* ଗ୍ରୀଷ୍ମପ୍ରଧାନ, ଅତ୍ୟୁଷ୍ଣ ।
Torrid Zone, *n.* ଗ୍ରୀଷ୍ମ କଟିବନ୍ଧ ।
Torso, *n.* ମସ୍ତକ ଓ ହସ୍ତପଦବର୍ଜିତ ଗଣ୍ଡି ବା ମୂର୍ତ୍ତି ।
Tort, *n.* କ୍ଷତିପୂରଣ ସମ୍ବନ୍ଧୀୟ ଆଇନ ।
Tortoise, *n.* କଚ୍ଛପ, କୂର୍ମ, କଇଁଛ ।
Tortuosity, *n.* ବକ୍ରତା, କୁଟିଳତା, ଶଠତା । [ ପ୍ରତାରଣାଶୀଳ ।
Tortuous, *a.* ବକ୍ର, କୁଟିଳ,

Torture, *n.* ଘୋର ଯାତନା, ଯନ୍ତ୍ରଣା, ବେଦନା; *v.* ଘୋର ଯନ୍ତ୍ରଣା ଦେବା ।
Toss, *v.* ଜୋରରେ ଉପରକୁ ଫିଙ୍ଗିବା, ଆନ୍ଦୋଳିତ କରିବା; *n.* ଉତ୍କ୍ଷେପଣ, ଗୋଳମାଳ ।
Tot, *n.* କ୍ଷୁଦ୍ର ଶିଶୁ, କ୍ଷୁଦ୍ର ପଦାର୍ଥ ।
Total, *n.* ମୋଟ, ସମଷ୍ଟି; *a.* ସମ୍ପୂର୍ଣ୍ଣ, ସମସ୍ତ, ସମଗ୍ର; *v.* ମିଶାଇବା, ମୋଟ କରିବା ।
Totality, *n.* ସମଗ୍ରତା, ସମଷ୍ଟି ।
Totally, *ad.* ସର୍ବତୋଭାବେ, ସମ୍ପୂର୍ଣ୍ଣରୂପେ, ସର୍ବଥା । [ ହେବା ।
Totter, *v.* ଟଳଟଳ ହେବା, ଥରଥର
Tottering, *a.* ପତନୋନ୍ମୁଖ, ଟଳଟଳ
Touch, *n.* ସ୍ପର୍ଶ; *v.* ସ୍ପର୍ଶ କରିବା, ଛୁଇଁବା ।
Touch-hole, *n.* ତୋପରେ ରଞ୍ଜକର ଛିଦ୍ର । [ *pre.* ସମ୍ବନ୍ଧରେ ।
Touching, *a.* ହୃଦୟସ୍ପର୍ଶୀ, କରୁଣ;
Touchstone, *n.* କଷଟିପଥର ।
Touchy, *a.* ଅଭିମାନୀ, ଚିଡ଼ଚିଡ଼ିଆ, ବଦରାଗୀ । [ ଦୃଢ଼ ।
Tough, *a.* ଚେମେଡ଼ା, ଶକ୍ତ, କଠିନ,
Toughness, *n.* କଠିନତା, ଦୃଢ଼ତା ।
Tour, *n.* ପର୍ଯ୍ୟଟନ, ଦେଶଭ୍ରମଣ, ଗସ୍ତ; *v.* ଗସ୍ତ କରିବା ।
Tourism, *n.* ପର୍ଯ୍ୟଟନ ଶିଳ୍ପ ।
Tourist, *n.* ପର୍ଯ୍ୟଟକ, ଭ୍ରମଣକାରୀ, ଯାତ୍ରୀ ।

Tournament, Tourney, *n.* ସାମରିକ କ୍ରୀଡ଼ାବିଶେଷ, କ୍ରୀଡ଼ା-ପ୍ରତିଯୋଗିତା ।

Tournequet, *n.* ରକ୍ତସ୍ରାବ ରୋଧ-କରିବାପାଇଁ ପ୍ରଧାନ ଧମନୀକୁ ଚାପିବାର ବସ୍ତୁପଟି ବା ରଜ୍ଜୁ ପ୍ରଭୃତି ।

Tout, *n.* ଦଲାଲ; *v.* ଦଲାଲ କରିବା, କୌଶଳରେ ଗ୍ରାହକ ଜୁଟାଇବା ।

Touter, *n.* ଦଲାଲ, ଟାଉଟର ।

Tow, *v.* ଦଉଡ଼ି ସାହାଯ୍ୟରେ ନୌକାଦି ଟାଣିବା; *n.* ଟାଣିବାରେ ବ୍ୟବହୃତ ଦଉଡ଼ି, ଦଉଡ଼ିର ଉପକରଣ, ଶଣ, ଝୋଟ ପ୍ରଭୃତି ।

Toward, Towards, *pre.* ଅଭିମୁଖରେ, ଆଡ଼କୁ, ନିକଟରେ, ନିକଟକୁ; *ad.* ପ୍ରାୟ, ପ୍ରସ୍ତୁତ ଅବସ୍ଥାରେ ।

Towel, *n.* ଗାମୁଛା, ତଉଲିଆ ।

Tower, *n.* ଉନ୍ନତ ପ୍ରାସାଦ, ଦୁର୍ଗ, ବୁରୁଜ; *v.* ଉନ୍ନତ ହୋଇ ରହିବା, ଊର୍ଦ୍ଧ୍ୱରେ ଅବସ୍ଥାନ କରିବା ।

Towering, *a.* ଅତ୍ୟୁନ୍ନତ, ଉତ୍ତୁଙ୍ଗ ।

Towline, *n.* ଡଙ୍ଗା ଟାଣିବା ଦଉଡ଼ି ।

Town, *n.* ସହର, ନଗର, ପୁର ।

Townhall, *n.* ସହରର ସାଧାରଣ-ସଭାଗୃହ ।

Townsfolk, *n.* ପୁରବାସୀଗଣ ।

Townsman, *n.* ନଗରବାସୀ, ପୌରଜନ ।

Township, *n.* ସହରର ଅନ୍ତର୍ଗତ ଅଞ୍ଚଳ, ସହରର ମ୍ୟୁନିସିପାଲିଟି ।

Toxic, Toxical, *a.* ବିଷସମ୍ବନ୍ଧୀୟ ।

Toxicology, *n.* ବିଷବିଦ୍ୟା, ବିଷବିଜ୍ଞାନ

Toxin, Toxine, *n.* ପ୍ରାଣୀଜ ବିଷ ।

Toy, *n.* ଖେଳନା, କ୍ରୀଡ଼ନକ; *v.* ଖେଳନା ପରି ବ୍ୟବହାର କରିବା ।

Trace, *n.* ପଦଚିହ୍ନ, ସଙ୍କେତ, ଚିହ୍ନ; *v.* ପଦଚିହ୍ନ ବା ସଙ୍କେତ ଅନୁସରଣ କରି ଖୋଜିବା, ଅଙ୍କନ କରିବା ।

Traceable, *a.* ଅନୁସନ୍ଧେୟ ।

Tracery, *n.* ଜାଲିକାମ, ପଥର ଉପରେ କାରୁକାର୍ଯ୍ୟ ।

Trachea, *n.* ଶ୍ୱାସନଳୀ ।

Track, *n.* ଗମନଚିହ୍ନ, ଚଲାବାଟ, ଦଉଡ଼ ପ୍ରତିଯୋଗିତା ପାଇଁ ନିର୍ଦ୍ଦିଷ୍ଟ ପଥ, ରେଲପଥ; *v.* ପଦଚିହ୍ନ ଦେଖି ଅନୁସରଣ କରିବା ।

Trackless, *a.* ପଥହୀନ, ଅବାଟ ।

Tract, *n.* ପ୍ରଦେଶ, ଅଞ୍ଚଳ, କ୍ଷୁଦ୍ର ପୁସ୍ତିକା । [ ଦମନୀୟ ।

Tractable, *a.* ଦମନୀୟ, ବଶ୍ୟ,

Traction, *n.* ଆକର୍ଷଣ, ବହନକର୍ମ ।

Tractor, *n.* ଆକର୍ଷଣକାରୀ, କଳଲଙ୍ଗଳ

Trade, *n.* ବାଣିଜ୍ୟ, ବେପାର, ବ୍ୟବସାୟ; *v.* ବ୍ୟବସାୟ କରିବା ।

Trade-mark, *n.* ବ୍ୟବସାୟୀର ନିର୍ଦ୍ଦିଷ୍ଟ ଚିହ୍ନ ବା ସଙ୍କେତ ।

Trader, Tradesman, *n.* ବ୍ୟବସାୟୀ, ଦୋକାନୀ, ବେପାରୀ ।

**Trades-union, Trade-union,** *n.* ଶ୍ରମିକସଙ୍ଘ ।
**Trade-wind,** *n.* ବାଣିଜ୍ୟବାୟୁ ।
**Tradition,** *n.* ପରମ୍ପରା, ଲୋକକଥା, ଐତିହ୍ୟ, ପୁରାଣ ।
**Traditional, Traditionary,** *a.* ପରମ୍ପରାଗତ, ପୌରାଣିକ, ପୁରୁଷାନୁକ୍ରମେ ପ୍ରଚଳିତ । [ଦେବା ।
**Traduce,** *v.* ନିନ୍ଦା କରିବା, ଅପବାଦ
**Traffic,** *n.* ଗମନାଗମନ, କ୍ରୟବିକ୍ରୟ, ବାଣିଜ୍ୟ; *v.* ବାଣିଜ୍ୟ କରିବା । [ବେପାରୀ ।
**Trafficker,** *n.* ବଣିକ, ବ୍ୟବସାୟୀ,
**Tragedian,** *n.* କରୁଣ ଭୂମିକାର ଅଭିନେତା, ଶୋକାନ୍ତ ନାଟକର ଲେଖକ ।
**Tragedy,** *n.* ଦୁର୍ଘଟନା, ଶୋକାନ୍ତ ନାଟକ ।
**Tragic, Tragical,** *a.* ଦାରୁଣ, ଶୋକାବହ, ଶୋକାନ୍ତ, କରୁଣରସପ୍ରଧାନ ।
**Trail,** *n.* ପଦଚିହ୍ନ ବା ଅନ୍ୟ ସଙ୍କେତ; *v.* ଆକର୍ଷଣ କରିବା, ସଙ୍କେତ ଦେଖି ଅନୁସରଣ କରିବା ।
**Trailer,** *n.* ମୋଟର ପଛରେ ଲଗିଥିବା ଅନ୍ୟ ଗାଡ଼ି, ଆଗାମୀ ଚଳଚ୍ଚିତ୍ରର ଅଂଶବିଶେଷ ।
**Train,** *n.* ଶ୍ରେଣୀ, ଧାଡ଼ି, ପରିଜନ, ରେଲଗାଡ଼ିସମୂହ; *v.* ଶିକ୍ଷା ଦେବା, ତାଲିମ କରିବା ।
**Trained,** *a.* ଶିକ୍ଷାପ୍ରାପ୍ତ, ତାଲିମପ୍ରାପ୍ତ ।
**Trainee,** *n.* ଶିକ୍ଷାଧୀନ ବ୍ୟକ୍ତି, ଶିକ୍ଷାର୍ଥୀ ।
**Trainer,** *n.* ଅଧ୍ୟାପକ, ଶିକ୍ଷକ, ଶିକ୍ଷାଦାତା । [ତାଲିମ ।
**Training,** *n.* ଶିକ୍ଷଣ, ଅଭ୍ୟାସ,
**Trait,** *n.* ବିଶେଷ ଚିହ୍ନ ବା ଗୁଣ, ବିଶେଷତ୍ୱ । [ବା ରାଜଦ୍ରୋହୀ ବ୍ୟକ୍ତି ।
**Traitor,** *n.* ବିଶ୍ୱାସଘାତକ, ଦେଶଦ୍ରୋହୀ
**Traitorous,** *a.* ବିଶ୍ୱାସଘାତୀ, ଦ୍ରୋହୀ, ରାଜଦ୍ରୋହୀ, ଦେଶଦ୍ରୋହୀ ।
**Traitress,** *n.* ବିଶ୍ୱାସଘାତିନୀ ନାରୀ ।
**Tram,** *n.* ଟ୍ରାମଗାଡ଼ି ଯିବାର ଲୌହପଥ ।
**Tram-car,** *n.* ଟ୍ରାମଗାଡ଼ି ।
**Trammel,** *n.* ଜାଲ, ଫାଶ, ବନ୍ଧନ; *v.* ବନ୍ଧନ କରିବା, ବାଧା ଦେବା ।
**Tramp,** *v.* ପଦବ୍ରଜରେ ଭ୍ରମଣ କରିବା; *n.* ବାରବୁଲା, ପଦଯାତ୍ରୀ ।
**Trample,** *v.* ପାଦରେ ଦଳିବା ।
**Trance,** *n.* ଅଚୈତନ୍ୟ, ସମାଧି ଅବସ୍ଥା, ସଂଜ୍ଞାହୀନତା । [ନିଶ୍ଚଳ ।
**Tranquil,** *a.* ଶାନ୍ତ, ଧୀର, ସ୍ଥିର,
**Tranquillity,** *n.* ସ୍ଥିରତା, ନିଶ୍ଚଳତା, ଶାନ୍ତି, ଅନୁଦ୍‌ବେଗ । [ଉପଶମ କରିବା ।
**Tranquillize,** *v.* ଶାନ୍ତ କରିବା,
**Transact,** *v.* ନିର୍ବାହ କରିବା, କାରବାର କରିବା ।
**Transaction,** *n.* କାରବାର, ପରିଚାଳନା, କର୍ମସମ୍ପାଦନ, ନେଣଦେଣ ।

Transcend, *v.* ଅତିକ୍ରମ କରିବା, ଅନ୍ୟଠାରୁ ଉତ୍କୃଷ୍ଟ ହେବା ।

Transcendence, Transcendency, *n.* ଶ୍ରେଷ୍ଠତା, ଉତ୍କର୍ଷ ।

Transcendent, *a.* ସର୍ବୋତ୍ତମ, ସର୍ବଶ୍ରେଷ୍ଠ, ଅତୀନ୍ଦ୍ରିୟ ।

Transcendental, *a.* ସର୍ବୋତ୍କୃଷ୍ଟ, ଜ୍ଞାନାତୀତ, ଅଚିନ୍ତ୍ୟ ।

Transcribe, *v.* ନକଲ କରିବା, ପ୍ରତିଲିପି ପ୍ରସ୍ତୁତ କରିବା । [ ପ୍ରତିଲେଖ ।

Transcript, *n.* ନକଲ, ପ୍ରତିଲିପି,

Transcription, *n.* ପ୍ରତିଲିପି ଲିଖନ, ନକଲକରିବା କର୍ମ ।

Transfer, *v.* ହସ୍ତାନ୍ତର କରିବା, ଅନ୍ୟକୁ ଦେବା, ସ୍ଥାନାନ୍ତରିତ କରିବା; *n.* ସ୍ଥାନପରିବର୍ତ୍ତନ, ହସ୍ତାନ୍ତରକରଣ ।

Transfiguration, *n.* ରୂପାନ୍ତରପ୍ରାପ୍ତି । [ ଚେହେରା ପରିବର୍ତ୍ତନ କରିବା ।

Transfigure, *v.* ଆକାର ବା

Transfix, *v.* ଏପାଖରୁ ସେପାଖକୁ ଫୁଟାଇଦେବା ।

Transform, *v.* ରୂପାନ୍ତରିତ କରିବା, ଏକ ପଦାର୍ଥକୁ ଅନ୍ୟ ପଦାର୍ଥରେ ପରିଣତ କରିବା ।

Transformation, *n.* ରୂପାନ୍ତରଗ୍ରହଣ, ଅନ୍ୟରୂପ ଧାରଣ, ଏକ ଧାତୁର ଅନ୍ୟ ଧାତୁରେ ପରିଣତି ।

Transfuse, *v.* ଅନ୍ୟ ପାତ୍ରରେ ଢାଳିବା, ଏକଠାରୁ ନେଇ ଅନ୍ୟଠାରେ ପ୍ରବେଶ କରାଇବା ।

Transfusion, *n.* ଏକ ପ୍ରାଣୀର ରକ୍ତକୁ ଅନ୍ୟ ପ୍ରାଣୀଠାରେ ପ୍ରବେଶ କରାଇବା କର୍ମ ।

Transgress, *v.* ସୀମାଲଙ୍ଘନ କରିବା, ବ୍ୟତିକ୍ରମ କରିବା, ପାପ କରିବା ।

Transgression, *n.* ନିୟମଲଙ୍ଘନ, ବ୍ୟତିକ୍ରମ, ଦୋଷ, ପାପ, ଅପରାଧ ।

Transgressor, *n.* ବିଧିଲଙ୍ଘନକାରୀ ପାପୀ, ଅପରାଧୀ ।

Tranship, *v.* ଏକ ଜାହାଜ ବା ଯାନରୁ ନେଇ ଅନ୍ୟ ଜାହାଜ ବା ଯାନରେ ଲଦିବା ।

Transience, Transientness, *n.* ଅନିତ୍ୟତା, ନଶ୍ୱରତା, ଅସ୍ଥାୟିତ୍ୱ । [ ଅନିତ୍ୟ, ଅସ୍ଥାୟୀ, ବିନଶ୍ୱର ।

Transient, *a.* କ୍ଷଣିକ, ଅଚିର,

Transit, *n.* ଦ୍ରବ୍ୟର ଚାଳଣ, ପ୍ରେରଣ, ପରିବହନ । [ ପରିବର୍ତ୍ତନ ।

Transition, *n.* ସ୍ଥାନ ବା ଅବସ୍ଥାର

Transitional, Transitionary, *a.* ସଂକ୍ରମଣକାଳୀନ, ଦୁଇ ଅବସ୍ଥାର ମଧ୍ୟବର୍ତ୍ତୀ । [ ଗତିଶୀଳ ।

Transitive, *a.* ସକର୍ମକ (କ୍ରିୟା),

Transitory, *a.* କ୍ଷଣିକ, ଅନିତ୍ୟ, ଅଳ୍ପକାଳସ୍ଥାୟୀ ।

**Translate,** *v.* ଭାଷାନ୍ତରିତ କରିବା, ଅନୁବାଦ କରିବା । [ ଅନୁବାଦ ।
**Translation,** *n.* ଭାଷାନ୍ତରକରଣ,
**Translator,** *n.* ଅନୁବାଦକ, ଯେ ଭାଷାନ୍ତରିତ କରେ,
**Transliterate,** *v.* ଅନ୍ୟ ଭାଷାର ଲିପିରେ ପ୍ରକାଶ କରିବା ।
**Transliteration,** *n.* ଅନ୍ୟ ଭାଷାର ଲିପିରେ ଲିଖନ ।
**Translucence, Translucency,** *n.* ଈଷତ୍ ସ୍ୱଚ୍ଛତା, ନିର୍ମଳତା
**Translucent,** *a.* ଈଷତ୍ ସ୍ୱଚ୍ଛ, ନିର୍ମଳ, ବିଶଦ ।
**Transmigrate,** *v.* ଦେହାନ୍ତର ଗ୍ରହଣ କରିବା, ପୁନର୍ଜନ୍ମ ଲାଭ କରିବା ।
**Transmigration,** *n.* ପୁନର୍ଜନ୍ମ-ଗ୍ରହଣ, ଦେହାନ୍ତରପ୍ରାପ୍ତି ।
**Transmission,** *n.* ପ୍ରେରଣ, ଚାଳନ, ବାହନ, ସଞ୍ଚରଣ ।
**Transmit,** *v.* ପ୍ରେରଣ କରିବା, ସଞ୍ଚରଣ କରିବା, ଚାଳିତ କରିବା ।
**Transmutation,** *n.* ଅବସ୍ଥାନ୍ତର-ପ୍ରାପ୍ତି, ରୂପାନ୍ତରଗ୍ରହଣ, ଗୁଣର ପରିବର୍ତ୍ତନ ।
**Transparence, Transparency,** *n.* ସ୍ୱଚ୍ଛତା, ନିର୍ମଳତା ।
**Transparent,** *a.* ସ୍ୱଚ୍ଛ, ନିର୍ମଳ, ବିଶଦ, ବିମଳ । [ ପ୍ରକାଶ ପାଇବା ।
**Transpire,** *v.* ସଂଘଟିତ ହେବା,
**Transplant,** *v.* ଏକ ସ୍ଥାନରୁ ନେଇ ଅନ୍ୟ ସ୍ଥାନରେ ରୋପଣ କରିବା ।
**Transport,** *n.* ପରିବହନ, ଭାବାବେଗ; *v.* ଦ୍ୱୀପାନ୍ତରକୁ ନିର୍ବାସନ କରିବା; ସ୍ଥାନାନ୍ତରକୁ ନେବା, ଅତ୍ୟନ୍ତ ହୃଷ୍ଟ ହେବା ।
**Transportation,** *n.* ପରିବହନ, ଚାଳନ, ସ୍ଥାନାନ୍ତରକୁ ପ୍ରେରଣ, ଦ୍ୱୀପାନ୍ତରକୁ ନିର୍ବାସନ ।[କରିବା, ସ୍ଥାନ ବିନିମୟ କରିବା ।
**Transpose,** *v.* ସ୍ଥାନର ପରିବର୍ତ୍ତନ
**Transposition,** *n.* ସ୍ଥାନ-ପରିବର୍ତ୍ତନ, ସ୍ଥାନବିନିମୟ ।
**Transverse,** *a.* ତେର୍ଚ୍ଛା, ତିର୍ଯ୍ୟକ୍ ।
**Transversely,** *ad.* ତେର୍ଚ୍ଛାଭାବରେ ।
**Trap,** *n.* ଫାନ୍ଦ, ଫାଶ, ଜାଲ, କଳ୍ପା; *v.* ଫାନ୍ଦରେ ପକାଇବା, ମଣ୍ଡନ କରିବା ।
**Trap-door,** *n.* ଗୁପ୍ତକବାଟ ।
**Trapezium,** *n.* ଅଋଜୁଲମ୍ବକ, ଯେଉଁ ଚତୁର୍ଭୁଜ କ୍ଷେତ୍ରର ଦୁଇଟି ବାହୁ ଅସମାନ୍ତର ।
**Trapezoid,** *n.* ସମଲମ୍ବକ, ଯେଉଁ ଚତୁର୍ଭୁଜ କ୍ଷେତ୍ରର କୌଣସି ଦୁଇ ବାହୁ ସମାନ୍ତର ନୁହନ୍ତି । [ ବେଶଭୂଷା, ପରିଚ୍ଛଦ ।
**Trappings,** *n.* (*pl.*) ସାଜସଜ୍ଜା,
**Trash,** *n.* ତୁଚ୍ଛ ପଦାର୍ଥ, ଅସାର ବସ୍ତୁ, ଆବର୍ଜନା; *v.* ଅନାବଶ୍ୟକ ପତ୍ର କାଟି ପକାଇବା । [ ମୂଲ୍ୟହୀନ ।
**Trashy,** *a.* ଅସାର, ନିରର୍ଥକ,

**Travail**, *n.* କଠୋର କ୍ଳେଶ, ପ୍ରସବ-ବେଦନା; *v.* କଠିନ ଶ୍ରମ କରିବା ।

**Travel**, *v.* ଭ୍ରମଣ କରିବା, ପର୍ଯ୍ୟଟନ କରିବା; *n.* ଭ୍ରମଣ, ପର୍ଯ୍ୟଟନ ।

**Traveller**, *n.* ପାନ୍ଥ, ପଥିକ, ଯାତ୍ରୀ, ପର୍ଯ୍ୟଟକ, ଭ୍ରମଣକାରୀ ।

**Traverse**, *v.* ଅତିକ୍ରମ କରିବା; *n.* ପ୍ରତିବନ୍ଧକ; *ad.* ଆଡ଼ବାଗରେ ।

**Travesty**, *a.* ହାସ୍ୟୋଦ୍ଦୀପକ ଛଦ୍ମ-ବେଶଧାରୀ; *n.* କୌଣସି ନାଟକ ବା କାବ୍ୟର ହାସ୍ୟୋଦ୍ଦୀପକ ଅନୁକରଣ, ପ୍ରହସନ; *v.* ହାସ୍ୟୋଦ୍ଦୀପକ ରଚନାରେ ପରିଣତ କରିବା ।

**Tray**, *n.* ଥାଳିଆ, ପାତ୍ର, ଡାଲା ।

**Treacherous**, *a.* ବିଶ୍ୱାସଘାତୀ, ଅବିଶ୍ୱାସ୍ୟ, କୃତଘ୍ନ । [ ଘାତକତାପୂର୍ବକ ।

**Treacherously** *ad.* ବିଶ୍ୱାସ-

**Treachery**, *n.* ବିଶ୍ୱାସଘାତକତା, ପ୍ରତାରଣା, ଅବିଶ୍ୱାସ ।

**Treacle**, *n.* ତରଳ ଗୁଡ଼ ।

**Tread**, *n.* ପଦକ୍ଷେପ; *v.* ପାଦ ପକାଇବା, ଦଳିବା, ମଳିବା ।

**Treadle**, *n.* କଳର ଯେଉଁ ଅଂଶରେ ପାଦ ଦେଇ ତାହାକୁ ଚଳାଯାଏ ।

**Treason**, *n.* ରାଜଦ୍ରୋହ, ଦେଶଦ୍ରୋହ, ବିଶ୍ୱାସଘାତକତା । [ ସମ୍ବନ୍ଧୀୟ ।

**Treasonable**, *a.* ରାଜଦ୍ରୋହ

**Treasure**, *n.* କୋଷ, ସମ୍ପତ୍ତି, ସଞ୍ଚିତ ଧନ, ବହୁମୂଲ୍ୟ ଦ୍ରବ୍ୟ; *v.* ସଞ୍ଚୟ କରିବା, ବହୁମୂଲ୍ୟ ମନେ କରିବା । [ ରକ୍ଷକ ।

**Treasurer**, *n.* କୋଷାଧ୍ୟକ୍ଷ, ତହବିଲ-

**Treasury**, *n.* ରାଜକୋଷ, ଧନାଗାର, କୋଷାଗାର, ଭଣ୍ଡାର ।

**Treat**, *v.* ସତ୍କାର କରିବା, ଭୋଜନାଦି ଦେବା, ବ୍ୟବହାର ଦେଖାଇବା; *n.* ଭୋଜି, ସୁଖଭୋଗ, ସତ୍କାର ।

**Treatise**, *n.* ପ୍ରବନ୍ଧ, ପୁସ୍ତକ ।

**Treatment**, *n.* ବ୍ୟବହାର, ଚିକିତ୍ସା ।

**Treaty**, *n.* ସନ୍ଧିପତ୍ର । [ ଗୁଣ କରିବା ।

**Treble**, *a.* ତ୍ରିବିଧ, ତିନିଗୁଣ; *v.* ତିନି-

**Tree**, *n.* ତରୁ, ବୃକ୍ଷ, ଗଛ ।

**Trefoil**, *n.* ତ୍ରିପର୍ଣ୍ଣ ଉଦ୍ଭିଦ, ତ୍ରିଦଳ ବୃକ୍ଷ ।

**Trek**, *v.* ବଳଦଗାଡ଼ିରେ ଯାତ୍ରା କରିବା, ବୋଝ୍ ନେଇ ପଦଯାତ୍ରା କରିବା; *n.* ଯାତ୍ରା, ସ୍ଥାନାନ୍ତରଗମନ । [ ଜାଲିକାମ, ଜାଫିରି ।

**Trellis**, *n.* ଲୌହ ବା କାଷ୍ଠର

**Tremble**, *v.* କମ୍ପିବା, ଥରିବା, ତ୍ରସ୍ତ ହେବା; *n.* କମ୍ପ । [ *a.* କମ୍ପିତ ।

**Trembling**, *n.* କମ୍ପନ, ସ୍ପନ୍ଦନ;

**Tremendous**, *a.* ବିରାଟ, ଅତିବୃହତ୍, ଭୟଙ୍କର, ଦାରୁଣ ।

**Tremor**, *n.* କମ୍ପନ, ଥରହର, କାତରତା ।

**Tremulous**, *a.* କମ୍ପମାନ, ଥରଥର, ଅସ୍ଥିର, କାତର ।

Trench, *n.* ଗର୍ତ୍ତ, ଗଡ଼ଖାଇ, ପରିଖା ।
Trenchant, *a.* ତୀକ୍ଷ୍ଣ, ପ୍ରଖର ।
Trencher, *n.* କାଠର ବଡ଼ ଥାଳି, ଗର୍ତ୍ତର ଖନକ ।
Trend, *n.* ପ୍ରବଣତା, ପ୍ରବୃତ୍ତି, ଆନତ; *v.* କୌଣସି ଦଗକୁ ଚଳବା । [ ଆଶଙ୍କା ।
Trepidation, *n.* ଉଦ୍‌ବେଗ, କମ୍ପ,
Trespass, *n.* ଅନଧିକାର ପ୍ରବେଶ, ଆଦେଶ ଲଙ୍ଘନ, ପାପ; *v.* ଅନଧିକାର ପ୍ରବେଶ କରବା । [ ପ୍ରବେଶକାରୀ ।
Trespasser, *n.* ଅନଧିକାର
Tress, *n.* କେଶଗୁଚ୍ଛ, ଚୂର୍ଣ୍ଣକୁନ୍ତଳ, କବରୀ; *v.* କେଶରେ ବେଣୀ କରବା ।
Triad, *n.* ତ୍ରିତୟ, ତ୍ରୟ ।
Trial, *n.* ପରୀକ୍ଷା, ବିଚାର, ଦୁଃଖକଷ୍ଟ ।
Triangle, *n.* ତ୍ରିଭୁଜ, ତ୍ରିକୋଣ କ୍ଷେତ୍ର ।
Triangular, *a.* ତ୍ରିଭୁଜାକୃତ, ତ୍ରିକୋଣବିଶିଷ୍ଟ । [ ଗୋଷ୍ଠୀଗତ ।
Tribal, *a.* ଉପଜାତ ସମ୍ବନ୍ଧୀୟ,
Tribe, *n.* ଉପଜାତ, ଗୋଷ୍ଠୀ । [ ବିପତ୍ତି ।
Tribulation, *n.* କ୍ଲେଶ, ଦୁଃଖ,
Tribunal, *n.* ଧର୍ମାସନ, ନ୍ୟାୟସଭା, ବିଚାରାଳୟ । [ଲୋକନିର୍ବାଚିତ ବିଚାରକର୍ତ୍ତା ।
Tribune, *n.* ପ୍ରାଚୀନ ରୋମରେ
Tributary, *a.* କରଦ, ସାମନ୍ତ, ଅଧୀନ; *n.* କରଦ ରାଜ୍ୟ, ଉପନଦୀ ।
Tribute, *n.* କର, ରାଜସ୍ୱ, ଭେଟି ।
Trice, *n.* ନମେଷ, ମୁହୂର୍ତ୍ତ, କ୍ଷଣକାଳ ।
Trick, *n.* ଚାତୁରୀ, ଛଳ, କପଟ, ବଞ୍ଚନା; *v.* ଫାଙ୍କିଦେବା, ଠକବା । [ ପ୍ରତାରଣା ।
Trickery, *n.* ଚାତୁରୀ, ଛଳ, କପଟ,
Trickle, *v.* ଟୋପା ଟୋପା ହୋଇ ଝରବା; *n.* ବନ୍ଦୁଆକାରରେ କ୍ଷରଣ ।
Trickster, *n.* ବଞ୍ଚକ, ପ୍ରତାରକ ।
Tricycle, *n.* ତନଚକିଆ ସାଇକେଲ ।
Trident, *n.* ତ୍ରିଶୂଳ, ତନଶାଖିଆ ତେଣ୍ଟା । ବର୍ଷରେ ଅନୁଷ୍ଠିତ ।
Triennial, *a.* ତ୍ରୈବାର୍ଷିକ, ତନ
Trifle, *v.* ଅବଜ୍ଞା କରବା, ଅପବ୍ୟୟ କରବା, ତାଚ୍ଛିଲ୍ୟ ପ୍ରଦର୍ଶନ କରବା; *n.* ତୁଚ୍ଛ ଦ୍ରବ୍ୟ । [ ତୁଚ୍ଛ ମନେ କରେ ।
Trifler, *n.* ଅପବ୍ୟୟକାରୀ, ଯେ ଅନ୍ୟକୁ
Trifling, *a.* ଅତ ସାମାନ୍ୟ, ତୁଚ୍ଛ, ନଗଣ୍ୟ, ହେୟ, ସ୍ୱଳ୍ପମୂଲ୍ୟ ।
Trigger, *n.* ବନ୍ଧୁକର ଘୋଡ଼ିଆ ।
Trigonometry, *n.* ତ୍ରିକୋଣମିତ ।
Trilateral, *a.* ତନପାର୍ଶ୍ୱବିଶିଷ୍ଟ ।
Trill, *n.* ସ୍ୱରର କମ୍ପନ; *v.* ସ୍ୱରକୁ କମ୍ପିତ କରବା ।
Trillion, *n.* ଦଶ ପରାର୍ଦ୍ଧ (୧୦୦୦୦୦୦୦୦୦୦୦୦୦୦୦୦୦୦୦୦) ।
Trim, *a.* ସୁନ୍ଦର, ସୁସଜ୍ଜିତ; *v.* ସଜ୍ଜିତ କରବା, ଅଗ କାଟିବା ।
Trimensual, *a.* ତ୍ରୈମାସିକ, ତନମାସରେ ସଂଘଟିତ ।

**Trimmer,** *n.* ଯେଉଁ ଲୋକ ବାରମ୍ବାର ପକ୍ଷ ପରିବର୍ତ୍ତନ କରୁଥାଏ, ସୁବିଧାବାଦୀ ।
**Trimming,** *n.* ଧଡ଼ି, ଝାଲର ।
**Trimonthly,** *a.* ତ୍ରୈମାସିକ ।
**Trinity,** *n.* ତ୍ରିମୂର୍ତ୍ତି, ତ୍ରୟାତ୍ମକ ଈଶ୍ୱର ।
**Trinket,** *n.* ଦେହର କ୍ଷୁଦ୍ର ଅଳଙ୍କାର-ବିଶେଷ, ମୂଲ୍ୟହୀନ ପଦାର୍ଥ, ପାନପାତ୍ର; *v.* କପଟ ବ୍ୟବହାର କରିବା ।
**Trio,** *n.* ତ୍ରୟୀ, ତ୍ରିତୟ, ତ୍ରୟ ।
**Trip,** *v.* ଭ୍ରମଣ କରିବା, ଭୁଲ୍ କରିବା; *n.* ସାମାନ୍ୟ ପଦକ୍ଷେପ । [ ତ୍ରିଦଳୀୟ ।
**Tripartite,** *a.* ତିନି ଭାଗରେ ବିଭକ୍ତ,
**Tripe,** *n.* ରୋମନ୍ଥକ ପଶୁର ଅନ୍ତ୍ର ।
**Tripetalous,** *a.* ତିନିପାଖୁଡ଼ାବିଶିଷ୍ଟ ।
**Triple,** *a.* ତ୍ରିଗୁଣ, ତିନିଗୁଣ ।
**Triplet,** *n.* ଏକଗର୍ଭରୁ ଜାତ ତିନି ସନ୍ତାନ ମଧ୍ୟରୁ ପ୍ରତ୍ୟେକଟି, ତିନି ପଙ୍କ୍ତି-ବିଶିଷ୍ଟ କବିତା ।
**Triplicate,** *a.* ତିନିପ୍ରସ୍ଥ, ତ୍ରିଗୁଣିତ; *n.* ତୃତୀୟ ପ୍ରସ୍ଥ ନକଲ; *v.* ତିନିଗୁଣ କରିବା, ତିନିପ୍ରସ୍ଥ କରିବା ।
**Tripod,** *n.* ତ୍ରିପଦ-ଆସନ, ଟିପାଇ ।
**Tripping,** *a.* ଦ୍ରୁତଗମନ, ନୃତ୍ୟବିଶେଷ । [ ବିଭକ୍ତ କରିବା ।
**Trisect,** *v.* ତିନି ସମାନ ଭାଗରେ
**Trisection,** *n.* ତିନି ସମାନ ଭାଗରେ ବିଭାଗୀକରଣ ।
**Trite,** *a.* ପୁରାତନ, ଜୀର୍ଣ୍ଣ । [ ପେଷିବା ।
**Triturate,** *v.* ବାଟି ଚୂର୍ଣ୍ଣ କରିବା,
**Trituration,** *n.* ଚୂର୍ଣ୍ଣକରଣ, ବିଚୂର୍ଣ୍ଣ ।
**Triumph,** *n.* ବିଜୟ, ବିଜୟୋଲ୍ଲାସ, ବିଜୟୋତ୍ସବ; *v.* ବିଜୟୋତ୍ସବ କରିବା ।
**Triumphal,** *a.* ବିଜୟସୂଚକ, ବିଜୟସମ୍ବନ୍ଧୀୟ । [ ବିଜୟୋଲ୍ଲାସମତ୍ତ ।
**Triumphant,** *a.* ବିଜୟୀ,
**Triumphantly,** *ad.* ବିଜୟ ଉଲ୍ଲାସରେ । [ ନଗଣ୍ୟ ।
**Trivial,** *a.* ଅତି ସାମାନ୍ୟ, ତୁଚ୍ଛ,
**Triviality,** *n.* ତୁଚ୍ଛତା, ତୁଚ୍ଛ ବ୍ୟାପାର ।
**Troll,** *v.* ବୃତ୍ତାକାରରେ ବୁଲିବା, ଭ୍ରମଣ କରିବା; *n.* ଆବର୍ତ୍ତନ, ପୁନରାବୃତ୍ତି ।
**Trolley, Trolly,** *n.* ଠେଲାଗାଡ଼ି ।
**Trollop,** *n.* କୁବେଶା ରମଣୀ ।
**Troop,** *n* ଜନସଂଘ, ସୈନ୍ୟଦଳ; *v.* ଦଳବଦ୍ଧ ହୋଇ ଗତି କରିବା, ଦଳବଦ୍ଧ ହେବା । [ ସୈନିକର ଅଶ୍ୱ ।
**Trooper,** *n.* ଅଶ୍ୱାରୋହୀ ସୈନ୍ୟ,
**Trope,** *n.* ରୂପକ, କାବ୍ୟର ଅଳଙ୍କାର-ବିଶେଷ ।
**Trophy,** *n.* ବିଜୟସଙ୍କେତ; *v.* ବିଜୟଚିହ୍ନରେ ଭୂଷିତ କରିବା ।
**Tropic,** *n.* ଅୟନାନ୍ତ ବୃତ୍ତ (ବିଷୁବ ରେଖାର ଉଭୟ ପାର୍ଶ୍ୱରେ ୨୩° · ୨୮' ଦୂରରେ ଅବସ୍ଥିତ), ଗ୍ରୀଷ୍ମମଣ୍ଡଳ ।

**Tropic, Tropical,** *a.* ଗ୍ରୀଷ୍ମ-ମଣ୍ଡଳୀୟ । [ *n.* ଘୋଡ଼ାର କଦମ ଗୃଲ୍ ।
**Trot,** *v.* ଦ୍ରୁତଗତିରେ ଯିବା, ଦୌଡ଼ିବା;
**Troth,** *n.* ସତ୍ୟତା, ବିଶ୍ୱାସ, ପ୍ରତ୍ୟୟ; *v.* ସତ୍ୟ କରିବା ।
**Trouble,** *v.* ବିରକ୍ତ କରିବା, ଅସୁବିଧା କରିବା; *n.* ଯନ୍ତ୍ରଣା, କ୍ଳେଶ, ଅସ୍ୱସ୍ତି, ଗୋଳମାଳ । [ କଷ୍ଟଦାୟକ, ଦୁଃଖାବହ ।
**Troublesome,** *a.* ବିରକ୍ତିକର,
**Troublous,** *a.* ଦୁଃଖପୂର୍ଣ୍ଣ, ଗୋଳମାଳିଆ ।
**Trough,** *n.* କାଷ୍ଠନିର୍ମିତ ଜଳାଧାର, ଦୀର୍ଘ ଓ ସଂକୀର୍ଣ୍ଣ ଜଳପ୍ରଣାଳୀ ।
**Troupe,** *n.* ଅଭିନେତା, ନର୍ତ୍ତକ ପ୍ରଭୃତିର ଦଳ । [ ଜଙ୍ଘିଆ ।
**Trousers,** *n.* (*pl.*) ପାଇଜାମା,
**Trout,** *n.* ଏକ ଜାତୀୟ ମତ୍ସ୍ୟ ।
**Trow,** *v.* ସତ୍ୟ ବୋଲି ମନେ କରିବା, ବିଶ୍ୱାସ କରିବା । [ (ଦେଖ) ।
**Trowsers,** *n.* (*pl.*) Trousers
**Truancy,** *n.* ବିନାକାରଣରେ ବିଦ୍ୟାଳୟରୁ ଅନୁପସ୍ଥିତି ।
**Truant,** *n.* ବିଦ୍ୟାଳୟରୁ ବୃଥା ଅନୁପସ୍ଥିତ ବାଳକ, ଅଳସ ବ୍ୟକ୍ତି; *a.* ଅଳସୁଆ ।
**Truce,** *n.* ଯୁଦ୍ଧବିରତି, ନିବୃତ୍ତି, ବିରାମ ।
**Truck,** *n.* ମାଲ୍‌ବାହୀ ରେଳଡବା ବା ମୋଟରଗାଡ଼ି, ପଣ୍ୟବିନିମୟ; *v.* ଟ୍ରକରେ ଜିନିଷ ନେବାଆଣିବା କରିବା ।

**Truckage,** *n.* ଟ୍ରକରେ ମାଲ ବୋହିବା କାର୍ଯ୍ୟ, ଟ୍ରକରେ ମାଲ ବୋହିବାର ଭଡ଼ା ।
**Truckle,** *n.* କ୍ଷୁଦ୍ର ଚକ, ଚକଯୁକ୍ତ ଅଳ୍ପୋଚ୍ଚ ଶଯ୍ୟା; *v.* ଗୋଲାକାର ଦଣ୍ଡ-ଉପରେ ଗଢ଼ କରିବା ।
**Truculence, Truculency,** *n.* ଭୀଷଣତା, ନିର୍ଦ୍ଦୟତା, କ୍ରୂରତା, ବର୍ବରତା
**Truculent,** *a.* କ୍ରୂର, ନିଷ୍ଠୁର, ବର୍ବର
**Trudge,** *v.* କଷ୍ଟରେ ଗ୍ଭଲିବା; *n.* କଷ୍ଟକର ଗମନ । [ ଯଥାର୍ଥ, ସତ୍ୟବ୍ରତ
**True,** *a.* ସତ୍ୟ, ପ୍ରକୃତ, ବିଶ୍ୱସ୍ତ,
**Truism,** *n.* ସର୍ବସମ୍ମତ ବଚନ, ସ୍ୱତଃସିଦ୍ଧ ସତ୍ୟ । [ ଭାବରେ, ପ୍ରକୃତରୂପେ
**Truly,** *ad.* ବିଶ୍ୱସ୍ତଭାବରେ, ନିଶ୍ଚିତ
**Trump,** *n.* ତୂରୀ, ତାସ ଖେଳର ତୁରୁପ; *v.* ତୁରୁପ ତାସ ଖେଳିବା ।
**Trumpet,** *n.* ତୂରୀ; *v.* ଘୋଷଣା କରିବା, ପ୍ରଶଂସା ଗାଇବା, ତୂରୀ ବଜାଇବା ।
**Trumpeter,** *n.* ତୂରୀବାଦକ, ଉଦ୍‌ଘୋଷକ । [ ବିକଳାଙ୍ଗ କରିବା ।
**Truncate,** *v.* ଅଗ କାଟିବା,
**Truncheon,** *n.* ଗ୍ରେଟ ଠେଙ୍ଗା, କ୍ଷମତା ବା ପଦବୀ ସୂଚକ ଯଷ୍ଟି; *v.* ଗ୍ରେଟ ଠେଙ୍ଗାରେ ପିଟିବା ।
**Trunk,** *n.* ଗଛର ଗଣ୍ଡି, ଦେହର ଗଣ୍ଡି, ଗ୍ରେଟ ସିନ୍ଦୁକ, ହାତୀର ଶୁଣ୍ଢ । [ ରାଜପଥ ।
**Trunk-road,** *n.* ପ୍ରଧାନ ରାସ୍ତା,

Trust, *v.* ବିଶ୍ୱାସ କରିବା, ନ୍ୟସ୍ତ କରିବା, ମନେମନେ ଆଶା କରିବା; *n.* ବିଶ୍ୱସ୍ତତା, ବିଶ୍ୱାସ, ନ୍ୟାସ, ଜିମ୍ମା ।
Trusted, *a.* ବିଶ୍ୱସ୍ତ, ବିଶ୍ୱାସୀ ।
Trustee, *n.* ଜିମ୍ମାଦାର, ମାରଫତଦାର ।
Trustful, *a.* ବିଶ୍ୱାସ୍ୟ, ବିଶ୍ୱାସକାରୀ ।
Trustworthy, *a.* ବିଶ୍ୱସନୀୟ, ବିଶ୍ୱାସର ଯୋଗ୍ୟ ।
Trusty, *a.* ବିଶ୍ୱାସସ୍ଥାନୀୟ, ସତ୍ଯ, ଦୃଢ଼ ।
Truth, *n.* ସତ୍ୟ, ତଥ୍ୟ, ଯାଥାର୍ଥ୍ୟ, ପ୍ରକୃତ ବିଷୟ ।
Truthful, *a.* ସତ୍ୟବାଦୀ ।
Truthfulness, *n.* ସତ୍ୟବାଦିତା ।
Try, *v.* ପରୀକ୍ଷାକରି ଦେଖିବା, ଚେଷ୍ଟା କରିବା, ବିଚାର କରିବା; *n.* ଚେଷ୍ଟା, ଉଦ୍ୟମ ।
Tryst, *n.* ମିଳନପାଇଁ ସଙ୍କେତ ସ୍ଥାନ; *v.* ନିର୍ଦ୍ଦିଷ୍ଟ ସ୍ଥଳରେ ମିଳିବାକୁ ପ୍ରତିଜ୍ଞା କରିବା ।
Tsar, Tzar, Czar, *n.* ରୁଷିଆର ସମ୍ରାଟଙ୍କ ଉପାଧି (*Fem.* Tsarina, Tzarina, Czarina) ।
Tub, *n.* କାଠର କୁଣ୍ଡ, ଜଳପାତ୍ର ।
Tube, *n.* ନଳ; *v.* ନଳ ଲଗାଇବା ।
Tubercle, *n.* କ୍ଷୁଦ୍ର ବ୍ରଣ, ଗ୍ରନ୍ଥି, ବୃକ୍ଷର ଆବୁ । [ ସମୃଦ୍ଧୀସ୍ତ, ବ୍ରଣଘଟିତ ।
Tubercular, *a.* ଯକ୍ଷ୍ମାପୀଡ଼ିତ, ଯକ୍ଷ୍ମା-
Tuberculosis, *n.* ଯକ୍ଷ୍ମା, କ୍ଷୟରୋଗ ।
Tube-well, *n.* ନଳକୂଅ ।
Tubular, *a.* ନଳର ଆକୃତିବିଶିଷ୍ଟ ।
Tuck, *v.* ଖୋସିବା, କୁଞ୍ଚକରିବା; *n.* ପୋଷାକର ଲମ୍ବା ଭାଙ୍ଗ ।
Tucker, *n.* ନାରୀ ଓ ଶିଶୁମାନଙ୍କର ବକ୍ଷର ଆବରକ ବସ୍ତ୍ର ।
Tuesday, *n.* ମଙ୍ଗଳବାର ।
Tuft, *n.* ଗୁଚ୍ଛ, ଥୋପା, ପେନ୍ଥା; *v.* ପେନ୍ଥା ପେନ୍ଥା କରିବା ।
Tug, *v.* ଟାଣିବା, ଆକର୍ଷଣ କରିବା; *n.* ବଳପୂର୍ବକ ଆକର୍ଷଣ ।
Tug-of-war, *n.* ଦୁଇ ଦଳ ମଧ୍ୟରେ ଦଉଡ଼ିଟାଣିବା ପ୍ରତିଯୋଗିତା ।
Tuition, *n.* ଶିକ୍ଷାଦାନ, ଅଭିଭାବକତ୍ୱ, ଗୁରୁଦତ୍ତ ବେତନ ।
Tulip, *n.* ମଲ୍ଲୀଜାତୀୟ ଫୁଲ ।
Tumble, *v.* ପଡ଼ିଯିବା, ଝୁଣ୍ଟିବା, ଗଡ଼ି ପଡ଼ିବା; *n.* ପତନ । [ ବାଟିକର ।
Tumbler, *n.* ପାନପାତ୍ର, ଗିଲାସ,
Tumblerful, *n.* ଏକଗିଲାସ ପରିମାଣ ।
Tumid, *a.* ସ୍ଫୀତ, ଫମ୍ପା, ଫୁଲିଥିବା ।
Tumour, *n.* ଆବୁ, ସ୍ଫୋଟକ, ଫୋଟକା
Tumult, *n.* ଗୋଳମାଳ, କୋଳାହଳ ।
Tumultuous, *a.* ଗୋଳମାଳପୂର୍ଣ୍ଣ, କୋଳାହଳମୟ । [ *v.* ସ୍ୱର ଧରିବା ।
Tune, *n.* ସ୍ୱର, ରାଗ, ଐକ୍ୟ, ମେଳ;
Tuneful, *a.* ସୁସ୍ୱର, ସୁଶ୍ରାବ୍ୟ, ମଧୁର ।

**Tunic**, *n.* ଢିଲ ଅଙ୍ଗରଖା ।

**Tunnel**, *n.* ସୁଡ଼ଙ୍ଗ, ଧୂମନିର୍ଗମନପଥ; *v.* ସୁଡ଼ଙ୍ଗ ତିଆରି କରିବା ।

**Turban**, *n.* ପଗଡ଼ି, ପାଗ ।

**Turbid**, *a.* ପଙ୍କିଳ, ଗୋଳିଆ ।

**Turbulence, Turbulency**, *n.* କୋଳାହଳ, ଗୋଳମାଳ, ଦୌରାତ୍ମ୍ୟ, ଉତ୍ପାତ । [ କୋଳାହଳପୂର୍ଣ୍ଣ ।

**Turbulent**, *a.* ଉତ୍ପାତକାରୀ,

**Turf**, *n.* ଘାସର ଚେକା, ତୃଣାଚ୍ଛାଦିତ ଭୂମି; *v.* ଘାସଚେକା ବସାଇବା ।

**Turmeric**, *n.* ହଳଦୀ, ହଳଦି ।

**Turmoil**, *n.* ଉତ୍ପାତ, ଉପଦ୍ରବ, ଉଦ୍‌ବେଗ । [*v.* ଫେରିବା, ବୁଲିପଡ଼ିବା ।

**Turn**, *n.* ପାଳି, ଅବସ୍ଥା, ବୁଲିବାଟ;

**Turn and turn about**, *a.* ପର୍ଯ୍ୟାୟକ୍ରମେ, ପାଳି ଅନୁସାରେ, ଜଣକ ପରେ ଜଣେ ।

**Turn again**, *v.* ଫେରି ଆସିବା ।

**Turn against**, *v.* ଶତ୍ରୁତା କରିବା ।

**Turn a penny**, *v.* ଅର୍ଜନ କରିବା ।

**Turn aside**, *v.* ନିବାରଣ କରିବା ।

**Turn away**, *v.* ଚାକିରିରୁ ବାହାର କରିଦେବା । [ ଫେରିଯିବା ।

**Turn back**, *v.* ପଛେଇ ଯିବା,

**Turncoat**, *n.* ଯେ ସ୍ୱମତ ବା ସ୍ୱପକ୍ଷ ତ୍ୟାଗକରେ ।

**Turn down**, *v.* ଓଲଟାଇ ଦେବା, ଅଗ୍ରାହ୍ୟ କରିବା ।

**Turner**, *n.* କୁନ୍ଦ ଚଲାଇବା ମିସ୍ତ୍ରୀ ।

**Turn forth**, *v.* ବାହାର କରିଦେବା ।

**Turning**, *n.* ବାଙ୍କ, ମୋଡ଼ ।

**Turn into**, *v.* ପରିବର୍ତ୍ତିତ ହେବା ।

**Turnip**, *n.* ଶାଲଗମ । [ ରକ୍ଷକ ।

**Turnkey**, *n.* ଜେଲଖାନାର ଦ୍ୱାର-

**Turn on**, *v.* ନିର୍ଭର କରିବା, ସମ୍ପୃକ୍ତ ହେବା । [ ପ୍ରମାଣିତ ହେବା ।

**Turn out**, *v.* ତଡ଼ିଦେବା, ଫଳରେ

**Turn over**, *v.* ଓଲଟାଇବା, ପକ୍ଷ ପରିବର୍ତ୍ତନ କରିବା, ପତ୍ର ଲେଉଟାଇ ପରୀକ୍ଷା କରିବା ।

**Turnpike gate**, *n.* ରାଜପଥରେ ଶୁଳ୍କ ଆଦାୟ ପାଇଁ ସ୍ଥାପିତ ଫାଟକ ।

**Turnpike road**, *n.* ଯେଉଁ ରାଜପଥରେ ଯିବାପାଇଁ କର ଦେବାକୁ ପଡ଼େ ।

**Turn round**, *v.* ଓଲଟି ପଡ଼ିବା, ପକ୍ଷପରିବର୍ତ୍ତନ କରିବା ।

**Turnscrew**, *n.* ପେଚକସ ।

**Turnstile**, *n.* ବାଟ ଓଗାଳିବା ପାଇଁ ଘୂର୍ଣ୍ଣାୟମାନ ଗ୍ରେଟ ଫାଟକ ।

**Turn to**, *v.* ଅବଲମ୍ବନ କରିବା, ପୁସ୍ତକର ପୃଷ୍ଠା ଦେଖିବା ।

**Turn upside down**, *v.* ଓଲଟାଇ ଦେବା, ଗୋଳମାଳିଆ କରିବା ।

Turpentine, *n.* ତାର୍ପିନ ତେଲ
Turpitude, *n.* ଦୌରାତ୍ମ୍ୟ, ନୀଚ ପ୍ରକୃତ ।
Turret, *n.* ଚୂଡ଼ା, ଶିଖର, ଗମ୍ବୁଜ ।
Turtle, *n.* କଚ୍ଛପ, କୂର୍ମ
Turtle-dove, *n.* ଏକ ଜାତୀୟ କପୋତ ପକ୍ଷୀ । [ ବଡ଼ ଦାନ୍ତ ।
Tusk, *n.* ଶୂକର-ହସ୍ତୀ ପ୍ରଭୃତ ପଶୁର
Tusker, *n.* ଦନ୍ତାହାତୀ ।
Tussle, *n.* ଠେଲାଠେଲି; *v.* ଠେଲା-ଠେଲି ହେବା । [ ଅଭିଭାବକତ୍ୱ ।
Tutelage, *n.* ଶାସନ, ପ୍ରତିପାଳନ,
Tutelary, *a.* ରକ୍ଷକ, ପ୍ରତିପାଳକ, ଅଭିଭାବକ । [ *v.* ଶିକ୍ଷାଦେବା ।
Tutor, *n.* ଗୁରୁ, ଶିକ୍ଷକ, ଉପଦେଷ୍ଟା;
Tutorage, *n.* ଶିକ୍ଷକତା, ଉପଦେଶ ।
Tutorial, *a.* ଶିକ୍ଷାଗତ, ଶିକ୍ଷାଦାନ ବିଷୟକ ।
Twain, *n.* ଦୁଇ, ଦ୍ୱୟ, ଯୁଗ୍ମ, ଯୁଗଳ ।
Twang, *n.* ଟୁଂଟାଂ ଶବ୍ଦ, ଧନୁର ଟଙ୍କାର ଶବ୍ଦ; *v.* ଟଙ୍କାର ଶବ୍ଦ କରିବା ।
Tweak, *v.* ଚିପି ଧରିବା, ଚିମୁଟିବା ।
Tweezers, *n.* (*pl.*) ଛୋଟ ଚିମୁଟା, ନାକୁଆସି । [ ଏକଭାଗ ।
Twelfth, *a.* ଦ୍ୱାଦଶ; *n.* ବାରଭାଗରୁ
Twelve, *a.* ବାର, ଦ୍ୱାଦଶ ।
Twentieth, *a.* ବିଂଶତିତମ ।
Twenty, *a.* କୋଡ଼ିଏ, ବିଂଶ ।
Twice, *a.* ଦୁଇଥର, ଦୁଇଗୁଣ ।
Twig, *n.* ଛୋଟ ଡାଳ, ପତ୍ର ।
Twilight, *n.* ଉଷା, ସନ୍ଧ୍ୟା, ଗୋଧୂଳି ।
Twin, *n.* ଯୋଡ଼ି, ଯମଜ ସନ୍ତାନ, ଯୁଗ୍ମ ।
Twinborn, *a.* ଯାଆଁଳା, ଯମଜ ।
Twine, *n.* ମୋଟ ସୂତା; *v.* ଗୁଡ଼ାଇ ହେବା, ମୋଟ ସୂତାରେ ବାନ୍ଧିବା ।
Twinge, *v.* ଚିମୁଟିବା; *n.* ଚିମୁଟା ।
Twinkle, *v.* (ଆଖି) ମିଟିମିଟି କରିବା; *n.* ପଲକ, ଆଖିମିଟିମିଟି ।
Twinkling, *n.* ନିମେଷ, ପଲକ ।
Twirl, *v.* ଗୁଡ଼ାଇବା, ବେଗରେ ଘୂରିବା; *n.* ଘୂର୍ଣ୍ଣନ, ଦ୍ରୁତ ବୃତ୍ତାକାର ଗତି ।
Twist, *v.* ମୋଡ଼ିବା, ଗୁଡ଼ାଇବା, ଟାଣି ଓଟାରି କଦର୍ଥ ବାହାର କରିବା; *n.* ମୋଡ଼ ଏକସର ସୂତା । [ କରିବା; *n.* ଭର୍ତ୍ସନା
Twit, *v.* ଦୋଷସ୍ମରଣ କରାଇବା, ଭର୍ତ୍ସନ
Twitch, *v.* ହଠାତ୍ ଟାଣିବା, ଛୁରିବା; *n.* ପେଶୀର ସ୍ପନ୍ଦନ, ସହସା ଆକର୍ଷଣ ।
Twitter, *n.* (ପକ୍ଷୀର) ରବ, ସ୍ନାୟୁର ଉତ୍ତେଜିତ କମ୍ପନ; *v.* ଉଚ୍ଚସ୍ୱରରେ ଶବ୍ଦ କରିବା
Two, *a.* ଦୁଇ, ଦ୍ୱି ।
Twofold, *n.* ଦୁଇପ୍ରସ୍ଥ, ଦୁଇଗୁଣ ।
Tympanum, *n.* କର୍ଣ୍ଣପଟହ, କର୍ଣ୍ଣ-ମଧ୍ୟସ୍ଥ ଝିଲ୍ଲୀବିଶେଷ (*pl.* Tympana)
Type, *n.* ମୁଦ୍ରଣ ନିମନ୍ତେ ଧାତୁନିର୍ମିତ ଅକ୍ଷର, ଶ୍ରେଣୀ, ପ୍ରକାର; *v.* ଟାଇପରାଇଟର ଯନ୍ତ୍ରରେ ଅକ୍ଷର ଛାପିବା ।

Typewriter, *n*. ଅକ୍ଷର ଛାପିବାର ଯନ୍ତ୍ରବିଶେଷ, ଟାଇପରାଇଟର ।
Typhoid, *n*. ଆନ୍ତ୍ରିକଜ୍ୱର । [ ବାତ୍ୟା ।
Typhoon, *n*. ଚୀନସାଗରର ଭୀଷଣ
Typhus, *n*. ଏକପ୍ରକାର ସଙ୍ଗ୍ରାମକ ଅବିରାମ ଜ୍ୱର । [ ରୂପୀ, ଶ୍ରେଣୀଗତ ।
Typical, *a*. ଦୃଷ୍ଟାନ୍ତସ୍ୱରୂପ, ନିଦର୍ଶନ-
Typify, *v*. ଶ୍ରେଣୀର ପ୍ରତିନିଧିତ୍ୱ କରିବା ।
Typist, *n*. ଯେ ଟାଇପରାଇଟର ଯନ୍ତ୍ରରେ ଅକ୍ଷର ଛାପେ । [ ମୁଦ୍ରାକର ।
Typographer, *n*. ମୁଦ୍ରକ,
Typographic, *a*. ମୁଦ୍ରଣଗତ ।
Typography, *n*. ମୁଦ୍ରଣକଳା ।
Tyrannic, Tyrannical, Tyrannous, *a*. ଅତ୍ୟାଚାରପୂର୍ଣ୍ଣ, ଅତ୍ୟାଚାରୀ, ନିଷ୍ଠୁର, ପ୍ରଜାପୀଡ଼କ, ଯଥେଚ୍ଛାଚାରୀ । [ ଯଥେଚ୍ଛାଚାର ଶାସନ ।
Tyranny, *n*. ଅତ୍ୟାଚାର, ପୀଡ଼ନ,
Tyrant, *n*. ଅତ୍ୟାଚାରୀ ଲୋକ, ପ୍ରଜାପୀଡ଼କ ଶାସନକର୍ତ୍ତା ।
Tzar, Czar, *n*. ରୁଷିଆର ସମ୍ରାଟଙ୍କ ଉପାଧି (Tsar ଦେଖ) ।

# U

Ubiquitous, *a*. ସର୍ବଗତ, ସର୍ବବ୍ୟାପୀ । [ ଅବସ୍ଥାନ ।
Ubiquity, *n*. ସର୍ବବ୍ୟାପକତା, ସର୍ବତ୍ର
Udder, *n*. ପଶୁମାନଙ୍କର ପହ୍ନା ।
Ugliness, *n*. କୁତ୍ସିତ ଆକାର, ବିକୃତି, ବୈରୂପ୍ୟ । [ ଅସୁନ୍ଦର ।
Ugly, *a*. ବିକୃତ, କଦାକାର, କୁତ୍ସିତ,
Ulcer, *n*. ପୂଯଯୁକ୍ତ କ୍ଷତ, ନାଡ଼ୀବ୍ରଣ, ନାଳୀଘାଆ । [ପରିଣତ ହେବା, ପୂଯେଇବା ।
Ulcerate, *v*. ପୂଯଯୁକ୍ତ କ୍ଷତରେ
Ulceration, *n*. ପୂଯସ୍ରାବ, ପୂଯଯୁକ୍ତ କ୍ଷତ । [ କ୍ଷତସଦୃଶ ।
Ulcerous, *a*. ପୂଯସ୍ରାବୀ, ପୂଯସ୍ରାବୀ
Ulterior, *a*. ଅପର ପାର୍ଶ୍ୱସ୍ଥ, ଗୂଢ଼, ଦୂରଭବିଷ୍ୟତ, ଦୂରବର୍ତ୍ତୀ । [ ଅବଶ୍ୟକ ।
Ultimate, *a*. ଚରମ, ଅନ୍ତିମ, ଦୂରତମ,
Ultimately, *ad*. ପରିଣାମରେ, ଶେଷରେ, ଫଳତଃ ।
Ultimatum, *n*. ଚରମପତ୍ର, ଚୂଡ଼ାନ୍ତ ପ୍ରସ୍ତାବ (*pl*. Ultimata) ।
Ultimo, *a*. ଗତମାସର ।
Ultramarine, *a*. ସମୁଦ୍ରପାରସ୍ଥିତ; *n*. ଗାଢ଼ ନୀଳରଙ୍ଗବିଶେଷ ।
Ultramundane, *a*. ଅପାର୍ଥିବ, ପାର୍ଥିବସୀମାତୀତ ।
Ultramodern, *a*. ଅତ୍ୟାଧୁନିକ ।

Ultra-religious, *a.* ଅତ୍ୟନ୍ତ ଧାର୍ମିକ ।
Ultra-sensual, *a.* ଇନ୍ଦ୍ରିୟାସକ୍ତ ।
Ultra-violet, *a.* ଅଧିପାଟଳ ।
Ultra vires, *a.* କ୍ଷମତାର ବହିର୍ଭୂତ ।
[ ଧାତୁବିଶେଷ ।
Umber, *n.* ରଙ୍ଗରୂପେ ବ୍ୟବହୃତ
Umbilic, Umbilical *a.* ନାଭି-ସମ୍ବନ୍ଧୀୟ ।
Umbra, *n.* ଛାୟା, ଗ୍ରହ ବା ଉପଗ୍ରହ ଦ୍ୱାରା ସୂର୍ଯ୍ୟର ବିପରୀତ ପାର୍ଶ୍ୱରେ ପତିତ ଛାୟା ।
Umbrage, *n.* କ୍ଷତି କରିବାର ସନ୍ଦେହ, ଅସନ୍ତୋଷ, ଅପ୍ରୀତି; *v.* ଛାୟା ଦେବା ।
Umbrella, *n.* ଛତା, ଛତ୍ର, ଆତପତ୍ର ।
Umpirage, *n.* ମଧ୍ୟସ୍ଥତା ।
Umpire, *n.* ମଧ୍ୟସ୍ଥ, ବିଚାରକ, ମୀମାଂସକ; *v.* ମଧ୍ୟସ୍ଥତା କରିବା । [ନିଃଶଙ୍କ ।
Unabashed, *a.* ଅଲଜ୍ଜିତ, ନିର୍ଲଜ୍ଜ,
Unabated, *a.* ଅପ୍ରଶମିତ, ଅପ୍ରତିହତ, ଅନ୍ୟୂନୀକୃତ । [ ଅପାରଗ, ଅଯୋଗ୍ୟ ।
Unable, *a.* ଅସମର୍ଥ, ଅଶକ୍ତ, ଅକ୍ଷମ,
Unabridged, *a.* ଅସଂକ୍ଷିପ୍ତ ।
Unacceptable, *a.* ଅଗ୍ରହଣୀୟ, ଅସ୍ପୃହଣୀୟ, ଅସ୍ୱୀକାର୍ଯ୍ୟ ।
Unaccommodating, *a.* ଅନମନୀୟ, ସାହାଯ୍ୟ କରିବାରେ ପରାଙ୍ମୁଖ ।
Unaccompanied, *a.* ସହଚରହୀନ, ଏକାକୀ, ନିଃସଙ୍ଗ । [ ଅସମାପ୍ତ ।
Unaccomplished, *a.* ଅସମ୍ପନ୍ନ,
Unaccountable, *a.* ଦାୟିତ୍ୱଶୂନ୍ୟ, ଅବୋଧ୍ୟ । [ ଅନନୁଭୂତ, ଅସ୍ୱାଭାବିକ ।
Unaccustomed, *a.* ଅନଭ୍ୟସ୍ତ,
Unacquainted, *a.* ଅଜ୍ଞ, ଅପରିଚିତ, ଅଜ୍ଞାତ । [ ଅନଳଙ୍କୃତ ।
Unadorned, *a.* ଭୂଷଣଶୂନ୍ୟ,
Unadulterate, Unadulterated, *a.* ଅବିମିଶ୍ର, ବିଶୁଦ୍ଧ ।
Unadvisable, *a.* ଅବିବେଚ୍ୟ ।
Unadvised, *a.* ଅପରାମୃଷ୍ଟ, ଅବିବେକ ।
Unaffected, *a.* ଅକୃତ୍ରିମ, ଅବ୍ୟାଜ, ସରଳ, ନିଷ୍କପଟ, ଛଳନାଶୂନ୍ୟ ।
Unaided, *a.* ଅସହାୟ, ସାହାଯ୍ୟଶୂନ୍ୟ ।
Unalienable, *a.* ହସ୍ତାନ୍ତରର ଅଯୋଗ୍ୟ, ସ୍ୱତ୍ୱତ୍ୟାଗର ଅଯୋଗ୍ୟ ।
Unalloyed, *a.* ଅବିମିଶ୍ର, ବିଶୁଦ୍ଧ ।
Unalterable, *a.* ଅପରିବର୍ତ୍ତନୀୟ ।
Unambiguous, *a.* ନିଃସନ୍ଦେହ, ସୁସ୍ପଷ୍ଟ, ଦ୍ୱ୍ୟର୍ଥକତାଶୂନ୍ୟ । [ ଶୂନ୍ୟ ।
Unambitious, *a.* ଉଚ୍ଚାକାଙ୍କ୍ଷା-
Unanimity, *n.* ଏକଚିତ୍ତତା, ମତୈକ୍ୟ, ସର୍ବସମ୍ମତି ।
Unanimous, *a.* ଏକଚିତ୍ତ, ଏକମତ ।
Unanimously, *a.* ଏକମତ ହୋଇ, ଏକଚିତ୍ତରେ, ସର୍ବସମ୍ମତିକ୍ରମେ ।

Unanswerable, *a.* ଅଖଣ୍ଡନୀୟ, ଦାୟିତ୍ୱଶୂନ୍ୟ । [ ଅଗମ୍ୟ ।
Unapproachable, *a.* ଅପ୍ରବେଶ୍ୟ,
Unapproved, *a.* ଅନନୁମୋଦିତ ।
Unapt, *a.* ଅନୁପଯୁକ୍ତ । [ କରିବା ।
Unarm, *v.* ନିରସ୍ତ୍ର କରିବା, ଅସ୍ତ୍ରତ୍ୟାଗ
Unarmed, *a.* ନିରସ୍ତ୍ର, ନିରାୟୁଧ ।
Unarrayed, *a.* ଅସଜ୍ଜିତ ।
Unasked, *a.* ଅଯାଚିତ, ଅପ୍ରାର୍ଥିତ ।
Unaspiring, *a.* ଉଚ୍ଚାକାଙ୍‌କ୍ଷାଶୂନ୍ୟ ।
Unassailable, *a.* ଅଧୃଷ୍ୟ, ଅନାକ୍ରମଣୀୟ ।
Unassigned, *a.* ଯାହା ହସ୍ତାନ୍ତରିତ ହୋଇନାହିଁ, ଯାହାର ଭାର ଅନ୍ୟଉପରେ ନ୍ୟସ୍ତ ନୁହେଁ । [ ଏକାକୀ ।
Unassisted, *a.* ସାହାଯ୍ୟରହିତ,
Unassuming, *a.* ବିନୀତ, ନିରଭିମାନ, ଅଦୃପ୍ତ । [ ବୀତରାଗ ।
Unattached, *a.* ଅନାସକ୍ତ, ଅସମ୍ବନ୍ଧ,
Unattainable, *a.* ଅଲଭ୍ୟ, ଅପ୍ରାପ୍ୟ, ଅସାଧ୍ୟ । [ ଅନୁଦ୍ୟତ ।
Unattempted, *a.* ଚେଷ୍ଟାରହିତ,
Unattended, *a.* ସଙ୍ଗୀହୀନ, ଅନୁଚରଶୂନ୍ୟ, ଯତ୍ନବର୍ଜିତ ।
Unauthorised, *a.* ଯେ କ୍ଷମତାପ୍ରାପ୍ତ ନୁହେଁ, ଅପ୍ରାମାଣିକ ।
Unavailing, *a.* ନିରର୍ଥକ, ନିଷ୍ଫଳ ।
Unavoidable, *a.* ଅନିବାର୍ଯ୍ୟ, ଅପରିହାର୍ଯ୍ୟ । [ ଅସାବଧାନ ।
Unaware, *a.* ଅଜ୍ଞାତ, ଅନବହିତ,
Unawares, *ad.* ଅତର୍କିତଭାବରେ, ଅକସ୍ମାତ୍, ସହସା । [ ମସ୍ତିଷ୍କ ।
Unbalanced, *a.* ଅସମ, ବିକୃତ-
Unbearable, *a.* ଅସହ୍ୟ, ଦୁଃସହ ।
Unbeaten, *a.* ଅପରାଜିତ, ଅମର୍ଦ୍ଦିତ ।
Unbecoming *a.* ଅସୁନ୍ଦର, ଅନୁଚିତ ।
Unbelief, *n.* ଅବିଶ୍ୱାସ, ଅପ୍ରତ୍ୟୟ ।
Unbeliever, *n.* ନାସ୍ତିକ, ପାଷଣ୍ଡ, ଅବିଶ୍ୱାସୀ । [ କରିବା ।
Unbend, *v.* ସିଧା କରିବା, ଶ୍ରାନ୍ତି ଦୂର
Unbending, *a.* ଅନମ୍ୟ, ଦୃଢ଼, ଅଦମ୍ୟ, କଠୋର, ଶକ୍ତ ।
Unbiased, *a.* ଅପକ୍ଷପାତୀ ।
Unbind, *v.* ବନ୍ଧନମୁକ୍ତ କରିବା ।
Unblamable, *a.* ନିର୍ଦ୍ଦୋଷ, ଅଦୂଷ୍ୟ, ଅନିନ୍ଦ୍ୟ । [ ଅକ୍ଷତ, ଶୁଦ୍ଧ ।
Umblemished, *a.* ନିଷ୍କଳଙ୍କ,
Unblown, *a.* ଅବିକଶିତ ।
Unblushing, *a.* ଲଜ୍ଜାବିରହିତ ।
Unborn, *a.* ଅଜାତ, ଅନୁତ୍ପନ୍ନ ।
Unbounded, *a.* ଅସୀମ, ଅନନ୍ତ, ଅପାର । [ ଅବାଧ, ଦୁର୍ଦ୍ଦାନ୍ତ ।
Unbridled, *a.* ଅସଂଯତ, ଉଚ୍ଛୃଙ୍ଖଳ,
Unbroken, *a.* ଅଖଣ୍ଡିତ, ଅତୁଟ, ସମ୍ପୂର୍ଣ୍ଣ, ମଣ ହୋଇନଥିବା ।

**Unburden**, *v.* ଭାରମୁକ୍ତ କରିବା ।
**Unburnt**, *a.* ଅଦଗ୍ଧ । [ ଅଯାଚିତ ।
**Uncalled for**, *a.* ଅନାହୂତ,
**Uncanny**, *a.* ଭୌତିକ, ବିପଜ୍ଜନକ,
ଭୀଷଣ । [ ସର୍ବଦା ।
**Unceasing**, *a.* ଅବିରତ, ନିରନ୍ତର,
**Unceremonious**, *a.* ଶିଷ୍ଟାଚାର-ବର୍ଜ୍ଜିତ, ଅନାଦରପୂର୍ଣ୍ଣ ।
**Unceremoniously**, *ad.* ଅଭଦ୍ର-ଭାବରେ, ଅନାଦର ସହକାରେ ।
**Uncertain**, *a.* ଅନିଶ୍ଚିତ ।
**Uncertainty**, *n.* ଅନିଶ୍ଚୟ ।
**Unchangeable**, *a.* ଅପରିବର୍ତ୍ତନୀୟ ।
**Uncharitable**, *a.* ଅନୁଦାର, ନିର୍ଦ୍ଦୟ, କଠୋରବିବେଚନାକାରୀ ।
**Unchaste**, *a.* ଅସତୀ, ଅସାଧୁ ।
**Unchecked**, *a.* ଅବାଧ, ବାଧାହୀନ ।
**Uncivil**, *a.* ଅଭଦ୍ର, ଅଶିଷ୍ଟ ।
**Uncivilised**, **Uncivilized**, *a.* ଅସଭ୍ୟ, ଅଶିଷ୍ଟ ।
**Unclaimed**, *a* ଅସ୍ୱାମିକ, ବେଓ୍ୱାରିସ ।
**Uncle**, *n.* ପିତୃବ୍ୟ, ମାତୁଳ, ମାତୃଷ୍ୱସା, ପିତୃଷ୍ୱସା ।
**Unclean**, *a.* ଅପରିଷ୍କୃତ, ଅପବିତ୍ର ।
**Unclose**, *v.* ଖୋଲିବା, ଉନ୍ମୁକ୍ତ
କରିବା । [ କରିବା ।
**Unclothe**, *v.* ବିବସ୍ତ୍ର କରିବା, ନଗ୍ନ
**Unclouded**, *a.* ମେଘମୁକ୍ତ ।
**Uncomely**, *a.* ଅସୁନ୍ଦର ।
**Uncomfortable**, *a.* ଅସୁଖକର,
ଅସୁସ୍ଥ, ନିରାନନ୍ଦ । [ ଅସାମାନ୍ୟ ।
**Uncommon**, *a.* ଅସାଧାରଣ,
**Uncompromising**, *a.* ଏକ-ଜିଦିଆ, ଦୃଢ଼ମନା ।
**Unconcern**, *n.* ଉଦାସୀନତା ।
**Unconcerned**, *a.* ଉଦାସୀନ ।
**Unconditional**, *a.* ସର୍ତ୍ତହୀନ ।
**Unconditionally**, *ad.* ବିନା
ସର୍ତ୍ତରେ । [ ଅଦୃଢ଼ୀଭୂତ ।
**Unconfirmed**, *a.* ଅସମର୍ଥିତ,
**Uncongenial**, *a.* ବିଷମ, ଅରୁଚିକର,
ଅପ୍ରୀତିକର । [ ଅସମ୍ବଦ୍ଧ, ଅସଂଲଗ୍ନ ।
**Unconnected**, *a.* ସମ୍ବନ୍ଧଶୂନ୍ୟ,
**Unconquerable**, *a.* ଅପରାଜେୟ ।
**Unconscious**, *a.* ଅଚୈତନ୍ୟ,
ମୂର୍ଚ୍ଛିତ, ଅନଭିଜ୍ଞ । [ ଧାନିକ ।
**Unconstitutional**, *a.* ଅବୈ-
**Unconstrained**, *a.* ଅନବରୁଦ୍ଧ,
ଅବାରିତ । [ ନିର୍ବିବାଦ ।
**Uncontested**, *a.* ନିର୍ବିରୋଧ,
**Uncontrollable**, *a.* ଅଦମନୀୟ,
ଅଶାସ୍ୟ । [ ଅପ୍ରତିବନ୍ଧ, ଅନିୟନ୍ତ୍ରିତ ।
**Uncontrolled**, *a.* ନିରଙ୍କୁଶ,
**Uncorroborated**, *a.* ଅସମର୍ଥିତ ।
**Uncouth**, *a.* କୁତ୍ସିତ, ବିକୃତ, କୁରୂପ ।
**Uncover**, *v.* ଅନାବୃତ କରିବା ।

Uncrowned, *a.* ମୁକୁଟବିହୀନ ।
Unction, *n.* ଅଭ୍ୟଞ୍ଜନ, ପ୍ରଲେପ, ମଲମ । [ ଚକ୍‌କଣ, ଘନ ।
Unctuous, *a.* ସ୍ନିଗ୍ଧ, ମସୃଣ,
Uncultivated, *a.* ଅକର୍ଷିତ, ଅଶିକ୍ଷିତ
Uncultured, *a.* ଅମାର୍ଜିତ, ଅଶିଷ୍ଟ ।
Uncut, *a.* ଅକର୍ତ୍ତିତ, ଅକଟା ।
Undated, *a.* ତାରିଖବିହୀନ ।
Undaunted, *a.* ନିର୍ଭୟ, ନିଃଶଙ୍କ ।
Undeceive, *v.* ଭ୍ରମ ଦୂର କରିବା ।
Undecided, *a.* ଅନିର୍ଣ୍ଣୀତ, ସଂଶୟଯୁକ୍ତ, ଅନିଶ୍ଚିତ । [ ପକ୍ଷସମର୍ଥନବିହୀନ ।
Undefended, *a.* ଅରକ୍ଷିତ,
Undefiled, *a.* ନିର୍ମଳ, ବିଶୁଦ୍ଧ, କଳୁଷହୀନ । [ ଅନିର୍ଦ୍ଦେଶ୍ୟ ।
Undefinable, *a.* ଅବର୍ଣ୍ଣନୀୟ,
Undefined, *a.* ଅନିର୍ଦ୍ଦିଷ୍ଟ ।
Undeniable, *a.* ଅନସ୍ୱୀକାର୍ଯ୍ୟ, ନିଃସନ୍ଦେହ । [ ଆଧୀନ୍ୟରେ ।
Under, *pre.* ତଳେ, ଭିତରେ,
Under-age, *a.* ନାବାଳଗ, ଅପ୍ରାପ୍ତ-ବୟସ୍କ । [ ସ୍ରୋତ, ଅନ୍ତଃପ୍ରବାହ ।
Undercurrent, *n.* ଆଭ୍ୟନ୍ତରୀଣ
Underdeveloped, *a.* ଅନୁନ୍ନତ ।
Underestimate, *v.* ଅଳ୍ପମୂଲ୍ୟ ବୋଲି ଜ୍ଞାନ କରିବା ।
Undergo, *v.* ସହ୍ୟ କରିବା, ଭୋଗ କରିବା, ଅନୁଭବ କରିବା ।
Undergraduate, *n.* ବିଶ୍ୱ-ବିଦ୍ୟାଳୟର ପ୍ରଥମ ଉପାଧି ପାଇ ନଥିବା ଛାତ୍ରଛାତ୍ରୀ । [ *ad.* ଭୂଗର୍ଭରେ ।
Underground, *a.* ଗୁପ୍ତ, ଭୂଗର୍ଭସ୍ଥ;
Undergrowth, *n.* ବଡ଼ ବଡ଼ ଗଛ ମଧ୍ୟରେ ଥିବା ଗ୍ରେଟ ଗଛ ବା ବୁଦା ।
Underhand, *a.* ଗୂଢ଼, ପ୍ରଚ୍ଛନ୍ନ, ଛଦ୍ମନୀୟ । [ ହେବା ।
Underlie, *v.* ନିମ୍ନରେ ରହିବା, ନିହିତ
Underling, *n.* ଅନୁଜୀବୀ, ଅପ୍ରଧାନ କର୍ମୀ, ନୀଚଲୋକ ।
Undermentioned, *a.* ନିମ୍ନଲିଖିତ।
Undermine, *v.* ଉଚ୍ଛେଦ କରିବା, ବିନାଶ କରିବା । [ ଅଧୋଭାଗରେ ।
Underneath, *pre. & ad.* ତଳେ,
Underrate, *v.* ଅବମାନନା କରିବା, ଅଳ୍ପମୂଲ୍ୟ ମନେ କରିବା ।
Undersell, *v.* ଅନ୍ୟ ଅପେକ୍ଷା ଅଳ୍ପ ମୂଲ୍ୟରେ ବିକିବା ।
Undersigned, *a.* ନିମ୍ନସ୍ୱାକ୍ଷରକାରୀ ।
Understand, *v.* ବୁଝିବା, ଅବଗତ ହେବା, ଅବଧାରଣ କରିବା । [ ଜ୍ଞେୟ ।
Understandable, *a.* ବୋଧ୍ୟ,
Understanding, *n.* ବୁଦ୍ଧି, ଜ୍ଞାନଶକ୍ତି, ପ୍ରଜ୍ଞା, ବୁଝାମଣା ।
Understood, *a.* ଉହ୍ୟ ।
Undertake, *v.* ଭାର ଗ୍ରହଣ କରିବା, ପ୍ରବୃତ୍ତ ହେବା ।

**Undertaker**, *n.* ଯେ ଶବ ସତ୍କାର କରେ । [ ଅଙ୍ଗୀକାର, ବ୍ୟବସାୟ ।
**Undertaking**, *n.* ବ୍ୟାପାର,
**Undervalue**, *v.* ଅଳ୍ପମୂଲ୍ୟ ବୋଲି ମନେ କରିବା, ଲଘୁ କରିବା । [ ଝେଟ ଗଛ ।
**Underwood**, *n.* ଖୁଦାଜଙ୍ଗଲ, ଝେଟ
**Under-world**, *n.* ପାତାଳ,ଯମପୁର, ନାଗଲୋକ । [ ଅନୁପଯୁକ୍ତ ।
**Undeserving**, *a.* ଅଯୋଗ୍ୟ,
**Undesirable**, *a.* ଅବାଞ୍ଛନୀୟ ।
**Undeterred**, *a.* ଅନିବୃତ୍ତ,ଅବ୍ୟାହତ ।
**Undetermined**, *a.* ଅନିର୍ଣ୍ଣୀତ, ଅନିର୍ଦ୍ଧାରିତ । [ ଅନୁନ୍ନତ ।
**Undeveloped**, *a.* ଅବିକଶିତ,
**Undigested**, *a.* ଅଜୀର୍ଣ୍ଣ, ଅପକ୍ୱ ।
**Undignified**, *a.* ମର୍ଯ୍ୟାଦାହୀନ, ସମ୍ମାନହାନିକର ।
**Undiluted**, *a.* ଅବିମିଶ୍ରିତ । [ଅକ୍ଷୁଣ୍ଣ ।
**Undiminished**, *a.* ଅନ୍ୟୂନୀଭୂତ,
**Undisciplined**, *a.* ଅଶାସିତ, ଅସଂଯତ, ଶୃଙ୍ଖଳାହୀନ । [ ଅପ୍ରକାଶିତ ।
**Undiscovered**, *a.* ଅନାବିଷ୍କୃତ,
**Undisguised**, *a.* ଅକପଟ, ସରଳ, ଅଛଦ୍ମ ।
**Undismayed**, *a.* ନିର୍ଭୀକ, ସାହସୀ ।
**Undisputed**, *a.* ଅବିସମ୍ବାଦିତ, ନିର୍ବିରୋଧ, ନିର୍ଦ୍ୱନ୍ଦ୍ୱ । [ ନିଶ୍ଚିନ୍ତ ।
**Undisturbed**, *a.* ଅବ୍ୟାକୁଳ,
**Undivided**, *a.* ଅବିଭକ୍ତ, ଅଖଣ୍ଡିତ ।
**Undo**, *v.* ନାଶ କରିବା, ପୂର୍ବ ବ୍ୟବସ୍ଥାକୁ ଓଲଟାଇ ଦେବା । [ ଅସମାପ୍ତ ।
**Undone**, *a.* ଉଚ୍ଛନ୍ନ, ସର୍ବସ୍ୱାନ୍ତ,
**Undoubted**, *a.* ନିଃସନ୍ଦେହ । [ ରୂପେ
**Undoubtedly**, *ad.* ନିଃସନ୍ଦେହ-
**Undress**, *v.* ପୋଷାକ ଖୋଲିବା, ବସ୍ତ୍ରତ୍ୟାଗ କରିବା ।
**Undue**, *a.* ଅଯଥା, ଅନୁଚିତ ।
**Undulate**, *v.* ଉଚ୍ଛଳିତ ହେବା, ତରଙ୍ଗିତ କରିବା ।
**Undulating**, *a.* ଉଚ୍ଛଳିତ, ନତୋନ୍ନତ, ତରଙ୍ଗିତ । [ ଉତ୍ଥାନପତନ
**Undulation**, *n.* ତରଙ୍ଗବତ୍
**Unduly**, *ad.* ଅନ୍ୟାଯ୍ୟଭାବରେ, ଅନୁଚିତଭାବରେ । [ ଅବାଧ୍ୟ ।
**Undutiful**, *a.* କର୍ତ୍ତବ୍ୟଜ୍ଞାନହୀନ,
**Undying**, *a.* ଅମର, ଚିରସ୍ଥାୟୀ ।
**Unearth**, *v.* ଖୋଳି ବାହାରକରିବା, ଆବିଷ୍କାର କରିବା । [ ଅସ୍ଥିରତା, ବ୍ୟଗ୍ରତା ।
**Uneasiness**, *n.* ବ୍ୟାକୁଳତା,
**Uneasy**, *a.* ବ୍ୟାକୁଳ, ଅସ୍ଥିର ।
**Uneducated**, *a.* ଅଶିକ୍ଷିତ ।
**Unemployed**, *a.* କର୍ମହୀନ, ବେକାର ।
**Unending**, *a.* ଅଶେଷ, ଅନନ୍ତ ।
**Unenviable**, *a.* ଅବାଞ୍ଛନୀୟ, ଅଲୋଭନୀୟ ।
**Unequal**, *a.* ଅସମାନ, ଅନୁପଯୁକ୍ତ ।

**Unequivocal**, *a.* ସୁସ୍ପଷ୍ଟ, ଅସନ୍ଦିଗ୍ଧ, ନିଃସଂଶୟ, ଦ୍ୱିଧାହୀନ ।
**Unerring**, *a.* ଅଭ୍ରାନ୍ତ, ଭ୍ରମଶୂନ୍ୟ ।
**Uneven**, *a.* ଅସମତଳ, ବନ୍ଧୁର ।
**Unexampled**, *a.* ଅତୁଳନୀୟ ।
**Unexcusable**, *a.* ଅକ୍ଷମଣୀୟ ।
**Unexpected**, *a.* ଅପ୍ରତ୍ୟାଶିତ ।
**Unexplored**, *a.* ଅନାବିଷ୍କୃତ ।
**Unexpressed**, *a.* ଅପ୍ରକାଶିତ, ଅକଥିତ, ଅବ୍ୟକ୍ତ ।
**Unfading**, *a.* ଅମଳିନ, ଅକ୍ଷୟ ।
**Unfailing**, *a.* ଅବ୍ୟର୍ଥ, ନିଶ୍ଚିତ ।
**Unfair**, *a.* ଅସତ୍, ଅନୁଚିତ ।
**Unfaithful**, *a.* ଅବିଶ୍ୱାସୀ, ଦ୍ରୋହୀ, ବିଶ୍ୱାସଘାତକ । [ ମୁକ୍ତ କରିବା ।
**Unfasten**, *v.* ଖୋଲିଦେବା, ବନ୍ଧନ-
**Unfathomable**, *a.* ଅଗାଧ, ଅତଳସ୍ପର୍ଶୀ ।
**Unfavourable**, *a.* ପ୍ରତିକୂଳ ।
**Unfeeling**, *a.* ନିର୍ମମ, କଠୋର ।
**Unfettered**, *a.* ବନ୍ଧନହୀନ, ଅବାଧ ।
**Unfilial**, *a.* ଯାହା ସନ୍ତାନୋଚିତ ନୁହେଁ ।
**Unfinished**, *a.* ଅସମାପ୍ତ, ଅସମ୍ପନ୍ନ ।
**Unfit**, *a.* ଅନୁପଯୁକ୍ତ ।
**Unfold**, *v.* ଭାଙ୍ଗ ଖୋଲିବା ।
**Unforeseen**, *a.* ଅଦୃଷ୍ଟପୂର୍ବ ।
**Unforgiving**, *a.* କ୍ଷମାଶୂନ୍ୟ, କଠୋର, ନିର୍ଦ୍ଦୟ, ନିର୍ମମ ।
**Unfortunate**, *a.* ହତଭାଗ୍ୟ, ଅଭାଗା ।
**Unfounded**, *a.* ଭିତ୍ତିହୀନ, ଅମୂଳକ ।
**Unfrequented**, *a.* ଜନସମାଗମ-ବର୍ଜିତ, ନିର୍ଜନ । [ ବିରୋଧୀ ।
**Unfriendly**, *a.* ବନ୍ଧୁତ୍ୱହୀନ,
**Unfruitful**, *a.* ନିଷ୍ଫଳ, ବୃଥା ।
**Unfurl**, *v.* ଖୋଲିବା, ମେଲାଇଦେବା ।
**Ungainly**, *a.* ଅସୁନ୍ଦର, କୁତ୍ସିତ, କଦାକାର ।
**Ungenial**, *a.* ଅସୁଖକର, ଅହିତକର ।
**Ungentle**, *a.* ରୁକ୍ଷ, କର୍କଶ ।
**Ungentlemanly**, *a.* ଅଭଦ୍ରୋଚିତ
**Ungodly**, *a.* ଅଧାର୍ମିକ, ପାପିଷ୍ଠ ।
**Ungovernable**, *a.* ଅଶାସ୍ୟ, ଅବାଧ୍ୟ, ଅଦମ୍ୟ ।
**Ungraceful**, *a.* ଅସୁନ୍ଦର, ବିଶ୍ରୀ ।
**Ungracious**, *a.* ରୁକ୍ଷ, ନିର୍ଦ୍ଦୟ ।
**Ungrammatical**, *a.* ବ୍ୟାକରଣ-ବିରୁଦ୍ଧ, ବ୍ୟାକରଣଦୋଷଯୁକ୍ତ ।
**Ungrateful**, *a.* କୃତଘ୍ନ ।
**Unguarded**, *a.* ଅସତର୍କ, ଅସାବଧାନ
**Unhappily**, *ad.* ଦୁର୍ଭାଗ୍ୟବଶତଃ ।
**Unhappy**, *a.* ଦୁଃଖିତ, ବିପନ୍ନ ।
**Unhealthy**, *a.* ଅସ୍ୱାସ୍ଥ୍ୟକର, ରୁଗ୍ଣ ।
**Unheard**, *a.* ଅଶ୍ରୁତ । [ ହେଳିତ ।
**Unheeded**, *a.* ଉପେକ୍ଷିତ, ଅବ-

Unhesitating, *a.* ଦ୍ୱିଧାହୀନ, ଅକୁଣ୍ଠିତ, ଅସନ୍ଦିଗ୍ଧ ।
Unholy, *a.* ଅପବିତ୍ର, ଅଶୁଚି ।
Unhurt, *a.* ଅନାହତ, ଅକ୍ଷତ ।
Unicorn, *n.* ଏକଶୃଙ୍ଗବିଶିଷ୍ଟ କଳ୍ପିତ ପଶୁ ।
Unification, *n.* ଏକତ୍ରୀକରଣ ।
Uniform, *n.* ଏକ ସମାଜ ପାଇଁ ନିର୍ଦ୍ଦିଷ୍ଟ ପୋଷାକ; *a.* ଏକ ପ୍ରକାରର, ଏକ ଆକୃତିପ୍ରକୃତିବିଶିଷ୍ଟ । [ ସମତା ।
Uniformity, *n.* ଐକ୍ୟ, ସାମ୍ୟ,
Unify, *v.* ଏକ କରିବା, ଏକତ୍ର ମିଶାଇବା
Unimpaired, *a.* ଅକ୍ଷୁଣ୍ଣ, ଅକ୍ଷତ ।
Unilateral, *a.* ଏକପାର୍ଶ୍ୱୀୟ ।
Unimaginable, *a.* କଳ୍ପନାତୀତ, ଅକଳ୍ପନୀୟ । [ ଅନନ୍ୟ ।
Unimpeachable, *a.* ଅଦୂଷ୍ୟ,
Unimportant, *a.* ଅପ୍ରଧାନ, ସାମାନ୍ୟ, ଗୁରୁତ୍ୱଶୂନ୍ୟ । [ ନିର୍ଜନ ।
Uninhabited, *a.* ଜନବସତିଶୂନ୍ୟ,
Uninitiated, *a.* ଅଦୀକ୍ଷିତ, ପ୍ରାଥମିକ-ଶିକ୍ଷାବିହୀନ ।
Uninjured, *a.* ଅକ୍ଷତ, ଅନାହତ ।
Unintelligible, *a.* ଅବୋଧ୍ୟ, ଅସ୍ପଷ୍ଟ ।
Unintentional, *a.* ଅନଭିପ୍ରେତ ।
Uninterested, *a.* ଆଗ୍ରହଶୂନ୍ୟ, ଅମନୋଯୋଗୀ । [ ଅତୃପ୍ତିକର ।
Uninteresting, *a.* ନୀରସ,
Uninterrupted, *a.* ଅବ୍ୟାହତ, ଅବାଧ । [ ଅନିମନ୍ତ୍ରିତ ।
Uninvited, *a.* ଅନାହୂତ,
Union, *n.* ଏକତା, ମିଳନ, ସଂଘ ।
Unique, *a.* ଅସାଧାରଣ, ଅଦ୍ୱିତୀୟ, ଅତୁଳ୍ୟ । [ ବୈଶିଷ୍ଟ୍ୟ ।
Uniqueness, *n.* ଅସାଧାରଣତ୍ୱ,
Unison, *n.* ଏକସ୍ୱର, ସ୍ୱରର ଐକ୍ୟ ।
Unit, *n.* ଏକ, ଏକକ ।
Unitarian, *a.* ଏକେଶ୍ୱରବାଦୀ ।
Unitary, *a.* ଐକିକ ।
Unite, *v.* ସଂଯୁକ୍ତ କରିବା, ସଂହତ କରିବା, ମିଳିତ ହେବା ।
United, *a.* ସମ୍ମିଳିତ, ଏକତ୍ର ।
Unitedly, *ad.* ମିଳିତ ହୋଇ, ସଂହତ ଭାବରେ ।
Unity, *n.* ଐକ୍ୟ, ସଂହତି ।
Universal, *a.* ସାର୍ବଜନୀନ ।
Universality, *n.* ସାର୍ବଜନୀନତା ।
Universe, *n.* ଜଗତ୍, ବିଶ୍ୱ, ସଂସାର ।
University, *n.* ବିଶ୍ୱବିଦ୍ୟାଳୟ ।
Univocal, *a.* ଏକାର୍ଥକ । [ ଅନୁଚିତ ।
Unjust, *a.* ଅନ୍ୟାଯ୍ୟ, ନ୍ୟାୟବିରୁଦ୍ଧ,
Unjustifiable, *a.* ଅସମର୍ଥନୀୟ ।
Unkind, *a.* ନିର୍ଦ୍ଦୟ, ନିଷ୍ଠୁର ।
Unkindness, *n.* ନିର୍ଦ୍ଦୟତା ।
Unknowingly, *ad.* ଅଜ୍ଞାତ-ସାରରେ ।

**Unknown**, *a.* ଅପରିଚିତ, ଅଜ୍ଞାତ, ଅଜଣା ।
**Unlade**, *v.* ମାଲ୍ ଖଲାସ କରିବା ।
**Unlamented**, *a.* ଅଶୋଚ୍ୟ ।
**Unlawful**, *a.* ଅବୈଧ, ବେଆଇନ ।
**Unlearn**, *v.* ଶିକ୍ଷାଲବ୍ଧ ବିଷୟକୁ ଭୁଲିଯିବା ।
**Unlearned**, *a.* ଅଶିକ୍ଷିତ, ଅପଣ୍ଡିତ ।
**Unless**, *con.* ନୋଚେତ୍, ନୋହିଲେ
**Unlettered**, *a.* ନିରକ୍ଷର ।
**Unlike**, *a.* ଅସଦୃଶ, ଭିନ୍ନ । [ଅଭାବ ।
**Unlikelihood**, *n.* ସମ୍ଭାବନାର
**Unlikely**, *a.* ଅସମ୍ଭବ ।
**Unlimited**, *a.* ଅସୀମ, ଅପରିମିତ ।
**Unload**, *v.* ମାଲ୍ ଖଲାସ କରିବା ।
**Unlock**, *v.* ଚାବି ଖୋଲିବା ।
**Unlooked-for**, *a.* ଅପ୍ରତ୍ୟାଶିତ, ଅନପେକ୍ଷିତ । [ମୁକ୍ତ କରିବା ।
**Unloose, Unloosen**, *v.* ବନ୍ଧନ-
**Unlucky**, *a.* ହତଭାଗ୍ୟ, ଅଭାଗା ।
**Unmake**, *v.* କୃତ ବିଷୟକୁ ନଷ୍ଟ କରିଦେବା ।
**Unman**, *v.* ନିରୁତ୍ସାହ କରିବା ।
**Unmanageable**, *a.* ଅଶାସ୍ୟ, ଅଦମ୍ୟ । [ହୀନ ।
**Unmanly**, *a.* ଅମାନୁଷିକ, ପୌରୁଷ-
**Unmannered, Unmannerly**, *a.* ଅଶିଷ୍ଟ, ଶିଷ୍ଟାଚାରରହିତ ।
**Unmarked**, *a.* ଅଚିହ୍ନିତ ।
**Unmarried**, *a.* ଅବିବାହିତ ।
**Unmask**, *v.* ମୁଖା ଖୋଲିଦେବା, ପ୍ରକୃତ ରୂପ ପ୍ରକାଶ କରିଦେବା । [ଅନୁପମ ।
**Unmatched**, *a.* ଅତୁଳନୀୟ,
**Unmeaning**, *a.* ଅର୍ଥହୀନ, ନିରର୍ଥକ ।
**Unmeasured**, *a.* ଅମିତ, ଅପରିମିତ
**Unmeet**, *a.* ଅନୁଚିତ, ଅନୁପଯୁକ୍ତ ।
**Unmerciful**, *a.* ନିଷ୍ଠୁର, ନିର୍ଦ୍ଦୟ ।
**Unmerited**, *a.* ଅଯଥା, ଅନୁଚିତ, ଅପାତ୍ରରେ ନ୍ୟସ୍ତ ।
**Unmindful**, *a.* ଅମନୋଯୋଗୀ ।
**Unmistakable**, *a.* ନିଃସନ୍ଦେହ, ଅଭ୍ରାନ୍ତ । [ରୂପେ, ନିଃସନ୍ଦେହରେ ।
**Unmistakably**, *ad.* ଅଭ୍ରାନ୍ତ-
**Unmitigated**, *a.* ଅନ୍ୟୂନୀକୃତ ।
**Unmixed**, *a.* ଅବିମିଶ୍ରିତ ।
**Unmounted**, *a.* ଅନାରୂଢ଼ ।
**Unmoved**, *a.* ଅବିଚଳିତ, ସ୍ଥିରଚିତ୍ତ, ନିର୍ବିକାର ।
**Unnamed**, *a.* ଅନାମଧେୟ, ଅନୁକ୍ତ ।
**Unnatural**, *a.* ଅସ୍ୱାଭାବିକ, ଅପ୍ରାକୃତିକ, କୃତ୍ରିମ ।
**Unnavigable**, *a.* ଅନାବ୍ୟ, ଯହିଁରେ ନୌକା ଯାତାୟାତ କରିପାରେ ନାହିଁ । [ନିଷ୍ପ୍ରୟୋଜନ ।
**Unnecessary**, *a.* ଅନାବଶ୍ୟକ,

**Unnerve**, *v.* ଭଗ୍ନୋଦ୍ୟମ କରିବା, ହତାଶ କରିବା, ଦୁର୍ବଳ କରିବା ।
**Unnoticed**, *a.* ଅଲକ୍ଷିତ ।
**Unnumbered**, *a.* ଅଗଣିତ, ଅସଂଖ୍ୟ
**Unobjectionable**, *a.* ନିର୍ଦ୍ଦୋଷ, ଯାହା ଆପତ୍ତିଜନକ ନୁହେଁ ।
**Unobservant**, *a.* ଅମନୋଯୋଗୀ ।
**Unobserved**, *a.* ଅଦୃଶ୍ୟ, ଅଲକ୍ଷିତ ।
**Unobstructed**, *a.* ବାଧାହୀନ, ନିର୍ବିରୋଧ, ଅବାଧ । [ ନିଃଷ୍ପୃହ ।
**Unobtrusive**, *a.* ପରଚର୍ଚ୍ଚାରେ
**Unoccupied**, *a.* ଅନଧିକୃତ, ଦଖଲଶୂନ୍ୟ । [ ଅନପକାରୀ ।
**Unoffending**, *a.* ନିରୀହ,
**Unofficial**, *a.* ବେସରକାରୀ ।
**Unopened**, *a.* ମୁଦ୍ରିତ, ଅଖୋଲା ।
**Unopposed**, *a.* ନିର୍ବିରୋଧ, ନିର୍ବିବାଦ ।
**Unostentatious**, *a.* ନିରାଡ଼ମ୍ବର ।
**Unpack**, *v.* ଗଣ୍ଠିରି ଫିଟାଇବା ।
**Unpaid**, *a.* ଅଦତ୍ତ, ଯାହାକୁ ଦିଆ ଯାଇନାହିଁ, ଯାହାର ମାଶୁଲ ଦିଆ ଯାଇନାହିଁ
**Unpalatable**, *a.* ଅରୁଚିକର, ବିସ୍ୱାଦୁ । [ ପଟାନ୍ତରହୀନ ।
**Unparalleled**, *a.* ଅତୁଳନୀୟ,
**Unpardonable**, *a.* ଅକ୍ଷମଣୀୟ ।
**Unparliamentary**, *a.* ଅବୈଧାନିକ ।
**Unperceived**, *a.* ଅଜ୍ଞାତସାର ।
**Unperturbed**, *a.* ଅବିଚଳିତ ।
**Unpleasant**, *a.* ଅପ୍ରୀତିକର ।
**Unploughed**, *a.* ଅକର୍ଷିତ ।
**Unpolished**, *a.* ଅମାର୍ଜିତ, ଅଶିଷ୍ଟ ।
**Unpolluted**, *a.* ଅଦୂଷିତ, ବିଶୁଦ୍ଧ ।
**Unpopular**, *a.* ଜନସାଧାରଣଙ୍କର ଅପ୍ରିୟ । [ ଅପ୍ରିୟତା ।
**Unpopularity**, *n.* ଜନସାଧାରଣରେ
**Unpractical**, *a.* କାର୍ଯ୍ୟକ୍ଷେତ୍ରରେ ଅନୁପଯୋଗୀ, ବ୍ୟାବହାରିକ ଜ୍ଞାନଶୂନ୍ୟ ।
**Unpractised**, *a.* ଅନଭ୍ୟସ୍ତ ।
**Unprecedented**, *a.* ଅଭୂତପୂର୍ବ ।
**Unprejudiced**, *a.* ପକ୍ଷପାତଶୂନ୍ୟ, ପୂର୍ବଧାରଣାବର୍ଜିତ, ପୂର୍ବସଂସ୍କାର ରହିତ ।
**Unpremeditated**, *a.* ଅଚିନ୍ତିତପୂର୍ବ
**Unprepared**, *a.* ଅପ୍ରସ୍ତୁତ ।
**Unpretending**, *a.* ଛଳନାଶୂନ୍ୟ, ନିଷ୍କପଟ । [ ସଦସଦ୍‌ବିଚାରଶୂନ୍ୟ ।
**Unprincipled**, *a.* ନୀତିହୀନ,
**Unproductive**, *a.* ଅନୁତ୍ପାଦକ ।
**Unprofitable**, *a.* ନିଷ୍ଫଳ, ଅଲାଭଜନକ ।
**Unpropitious**, *a.* ଅଶୁଭ, ଅମଙ୍ଗଳ ।
**Unprotected**, *a.* ଅରକ୍ଷିତ ।
**Unprovoked**, *a.* ଅନୁତ୍ତେଜିତ, ଉତ୍ତେଜନାରହିତ ।
**Unpublished**, *a.* ଅପ୍ରକାଶିତ ।

**Unpunished**, *a.* ଦଣ୍ଡବର୍ଜିତ, ଅଦଣ୍ଡିତ । [ ଯୋଗ୍ୟତାହୀନ ।
**Unqualified**, *a.* ଅନୁପଯୋଗୀ,
**Unquenchable**, *a.* ଅନିବାରଣୀୟ, ଅଦମ୍ୟ, ଅନିର୍ବାପଣୀୟ ।
**Unquestionable**, *a.* ସନ୍ଦେହାତୀତ
**Unquiet**, *a.* ଅଶାନ୍ତ । [ କରିବା ।
**Unravel**, *v.* ବ୍ୟାଖ୍ୟାନ କରିବା, ପ୍ରକାଶ
**Unread**, *a.* ଅପଠିତ, ଶିକ୍ଷାହୀନ ।
**Unready**, *a.* ଅପ୍ରସ୍ତୁତ, ଅନୁଦ୍ୟତ ।
**Unreal**, *a.* ଅପ୍ରକୃତ, ଅସାର ।
**Unreasonable**, *a.* ଅଯୌକ୍ତିକ, ଅସଙ୍ଗତ, ଅବିବେକ । [ ଅବିବେଚକପଣ ।
**Unreasonably**, *ad.* ଅଯଥା,
**Unreconciled**, *a.* ପୁନର୍ମିଳନରହିତ ।
**Unredeemed**, *a.* ଅମୁକ୍ତ ।
**Unrefreshed**, *a.* ଅତୃପ୍ତ, ଅତୁଷ୍ଟ ।
**Unregarded**, *a.* ଅନାଦୃତ, ସମାଦରହୀନ, ସମ୍ମାନରହିତ ।
**Unrelenting**, *a.* ନିର୍ଦ୍ଦୟ, କଠୋର ।
**Unreliable**, *a.* ଅବିଶ୍ୱାସ୍ୟ, ନିର୍ଭରର ଅଯୋଗ୍ୟ, ଅବିଶ୍ୱସ୍ତ ।
**Unremitting**, *a.* ଅବିଶ୍ରାନ୍ତ ।
**Unrequested**, *a.* ଅଯାଚିତ ।
**Unrequited**, *a.* ପ୍ରତିଦାନରହିତ ।
**Unresented**, *a.* ପ୍ରତିହିଂସାରହିତ, ଅପ୍ରତିହିଂସିତ, ଦ୍ୱେଷଶୂନ୍ୟ ।
**Unreserved**, *a.* ସରଳ, ଅକପଟ ।
**Unresisting**, *a.* ଅପ୍ରତିରୋଧକ, ବାଧାରହିତ । [ ଅନିଶ୍ଚିତ ।
**Unresolved**, *a.* ଅମୀମାଂସିତ,
**Unrest**, *n.* ସଂକ୍ଷୋଭ, ଅଶାନ୍ତ ।
**Unrestrained**, *a.* ଉଚ୍ଛୃଙ୍ଖଳ, ଉଦ୍ଦାମ, ନିରଙ୍କୁଶ । [ ଅନିୟନ୍ତ୍ରିତ ।
**Unrestricted**, *a.* ବାଧାହୀନ,
**Unrevealed**, *a.* ଅପ୍ରକଟ, ଅପ୍ରକାଶିତ ।
**Unrevenged**, *a.* ପ୍ରତିହିଂସାରହିତ, କ୍ଷମାପ୍ରାପ୍ତ, ପ୍ରତିଫଳଶୂନ୍ୟ ।
**Unrewarded**, *a.* ଅପୁରସ୍କୃତ ।
**Unrighteous**, *a.* ଅଧାର୍ମିକ, ଅନ୍ୟାୟକାରୀ, ଅସତ୍, ଅସାଧୁ ।
**Unripe**, *a.* ଅପକ୍ୱ, କଞ୍ଚା । [ଅନୁପମ ।
**Unrivalled**, *a.* ଅପ୍ରତିଦ୍ୱନ୍ଦ୍ୱୀ, ଅଦ୍ୱିତୀୟ,
**Unrobe**, *v.* ବସ୍ତ୍ରତ୍ୟାଗ କରିବା, ପୋଷାକ ଖୋଲିବା । [ କରିଦେବା ।
**Unroof**, *v.* ଘରର ଛାତ ମେଲା
**Unruffled**, *a.* ଅଚଞ୍ଚଳ, ଅବ୍ୟାକୁଳ ।
**Unruly**, *a.* ଅବାଧ, ଅନିବାର୍ଯ୍ୟ, ଉଚ୍ଛୃଙ୍ଖଳ
**Unsafe**, *a.* ଯାହା ନିରାପଦ ନୁହେଁ ।
**Unsaid**, *a.* ଅକଥିତ, ଅନୁକ୍ତ ।
**Unsatiable**, *a.* ଅଶମନୀୟ । [ନିନ୍ଦା ।
**Unsatisfactory**, *a.* ଅସନ୍ତୋଷ-
**Unsatisfied**, *a.* ଅସନ୍ତୁଷ୍ଟ ।
**Unsay**, *a.* ପୂର୍ବ କଥିତ ଉକ୍ତିକୁ ପ୍ରତ୍ୟାହାର କରିବା ।
**Unscathed**, *a.* ଅକ୍ଷତ, ଆଘାତଶୂନ୍ୟ ।

**Unscrew**, *v.* ପେଞ୍ଚ ଖୋଲିବା ।
**Unscrupulous**, *a.* ବିଧିଗର୍ହିତ, ଅବିବେଚକ । [ ବିଲମ୍ବିତ ।
**Unseasonable**, *a.* ଅସମୟଜାତ,
**Unseasoned**, *a.* ଅପକ୍ୱ, ଅନଭିଜ୍ଞ, ମସଲା ଦିଆଯାଇନଥିବା, ପାଗିନଥିବା ।
**Unseat**, *v.* ଆସନଚ୍ୟୁତ କରିବା ।
**Unseemly**, *a.* ଅସୁନ୍ଦର, ଅନୁଚିତ ।
**Unseen**, *a.* ଅଦୃଶ୍ୟ, ଅଦେଖା ।
**Unselfish**, *a.* ନିଃସ୍ୱାର୍ଥପର ।
**Unserviceable**, *a.* ଅକର୍ମଣ୍ୟ, ଅବ୍ୟବହାର୍ଯ୍ୟ, ଅଚଳ । [ କରିବା ।
**Unsettle**, *v.* ଅସ୍ଥିର କରିବା, ବିଶୃଙ୍ଖଳ
**Unshaken**, *a.* ଅବିଚଳିତ, ନିଷ୍କମ୍ପ, ଅଟଳ । [ ଖୋପରୁ ବାହାର କରିବା ।
**Unsheathe**, *v.* କୋଷମୁକ୍ତ କରିବା,
**Unsheltered**, *a.* ଆଶ୍ରୟଶୂନ୍ୟ ।
**Unsightly**, *a.* କଦାକାର, ଅସୁନ୍ଦର ।
**Unskilful**, *a.* ଅଚତୁର, ଅନିପୁଣ ।
**Unskilled**, *a.* ଅଦକ୍ଷ, ଅପାରଗ, ଯହିଁରେ ବିଶେଷ କୌଶଳ ଅନାବଶ୍ୟକ ।
**Unsociable**, *a.* ଅସାମାଜିକ, ସ୍ୱଳ୍ପଭାଷୀ ।
**Unsold**, *a.* ଅବିକ୍ରୀତ ।
**Unsolicited**, *a.* ଅଯାଚିତ ।
**Unsolved**, *a.* ଅସମାହିତ, ଅମୀମାଂସିତ
**Unsophisticated**, *a.* ସରଳ, ନିଷ୍କପଟ, ଅକୃତ୍ରିମ, ଅନଭିଜ୍ଞ ।
**Unsought**, *a.* ଅନାକାଙ୍କ୍ଷିତ ।
**Unsound**, *a.* ଅଦୃଢ଼, ବିକୃତ, ପୀଡ଼ିତ
**Unsparing**, *a.* ମୁକ୍ତହସ୍ତ, କ୍ଷମାଶୂନ୍ୟ, ନିର୍ଦ୍ଦୟ । [ କଠୋର ଭାବରେ ।
**Unsparingly**, *ad.* ମୁକ୍ତହସ୍ତରେ,
**Unspeakable**, *a.* ଅକଥନୀୟ, ଅବାଚ୍ୟ, ଅନିର୍ବଚନୀୟ ।
**Unspecified**, *a.* ଅନିର୍ଦ୍ଦିଷ୍ଟ ।
**Unspoken**, *a.* ଅକଥିତ, ଅନୁକ୍ତ ।
**Unspotted**, *a.* ନିଷ୍କଳଙ୍କ, ବିମଳ ।
**Unstable**, *a.* ଅଦୃଢ଼, ଚଞ୍ଚଳ, ଅସ୍ଥିର ।
**Unstaid**, *a.* ଅସ୍ଥିରମନା, ଚପଳ ।
**Unstained**, *a.* ଅକଳଙ୍କିତ, ଦୋଷବର୍ଜିତ । [ ନଥିବା ।
**Unstamped**, *a.* ମୋହର ଦିଆଯାଇ
**Unsteady**, *a* ଅସ୍ଥିର, ପରିବର୍ତ୍ତନଶୀଳ
**Unstinted**, *a.* ପ୍ରଚୁର, ପ୍ରଭୂତ, ଯଥେଷ୍ଟ । [ ଯାଇ ନଥିବା ।
**Unstrained**, *a.* ପ୍ରାକୃତିକ, ଛଣା-
**Unstring**, *v.* ଦଉଡ଼ି ଫିଟାଇବା ।
**Unsubdued**, *a.* ଅନାୟତ୍ତ, ଅବଶୀଭୂତ
**Unsubstantial**, *a.* ନିଃସାର, ଅବାସ୍ତବ । [ କାର୍ଯ୍ୟତା ।
**Unsuccess**, *n.* ବିଫଳତା, ଅକୃତ-
**Unsuccessful**, *a.* ବିଫଳ, ଅକୃତକାର୍ଯ୍ୟ, ଅସଫଳ ।
**Unsuitable**, *a.* ଅନୁପଯୁକ୍ତ, ଅନୁଚିତ
**Unsullied**, *a.* ଅମଳିନ, ବିଶଦ ।

Unsupported, *a.* ଅସମର୍ଥିତ ।
Unsurmountable, *a.* ଅନତିକ୍ରମଣୀୟ । [ ସନ୍ଦେହାତୀତ ।
Unsuspected, *a.* ଅଜ୍ଞାତ,
Unsuspecting, *a.* ଯେ ସନ୍ଦେହ କରେ ନାହିଁ, ଅସାବଧାନ । [ ନିଃସନ୍ଦେହ ।
Unsuspicious, *a.* ଅସନ୍ଦିଗ୍ଧ,
Unsympathetic, *a.* ସହାନୁଭୂତିହୀନ ।
Untainted, *a.* ନିଷ୍କଳଙ୍କ, ଦୋଷଶୂନ୍ୟ ।
Untamable, *a.* ଦୁର୍ଦ୍ଦାନ୍ତ, ଯାହାକୁ ବଶ କରି ହୁଏନାହିଁ । [ ଅଦୂଷିତ ।
Untarnished, *a.* ଅମଳିନ,
Untasted, *a.* ଅନାସ୍ୱାଦିତ ।
Untaught, *a.* ଯେ ଶିକ୍ଷା ପାଇନାହିଁ, ନିରକ୍ଷର । [ ଅସମର୍ଥନୀୟ ।
Untenable, *a.* ଅପ୍ରତିପାଦନୀୟ,
Unthankful, *a.* ଅକୃତଜ୍ଞ ।
Unthinkable, *a.* ଅଭାବନୀୟ ।
Unthinking, *a.* ଚିନ୍ତାହୀନ, ବିବେଚନାଶୂନ୍ୟ ।
Unthought-of, *a.* ଅଚିନ୍ତିତପୂର୍ବ ।
Unthoughtful, *a.* ଚିନ୍ତାଶୂନ୍ୟ ।
Untidy, *a.* ଅପରିଚ୍ଛନ୍ନ ।
Untie, *v.* ବନ୍ଧନମୋଚନ କରିବା ।
Until, *pre.* & *con.* ପର୍ଯ୍ୟନ୍ତ, ଯାବତ୍, ଯେପର୍ଯ୍ୟନ୍ତ । [ *ad.* ଅସମୟରେ ।
Untimely, *a.* ଅସାମୟିକ, ଆକାଳିକ;
Untiring, *a.* ଅକ୍ଲାନ୍ତ ।
Untold, *a.* ଅକଥନୀୟ, ଅଗଣିତ ।
Untouchability, *n.* ଅସ୍ପୃଶ୍ୟତା ।
Untouchable, *a.* ଅସ୍ପୃଶ୍ୟ ।
Untouched, *a.* ଅସ୍ପୃଷ୍ଟ ।
Untoward, *a.* ପ୍ରତିକୂଳ, କଷ୍ଟପ୍ରଦ ।
Untractable, *a.* ଅଶାସ୍ୟ, ଦୁର୍ଦ୍ଦମନୀୟ
Untrained, *a.* ତାଲିମ ପାଇନଥିବା, ଯେ ଶିକ୍ଷା ପାଇନାହିଁ ।
Untried, *a.* ଅଚେଷ୍ଟିତ, ଅପରୀକ୍ଷିତ ।
Untrod, Untrodden, *a.* ମଥାସ୍ଥାନ, ଯହିଁରେ କାହାର ପାଦ ପଡ଼ିନାହିଁ ।
Untrue, *a.* ଅସତ୍ୟ, ମିଥ୍ୟା ।
Untrustworthy, *a.* ଅବିଶ୍ୱାସ୍ୟ ।
Untruth, *n.* ଅସତ୍ୟ, ମିଥ୍ୟା କଥା ।
Untutored, *a.* ଯେ ଉପଦେଶ ପାଇନାହିଁ, ଅନୁପଦିଷ୍ଟ ।
Untwist, *v.* ମୋଡ଼ ଫିଟାଇବା ।
Unused, *a.* ଅନଭ୍ୟସ୍ତ, ଅବ୍ୟବହୃତ ।
Unusual, *a.* ଅସାଧାରଣ, ଅସାମାନ୍ୟ, ଅଲୌକିକ, ଅନଭ୍ୟସ୍ତ ।
Unutterable, *a.* ଅନୁଚ୍ଚାର୍ଯ୍ୟ ।
Unvarnished, *a.* ଯଥାର୍ଥ, ଅନଳଙ୍କୃତ
Unveil, *v.* ଉନ୍ମୋଚନ କରିବା ।
Unvexed, *a.* ଅନୁଦ୍ବେଜିତ ।
Unviolable, *a.* ଅଲଙ୍ଘନୀୟ ।
Unviolated, *a.* ଅଲଙ୍ଘିତ ।
Unwanted, *a.* ଅବାଞ୍ଛିତ, ଅନାବଶ୍ୟକ

**Unwarranted,** *a.* ଅନୁଚିତ, ଅଯଥାର୍ଥ, ନିଧିଗର୍ହିତ ।

**Unwary,** *a.* ଅସତର୍କ, ଅସାବଧାନ ।

**Unwelcome,** *a.* ଅବାଞ୍ଛନୀୟ, ଅଗ୍ରହଣୀୟ, ଅନାଦରଣୀୟ ।

**Unwell,** *a.* ଅସୁସ୍ଥ, ପୀଡ଼ିତ ।

**Unwholesome,** *a.* ଅହିତକର ।

**Unwieldy,** *a.* ସ୍ଥୂଳ, ଅତି ବୃହତ୍, ପ୍ରକାଣ୍ଡ, ବହିନେବାର ଅଯୋଗ୍ୟ ।

**Unwilling,** *a.* ଅନିଚ୍ଛୁକ, ଅସମ୍ମତ ।

**Unwillingness,** *n.* ଅନିଚ୍ଛା, ଅସମ୍ମତି

**Unwise,** *a.* ଅବିବେକ, ବୁଦ୍ଧିହୀନ, ନିର୍ବୋଧ । [ ଅଜ୍ଞାନବଶତଃ ।

**Unwittingly,** *ad.* ଅଜ୍ଞାତସାରରେ,

**Unwonted,** *a.* ଅନଭ୍ୟସ୍ତ, ଅସାଧାରଣ

**Unworthy,** *a.* ଅନୁପଯୁକ୍ତ, ଅଯୋଗ୍ୟ ।

**Unwritten,** *a.* ଅଲିଖିତ ।

**Unyielding,** *a.* ଅନମ୍ୟ, ଅସମ୍ମତ ।

**Unyoke,** *v.* ଜୁଆଳିରୁ ଫିଟାଇବା ।

**Up,** *pre. & ad.* ଊର୍ଦ୍ଧ୍ୱରେ, ଊର୍ଦ୍ଧ୍ୱକୁ, ଉପରେ, ଉଚ୍ଚରେ । [ ଏଣେତେଣେ ।

**Up-and-down,** *ad.* ସିଧାଭାବରେ,

**Upbraid,** *v.* ଭର୍ତ୍ସନା କରିବା ।

**Upbringing,** *n.* ଲାଳନପାଳନ, ରକ୍ଷଣାବେକ୍ଷଣ ଓ ଶିକ୍ଷା ।

**Up-country,** *ad.* ଦେଶର ଅଭ୍ୟନ୍ତରକୁ; *n.* ଦେଶର ଅଭ୍ୟନ୍ତର; *a.* ସମୁଦ୍ରଠାରୁ ଦୂରବର୍ତ୍ତୀ ।

**Upheaval,** *n.* ଉତ୍ଥାନ, ବିରାଟ ପରିବର୍ତ୍ତନ, ବିପ୍ଳବ ।

**Upheave,** *v.* ଉତ୍ଥାପିତ କରିବା ।

**Uphill,** *a.* କଠିନ, ଊର୍ଦ୍ଧ୍ୱଗାମୀ; *ad.* ପାହାଡ଼ର ଊର୍ଦ୍ଧ୍ୱକୁ, ବିପଦର ବିରୋଧରେ । [ କରିବା ।

**Uphold,** *v.* ସମର୍ଥନ କରିବା, ଦୃଢ଼ୀଭୂତ

**Upholster,** *v.* ବିଛଣା, ଗଦି ପ୍ରଭୃତିରେ ଗୃହକୁ ସଜ୍ଜିତ କରିବା ।

**Upholsterer,** *n.* ବିଛଣା, ଗଦି ପ୍ରଭୃତି ଗୃହୋପକରଣବିକ୍ରେତା ।

**Upholstery,** *n.* ବିଛଣା, ଗଦି ପ୍ରଭୃତି ଗୃହୋପକରଣ । [ ପୋଷଣ ।

**Upkeep,** *n.* ପାଳନ, ସଂରକ୍ଷଣ, ଭରଣ-

**Upland,** *n.* ଉଚ୍ଚଭୂମି, ଅଧିତ୍ୟକା ।

**Uplift,** *n.* ଉନ୍ନତି, ଉନ୍ନୟନ; *v.* ଉପରକୁ ଉଠାଇବା, ଉନ୍ନୀତ କରିବା ।

**Upon,** *pre.* ଉପରେ, ଉଚ୍ଚସ୍ଥାନରେ ।

**Upper,** *a.* ଉପରିତନ, ଉପରିସ୍ଥ, ଉଚ୍ଚତର; *n.* ଜୋତାର ଉପର ଅଂଶ ।

**Uppermost,** *a.* ସ୍ଥାନ ବା ପଦରେ ଉଚ୍ଚତମ, ପ୍ରଥମେ ମନକୁ ଆସୁଥିବା ।

**Upperhand,** *n.* ଶ୍ରେଷ୍ଠତ୍ୱ, ସୁଯୋଗ, ସୁବିଧା, ପ୍ରାଧାନ୍ୟ, ପ୍ରଭୁତ୍ୱ ।

**Uppish,** *a.* ଅଭିମାନୀ, ଉଦ୍ଧତ ।

**Uppishness,** *n.* ଅଭିମାନ, ଔଦ୍ଧତ୍ୟ ।

**Upright,** *a.* ସାଧୁ, ସତ୍, ଉନ୍ନତ, ସରଳ, ସିଧା; *ad.* ଲମ୍ବଭାବରେ ।

**Uprising**, *n.* ବିଦ୍ରୋହ,ଗଣଉତ୍ତେଜନା ।
**Uproar**, *n.* କୋଲାହଳ, ଗଣ୍ଡଗୋଳ ।
**Uproarious**, *a.* କୋଲାହଳମୟ ।
**Uproot**, *v.* ଉନ୍ମୂଳିତ କରିବା, ମୂଳୋତ୍ପାଟନ କରିବା । [ ପତନ ।
**Ups and downs**, *n.* ଉତ୍ଥାନ-
**Upset**, *v.* ବିପର୍ଯ୍ୟସ୍ତ କରିବା, ଓଲଟାଇ ପକାଇବା; *n.* ବିପର୍ଯ୍ୟୟ ।
**Upshot**, *n.* ପରିଣାମ, ଚରମ ପରିଣତି ।
**Upside**, *n.* ଉପରିଭାଗ, ଊର୍ଦ୍ଧ୍ୱଦେଶ ।
**Upside-down**, *ad.* ଅଧୋମୁଖ ହୋଇ, ଉପର ପାଖ ତଳମୁହାଁ ହୋଇ ।
**Upstairs**, *n.* ଉପରମହଲ; *a.* ଉପର ମହଲରେ ଥିବା, ଉପରମହଲସମ୍ବନ୍ଧୀୟ; *ad.* ଉପରମହଲରେ ବା ଉପରମହଲ ଆଡ଼କୁ ।
**Upstart**, *n.* ହଠାତ୍ ଦରିଦ୍ର ଅବସ୍ଥାରୁ ଧନୀ ହୋଇଥିବା ବ୍ୟକ୍ତି; *a.* ନୀଚ ଅବସ୍ଥାରୁ ହଠାତ୍ ଉଚ୍ଚ ଆସନରେ ଆରୂଢ଼ ।
**Upstream**, *ad.* ସ୍ରୋତର ପ୍ରତିକୂଳରେ
**Up to date**, *a.* ଆଧୁନିକ, ଯେ ସମସ୍ତ ଆଧୁନିକ ଘଟନା ଇତ୍ୟାଦି ଜାଣନ୍ତି; *ad.* ଆଜିପର୍ଯ୍ୟନ୍ତ, ଅଦ୍ୟାବଧି ।
**Up train**, *n.* ରେଳପଥର କେନ୍ଦ୍ରୀୟ ଷ୍ଟେସନଆଡ଼କୁ ଆସୁଥିବା ଗାଡ଼ି ।
**Upward**, *a.* ଊର୍ଦ୍ଧ୍ୱଗାମୀ ।
**Upwards,Upward**, *ad.* ଊର୍ଦ୍ଧ୍ୱକୁ, ଉପରକୁ, ଉପରଆଡ଼େ ।
**Urban**, *a.* ପୌର, ନାଗରିକ ।
**Urbane**, *a.* ଶିଷ୍ଟ, ମାର୍ଜିତ, ନଗର-ପ୍ରଭ୍ବବତ । [ ସୌଜନ୍ୟ ।
**Urbanity**, *n.* ଶିଷ୍ଟାଚାର, ସଭ୍ୟତା,
**Urchin**, *n.* ଦୁଷ୍ଟ ପିଲା ।
**Urethra**, *n.* ବହିର୍ମୂତ୍ରନାଳୀ ।
**Urge**, *v.* ବିଶେଷ ଅନୁରୋଧ କରିବା, ପ୍ରବର୍ତ୍ତାଇବା । [ ଅତ୍ୟାବଶ୍ୟକତା ।
**Urgency**, *n.* ବିଶେଷ ପ୍ରୟୋଜନ,
**Urgent**, *a.* ଅତ୍ୟାବଶ୍ୟକ, ଜରୁରି ।
**Urinal**, *n.* ମୂତ୍ରାଧାର,ମୂତ୍ରତ୍ୟାଗର ସ୍ଥାନ ।
**Urinate**, *v.* ମୂତ୍ରତ୍ୟାଗ କରିବା ।
**Urination**, *n.* ମୂତ୍ରତ୍ୟାଗ,ପ୍ରସ୍ରାବକରଣ
**Urine**, *n.* ପ୍ରସ୍ରାବ, ମୂତ୍ର ।
**Urn**, *n.* ଶବର ଭସ୍ମାଧାର । [ଏକ ନକ୍ଷତ୍ର ।
**Ursa-major**, *n.* ସପ୍ତର୍ଷିମଣ୍ଡଳର
**Ursa-minor**, *n.* ସପ୍ତର୍ଷିମଣ୍ଡଳର ଏକ ନକ୍ଷତ୍ର ।
**Us**, *pr.* ଆମ୍ଭମାନଙ୍କୁ । [ ଯୋଗ୍ୟ ।
**Usable**, *a.* ବ୍ୟବହାର୍ଯ୍ୟ, ବ୍ୟବହାରର
**Usage**, *n.* ଆଚାର, ରୀତି, ଧାରା ।
**Use**, *n.* ବ୍ୟବହାର, ପ୍ରୟୋଜନ; *v.* ବ୍ୟବହାର କରିବା, କାର୍ଯ୍ୟରେ ଲଗାଇବା ।
**Useful**, *a.* ଦରକାରୀ, ଆବଶ୍ୟକ, ଉପକାରୀ । [ ଉପଯୋଗିତା, ଉପକାରିତା ।
**Usefulness**, *n.* ଆବଶ୍ୟକତା,
**Useless**, *a.* ଅନାବଶ୍ୟକ, ବେଦରକାରୀ
**User**, *n.* ବ୍ୟବହାରକାରୀ ।

**Usher**, *v.* ପ୍ରବେଶ କରାଇବା; *n.* ପ୍ରବେଶକ ।

**Usual**, *a.* ପ୍ରଚଳିତ, ସାଧାରଣ ।

**Usually**, *ad.* ସାଧାରଣତଃ,ଯଥାସ୍ୱତ ।

**Usurer**, *n.* ସୁଧଖୋର ମହାଜନ ।

**Usurious**, *a.* ଅତ୍ୟଧିକ ସୁଧଲେଖା ।

**Usurp**, *v.* ଅନ୍ୟାୟପୂର୍ବକ ଅଧିକାର କରିବା ।

**Usurpation**, *n.* ଅନ୍ୟାୟ ଅଧିକାର ।

**Usurper**, *n.* ଯେ ଅନ୍ୟାୟପୂର୍ବକ ଅଧିକାର କରେ ।

**Usury**, *n.* ଅତ୍ୟଧିକ ସୁଧଗ୍ରହଣ ।

**Utensil**, *n.* ବାସନକୁସନ, ସାଧାରଣ ବ୍ୟବହାର୍ଯ୍ୟ ପାତ୍ର ।

**Uterine**, *a.* ଏକ ଉଦରରୁ ଜାତ ।

**Uterus**, *n.* ଗର୍ଭାଶୟ (*pl.* Uteri) ।

**Utilisation, Utilization**, *n.* ପ୍ରୟୋଜନସାଧନ, ଉପଯୋଗ ।

**Utilise, Utilize**, *v.* ଉପଯୋଗ କରିବା, ପ୍ରୟୋଜନରେ ଲଗାଇବା ।

**Utilitarian**, *a.* ହିତବାଦୀ, ଯେ ସୁଖଭୋଗକୁ ପରମ ପୁରୁଷାର୍ଥ ମନେ କରେ, ହିତବାଦସମ୍ବନ୍ଧୀୟ ।

**Utilitarianism**, *n.* ହିତବାଦମତ ।

**Utility**, *n.* ପ୍ରୟୋଜନୀୟତା, ଫଳ, କାର୍ଯ୍ୟ, ଉପକାରିତା ।

**Utmost**, *a.* ଯଥାଶକ୍ତି, ସର୍ବୋତ୍କୃଷ୍ଟ, ଅତିଶୟ, ଚରମ; *n.* ସର୍ବାଧିକ ଉଦ୍ୟମ ।

**Utopian**, *a.* କଳ୍ପିତ, କଳ୍ପନାରେ ପର୍ଯ୍ୟବସିତ । [ *a.* ସମ୍ପୂର୍ଣ୍ଣ, ସମ୍ୟକ୍ ।

**Utter**, *v.* ଉଚ୍ଚାରଣ କରିବା, କହିବା;

**Utterance**, *n.* ଉଚ୍ଚାରଣ, ଉକ୍ତି, ବାକ୍ୟ

**Utterly**, *ad.* ସମ୍ପୂର୍ଣ୍ଣରୂପେ, ସର୍ବତୋଭାବେ ।

**Uttermost**, *a.* ଦୂରତମ, ଚୂଡ଼ାନ୍ତ, ସର୍ବୋତ୍କୃଷ୍ଟ; *n.* ପରାକାଷ୍ଠା ।

**Uvula**, *n.* ଉପଜିହ୍ୱା, ଘଣ୍ଟିକା ।

**Uxorious**, *a.* ଜାୟାବଶ, ସ୍ତ୍ରୈଣ, ସ୍ତ୍ରୀପ୍ରତି ଏକାନ୍ତ ଆସକ୍ତ ।

---

# V

**Vacancy**, *n.* ଶୂନ୍ୟତା, ଶୂନ୍ୟପଦ, କର୍ମଖାଲି ।

**Vacant**, *a.* ଶୂନ୍ୟ, ଖାଲି ।

**Vacate**, *v.* ଶୂନ୍ୟ କରିବା, ରଦ୍ଦ କରିବା, ତ୍ୟାଗ କରିବା ।

**Vacation**, *n.* ଛୁଟି, ଅବକାଶ, ବନ୍ଦ ।

**Vaccinate**, *v.* (ରୋଗୀକୁ) ଟିକ ଦେବା । [ ଟିକାଦାନ

**Vaccination**, *n.* ଗୋବୀଜ

**Vaccinator**, *n.* ଟିକାଦିଆ, ଟିକାଦାର

Vaccine, *a.* ଗବ୍ୟ, ଗୋଜାତ; *n.* ଗୋବୀଜ । [ ସଶଙ୍କାକୁଳ ହେବା ।
Vacillate, *v.* ଆନ୍ଦୋଳିତ ହେବା,
Vacillating, *a.* ଦୋଳାୟମାନ, ଅସ୍ଥିର, ସଂଶୟମନା ।
Vacillation, *n.* ଦୋଳାୟମାନ ଅବସ୍ଥା, ଅସ୍ଥିରତା, ଅନିଶ୍ଚୟ ।
Vacillatory, *a.* ଦୋଳାୟମାନ ।
Vacuity, *n.* ଶୂନ୍ୟତା, ଶୂନ୍ୟଗର୍ଭତା ।
Vacuous, *a.* ଶୂନ୍ୟ, ଖାଲି ।
Vacuum, *n.* ଶୂନ୍ୟ, ଆକାଶ ।
Vade-mecum, *n.* ନିତ୍ୟବ୍ୟବହାର୍ଯ୍ୟ ପୁସ୍ତକ । [ *a.* ଭ୍ରମଣକାରୀ ।
Vagabond, *n.* ବାଉଳିଆ, ଭିକ୍ଷୁକ;
Vagary, *n.* ଚିତ୍ତଭ୍ରମ, ମନଶ୍ଚାଞ୍ଚଲ୍ୟ, ଖିଆଲ ।
Vagina, *n.* ଯୋନିମାର୍ଗ ।
Vagrancy, *n.* ପର୍ଯ୍ୟଟନ, ଇତସ୍ତତଃ ଭ୍ରମଣ, ଭିକ୍ଷାବୃତ୍ତି । [ *n.* ଭିକ୍ଷୁକ ।
Vagrant, *a.* ଯାଯାବର, ଭ୍ରମଣକାରୀ;
Vague, *a.* ଅସ୍ପଷ୍ଟ, ଅନିଶ୍ଚିତ, ଅନିର୍ଦ୍ଦିଷ୍ଟ ।
Vaguely, *ad.* ଅସ୍ପଷ୍ଟଭାବରେ, ଅନିଶ୍ଚିତରୂପେ । [ ଅସ୍ପଷ୍ଟତା, ସନ୍ଦେହ ।
Vagueness, *n.* ଅନିଶ୍ଚୟ, ସଂଶୟ,
Vail, *n. & v.* Veil (ଦେଖ) ।
Vain, *a.* ନିଷ୍ଫଳ, ବ୍ୟର୍ଥ, ବୃଥା, ଅହଙ୍କାରୀ ।
Vainglorious, *a.* ଅହମିକାଗ୍ରସ୍ତ, ବୃଥାଗର୍ବଜାତ ।
Vainglory, *n.* ଅହମିକା, ବୃଥା ବଡ଼ିମା । [ ଦେଖାଇ ।
Vainly, *ad.* ବୃଥା, ନିରର୍ଥକ ବଡ଼ିମା
Vale, *n.* ଉପତ୍ୟକା ।
Valediction, *n.* ବିଦାୟ ।
Valedictory, *a.* ବିଦାୟକାଳୀନ, ବିଦାୟସୂଚକ । [ ପଦାର୍ଥର ମିଶ୍ରଣଶକ୍ତି ।
Valence, Valency, *n.* ମୌଳିକ
Valet, *n.* ଦାସ, ଭୃତ୍ୟ, ଅନୁଚର ।
Valetudinarian, *a.* ରୁଗ୍ଣ, ଅସୁସ୍ଥ, ଅସ୍ୱାସ୍ଥ୍ୟସମ୍ବନ୍ଧୀୟ ।
Valetudinarianism, *n.* ଚିର-ରୁଗ୍ଣତା, ସ୍ୱାସ୍ଥ୍ୟହୀନତା ।
Valiance, Valiancy, *n.* ସାହସ, ବୀରତ୍ୱ, ପରାକ୍ରମ । [ ସାହସୀ ।
Valiant, *a.* ପରାକ୍ରାନ୍ତ, ଶୂର, ବୀର,
Valiantly, *ad.* ବିକ୍ରମସହକାରେ, ସାହସପୂର୍ବକ, ବୀରଭଳି । [ ନିୟମସଙ୍ଗତ ।
Valid, *a.* ଅଖଣ୍ଡନୀୟ, ନ୍ୟାଯ୍ୟ, ପ୍ରବଳ,
Validity, *n.* ପ୍ରାମାଣିକତା, ସିଦ୍ଧି, ନ୍ୟାଯ୍ୟତା, ଦୃଢ଼ତା ।
Valley, *n.* ଦଣ୍ଡି, ଉପତ୍ୟକା ।
Valorous, *a.* ପରାକ୍ରାନ୍ତ, ଶୂର, ସାହସୀ ।
Valour, *n.* ବିକ୍ରମ, ବୀରତ୍ୱ, ଶୌର୍ଯ୍ୟ, ସାହସ । [ ମୂଲ୍ୟବାନ୍ ।
Valuable, *a.* ମହାର୍ଘ, ବହୁମୂଲ୍ୟ,
Valuables, *n.* (*pl.*) ବହୁମୂଲ୍ୟ ଦ୍ରବ୍ୟସମୂହ ।

**Valuation**, *n.* ମୂଲ୍ୟନିରୂପଣ, ନିର୍ଦ୍ଧାରିତ ମୂଲ୍ୟ ।

**Value**, *n.* ମୂଲ୍ୟ, ଦର, ଦାମ; *v.* ମୂଲ୍ୟ ନିର୍ଦ୍ଧାରଣ କରିବା, ମୂଲ୍ୟବାନ୍ ମନେ କରିବା ।

**Valued**, *a.* ମୂଲ୍ୟବାନ୍, ବହୁମୂଲ୍ୟ ।

**Valueless**, *a.* ମୂଲ୍ୟହୀନ, ଅସାର ।

**Vamp**, *n.* ଜୋତାର ଉପର ଚମଡ଼ା; *v.* ତାଳି ପକାଇବା, ମରାମତି କରିବା ।

**Vampire**, *n.* ଭୂତ, ପ୍ରେତ, ପିଶାଚ ।

**Vampiric**, *a.* ପୈଶାଚିକ, ଭୌତିକ, ପ୍ରେତତୁଲ୍ୟ । [ ଅଗ୍ରଗାମୀ ସୈନ୍ୟ ।

**Van**, *n.* ଅଗ୍ରଭାଗ, ମାଲବୁହା ଗାଡ଼ି,

**Vandal**, *n.* ଅତି ଦୁର୍ଦ୍ଦାନ୍ତ ବ୍ୟକ୍ତି ।

**Vandalic**, *a.* ବର୍ବର, ଅସଭ୍ୟ, ଅତ୍ୟାଗ୍ରହୀ । [ ଅତ୍ୟାଚାର ।

**Vandalism**, *n.* ବର୍ବରତା, ନିଷ୍ଠୁରତା,

**Vane**, *n.* ବାୟୁର ଗତିପ୍ରଦର୍ଶକ ଯନ୍ତ୍ର ।

**Vanguard**, *n.* ସେନାମୁଖ, ଅଗ୍ରଗାମୀ ସେନା । [ ଅନ୍ତର୍ହିତ ହେବା, ଉଭେଇଯିବା ।

**Vanish**, *v.* ତିରୋହିତ ହେବା,

**Vanishment**, *n.* ତିରୋଧାନ, ଅନ୍ତର୍ଦ୍ଧାନ, ଲୋପ ।

**Vanity**, *n.* ଗର୍ବ, ବଡ଼ିମା, ଅହମିକା ।

**Vanity-bag**, *n.* ମହିଳାମାନଙ୍କ ବ୍ୟବହାର୍ଯ୍ୟ ଟ୍ୱିଲମୁଣା । [ ବଶୀଭୂତ କରିବା ।

**Vanquish**, *v.* ପରାଜିତ କରିବା,

**Vantage**, *n.* ଉତ୍କର୍ଷ, ଶ୍ରେଷ୍ଠତ୍ୱ, ପ୍ରାଧାନ୍ୟ

**Vapid**, *a.* ନିର୍ଜୀବ, ନିସ୍ତେଜ, ତେଜୋହୀନ ।

**Vapidity**, *n.* ନିର୍ଜୀବତା, ନିସ୍ତେଜତା ।

**Vaporise, Vaporize**, *v.* ବାଷ୍ପରେ ପରିଣତ କରିବା ବା ହେବା ।

**Vaporisation**, *n.* ବାଷ୍ପୀକରଣ ।

**Vaporish**, *a.* ବାଷ୍ପମୟ, ବାଷ୍ପତୁଲ୍ୟ ।

**Vaporous**, *a.* ବାଷ୍ପୀୟ, ଅବାସ୍ତବ, ନିଃସାର । [ *v.* ଆସ୍ଫାଳନ କରିବା ।

**Vapour, Vapor**, *n.* ବାଷ୍ପ, ଧୂମ;

**Vapoury**, *a.* ବାଷ୍ପମୟ, କ୍ଷଣକୋପୀ ।

**Vapourer**, *n.* ଆସ୍ଫାଳନକାରୀ ବ୍ୟକ୍ତି, ଦାମ୍ଭିକ । [ ପରିବର୍ତ୍ତନଶୀଳତା ।

**Variability**, *n.* ଅନିତ୍ୟତା,

**Variable**, *a.* ଅସ୍ଥିର, ଅନିତ୍ୟ, ପରିବର୍ତ୍ତନୀୟ । [ ବିବାଦ ।

**Variance**, *n.* ଭେଦ, ବିରୋଧ,

**Variant**, *n.* ଏକ ଶବ୍ଦର ଭିନ୍ନ ଆକାର, ଭିନ୍ନ ପାଠ; *a.* ପରିବର୍ତ୍ତନଶୀଳ, ଭିନ୍ନ ।

**Variation**, *n.* ପରିବର୍ତ୍ତନ, ଭେଦ, ବିକାର । [ ବା ବୃଦ୍ଧିପ୍ରାପ୍ତ ।

**Varicose**, *a.* ଚିରକାଳ ପାଇଁ ସ୍ଫୀତ

**Varicosity**, *n.* ଦୀର୍ଘକାଳସ୍ଥାୟୀ ସ୍ଫୀତି ।

**Varied**, *a.* ବିବିଧ, ନାନାଜାତୀୟ ।

**Variedly**, *ad.* ନାନାପ୍ରକାରେ, ବିବିଧରୂପେ, ଅନେକ ପ୍ରକାରରେ ।

**Variegate**, *v.* ଚିତ୍ରବିଚିତ୍ର କରିବା, ବିଭିନ୍ନ ରଙ୍ଗରେ ଚିହ୍ନିତ କରିବା ।

**Variegated**, *a.* ଚିତ୍ରବିଚିତ୍ର ।
**Variegation**, *n.* (ପତ୍ର ଉପରେ) ବିଭିନ୍ନ ରଙ୍ଗର ଅବସ୍ଥିତି । [ ବିଶେଷ ।
**Variety**, *n.* ବିଚିତ୍ରତା, ଭେଦ,
**Variety-show**, *n.* ବିଚିତ୍ରା, ନୃତ୍ୟଗୀତାଦିର ପ୍ରଦର୍ଶନ ।
**Variela**, *n.* ବସନ୍ତରୋଗ ।
**Various**, *a.* ନାନା ପ୍ରକାରର, ବହୁଜାତୀୟ, ବହୁବିଧ ।
**Variously**, *ad.* ବିଭିନ୍ନ ପ୍ରକାରରେ ।
**Varlet**, *n.* ଭୃତ୍ୟ, ଅଧମ ବ୍ୟକ୍ତି, ଦୁଷ୍ଟଲୋକ ।
**Varnish**, *n.* ଚକ୍‌ଚକ୍ୟ, ଚକ୍‌ଚକ୍ କରିବାର ପ୍ରଲେପ; *v.* ପ୍ରଲେପ ଦ୍ୱାରା ଚକ୍‌ଚକ୍ କରିବା ।
**Varsity**, *n.* ବିଶ୍ୱବିଦ୍ୟାଳୟ । [ଦେବା ।
**Vary**, *v.* ପରିବର୍ତ୍ତିତ କରିବା, ଭିନ୍ନରୂପ
**Vase**, *n.* କୁମ୍ଭ, ପାତ୍ର, କଳସ ।
**Vaseline**, *n.* ପେଟ୍ରୋଲିଅମରୁ ପ୍ରସ୍ତୁତ ଗାଢ଼ ତୈଳବିଶେଷ । [ ବ୍ୟକ୍ତି ।
**Vassal**, *n.* କରଦ, ସାମନ୍ତ, ଅଧୀନ
**Vast**, *a.* ବିଶାଳ, ବିସ୍ତୀର୍ଣ୍ଣ, ବିପୁଳ, ଅପରିମିତ ।
**Vastly**, *ad.* ବିପୁଳ ପରିମାଣରେ ।
**Vastness**, *n.* ବିପୁଳତା, ବିଶାଳତ୍ୱ ।
**Vat**, *n.* ହଣ୍ଡି, କୁଣ୍ଡ ।
**Vatican**, *n.* ରୋମରେ ପୋପଙ୍କ ପ୍ରାସାଦସମେତ ଅଟ୍ଟାଳିକା ସମୂହ, ପୋପଙ୍କର ଆଧିପତ୍ୟ ।
**Vatic, Vaticinal**, *a.* ଭବିଷ୍ୟଦ୍-ବାଣୀସୂଚକ, ଦୈବବାଣୀତୁଲ୍ୟ । [ କରିବା ।
**Vaticinate**, *v.* ଭବିଷ୍ୟଦ୍‌ବାଣୀ
**Vaticination**, *n.* ଭବିଷ୍ୟତ୍‌କଥନ ।
**Vaticinator**, *n.* ଭବିଷ୍ୟଦ୍‌ବକ୍ତା ।
**Vault**, *n.* ଖିଲାଣଗୃହ, ଖିଲାଣଗୃହ-ବିଶିଷ୍ଟ ଭୂମି-ଗୃହ; *v.* ଖିଲାଣଗୃହ କରିବା, ଲମ୍ଫ ପ୍ରଦାନ କରିବା ।
**Vaulted**, *a.* ଖିଲାଣଗୃହବିଶିଷ୍ଟ ।
**Vaunt**, *v.* ଆଡ଼ମ୍ବର ଦେଖାଇବା, ଗର୍ବ କରିବା; *n.* ବଡ଼ିମା, ବୃଥା ଆଡ଼ମ୍ବର ।
**Vauntful**, *a.* ଗର୍ବିତ, ବଡ଼ିମାପୂର୍ଣ୍ଣ ।
**Vauntingly**, *ad.* ଗର୍ବସହକାରେ ।
**Veal**, *n.* ବାଛୁରିମାଂସ ।
**Veer**, *v.* ପ୍ରଦକ୍ଷିଣ କରିବା, ଦିଗ-ପରିବର୍ତ୍ତନ କରିବା । [ *a.* ଉଦ୍ଭିଜ୍ଜ ।
**Vegetable**, *n.* ଶାକସବଜି, ପରିବା;
**Vegetarian**, *a.* ନିରାମିଷ; *n.* ନିରାମିଷାଶୀ । [ ଭୋଜନବାଦ ।
**Vegetarianism**, *n.* ନିରାମିଷ-
**Vegetate**, *v.* ଅଙ୍କୁରିତ ହେବା, ଲକ୍ଷ୍ୟହୀନ ଅଳସ ଜୀବନ ଯାପନ କରିବା ।
**Vegetation**, *n.* ଉଦ୍ଭିଦ, ବୃକ୍ଷଲତାଦି ।
**Vehemence, Vehemency**, *n.* ଚଣ୍ଡତା, ତୀବ୍ରତା, ତୀକ୍ଷ୍ଣତା, ବେଗ ।
**Vehement**, *a.* ପ୍ରଚଣ୍ଡ, ତୀବ୍ର, ଉଗ୍ର ।
**Vehemently**, *ad.* ପ୍ରଚଣ୍ଡଭାବରେ ।

Vehicle, *n.* ଯାନ, ରଥ-ଶକଟାଦି, ଅନୁପାନ । [ ସମ୍ବନ୍ଧୀୟ ।
Vehicular, *a.* ଯାନବାହନ-
Veil, *n.* ଅବଗୁଣ୍ଠନ, ପର୍ଦ୍ଦା, ଆବରଣ, *v.* ଆବରଣ କରିବା, ଆଚ୍ଛାଦନ କରିବା ।
Veiled, *a.* ଅବଗୁଣ୍ଠିତ, ଆଚ୍ଛାଦିତ, ପ୍ରଚ୍ଛନ୍ନ
Vein, *n.* ଧମନୀ, ଶିରା, ନାଡ଼ୀ, ଭାବ, ମନୋବୃତ୍ତି ।
Veinage, *n.* ଶିରାସମୂହ ।
Veined, *a.* ଶିରାଳ, ଶିରାବହୁଳ ।
Veinlet, *n.* ଉପଶିରା ।
Veinous, Veiny, *a.* ଶିରାଳ, ଶିରାମୟ, ଶିରାସମ୍ବନ୍ଧୀୟ ।
Veinule, *a.* ଅତି ସୂକ୍ଷ୍ମ ଶିରା ।
Veld, Veldt, *n.* (ଦକ୍ଷିଣ-ଆଫ୍ରିକାର) ତୃଣମୟ ପ୍ରାନ୍ତର । [ ପାତଳା କାଗଜ ।
Vellum, *n.* ଚର୍ମପଟ, ଚର୍ମନିର୍ମିତ
Velocity, *n.* ବେଗ, ଜବ ।
Velvet, *n.* ମଖମଲ୍ ଲୁଗା ।
Velveteen, *n.* କୃତ୍ରିମ ମଖମଲ୍ ।
Velvety, *a.* ମଖମଲନିର୍ମିତ, ମଖମଲ୍ ସଦୃଶ କୋମଳ । [ ଅର୍ଥବଶୀଭୂତ ।
Venal, *a.* ଉତ୍କୋଚ ଦ୍ୱାରା ବଶ୍ୟ,
Venality, *n.* ଅର୍ଥବଶତା, ଅର୍ଥ-ଲୋଭରେ ଶକ୍ତିର ଅପବ୍ୟୟ । [ କରିବା ।
Vend, *v.* ବିକ୍ରୟ କରିବା, ବ୍ୟବସାୟ
Vendee, *n.* ମୂଲ୍ୟ ପ୍ରଦ, କ୍ରେତା, ଖରିଦଦାର ।
Vender, Vendor, *n.* ବିକ୍ରେତା, ବିକ୍ରୟପଣ୍ୟର ବାକ୍ସ ।
Vendetta, *n.* ହତ୍ୟାହେତୁ ବଂଶଗତ ପ୍ରତିହିଂସା । [ *n.* ପଣ୍ୟଦ୍ରବ୍ୟ ।
Vendible, *a.* ପଣ୍ୟ, ବିକ୍ରେୟ;
Venerable, *a.* ପୂଜନୀୟ, ସମ୍ମାନନୀୟ, ଭକ୍ତିଜନକ । [ କରିବା ।
Venerate, *v.* ଭକ୍ତି କରିବା, ସମ୍ମାନ
Veneration, *n.* ଭକ୍ତି, ଗୌରବ ପ୍ରଦର୍ଶନ । [ ଭକ୍ତିପୂର୍ଣ୍ଣ ।
Venerative, *a.* ସମ୍ମାନପୂର୍ଣ୍ଣ,
Venereal, *a.* ଯୌନସଂସର୍ଗଜନିତ ।
Venereous, *a.* ଯୌନସମ୍ଭୋଗର ଉତ୍ତେଜକ ।
Venery, *n.* ରମଣ, ରତିକ୍ରିୟା ।
Venesection, *n.* ଶିରାଛେଦନ, ରକ୍ତମୋକ୍ଷଣ ।
Venetian, *a.* ଭେନିସନଗର-ସମ୍ବନ୍ଧୀୟ; *n.* ଭେନିସର ଅଧିବାସୀ ।
Venetian-blind, *n.* ଝରକାର ଝିଲ୍‌ମିଲ୍ । [ ପ୍ରତିଶୋଧ, ବୈରନିର୍ଯାତନ ।
Vengeance, *n.* ପ୍ରତିହିଂସା,
Vengeful, *a.* ପ୍ରତିହିଂସାପରାୟଣ ।
Venial, *a.* କ୍ଷନ୍ତବ୍ୟ, ମାର୍ଜନୀୟ, ଉପେକ୍ଷଣୀୟ, ସାମାନ୍ୟ ।
Venison, *n.* ମୃଗମାଂସ ।
Venom, *n.* ବିଷ, ଗରଳ । [ ସବିଷ ।
Venomous, *a.* ବିଷଧର, ବିଷାକ୍ତ,

Venous, *a.* ଶିରାରେ ନିହିତ, ଶିରା-ସମ୍ବନ୍ଧୀୟ ।

Vent, *n.* କ୍ଷୁଦ୍ର ରନ୍ଧ୍ର, ନିଃସରଣ, ପ୍ରକାଶନ, ବହିର୍ଗମନ; *v.* ପ୍ରକାଶ ବା ପ୍ରଚାର କରିବା ।

Venter, *n.* ପ୍ରକାଶକାରୀ, ପ୍ରଚାରକ ।

Ventilate, *v.* ବିଞ୍ଚିବା, ବାୟୁପ୍ରବେଶ କରାଇବା, ସାଧାରଣରେ ଜଣାଇବା ।

Ventilation, *n.* ବାୟୁର ଗମନାଗମନ । [ ବ୍ୟବସ୍ଥା ।

Ventilator, *n.* ବାୟୁଗମନାଗମନର

Ventral, *a.* କୁକ୍ଷି ବା ଉଦର ସମ୍ବନ୍ଧୀୟ

Ventricle, *n.* ଜୀବଶରୀରସ୍ଥିତ କ୍ଷୁଦ୍ର ଛିଦ୍ର ।

Venture, *n.* ସାହସ, ସଂଶୟ, ଭାଗ୍ୟ-ପରୀକ୍ଷା; *v.* ଭାଗ୍ୟପରୀକ୍ଷା କରିବା ।

Venturesome, *a.* ଦୁଃସାହସିକ ।

Venturous, *a.* ସାହସପୂର୍ଣ୍ଣ ।

Venue, *n.* ଘଟନାସ୍ଥଳ ।

Venus, *n.* ଶୁକ୍ରଗ୍ରହ, (ରୋମାନ-ମାନଙ୍କର) ପ୍ରେମର ଅଧିଷ୍ଠାତ୍ରୀ ଦେବୀ, ରତିଦେବୀ । [ ସତ୍ୟପରାୟଣ ।

Veracious, *a.* ସତ୍ୟବାଦୀ,

Veracity, *n.* ସତ୍ୟବାଦିତା ।

Veranda, Verandah, *n.* ବାରଣ୍ଡା, ପିଣ୍ଡା ।

Verb, *n.* (ବ୍ୟାକରଣର) କ୍ରିୟାପଦ ।

Verbal, *a.* ମୌଖିକ, ବାଚନିକ ।

Verbally, *ad.* ମୌଖିକଭାବରେ ।

Verbalism, *n.* ମୌଖିକ ବିଷୟ ।

Verbatim, *ad.* ଯଥାଶ୍ରୁତ ତଥା, ଅକ୍ଷରିକ ଭାବରେ । [ ବାଗାଡ଼ମ୍ବର ।

Verbiage, *n.* ବାଗ୍‌ବିସ୍ତର, ବୃଥା

Verbose, *a.* ବାଗ୍‌ବହୁଳ, ଶବ୍ଦବହୁଳ ।

Verbosity, *n.* ବାଗାଡ଼ମ୍ବର ।

Verdancy, *n.* ସବୁଜିମା, ଶାଦ୍ୱଳତା ।

Verdant, *a.* ଶାଦ୍ୱଳ, ସବୁଜ, ହରିତ୍ ।

Verdict, *n.* ଦଣ୍ଡନିର୍ଣ୍ଣୟ, ଦଣ୍ଡାଦେଶ ।

Verdure, *n.* ସବୁଜିମା, ସତେଜ ବୃଦ୍ଧି ।

Verge, *n.* ପ୍ରାନ୍ତ, ସୀମା, ଧାର ।

Verifiable, *a.* ପ୍ରମାଣଯୋଗ୍ୟ, ନିର୍ଣ୍ଣେୟ

Verification, *n.* ସତ୍ୟତାର ପ୍ରମାଣ-କରଣ । [ କରିବା, ମିଳାଇ ପରୀକ୍ଷା କରିବା ।

Verify, *v.* ପ୍ରମାଣିତ କରିବା, ନିର୍ଣ୍ଣୟ

Verily, *ad.* ପ୍ରକୃତରେ, ଯଥାର୍ଥତଃ ।

Verisimilar, *a.* ଆପାତ ସତ୍ୟ, ସମ୍ଭବପର ।

Verisimilitude, *n.* ସମ୍ଭାବନା ।

Veritable, *a.* ସତ୍ୟ, ଯଥାର୍ଥ, ପ୍ରକୃତ ।

Verity, *n.* ସତ୍ୟତା, ଯାଥାର୍ଥ୍ୟ ।

Vermicelli, *n.* ସିମେଇ, ମଇଦାରେ ପ୍ରସ୍ତୁତ ଖାଦ୍ୟଦ୍ରବ୍ୟବିଶେଷ ।

Vermicide, *n.* କୀଟନାଶକ ଦ୍ରବ୍ୟ ।

Vermicular, *a.* କୀଟସମ୍ବନ୍ଧୀୟ, କୀଟସଦୃଶ ।

Vermicule, *n.* କ୍ଷୁଦ୍ର କୀଟ, କୃମି ।

**Vermiculous**, *a.* କୀଟପୂର୍ଣ୍ଣ, କୃମିମୟ ।
**Vermifuge**, *n.* ଉଦରର କୃମିନାଶକ ଦ୍ରବ୍ୟ । [ ସିନ୍ଦୂରଲିପ୍ତ କରିବା ।
**Vermilion**, *n.* ସିନ୍ଦୂର; *v.*
**Vermin**, *n.* (*sing. & pl.*) କୃମି, କୀଟଜାତୀୟ ପ୍ରାଣୀ, ମାଛି-ଉକୁଣି ପ୍ରଭୃତି । [ କୀଟଶ୍ରେଣୀ ।
**Vermivorous**, *a.* କୀଟଖାଦକ,
**Vernacular**, *n.* ମାତୃଭାଷା, ଜନ୍ମଭାଷା
**Vernal**, *a.* ବାସନ୍ତ, ବସନ୍ତକାଳୀନ ।
**Versatile**, *a.* ଚପଳମନା, ଅସ୍ଥିର, ବହୁବିଦ୍ୟାପ୍ରବୀଣ । [ ବିଦ୍ୟାରେ ଦକ୍ଷତା ।
**Versatility**, *n.* ଅସ୍ଥିରତା, ବହୁ-
**Verse**, *n.* ପଦ୍ୟ, କବିତା, ଶ୍ଳୋକ ।
**Versed**, *a.* ଅଭିଜ୍ଞ, କୁଶଳ, ପ୍ରବୀଣ, ନିପୁଣ, ପାରଦର୍ଶୀ ।
**Versification**, *n.* ପଦ୍ୟରଚନା ।
**Versifier**, *n.* ପଦ୍ୟରଚକ, କବିତା-ଲେଖକ, ନିକୃଷ୍ଟ କବି ।
**Versify**, *v.* ପଦ୍ୟ ରଚନା କରିବା ।
**Version**, *n.* ପାଠାନ୍ତର, ଅନୁବାଦ ।
**Versus**, *pre.* ବନାମ, ବିରୋଧରେ ।
**Vertebra**, *n.* ମେରୁଦଣ୍ଡର ଅସ୍ଥି (*pl.* Vertebræ) ।
**Vertebral**, *a.* ମେରୁଦଣ୍ଡୀୟ ।
**Vertebrate**, *a.* ମେରୁଦଣ୍ଡବିଶିଷ୍ଟ; *n.* ମେରୁଦଣ୍ଡୀ ପ୍ରାଣୀ ।
**Vertebrated**, *a.* ମେରୁଦଣ୍ଡବିଶିଷ୍ଟ ।
**Vertex**, *n.* ଶୀର୍ଷବିନ୍ଦୁ, ଅଗ୍ର, ଚୂଡ଼ା, ଶିଖର । [ ଶୀର୍ଷବିନ୍ଦୁସ୍ଥିତ ।
**Vertical**, *a.* ଲମ୍ବଭାବରେ ଅବସ୍ଥିତ,
**Vertically**, *ad.* ଲମ୍ବଭାବରେ ।
**Vertigo**, *n.* ଭ୍ରମରୋଗ, ମୁଣ୍ଡବୁଲା ।
**Very**, *a.* ଠିକ୍ ସେହି; *ad.* ଅତିବ, ଅତ୍ୟନ୍ତ, ନିତାନ୍ତ । [ ଫୋଟକା ।
**Vesicle**, *n.* ସ୍ଫୋଟକ, ବୁଦ୍‌ବୁଦ,
**Vesper**, *n.* ଶୁକ୍ର, ସନ୍ଧ୍ୟାତାରା, ସାୟଂକାଳ, ସନ୍ଧ୍ୟାସମୟ ।
**Vespers**, *n.* (*pl.*) ସାନ୍ଧ୍ୟ ଉପାସନା ।
**Vessel**, *n.* ଭାଣ୍ଡ, ପାତ୍ର, ଆଧାର, ପୋତ, ଜାହାଜ । [ ବା ଅଧିକାର ଦେବା ।
**Vest**, *n.* ଅଙ୍ଗରଖା, ଫତେଇ; *v.* ପଦ
**Vested**, *a.* ବ୍ୟବସ୍ଥିତ, ଅଧୀନ, ନ୍ୟସ୍ତ ।
**Vestibule**, *n.* ଆଚ୍ଛାଦିତ ତୋରଣ ।
**Vestige**, *n.* ଚିହ୍ନ, ଲକ୍ଷଣ, ସଙ୍କେତ ।
**Vestment, Vesture**, *n.* ପରିଚ୍ଛଦ, ବସ୍ତ୍ର, ବସନ ।
**Veteran**, *a. & n.* ଜ୍ଞାନବୃଦ୍ଧ, ଅଭିଜ୍ଞ, ଅନୁଭବୀ, ପ୍ରବୀଣ ବ୍ୟକ୍ତି ।
**Veterinarian, Veterinary**, *n.* ପଶୁଚିକିତ୍ସକ, ଗୃହପାଳିତଜନ୍ତୁ-ଚିକିତ୍ସକ, ପଶୁବୈଦ୍ୟ; *a.* ପଶୁଚିକିତ୍ସା-ବିଷୟକ ।
**Veto**, *v.* ଅଗ୍ରାହ୍ୟ ବା ପ୍ରତ୍ୟାଖ୍ୟାନ କରିବା, ବିଶିଷ୍ଟ କ୍ଷମତା ପ୍ରୟୋଗ ଦ୍ୱାରା ଅଗ୍ରାହ୍ୟ କରିବା; *n.* ଅଗ୍ରାହ୍ୟ କରିବାର ସ୍ୱତନ୍ତ୍ର କ୍ଷମତା ।

**Vex**, *v.* କ୍ଳେଶ ଦେବା, ବିରକ୍ତ କରିବା, କ୍ଷୁବ୍ଧ କରିବା । [ ବିରକ୍ତ, ପୀଡ଼ା ।
**Vexation**, *n.* କ୍ଳେଶ, ସନ୍ତାପ,
**Vexatious**, *a.* କ୍ଳେଶକର, ପୀଡ଼ାଦାୟକ, ବିରକ୍ତିଜନକ । [ କ୍ଷୁବ୍ଧ ।
**Vexed**, *a.* ଦୁଃଖିତ, ସନ୍ତାପିତ, ବିରକ୍ତ,
**Via**, *pre.* ବାଟେ, ପନ୍ଥା; *n.* ପଥ, ବାଟ ।
**Via media**, *n.* ମଧ୍ୟମ ପନ୍ଥା ।
**Viable**, *a.* ଜୀବନଧାରଣକ୍ଷମ, ନିର୍ଦ୍ଦିଷ୍ଟ ଜଳବାୟୁରେ ବଞ୍ଚିବାକୁ ସମର୍ଥ ।
**Vial**, *n.* ଶିଶି, ବୋତଲ ।
**Viand**, *n.* ଅନ୍ନ, ଭକ୍ଷ୍ୟ, ଖାଦ୍ୟଦ୍ରବ୍ୟ ।
**Vibrant**, *a.* ସ୍ପନ୍ଦନଶୀଳ, ପ୍ରତିଧ୍ୱନିତ ।
**Vibrate**, *v.* ସ୍ପନ୍ଦିତ ହେବା, କମ୍ପିବା ।
**Vibration**, *n.* ସ୍ପନ୍ଦନ, କମ୍ପନ ।
**Vibrator**, *n.* କମ୍ପନଶୀଳ ବସ୍ତୁ, ବୈଦ୍ୟୁତିକ ଯନ୍ତ୍ରର ଅଂଶବିଶେଷ ।
**Vibratory**, *a.* କମ୍ପନଶୀଳ, ଦୋଳାୟମାନ । [ ପଲ୍ଲୀପୁରୋହିତ ।
**Vicar**, *n.* ପ୍ରତିନିଧି, ଗ୍ରାମ୍ୟ ଧର୍ମଯାଜକ,
**Vicarage**, *n.* ପୌରୋହିତ୍ୟ, ପୁରୋହିତଙ୍କ ଗ୍ରାମ ।
**Vicarious**, *a.* ପ୍ରତିନିଧିସ୍ଥାନୀୟ ।
**Vice**, *n.* ପାପ, ଅଧର୍ମ, ବ୍ୟଭିଚାର, ଚାପିଧରିବା ଯନ୍ତ୍ର; *pre.* ପରିବର୍ତ୍ତିରେ, ପଦରେ ।
**Vice-Chairman**, *n.* ଉପସଭାପତି, ଉପାଧ୍ୟକ୍ଷ ।
**Vice-Chancellor**, *n.* କୁଳପତି ।
**Vice-President**, *n.* ଉପସଭାପତି ।
**Vice-Principal**, *n.* ଉପାଧ୍ୟକ୍ଷ ।
**Viceregal**, *a.* ରାଜପ୍ରତିନିଧିସମ୍ବନ୍ଧୀୟ ।
**Viceroy**, *n.* ରାଜପ୍ରତିନିଧି ।
**Viceroyalty, Viceroyship**, *n.* ରାଜପ୍ରତିନିଧିତ୍ୱ । [ ମଧ୍ୟ ସତ୍ୟ ।
**Vice-versa**, *ad.* ବିପରୀତ କ୍ରମରେ
**Vicinity**, *n.* ସନ୍ନିଧି, ସନ୍ନିକର୍ଷ, ନୈକଟ୍ୟ
**Vicious**, *a.* ଦୁରାଚାର, ଦୁରାତ୍ମା, ଦୁର୍ବୃତ୍ତ
**Viciousness**, *n.* ଦୁଷ୍ଟତା, ଦୁର୍ବୃତ୍ତତା, ପାପାଚରଣ । [ ପରିବର୍ତ୍ତନ ।
**Vicissitude**, *n.* ବିପର୍ଯ୍ୟୟ,
**Vicissitudinous**, *a.* ବିପର୍ଯ୍ୟସ୍ତ, ପରିବର୍ତ୍ତିତ । [ କ୍ଷତିଗ୍ରସ୍ତ ବ୍ୟକ୍ତି ।
**Victim**, *n.* ବଳି, ବଧଜୀବ, ଯଜ୍ଞପଶୁ,
**Victimisation, Victimization**, *n.* କ୍ଷତିସାଧନ, ଉତ୍ପୀଡ଼ନ, ବିନାଶସାଧନ ।
**Victimise, Victimize**, *v.* ବଳି ଦେବା, କ୍ଷତିଗ୍ରସ୍ତ କରିବା, ଉତ୍ପୀଡ଼ନ କରିବା ।
**Victor**, *n.* ବିଜେତା ।
**Victorious**, *a.* ବିଜୟୀ, ଜୟସୂଚକ ।
**Victory**, *n.* ବିଜୟ ।
**Victual**, *v.* ଖାଦ୍ୟସାମଗ୍ରୀ ଯୋଗାଇବା ।
**Victuals**, *n.* (*pl.*) ଭକ୍ଷ୍ୟସାମଗ୍ରୀ, ଖାଦ୍ୟସମ୍ଭାର ।

Vide, *v.* ଦେଖ । [ ଯଥା ।
Videlicet (Viz.), *ad.* ଅର୍ଥାତ୍,
Vie, *v.* ପ୍ରତିଦ୍ୱନ୍ଦ୍ୱିତା କରିବା, ବଳିବାକୁ ଚେଷ୍ଟା କରିବା, ସ୍ପର୍ଦ୍ଧା କରିବା ।
View, *n.* ଦୃଷ୍ଟି, ଦୃଶ୍ୟ, ଛବି, ଲକ୍ଷ୍ୟ; *v.* ଦେଖିବା, ବିଗ୍ଭରିବା । [ ପୂର୍ବରାତି ।
Vigil, *n.* ଜାଗରଣ, ପର୍ବ ବା ଉତ୍ସବର
Vigilance, *n.* ସତର୍କତା, ଅବହିତତା, ଜାଗରୂକତା । [ ଜାଗରୂକ ।
Vigilant, *a.* ସତର୍କ, ସାବଧାନ,
Vigorous, *a.* ଓଜସ୍ୱୀ, ବୀର୍ଯ୍ୟବାନ୍, ଶକ୍ତିଶାଳୀ, ଉତ୍ସାହପୂର୍ଣ୍ଣ ।
Vigorously, *ad.* ଉତ୍ସାହ ସହକାରେ
Vigour, *n.* ବୀର୍ଯ୍ୟ, ଶକ୍ତି, ଓଜଃ, ତେଜଃ, ବଳ, ଉତ୍ସାହ ।
Vile, *a.* ଅଧମ, ନୀଚ, ଜଘନ୍ୟ, ଘୃଣ୍ୟ ।
Vileness, *n.* ନୀଚତା, ହୀନତା, ଜଘନ୍ୟତା ।
Vilification, *n.* ଅପବାଦ, ନିନ୍ଦା ।
Vilifier, *n.* ଅପବାଦକାରୀ । [ ଦେବା ।
Vilify, *v.* କୁତ୍ସାରଟନା କରିବା, ଅପବାଦ
Villa, *n.* ଗ୍ରାମ୍ୟଗୃହ, ବିନୋଦ ସ୍ଥାନ ।
Village, *n.* ଗ୍ରାମ, ପଲ୍ଲୀ । [ ଗ୍ରାମୀଣ ।
Villager, *n.* ପଲ୍ଲୀବାସୀ, ଗ୍ରାମ୍ୟଲୋକ,
Villain, *n.* ଦୁର୍ବୃତ୍ତ ଲୋକ, ଖଳ ବ୍ୟକ୍ତି, ଦୁର୍ଜନ, ସଇତାନ ।
Villainous, *a.* ଦୁର୍ବୃତ୍ତ, ଖଳ, ଦୁଷ୍ଟ ।
Villainy, *n.* ଦୁର୍ବୃତ୍ତତା, ଦୁଷ୍ଟତା ।
Vim, *n.* ଶକ୍ତି, ସତ୍ତ୍ୱ, ବଳ ।
Vincible, *a.* ଜେତବ୍ୟ, ଯାହାକୁ ଜୟ କରିଯାଇପାରେ । [ ବନ୍ଧନୀ ।
Vinculum, *n.* (ଗଣିତରେ) ଊର୍ଦ୍ଧ୍ୱ
Vindicate, *v.* ପ୍ରମାଣ କରିବା, ସମର୍ଥନ କରିବା, ନିର୍ଦ୍ଦୋଷ ବୋଲି ପ୍ରମାଣ କରିବା ।
Vindication, *n.* ପ୍ରତିପାଦନ, ସମର୍ଥନ, ଦୋଷମୁକ୍ତି । [ ପ୍ରତିପାଦନକାରୀ ।
Vindicative, *a.* ସମର୍ଥନଶୀଳ,
Vindictive, *a.* ପ୍ରତିହିଂସାପରାୟଣ, ଅସହିଷ୍ଣୁ । [ ପ୍ରତିହିଂସା ।
Vindictiveness, *n.* ଅସହିଷ୍ଣୁତା,
Vine, *n.* ଦ୍ରାକ୍ଷାଲତା ।
Vinegar, *n.* ସିର୍କା, ଅମ୍ଳରସ ।
Vineyard, *n.* ଦ୍ରାକ୍ଷାକ୍ଷେତ୍ର ।
Vinous, *a.* ମଦ୍ୟଜାତ, ମଦ୍ୟଜନିତ ।
Vintage, *n.* ଦ୍ରାକ୍ଷା ତୋଳିବା ସମୟ ।
Vintner, *n.* ସୁରାଜୀବୀ, ମଦ୍ୟବିକ୍ରେତା, ଶୁଣ୍ଡି । [ ବିଶେଷ ।
Viola, *n.* ବୃହଦାକାର ବେହେଲା-
Violable, *a.* ଲଙ୍ଘନୀୟ । [ କରିବା ।
Violate, *v.* ଲଙ୍ଘନ କରିବା, ଭଙ୍ଗ
Violation, *n.* ଭଙ୍ଗ, ଲଙ୍ଘନ, ବଳାତ୍କାର
Violator, *n.* ଲଙ୍ଘନକାରୀ, ଭଙ୍ଗକାରୀ ।
Violence, *n.* ପ୍ରାବଲ୍ୟ, ପ୍ରଚଣ୍ଡତା, ଉଗ୍ରତା, ଅତ୍ୟାଚାର । [ ତୀବ୍ର ।
Violent, *a.* ପ୍ରଚଣ୍ଡ, ପ୍ରବଳ, ଉଗ୍ର,

